# ଅମୃତର ଆହ୍ୱାନ :

ଲେଖକ : କାର୍ତ୍ତିକ ଚାନ୍ଦ
ପ୍ରକାଶକ : ଦିଲ୍ଲୀପ ସ୍ୱାଇଁ, ପେଗାସସ୍ ପବ୍ଲିସର୍ସ,
ଡି.ଟି.ପି. : ସମ୍ବିତ୍ ଦି ଆଡ୍ ପ୍ୟୁପୁଲ, କଟକ ।
ମୁଦ୍ରଣ : ମମତା ଏଣ୍ଟର ପ୍ରାଇଜର୍ସ୍, କଟକ ।

## AMRUTARA AHWAN :

Author : Kartika Chand
Publisher : Dillip Swain, Pegasus Publishers
D.T.P. : Sombit The Ad. People, Cuttack.
Printer : Mamata Enterprisers, Telenga Bazar, Cuttack



*First Edition : November - 1997 (1000 copies)*

Price Rs. 99/-



PEGASUS PUBLISHERS
SWAIN BHAWAN, HAZARILANE
CUTTACK, ORISSA
INDIA - 753 009



ଶ୍ରୀ କାର୍ତ୍ତିକ ଚନ୍ଦ୍ର ଚାନ୍ଦଙ୍କ ଜନ୍ମ ପୁରୀରେ ୧୯୨୮ରେ । ସେଠାରେ ସ୍କୁଲ, କଲେଜରେ ପଢ଼ି, କଟକର ରେଭେନ୍ସା କଲେଜରୁ ସ୍ନାତକ ଭାବେ ଉତ୍ତୀର୍ଣ୍ଣ ହୋଇ, କଲିକତା ବିଶ୍ୱବିଦ୍ୟାଳୟରେ ମନୋବିଜ୍ଞାନ ପଢ଼ିବାପରେ, କେନ୍ଦ୍ରିୟ ରାଜସ୍ୱ-ସେବାରେ ଯୋଗ ଦେଇଥିଲେ ୧୯୫୧ରେ । ତାଙ୍କ ଜୀବନର ଅଭିଜ୍ଞତା ସମ୍ବଳିତ ପୁସ୍ତକ ''ମୁଖର ଅତୀତ'' ପ୍ରକାଶିତ ହେଇଥିଲା ୧୯୯୨ରେ । ''ସମାରୋହ'', ''ନିର୍ମାଲ୍ୟ'' ପ୍ରଭୃତି ପ୍ରତିକାରେ ତାଙ୍କର ଲେଖା ପ୍ରକାଶ ପାଇଛି । ସେ କର୍ମବୀର ଗୌରୀଶଙ୍କର ସ୍ମୃତି-ସଂସଦର ଅଧକ୍ଷ, ଲୋକଭାଷା ପ୍ରଚାର ସମିତିର ରାଜ୍ୟଶାଖା ସଭାପତି ଓ ବହୁ ଲୋକହିତକର ସଂସ୍ଥା ସହିତ-ଯୁକ୍ତ । ଏକ ମୌଳିକ ବିଷୟରେ ଗବେଷଣା କରି, ''ମହାବିଶ୍ୱ'', ''ମହାକାଳ'' ଓ ''ମହା ଜୀବନର'' ଗଭୀର ସମନ୍ୱୟର ପ୍ରୟାସ କରିଛନ୍ତି ଏହି ''ଅମୃତର ଅହ୍ୱାନ'' ପୁସ୍ତକରେ । ବିଶ୍ୱ ସାହିତ୍ୟରେ ଏହା ଏକ ବିରଳ ପ୍ରଚେଷ୍ଟା ।

# ଉପକ୍ରମଣିକା

''ଅମୃତର ଆହ୍ୱାନ'' ଧର୍ମଗ୍ରନ୍ଥ ନୁହେଁ । ଏହା ଚିରାଚରିତ ବା ପ୍ରଚଳିତ ରୀତିରେ ନୀତି କଥା ନୁହେଁ । ପାରମ୍ପାରିକ ପ୍ରଥାରେ ଦେବ ଗାଥା ନୁହେଁ । ଏହା ଏକ ଅନ୍ୱେଷଣ; ଏକ ଅନୁସନ୍ଧାନ ସେହି ବସ୍ତୁର ଯାହାକୁ ଜାଣିଲେ ଅନ୍ୟ ସବୁ କିଛିକୁ ଅବସ୍ତୁ ବୋଲି ମନେହୁଏ । ଏହା ଏକ ଗବେଷଣା ସବୁ ଜଣା ତଥ୍ୟର, ଯାହା ଫଳରେ ଅଜଣା ସତ୍ୟର ସନ୍ଧାନ ମିଳେ । ଏହା ଏକ ପ୍ରଚେଷ୍ଟା ସେହି ଜିନିଷକୁ ଜାଣିବାକୁ ଯାହାକୁ ପାଇଲେ ଅନ୍ୟ ଲାଭ ତାହାଠାରୁ ବେଶୀ ବୋଲି ମନେ ହୁଏ ନାହିଁ । ମାତ୍ର ଏହି ଅନ୍ୱେଷଣ ଏ ଯୁଗର ବୈଜ୍ଞାନିକ ଚିନ୍ତା, ଗବେଷଣା, ତତ୍ତ୍ୱ ଓ ତଥ୍ୟାବଳି ମଧ୍ୟଦେଇ ପ୍ରସାରିତ । ବୈଜ୍ଞାନିକ ସିଦ୍ଧାନ୍ତ ଗୁଡିକର ପର୍ଯ୍ୟାଲୋଚନା କରି, ବିଜ୍ଞାନର ସୋପାନରେ ଚଢ଼ି, ବିଜ୍ଞାନ ପ୍ରଦର୍ଶିତ ପଥରେ ଅଗ୍ରସର ହୋଇ ଶେଷ ତତ୍ତ୍ୱର ଅନୁସରଣ ଏହି ପୁସ୍ତକର ଉଦ୍ଦେଶ୍ୟ । ଅତି ସଂକ୍ଷିପ୍ତ ଭାବରେ ବୈଜ୍ଞାନିକ ଆବିଷ୍କାର ଓ ଉଦ୍‌ଭାବନର ଉଲ୍ଲେଖ କରି, ମୀମାଂସାରେ ଉପନୀତ ହେବା ହେଲା ଶେଷ ଲକ୍ଷ୍ୟ । ମହାଚିନ୍ତା ନାୟକ, ବୈଜ୍ଞାନିକ, ସୌରବିଜ୍ଞାନୀ ମାନେ ସତ୍ୟ ନିର୍ଦ୍ଧାରଣ କରିବା ପାଇଁ ''ଜଡ''ରୁ ''ଚୈତନ୍ୟ'' ଆଡକୁ ଦୃଢ଼ ପଦକ୍ଷେପରେ ଆଗେଇ ଯାଇଛନ୍ତି । ସେମାନଙ୍କର ଚନ୍ତାଧାରା ଏହି ପୁସ୍ତକରେ ପ୍ରତିଫଳିତ । ବିଜ୍ଞାନ ଯେଉଁ ସର୍ବଶେଷ ମହା-ଏକକ ତତ୍ତ୍ୱକୁ ସର୍ବଦା, ନିରଳସ ଚେଷ୍ଟାରେ ଖୋଜି ବୁଲୁଛି ଆଜି ପର୍ଯ୍ୟନ୍ତ, ତାହାର ସାମ୍ଭାବ୍ୟ ଅନ୍ତିମ ଫଳର ଏକ ରୂପରେଖ ମିଳୁଛି ପ୍ରାଚ୍ୟର ଜ୍ଞାନ ଭଣ୍ଡାରରେ । ବେଦ, ଉପନିଷଦ, ବେଦାଙ୍ଗ, ସୂତ୍ର, ଦର୍ଶନ ଓ ଭଗବଦ୍‌ଗୀତାରେ ପ୍ରତିବିମ୍ବିତ ଜ୍ଞାନରଶ୍ମିରୁ ସଂଗୃହିତ କେତେକ ବିରଳ ପଂକ୍ତିରାଜି ଏହି ପୁସ୍ତକରେ ସନ୍ନିବେଷିତ । ବିଜ୍ଞାନର ସର୍ବୋତ୍‌କୃଷ୍ଟ ଧାରଣା ସହିତ ପୁରାତନ ଋଷିବାଣୀର ସାମଞ୍ଜସ୍ୟ, ସନ୍ତୁଳନ ଓ ସମନ୍ୱୟ ପ୍ରତିଷ୍ଠା କିରବା ଏହି ପୁସ୍ତକର ଉଦ୍ଦେଶ୍ୟ । ସବୁ ତଥ୍ୟ ଯେ ସତ୍ୟର ବୈଚିତ୍ର୍ୟପୂର୍ଣ୍ଣ ବିଭାବ ଏହାହିଁ ବହୁଳ ଆଲୋଚନାରେ ଚର୍ଚ୍ଚିତ । ଏପରି ଧ୍ୟାନ ଧାରଣାର ଗ୍ରହଣ-ଯୋଗ୍ୟତା ପାଠକ-ମାନଙ୍କ ଉପରେ ନିର୍ଭର କରେ । ମୋପରି ଜଣେ ଅତି ସାଧାରଣ ଲୋକର ଏପରି ଏକ ଅତି ଦୂରୁହ, ଜଟିଳ ବିଷୟ ବସ୍ତୁର ବିଚାର ଯଦି ପାଠକ ମାନଙ୍କ ମନକୁ ସ୍ପର୍ଶ କରେ, ତେବେ ନିଜକୁ ଧନ୍ୟ ମନେ କରିବି । ଶ୍ରଦ୍ଧା ଓ ଆନ୍ତରିକତା ସହିତ ବିଷୟବସ୍ତୁର ଅବତାରଣା ପାଇଁ ଆପ୍ରାଣ ଚେଷ୍ଟା କରିଛି । ତେବେ ଏହି ଲେଖାର ସାମାନ୍ୟ ପଶ୍ଚାଦ୍‌ପଟ ଅଛି । ୧୯୬୧ସାଲରେ ବିହାରରେ ଅବସ୍ଥାପିତ ଥିବା ସମୟରେ ରୋଟାରି କ୍ଲବ ପକ୍ଷରୁ ଅନୁରୋଧ ଆସିଲା ଭାଷଣ ଦେବା ପାଇଁ । ରୋଟାରି କ୍ଲବର ସଭ୍ୟମାନେ ଆମଦେଶର ଅତି ଗଣ୍ୟମାନ୍ୟ ବ୍ୟକ୍ତି । ସେମାନଙ୍କୁ ଉଦ୍‌ବୁଦ୍ଧ କଲାଭଳି ଶକ୍ତି ମୋର ନଥିଲା । ଈଶ୍ୱରଙ୍କୁ ଜଣାଇଲି । ସୂଚନା ପାଇଲି ଅତି ସଂକ୍ଷେପରେ - ''ମୋ ବିଷୟରେ କହ'' । ବିଷୟବସ୍ତୁ ଲେଖିଦେଲି - "Call of the unknowable" । ଈଶ୍ୱରଙ୍କ ବିଷୟରେ ମୋତେ କିଛି ଜଣା ନଥିଲା । ଏବେ ବି କିଛି ଜାଣେନାହିଁ । ତାଙ୍କ ପ୍ରେରଣାରେ ଯାହା ମନକୁ ଆସିଲା କହିଗଲି । ଶ୍ରୋତାମାନଙ୍କ ମନକୁ ଘେନିଲା । ତାପରେ ଅନେକଥର ଡାକ ଆସିଲା ରୋଟାରି, ଲାୟନ୍ସ, ସୁରକ୍ଷା-ମନ୍ତ୍ରଣାଳୟର, କଲିକତା ଫୋର୍ଟ ଉଇଲିମ କର୍ତ୍ତୃପକ୍ଷଙ୍କ ଠାରୁ ଆଉ କଟକ, ପୁରୀ, କଲିକତା,

ଦିଲ୍ଲୀ ଆଦି ସ୍ଥାନରୁ । ବିଷୟ ବସ୍ତୁ ଟିକିଏ ଏପଟ ସେପଟ ହେଲେ ମଧ୍ୟ, ବକ୍ତବ୍ୟ ଏକ ଏବଂ ଅଦ୍ୱିତୀୟ - ''ଅମୃତର ଆହ୍ୱାନ'' । ଅବସର ଗ୍ରହଣ କରିବାପରେ ରାମକୃଷ୍ଣ ମିଶନ, ଆଦି ଶଙ୍କର ବେଦାନ୍ତ ପ୍ରତିଷ୍ଠାନ, ଶ୍ରୀରମଣ ମହର୍ଷି କେନ୍ଦ୍ର ସହିତ ଯୁକ୍ତ ରହି ମୌଳିକ ବିଷୟବସ୍ତୁ ଉପରେ ବହୁଥର କହିବାକୁ ପଡିଥିଲା । ସେଥିରୁ ଟିକିଏ ଆତ୍ମପ୍ରତ୍ୟୟ ସଂଗ୍ରହ କରି ଗୋଟିଏ ପୁସ୍ତକ ରଚନା କରିବାର ପ୍ରୟାସ ଆରମ୍ଭ କଲି । ପ୍ରଥମ ଅଧ୍ୟାୟ ପରେ କଲମ ଅଟକିଲା । କେଉଁ ତଥ୍ୟର ଅବତାରଣା କରି ତାହାର କିପରି ମୀମାଂସା କରିବି ? ଭାବି ଭାବି ପ୍ରାୟ ଦୁଇବର୍ଷ କଟିଗଲା । ଦିନେ ନିର୍ଦ୍ଦେଶ ଆସିଲା । ''ମହାବିଶ୍ୱ'', ''ମହାକାଳ'', ''ମହାଜୀବନ'', ''ସୂକ୍ଷ୍ମ ସ୍ପନ୍ଦନ'' ଆଦି ଅଧ୍ୟାୟରେ ଶେଷତତ୍ତ୍ୱର ବିଚାର କରିବା ନିମନ୍ତେ । ତାପରେ ମୋର କ୍ଷୁଦ୍ର ମାନସ ବଳୟରେ କେତେକ ଭାବ୍‌ଧାରାର ଉଦୟ ହେଲା । ଅତି ସୀମିତ ବୋଧଶକ୍ତିରେ ଯେତେ ଟିକିଏ ଧରି ରଖିବାର କ୍ଷମତା ଥିଲା ତାହା ସାହାଯ୍ୟରେ ଆଗେଇଲି । ପ୍ରେରଣା ମିଳିଲା ସେହି ପରମ ପୁରୁଷଙ୍କ ଠାରୁ । ଏହି ବିଷମୟ ବିଶ୍ୱରେ ଅମୃତର ଅନ୍ୱେଷଣ, ବିଶ୍ୱର ଅପରିସୀମ ଶବ୍ଦାବଳୀରୁ ସେହି ଅମୃତର ଆହ୍ୱାନକୁ ରୂପ ଦେବା ନିମନ୍ତେ ଏକ ଦୁଃସାହସିକ ପ୍ରଚେଷ୍ଟା ଜଣେ ଅଜ୍ଞାତ କୁଳଶୀଳ, ଅପରିଚିତ, ଅନାମଧେୟ, ଅଜ୍ଞାତ ଲେଖକର । ଧୃଷ୍ଟତା କହିଲେ ମଧ୍ୟ ଅତ୍ୟୁକ୍ତି ହେବ ନାହିଁ । ସତ କହିବାକୁ ଗଲେ ବିଶ୍ୱର ସୀମା ନାହିଁ । ସମୟକୁ କଳନା କରିହେବ ନାହିଁ । ଜୀବନ ରହସ୍ୟପୂର୍ଣ୍ଣ, ବିଚିତ୍ର, ଅଭାବନୀୟ ବର୍ଣ୍ଣ ବିଭାରେ ଉଜ୍ଜ୍ୱଳ, ଅତଳାନ୍ତିକ ଗଭୀରତାରେ ମହୀୟାନ । ଆଉ ସ୍ପନ୍ଦନର କମ୍ପନ ଅଦୃଶ୍ୟ ରାଜ୍ୟର ଇନ୍ଦ୍ରଜାଲରେ ପ୍ରହେଳିକାମୟ । କେତେଜଣ ସିଦ୍ଧପୁରୁଷ, ମୁନି, ଯୋଗୀ ଓ ଦ୍ରଷ୍ଟା ଏହି ରାଜ୍ୟର ସନ୍ଧାନ ପାଇଛନ୍ତି । ଏପରି ବିଷୟବସ୍ତୁର ବିରଳ ଜ୍ୟୋତି ସେମାନଙ୍କର ବାଣୀରେ ପ୍ରତିଫଳିତ । ତେଣୁ ସେମାନଙ୍କ ବାଣୀର ବହୁଳ ଉଦ୍ଧୃତି ଏହି ପୁସ୍ତକରେ ପ୍ରତିଷ୍ଠିତ । ଏହାର ଜ୍ୟୋତି ଏକବିଂଶ ଶତାବ୍ଦିରେ ପ୍ରଜ୍ଜ୍ୱଳିତ ହେବ ।

ଆଉ ଗୋଟିଏ କଥା । ଅଧ୍ୟାୟ ଭିନ୍ନ ଭିନ୍ନ ହେଲେ ମଧ୍ୟ, ଦେଶ, କାଳ ଓ ନିମିତ୍ତ ପରସ୍ପର ସହିତ ଅଙ୍ଗାଙ୍ଗୀଭାବରେ ଜଡିତ; ଅଭିନ୍ନ ଭାବରେ ମିଶ୍ରିତ । ତେଣୁ ତଥ୍ୟ ରାଜିର ବିଚାର କଲାବେଳେ ସେହି ଗୋଟିଏ ତତ୍ତ୍ୱ ବିଭିନ୍ନ ଅଧ୍ୟାୟରେ ଆଲୋଚିତ ହୋଇଅଛି । ଫଳରେ ଦ୍ୱିରୁକ୍ତି ଅପରିହାର୍ଯ୍ୟ । ଏହି ପରିସ୍ଥିତିରେ ମୋର ଅପରାଧ କ୍ଷମଣୀୟ ।

ଶେଷରେ, ଶ୍ରୀ ଦିଲ୍ଲୀପ କୁମାର ସ୍ୱାଇଁଙ୍କ ନିକଟରେ ମୁଁ ଚିରଋଣୀ ହୋଇ ରହିଲି । ସେ ଅତି ଯତ୍ନରେ ପ୍ରୁଫ୍ ସଂଶୋଧନ କରି, ପୁସ୍ତକଟି ଛାପିବାରେ ଯେଉଁ ଶ୍ରମସ୍ୱୀକାର କରିଅଛନ୍ତି, ତାହା ମୋର ଅନ୍ତରକୁ ସ୍ପର୍ଶ କରିଛି । ତାଙ୍କୁ ମୋର ଆନ୍ତରିକ ଧନ୍ୟବାଦ ଅର୍ପଣ କରୁଅଛି । ଶ୍ରୀ ରବିନାରାୟଣ ଦାଶ ଏ ବହିଟି ବିଷୟରେ ବିଶେଷ ଯତ୍ନ ନେଇ ଏହାକୁ ଛପାଇବା ପାଇଁ ଯେଉଁ ଦିଗ୍‌ଦର୍ଶନ ଦେଇଅଛନ୍ତି, ତାହା ମୋତେ ଗଭୀର ଅନୁପ୍ରେରଣା ଦେଇଅଛି । ତାଙ୍କର ଋଣ ମୁଁ କେବେହେଲେ ପରିଶୋଧ କରିପାରିବି ନାହିଁ ।

୧୯୭ ବାପୁଜୀ ନଗର
ଭୁବନେଶ୍ୱର - ୯

**କାର୍ତ୍ତିକ ଚାନ୍ଦ**
୧୪/୭/୯୭

# ଅମୃତର ଆହ୍ୱାନ

## ମୁଖ୍ୟ ପ୍ରଶ୍ନବାଚୀ

ଭାରତକୁ ପରାଧୀନତାର ଶୃଙ୍ଖଳରୁ ମୁକ୍ତ କଲା କିଏ ? କିଏ ସ୍ୱାଧୀନତାର ସ୍ରୋତକୁ ଆମଦେଶରେ ପ୍ରବାହିତ କଲା ? କାହାଦ୍ୱାରା ଶତାବ୍ଦୀର ଦଳିତ, ନିଷ୍ପେଶିତ ଜାତି ନିଜକୁ ସ୍ୱାଧୀନ ଭାବରେ ଫେରି ପାଇଲା ? ଏହିପରି ଅନେକ ପ୍ରଶ୍ନ ଜାଗେ ମନରେ । ଏ ପ୍ରଶ୍ନର ଉତ୍ତର ମଧ୍ୟ ବହୁ । ସେଥିରେ ମତ ପାର୍ଥକ୍ୟ ବିଶାଳ ଆକାରର । ଅନେକଙ୍କ ମତରେ ଗାନ୍ଧିଜୀହିଁ ସ୍ୱାଧୀନତା ସଂଗ୍ରାମର କର୍ଣ୍ଣଧାର ଓ ସ୍ୱାଧୀନତା-ସ୍ରୋତର ବାହକ । କେତେକଙ୍କ ମତରେ ଭାରତୀୟ ଜାତୀୟ ସେନା ବାହିନୀ ର (I N A) ଅଭ୍ୟୁଦୟ ଓ ନୌସେନା-ବିଦ୍ରୋହ, ବ୍ରିଟିଶ-ଶାସନର ଅବସାନ ଘଟାଇଲା । କିନ୍ତୁ ସାର୍ବିକ ପର୍ଯ୍ୟବେକ୍ଷଣ କଲେ ଦେଖାଯିବ ଆଉ କେତୋଟି ପ୍ରଶ୍ନ ଆମ୍ଭମାନଙ୍କୁ ଉପଯୁକ୍ତ ଉତ୍ତର ଦେଇପାରିବ । ସେଗୁଡିକ ହେଲା - ଘାନା ଓ ନାଇଜିରିଆକୁ କିଏ ସ୍ୱାଧୀନତା ଆଣିଦେଲା ? ମାଲଏସିଆ ଓ ଇଣ୍ଡୋନେସିଆରେ କିଏ ସ୍ୱାଧୀନତା ଘଟାଇଲା ? ଅନେକଦିନ ପର୍ଯ୍ୟନ୍ତ ଅନେକ ଗୁଡିଏ ଦେଶ ପରାଧିନତାର ଶୃଙ୍ଖଳରେ ଆବଦ୍ଧ ଥିଲେ । ଏହି ଦେଶଗୁଡ଼ିକ ସମସାମୟିକ ଭାବରେ ମୁକ୍ତ ହୋଇ ନିଜକୁ ସ୍ୱାଧୀନ ଭାବରେ ଫେରି ପାଇଲେ କିପରି ? ଏହି ପ୍ରସଙ୍ଗରେ ମନେପଡେ ଜମିଦାର ମାନଙ୍କର ପ୍ରଚଣ୍ଡ ଦୌରାତ୍ମ୍ୟ ଓ ପ୍ରଜାମାନଙ୍କର ଦୟନୀୟ ଦୁଃଖ ଦୁର୍ଦ୍ଦଶା । ବହୁ ଆନ୍ଦୋଳନ ହେବାପରେ ମଧ୍ୟ ସେମାନଙ୍କର ଶୃଙ୍ଖଳ ଅବ୍ୟାହତ ଥିଲା । ଅତ୍ୟାଚାରର ସ୍ରୋତ ଦ୍ୱିଗୁଣିତ ହୋଇ ବହି ଚାଲିଥିଲା । କିନ୍ତୁ ଏପରି ଗୋଟିଏ ଦିନ ଆସିଲା ଯେଉଁଦିନ ଭାରତରୁ ସବୁ ଜମିଦାର ନିଶ୍ଚିହ୍ନ ହୋଇଗଲେ । ଜମିଦାରି ଉଚ୍ଛେଦ ହୋଇଗଲା ନିୟମ ବଳରେ ସବୁଦିନ ପାଇଁ । ପ୍ରଜାମାନେ ସ୍ୱାଧୀନ ହୋଇ ନୂତନ ଜୀବନର ସ୍ୱାଦ ଅନୁଭବ କଲେ । ସାମ୍ରାଜ୍ୟର ଓ ରାଜାମାନଙ୍କର ରାଜତ୍ୱର ଅବସାନ ମଧ୍ୟ ସେହିପରି ଗୋଟିଏ ଆଶ୍ଚର୍ଯ୍ୟ କାହାଣି ଃ ଟିକିଏ ଅନ୍ତର୍ନିହିତ ଦୃଷ୍ଟି ଦେଲେ ବୁଝାଯିବ ଯେ ଏ ସବୁ ଘଟଣାର ଅନ୍ତରାଳରେ ବହିଚାଲିଛି ଅନ୍ତଃସଲିଳା ଫଲ୍ଗୁପରି ଏକ ଦୁର୍ନିବାର ପ୍ରବାହ ''ସମୟ''ର । ଏସବୁ ଘଟଣା ସମୟର କାରସାଜି । ଏ ସମୟ କ'ଣ ? କେଉଁଠୁ ଆସିଛି ? କୁଆଡ଼େ ଯାଉଛି ? ଏହାର ସ୍ରଷ୍ଟା କିଏ ? ସ୍ୱାଭାବିକ ଭାବରେ ମଣିଷ ମନରେ ଏହିସବୁ ପ୍ରଶ୍ନ ଉଠେ ।

ଜଣେ ମହାମାନବଙ୍କର ଜୀବନ ବିଶ୍ଳେଷଣ କଲେ ସମୟ-ଶକ୍ତିର ଯଥାର୍ଥତା ପ୍ରତିପାଦିତ ହେବ । ମହାତ୍ମାଗାନ୍ଧି ଦିନେ ଉଦ୍‌ବୁଦ୍ଧ ହୋଇ ହୁଙ୍କାର ଦେଲେ ''ମେରା ଏକ୍ କଦମ୍‌ସେ ସାରା ହିନ୍ଦୋସ୍ଥାନ ଉଥାଲ ପଥାଲ ହୋ ଯାୟେଗା'' । ତାହାହିଁ ଭାରତରେ ଘଟିଥିଲା ''କରେଙ୍ଗେ ୟା ମରେଙ୍ଗେ'' ସଂଗ୍ରାମରେ । ତାଙ୍କର ଡାକରେ ସାରା ଭାରତବର୍ଷ ଉଦ୍‌ବେଳିତ ହୋଇ ଉଠିଥିଲା । ପରାଧୀନତାର ଶୃଙ୍ଖଳ ଖଣ୍ଡ ଖଣ୍ଡ ହୋଇଯାଇଥିଲା । ସ୍ୱାଧୀନତା ଲାଭର ମାତ୍ର କେତୋଟି ବର୍ଷ ପୂର୍ବେ ତାଙ୍କ ବିରୁଦ୍ଧରେ ବିରୋଧାଭାସ ପ୍ରକଟ ହେଲା । ତାଙ୍କର ପଟ୍ଟ ଶିଷ୍ୟମାନେ ମଧ ତାଙ୍କ କଥା ଶୁଣିଲେ ନାହିଁ । ତାଙ୍କର ଅଖଣ୍ଡ ଭାରତର ସ୍ୱପ୍ନ ଏକାବେଳେକେ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଗଲା । ଶେଷରେ ଜଣେ ଭାରତୀୟଙ୍କ ଗୁଳିରେ ସେ ପ୍ରାଣବଳି ଦେଲେ । ''ସମୟ'' ହିଁ ତାଙ୍କୁ ଜନମାନସରେ ସୁଉଚ୍ଚ ଶିଖରକୁ ନେଇଯାଇଥିଲା । ପୁଣି ସେହି ସମୟ ହିଁ ତାଙ୍କୁ ଘୋର ନୈରାଶ୍ୟରେ ଜର୍ଜରିତ କରିଦେଲା । ଭଗ୍ନ ହୃଦୟ ନେଇ ଶେଷ ଜୀବନରେ ଦିନକାଟୁଥିଲେ ଜାତିର ଜନକ ମହାତ୍ମାଗାନ୍ଧି । କାରଣ ସମୟ ସବୁ ଅପହରଣ କରିନେଇଥିଲା ତାଙ୍କଠାରୁ ।

ମନୁଷ୍ୟ ଜୀବନ ଏକ କ୍ଷୁଦ୍ର ସମୟ-ସୀମାରେ ଗତିକରେ । ଏହି ଜୀବନ କଣ ? କେଉଁଠାରୁ ଆସେ, ପୁଣି କୁଆଡେ ଚାଲିଯାଏ, ଏହା ରହସ୍ୟପୂର୍ଣ୍ଣ ମନେହୁଏ । ମାତ୍ର ଏହା ଅନୁସନ୍ଧାନ ଯୋଗ୍ୟ । ବିଶେଷ ଅନୁଧାନର ବିଷୟ । ଅନେକଙ୍କର ମତ, ଶରୀର ଛଡା ଆଉ କିଛି ନାହିଁ । ମନୁଷ୍ୟ ଶରୀର କ'ଣ ସବୁକିଛି ? ଶରୀର ବିନାଶପରେ ସବୁ ଶେଷ ? ଅନେକ ଭାବନ୍ତି ଭସ୍ମିଭୂତ ଦେହର ପୁନରାଗମନର କୌଣସି ଅବକାଶ ନାହିଁ । ତେଣୁ ଶରୀର ଛଡା ଅନ୍ୟ କିଛି ବିଷୟରେ ଚିନ୍ତା ନିରର୍ଥକ । ସର୍ବେକ୍ଷଣ କଲେ ଜଣାଯିବ ଏପରି ଧାରଣା ଭ୍ରାନ୍ତ ଓ ଅମୂଳକ । କାରଣ କୌଣସି ଅତୀନ୍ଦ୍ରିୟ ଶକ୍ତିର ଉପସ୍ଥିତି ଶରୀରକୁ କ୍ଷମତା ସମ୍ପନ୍ନ କରି ଚାଳନା କରିଥାଏ । ଜୀବନସାରା ଶରୀର ବହୁ କର୍ମରେ ବ୍ୟାପୃତ ରହେ । ମାତ୍ର ସେହି ଜୀବନୀ ଶକ୍ତିର ପ୍ରୟାଣପରେ ଶରୀର ହୋଇପଡେ ଅଚଳ । ସବୁ ଅଙ୍ଗ ପ୍ରତ୍ୟଙ୍ଗ ଅକ୍ଷୁର୍ଣ୍ଣ ରହିମଧ ଶରୀର ହୋଇଯାଏ ନିଷ୍କ୍ରିୟ । ପ୍ରଶ୍ନ ଉଠେ କ'ଣ ସେ ଜିନିଷ ଯାହାର ଅଭାବରେ ବା ପ୍ରୟାଣରେ କ୍ରିୟାଶୀଳ ଶରୀର କ୍ରିୟାହୀନ ହୋଇପଡେ ? ଏହା କ'ଣ ନିଶ୍ୱାସପ୍ରଶ୍ୱାସରେ ଗମନଶୀଳ ପବନ । ତେବେ ମୃତ ଶରୀରରେ ପବନ ସଂଞ୍ଚାର କଲେ ତାହା ପୁନର୍ଜୀବିତ ହୋଇ ଉଠନ୍ତା । ମାତ୍ର ତାହା ହୁଏ ନାହିଁ । ଏହା ସର୍ବାଦୌ ସତ୍ୟ ଯେ ନିଶ୍ୱାସ ପ୍ରଶ୍ୱାସ ପ୍ରକ୍ରିୟାରେ ଜୀବନ-ରହସ୍ୟର ଚାବିକାଠି ରହିଛି । ନିଶ୍ୱାସ-ପ୍ରଶ୍ୱାସ ସହିତ ଜୀବନୀ ଶକ୍ତିର ଯିବା ଆସିବା ଲାଗିରହିଛି । ଏହି ଶକ୍ତିକୁ ''ପ୍ରାଣ'' ବୋଲି ଅଭିହିତ କରାଯାଏ ସାଧାରଣ ଧାରଣାରେ । ଏହି ପ୍ରାଣ ବସ୍ତୁଟି କଣ ? କେଉଁଠୁ ଆସେ ? ପୁଣି

କେଉଁ ଆଡକୁ ଚାଲିଯାଏ ? ଆଉ ଫେରିଆସେ ନାହିଁ ମୃତ ଶରୀରକୁ । ଏହାହିଁ ସର୍ବଶ୍ରେଷ୍ଠ ଚିନ୍ତାର ବିଷୟ ହେବା ଉଚିତ୍ ମନୁଷ୍ୟର । କାରଣ ଜୀବନହିଁ ମନୁଷ୍ୟର ସର୍ବାଙ୍ଗୀନ ବିକାଶର ସହାୟକ । ଜଡ଼ ଜଗତରେ ବସ୍ତୁକୁ ନେଇ ଯେତେ ପରୀକ୍ଷା ନିରୀକ୍ଷା, ବିଚାର ବିବେଚନା ବା ଗବେଷଣାତ୍ମକ ଅନୁସନ୍ଧାନ ଚଳାଇଛି ବିଜ୍ଞାନ ସମସ୍ତ କ୍ଷମତା ଦେଇ; ଚୈତନ୍ୟ ବିଷୟରେ ବା ଚିନ୍ମୟ ଜଗତର ବସ୍ତୁ ବିଷୟରେ ବିଜ୍ଞାନର ଧ୍ୟାନ ସେପରି ଆଶାନୁରୂପ ନୁହେଁ । ଜଗତବାସୀଙ୍କ ମନ ଜଡ଼ ପଦାର୍ଥରେ ସମ୍ପୂର୍ଣ୍ଣ ଭାବରେ ନିମଗ୍ନ । ମାତ୍ର ଜଡ଼ ପଦାର୍ଥ କ୍ଷଣଭଙ୍ଗୁର ଓ ବିନାଶ ପ୍ରବଣ । ଜଡ଼ ବସ୍ତୁ ପ୍ରତି ଅତ୍ୟଧିକ ପ୍ରବଣତା ମନୁଷ୍ୟକୁ ବିନାଶମୁଖୀ କରେ ଓ ଧ୍ୱଂସ ପଥରେ ଚାଳିତ କରେ । ମନୁଷ୍ୟ ସହିତ ତାହାର ସଭ୍ୟତା ମଧ୍ୟ ସେହି ପଥରଯାତ୍ରୀ ହୁଏ ।

ଯାହା ଚିରନ୍ତନ ସତ୍ୟ ତାହା ଚିରସ୍ଥାୟୀ ଓ ଚିନ୍ମୟ । ସେ ବିଷୟରେ ଧାରଣା କରିବା, ଅନୁଧ୍ୟାନ କରିବା ମନୁଷ୍ୟ ଜାତିର ଶ୍ରେୟ ଓ ଧ୍ୟେୟ ହେବା ଉଚିତ୍ । ଏହି ପ୍ରଚେଷ୍ଟାରୁ ଭବିଷ୍ୟତର ପ୍ରଜନ୍ମ ଉପଯୁକ୍ତ ଶିକ୍ଷା ଲାଭ କରିବା ସଙ୍ଗେ ସଙ୍ଗେ ସଭ୍ୟତାର ନବ ଦିଗନ୍ତ ଦୃଶ୍ୟମାନ ହେବ । ଏହି ସତ୍ୟାନ୍ୱେଷଣ ପନ୍ଥାକୁ ଦର୍ଶନ ଶାସ୍ତ୍ରର ବିଷୟ ବୋଲି ଟାଳିଦେଇ ମନୁଷ୍ୟ ସମାଜ ଜଡ଼ ଜଗତର ଉନ୍ନତିକଳ୍ପେ ଅହରହ ବ୍ୟାପୃତ । ନିଜର ସୁଖ ସ୍ୱାଛନ୍ଦ୍ୟର ବୃଦ୍ଧି ପାଇଁ ମନୁଷ୍ୟ ସତତ ଚେଷ୍ଟା କରୁଅଛି । ଏପରି ପ୍ରୟାସ ଅଭିନନ୍ଦନୀୟ ଓ ଜାଗତିକ ଉନ୍ନତି ପଥରେ ସହାୟକ ଏଥିରେ ସନ୍ଦେହ ନାହିଁ । ମାତ୍ର ଚରମ ଓ ପରମ ସତ୍ୟର ଅନୁସନ୍ଧାନ ମନୁଷ୍ୟକୁ ପ୍ରକୃଷ୍ଟ ପନ୍ଥା ଦେଖାଇ ପାରିବ, ଚିନ୍ମୟର ଆବରଣକୁ ଉନ୍ମୋଚନ କରି ମନୁଷ୍ୟ ଦେଖି ପାରିବ ରହସ୍ୟର ପ୍ରକୃତ ସ୍ୱରୂପ । ଏପରି ସତ୍ୟପ୍ରତିଷ୍ଠାର ପ୍ରୟାସ ପ୍ରମାଣ ଉପରେ ପ୍ରତିଷ୍ଠିତ ହେବା ଉଚିତ । ପ୍ରମାଣ କଣ ? ଅତ୍ରିମୁନି କହିଛନ୍ତି - ‘‘ପ୍ରତ୍ୟକ୍ଷ, ପରୋକ୍ଷ, ଅନୁମାନ, ସିଦ୍ଧାଃ ପ୍ରମାଣାନି ’’। ଯାହା ପ୍ରତ୍ୟକ୍ଷ ଭାବରେ ଦୃଷ୍ଟି ଗୋଚର ହେଉଛି ତାହା ସତ୍ୟତାର ପ୍ରମାଣ । ଯଥା ଦୃଶ୍ୟମାନ ଜଗତ୍ ସତ୍ୟ । ଯାହା ଦୃଶ୍ୟମାନ ନୁହେଁ ମାତ୍ର ପରୋକ୍ଷରେ ଅବସ୍ଥିତ ଯାହାକୁ ଅନ୍ୟମାନେ ଦେଖି ପାରୁଛନ୍ତି ଆମେ ଦେଖିପାରୁନାହୁଁ ତାହା ମଧ୍ୟ ସତ୍ୟ । ଯଥା ତୁନ୍ଦ୍ରାଦେଶ ମେରୁ ଅଞ୍ଚଳରେ ଅବସ୍ଥିତ । ଅନୁମାନ ମଧ୍ୟ ପ୍ରମାଣର ବିଶେଷ ଅଙ୍ଗ । ଯଥା ସୂର୍ଯ୍ୟ ଏପର୍ଯ୍ୟନ୍ତ ସବୁଦିନ ପୂର୍ବ ଦିଗରେ ଉଦୟ ହେଉଛନ୍ତି । ତେଣୁ ଅନୁମାନ କରାଯାଇପାରେ ଯେ ସେ କାଲିମଧ୍ୟ ପୂର୍ବରେ ଉଦୟ ହେବେ । ଆଉ ସିଦ୍ଧମାନେ ଅର୍ଥାତ୍ ପଣ୍ଡିତ, ମୁନି, ଋଷି, ବୈଜ୍ଞାନିକ, ଦ୍ରଷ୍ଟାମାନେ ଯାହା କହିଯାଇଛନ୍ତି ସେଗୁଡିକ ମଧ୍ୟ ପ୍ରମାଣର ବିଶିଷ୍ଟ ଅଙ୍ଗ । ସତ୍ୟ ଭାବରେ ପ୍ରକାଶିତ । ଏପରି କେତେକ ପ୍ରମାଣର ସୋପାନରେ ଚଢ଼ି ମନୁଷ୍ୟ ସନ୍ଦେହାତୀତ ପରମ ବାସ୍ତବତାର ସନ୍ଧାନ ପାଇପାରେ । ମାତ୍ର ସନ୍ଦେହ

ମନୁଷ୍ୟମନରେ ଗଭୀର ଭାବରେ ପ୍ରୋଥିତ । ଜଣେ ଦାର୍ଶନିକ (Caudwel) ତାଙ୍କର ପ୍ରସିଦ୍ଧ ଗ୍ରନ୍ଥରେ (Illusion and Reality) ଲେଖିଛନ୍ତି ଯେ ବୁଦ୍ଧ ଓ ଯିଶୁଖ୍ରୀଷ୍ଟ ଗୋଟିଏ କାଳ୍ପନିକ ଜଗତର ଅବତାରଣା କରିଛନ୍ତି ଏକ ଅଳିକ ସ୍ୱର୍ଗରାଜ୍ୟର । ସେମାନେ ଯେତେବେଳେ ଦେଖିଲେ ଯେ ମର ଜଗତର ଘଟଣାବଳି ଓ ତାର କ୍ରମପରିଣାମର ସହିତ ସନ୍ତୁଳନ ସମ୍ଭବପର ନୁହେଁ, ସେମାନେ ଏକ ଅବାସ୍ତବ, ଅଦୃଶ୍ୟ ଓ ସ୍ୱପ୍ନିଳ ଜଗତର ଚିନ୍ତା କଲେ ଯେଉଁଠାରେ ଏପରି ଅସନ୍ତୁଳନର କାରଣ ଦୃଷ୍ଟ ହୁଏ ପୁନର୍ଜନ୍ମ ଓ କର୍ମଫଳରେ । ଏ ପୃଥିବୀରେ ବହୁ ଦୁଃଖ ଦୁର୍ଦ୍ଦଶାମାନ ଅଛି ଯାହାର ଆପାତ କାରଣ ବୁଝି ହୁଏନାହିଁ । ଯଥା ସରଳ, କର୍ତ୍ତବ୍ୟନିଷ୍ଠ, ପରିଶ୍ରମି ଲୋକଙ୍କର ସମାଜରେ ଆଦର ଓ ପ୍ରୋତ୍ସାହନ ମିଳୁନାହିଁ । ଅଥଚ ଅସାଧୁ ଚୌରାଚାରୀ, ଶଠ ଓ କ୍ରୁର ଲୋକେ ବହୁ ଅର୍ଥ, ସମ୍ମାନ ଭୋଗକରି ଦମ୍ଭ ସହିତ ସାମାଜିକ ଜୀବନ ଯାପନ କରୁଛନ୍ତି । କେହି ଛାତ୍ର ପ୍ରଗାଢ଼ ପରିଶ୍ରମ, ନିଷ୍ଠା ଓ ବୁଦ୍ଧି ସହିତ ପରୀକ୍ଷା ଦେଇ ସଫଳକାମ ହୋଇପାରୁନାହିଁ । ମାତ୍ର ଅନ୍ୟ କେହି ଅସଦୁପାୟ ବା ନିକୃଷ୍ଟ ପନ୍ଥା ଅବଲମ୍ବନ କରି କୃତିତ୍ୱ ଅର୍ଜନ ସହିତ ପ୍ରତିଷ୍ଠା ମଧ୍ୟ ପାଉଛି । ଏଥିରେ ଘୋର ନୈରାଶ୍ୟର ସୃଷ୍ଟି ହେଉଛି । ଏପରି ଅବସ୍ଥାର ସମାଧାନ ନ କରିପାରି ବୁଦ୍ଧ ଓ ଖ୍ରୀଷ୍ଟ ଅନ୍ୟ ଏକ କାଳ୍ପନିକ ରାଜ୍ୟରେ ନିଜର କର୍ତ୍ତବ୍ୟନିଷ୍ଠାର ସୁଫଳ ପାଇ ପାରିବାର ପ୍ରଲୋଭନ ମାନବ ଜାତିକୁ ଦେଖାଇଛନ୍ତି । ମର ଜଗତର ଜଟିଳ ପରିସ୍ଥିତିରେ ଏପରି ସନ୍ଦେହ ହେବା ସ୍ୱାଭାବିକ, ମାତ୍ର ମନୁଷ୍ୟର ଭାବନା କେବଳ ଏହି କ୍ଷୁଦ୍ର ପୃଥିବୀର ଗୋଟିଏ ସୀମାବଦ୍ଧ ସମୟ ପ୍ରବାହରେ ଆବଦ୍ଧ ହେବା ଉଚିତ ନୁହେଁ ।

ବିଶ୍ୱ ସସୀମ ବୃତ୍ତ ନୁହେଁ । ଏହା ଅଚଞ୍ଚଳ ଓ ସ୍ଥିର ନୁହେଁ । ଏହା ଭ୍ରାମ୍ୟମାଣ, ଅନାଦି, ଅନନ୍ତ, ବିଶାଳ, ବିରାଟ ଏକ ସତ୍ତା । ଏହି ସତ୍ତାକୁ ଆମର ପରିକଳ୍ପନାର ବାହାରେ ରଖିଲେ ଆମର ଦୃଷ୍ଟି ଖଣ୍ଡିତ ଓ କ୍ଷୁଦ୍ର ଅଂଶରେ ଜଡିତ ହୋଇ ତାର ଦିଗ୍‌ଦର୍ଶନ ହରାଇ ବସିବ । ପ୍ରକୃତ ସତ୍ୟର ଅନୁଭୂତି ମଣିଷର ଦିଗ୍‌ବଳୟର ବାହାରେ ରହିଯିବ ।

ସମଗ୍ର ଗ୍ରହ, ନକ୍ଷତ୍ର, ତାରକା ନିହାରିକା ପୁଞ୍ଜ ଓ ଜ୍ୟୋତିପୁଞ୍ଜ ବିଷୟରେ ଚିନ୍ତାକଲେ ଦେଖାଯିବ ଯେ ଏହି ବିରାଟ ବିଶ୍ୱ ଏକ ସନ୍ତୁଳିତ ନିୟମର ଅଧୀନ । ପରସ୍ପର ସହିତ ଯୋଗାଯୋଗ ସଂରକ୍ଷଣ କରି ଅନନ୍ତ କାଳ ଧରି ଏହି ଆଲୋକ ମଣ୍ଡଳ ଗତିଶୀଳ ହୋଇ ଭ୍ରମଣ କରିବାରେ ଲାଗିଛି । ଏଥିରୁ ପ୍ରତୀୟମାନ ହେବ ଯେ ଏହି ଭ୍ରାମ୍ୟମାଣ ମହାବିଶ୍ୱ ନିର୍ଦ୍ଦିଷ୍ଟ ନୀତିରେ ପରିଚାଳିତ; ତାନହେଲେ ଏହା କେବେଠାରୁ ଧ୍ୱଂସପ୍ରାପ୍ତ ହୋଇଯାଇ ସାରନ୍ତାଣି । ନୀତି ଯେତେବେଳେ ଅଛି, ଏହାର ନିୟାମକ କେହି ଜଣେ ଅଛନ୍ତି । ଏହି ନିୟାମକଙ୍କୁ ନେଇ ସମଗ୍ର ପୃଥିବୀରେ ନାନାଧରଣର କଳ୍ପନା ଜଳ୍ପନା, ଚିନ୍ତା ଭାବନା,

ତର୍କ ବିତର୍କ, ନାମକରଣ ମଧ୍ୟ । ଏଥିରୁ ବହୁ ବିରୋଧାଭାସ, ମତପାର୍ଥକ୍ୟ, ଗୋଷ୍ଠିକନ୍ଦଳ ଓ ଶେଷରେ ଧର୍ମଯୁଦ୍ଧ । ପଙ୍କିଳହୋଇ ପଡ଼ିଛି ଜନସାଧାରଣଙ୍କର ବିଶ୍ୱାସ ବିବେଚନା । ନିଜ ନିଜର ଶକ୍ତିରେ ଆବଦ୍ଧ ହୋଇ ପଡିଛି ଧ୍ୟାନଧାରଣା । ପରସ୍ପର ବିରୋଧୀ - ମତ ଯୋଗୁ ଆସିଛି ଧର୍ମାନ୍ଧତା ଓ କଳହ ପରାୟଣତା । ବିଷାକ୍ତ ହୋଇପଡିଛି ପୃଥିବୀର ମାନବ-ଜୀବନ । ମନରେ ଶଙ୍କା ଆସୁଛି ତାର ଭବିଷ୍ୟତକୁ ନେଇ । ଏ ସଭ୍ୟତା ବଞ୍ଚି ରହିବ ତ ?

ମାତ୍ର ସ୍ଥିର ଚିତ୍ତରେ ଚିନ୍ତା କଲେ ପ୍ରତିଭାତ ହେବ ଯେ ଚରମ ବାସ୍ତବତା ଏକ ମହାନ୍ ଶକ୍ତି ଯାହା କେବଳ ଏହି ବିଶାଳ ବିଶ୍ୱକୁ ନିର୍ମାଣ କରିନାହିଁ, ତାହାକୁ ଅନନ୍ତ କାଳ ଧରି ବିଧିବଦ୍ଧ ନିୟମରେ ସୁପରିଚାଳନା କରୁଅଛି । ତେଣୁ ଏହି ମହାନ୍ ଶକ୍ତିର (Energy) କଳ୍ପନା କରିବାକୁ ଯାଇ ପ୍ରସିଦ୍ଧ ଜର୍ମାନ ଦାର୍ଶନିକ ହେଗେଲ୍ କହିଛନ୍ତି ଯେ ଏହି ଶକ୍ତି ସର୍ବବ୍ୟାପ୍ତ, ସର୍ବକ୍ଷମତା-ସମ୍ପନ୍ନ, ସମଗ୍ର ସତ୍ତା ସହିତ ଓତପ୍ରୋତଭାବରେ ଜଡିତ, ଅନ୍ତର୍ନିହିତ ଓ ବହିର୍ନିହିତ ମଧ୍ୟ, ସର୍ବ ଶକ୍ତିମାନ୍, ସର୍ବଗୁଣମାନ, ସର୍ବଜ୍ଞ ଓ ସର୍ବଶୁଭମୟ । ଏପରି ଶକ୍ତି ସ୍ଥିର ହୋଇ ରହିପାରେ ନାହିଁ । ଏହା ଚଞ୍ଚଳ ଓ ଗତିଯୁକ୍ତ । ଏହା ପ୍ରଚଣ୍ଡ ଗତିରେ ଧାବମାନ । ଗତି ପଥରେ ଏହା ଅନେକ ବସ୍ତୁକୁ ସୃଷ୍ଟି ଓ ଧ୍ୱଂସ କରିଥାଏ । ସୃଷ୍ଟି ଓ ଧ୍ୱଂସ ଗତିଶୀଳ ବସ୍ତୁର ଚାରିତ୍ରିକ ଉପାଦାନ । ଏହା ବ୍ୟତୀତ ମହାଜାଗତିକ ଗତିର କଳ୍ପନା କରାଯାଇପାରେ ନାହିଁ । ଝଡଝଞ୍ଜା, ଭୂମିକମ୍ପ, ବନ୍ୟା, ବ୍ରୁତ୍ପାତ, ଆଗ୍ନେୟଗିରି କ୍ଷରଣ ଆଉ ଅନେକ ପ୍ରାକୃତିକ ବିପର୍ଯ୍ୟୟ ଏହି ଗତିଶୀଳ ଶକ୍ତିର ପରିପ୍ରକାଶ ମାତ୍ର । ପ୍ରାକୃତିକ ବୈଷମ୍ୟ ମନୁଷ୍ୟ ପକ୍ଷରେ ଅଶୁଭ ଓ କ୍ଷତିକର ହେଲେ ମଧ୍ୟ ଏହା ଏକ ଚରମ ବାସ୍ତବତା, ଏକଥା ଭୁଲିଲେ ଚଳିବ କିପରି ? ଏହା ସହିତ ସୃଷ୍ଟିର ଶୁଭଙ୍କରୀ ଦିଗକୁ ଯୋଡିଦେଲେ ଅପୂର୍ବ ପରିପୂରକ ଦୃଶ୍ୟ ମନୁଷ୍ୟର ନୟନ ପଥରେ ଗୋଚରୀଭୂତ ହେବ, ଏକ ପୂର୍ଣ୍ଣସତ୍ତାର ଦ୍ୟୋତକ ରୂପେ । ପାଶ୍ଚାତ୍ୟ ଦର୍ଶନ ସହିତ ''ଭଗବତ୍ ଗୀତା''ର ବଚନ ମିଳାଇ ଦେଖିଲେ ମନେହେବ ସତ୍ୟ - ''ଏକମେବ ଅଦ୍ୱିତୀୟମ୍'' । ଯାହା ପ୍ରକୃଷ୍ଟ ସତ୍ୟ ତାହା ସର୍ବଦା ଓ ସର୍ବଥା ଏକ, ଏଥିରେ ସନ୍ଦେହର ଅବକାଶ ନାହିଁ । ଗୀତାର ନିମ୍ନଲିଖିତ ଶ୍ଳୋକ ସହିତ ହେଗେଲଙ୍କ ଦର୍ଶନ ଅନେକାଂଶରେ ଅଙ୍ଗାଙ୍ଗୀଭୂତ । ମନେହୁଏ ଏହା ଯେପରି ଶକ୍ତିର (Energy) ବିଶ୍ଳେଷଣ ସ୍ୱରୂପ । ''ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ ନ ଚୈନଂ କ୍ଳେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ ଅଚ୍ଛେଦ୍ୟୋୟାମଦାହ୍ୟୋୟଂ ଅକ୍ଳେଦ୍ୟୋଽଶୋଷ୍ୟ ଏବଚ । ନିତ୍ୟ ସର୍ବଗତଃ ସ୍ଥାଣୁଂ ଅଚଳୋୟଂ ସନାତନଃ ।'' ଆତ୍ମାକୁ ଅସ୍ତ୍ର ଛେଦନ କରିପାରେ ନାହିଁ । ଅଗ୍ନି ଦାହ କରିପାରେ ନାହିଁ, ପାଣି ସିକ୍ତ କରିପାରେ ନାହିଁ, ପବନ ଶୁଷ୍କ କରିପାରେ ନାହିଁ । ଏହା ଅଚ୍ଛେଦ୍ୟ ଓ ଅଦାହ୍ୟ, ଅକ୍ଳେଦ୍ୟ ଓ ଆଶୋଷ୍ୟ, ନିତ୍ୟ ଓ ସର୍ବଗତ, ସର୍ବଭେଦୀ ଓ ସନାତନ । ଏପରି ଏକ ବିରାଟ, ବିଶାଳ, ସର୍ବକ୍ଷମତା ସମ୍ପନ୍ନ ଶକ୍ତି ସ୍ଥିର ହୋଇ ରହିପାରେ

ନାହିଁ । ଏହା ତୀବ୍ର ବେଗରେ ଧାବମାନ ହୁଏ । ଚଳମାନ ଅବସ୍ଥାରେ ଏହା ବହୁ ଜଗତ ସୃଷ୍ଟି କରେ ଏବଂ କିଛି କିଛି ଧ୍ୱଂସ ମଧ୍ୟ କରି ଦିଏ । ସୃଷ୍ଟି ଓ ଧ୍ୱଂସ ଏହି ଶକ୍ତିର ଦୁଇଟି ବିଭାବ ମାତ୍ର । ଏପରି ଦୃଷ୍ଟିକୋଣର ଗୋଟିଏ ସମ୍ପୂର୍ଣ୍ଣ ସନ୍ତୁଳିତ ଧାରଣା କରିବା ସମ୍ଭବପର ଏହି ଅନ୍ତର୍ନିହିତ ଶକ୍ତିର । ଅବଶ୍ୟ ଏହା ଅନୁମାନ ଉପରେ ନିର୍ଭର କରେ ମାତ୍ର । ପ୍ରକୃତ ସ୍ୱରୂପ କ'ଣ ତାହା କେବଳ ସିଦ୍ଧ ମୁନି, ଋଷି, ମହାତ୍ମା ଓ ସାଧୁମାନେ ହୃଦୟଙ୍ଗମ କରିପାରିଛନ୍ତି । କେତେକ କ୍ଷେତ୍ରରେ ସେମାନଙ୍କର ଉପଲବ୍ଧି ଅନ୍ୟମାନଙ୍କୁ ସାକ୍ଷାତ୍‌ରେ ଦର୍ଶାଇଛନ୍ତି ମଧ୍ୟ । ସେଥିରୁ ବିଶ୍ୱାସର ଉତ୍ପତ୍ତି ହୋଇଅଛି । ବିଶ୍ୱାସ ଉପରେ ଧର୍ମ-ଧାରଣାର ବିଶାଳ ଅଟ୍ଟାଳିକା ଠିଆ ହୋଇଛି ଯୁଗ ଯୁଗ ଧରି ।

ଜଣେ ପ୍ରସିଦ୍ଧ ଲେଖକଙ୍କର ଅନୁଭୂତିରୁ ଏହା ପ୍ରମାଣିତ ହୋଇଛି । ଇଂରାଜୀ ସାହିତ୍ୟକ ସମରସେଟ୍ ମମ୍ (Maugham) ପୃଥିବୀର ଜଣେ ଶ୍ରେଷ୍ଠ ଲେଖକ ଥିଲେ । ବ୍ରିଟିଶ୍‌ଯୁଗରେ ସେ ଭାରତ ଆସିଥିଲେ । ଇଂରେଜମାନେ ତାଙ୍କର ଭାରତ ଦର୍ଶନର ବ୍ୟବସ୍ଥା କରିଥିଲେ ରାଜରାଜୁଡାଙ୍କ ମାଧ୍ୟମରେ । ସେ ଯେତେବେଳେ ବମ୍ବେରେ ପହଞ୍ଚିଲେ ତାଙ୍କୁ ଭବ୍ୟ ସ୍ୱାଗତ କଲେ କେତେକ ରାଜା । ତାଙ୍କପାଇଁ ଶିକାର କରିବାର ବ୍ୟବସ୍ଥା କରିଥିଲେ ଅଭୟାରଣ୍ୟରେ । ସବୁ ବ୍ୟବସ୍ଥା ପ୍ରସ୍ତୁତ । କିନ୍ତୁ ମମ୍ ଶିକାର କରିବାକୁ ନାରାଜ ହେଲେ । ସେ କହିଲେ, ମୁଁ ଜନ୍ତୁ ଦେଖିବାକୁ ଭାରତକୁ ଆସିନାହିଁ । ମୁଁ ଜଣେ ପ୍ରକୃତ ମହାମାନବଙ୍କୁ ଦେଖିବାକୁ ଚାହେଁ । ଏପରି ସିଦ୍ଧପୁରୁଷଙ୍କ କଥା ମୁଁ ଶୁଣିଛି, ମାତ୍ର ଦେଖିନାହିଁ । ଯଦି ଆପଣମାନେ ମୋତେ ଦେଖାଇ ପାରନ୍ତି ତାହାହେଲେ ବିଶେଷ ଉପକୃତ ହେବି ।

ରାଜାମାନେ କହିଲେ ମୁନି, ଋଷିମାନେ ହିମାଳୟରେ ଥାଇପାରନ୍ତି । ସେମାନେ କେବେହେଲେ ଦେଖିନାହାନ୍ତି । ତେଣୁ ଦେଖାଇବାକୁ ଅସମର୍ଥ । ମମ୍ ଭୀଷଣ ନିରାଶ ହେଲେ । ବମ୍ବେରେ ଅନ୍ୟମାନଙ୍କୁ ପଚରା ଉଚରା କଲେ । ଜଣେ ଦକ୍ଷିଣ ଭାରତୀୟ କହିଲେ ଯେ ସେପରି ଏକ ମହାପୁରୁଷଙ୍କ କଥା ସେ ଜାଣନ୍ତି । ତାଙ୍କର ନାମ ରମଣ ମହର୍ଷି । ସେ ଥାଆନ୍ତି ଅରୁଣାଚଳମ୍‌ରେ । ମମ୍ ବଡ ଉଦ୍‌ଗ୍ରୀବ ହେଲେ ତାଙ୍କୁ ଦେଖିବା ନିମନ୍ତେ । ତାପରେ ସବୁ ବ୍ୟବସ୍ଥା ହେଲା । ମାନ୍ଦ୍ରାଜବାଟେ ଚାଲିଲେ ରମଣାଶ୍ରମକୁ ସମର୍‌ସେଟ ମମ୍ । ବାଟରେ ତାଙ୍କର ଶରୀର ଖରାପ ହେଲା । ପେଟବ୍ୟଥାରେ ଅସ୍ଥିର ହୋଇ ଛଟପଟ ହେଲେ । ଆଶ୍ରମରେ ପହଞ୍ଚିଲା ବେଳକୁ ତାଙ୍କର ଚେତା ବୁଡିଯାଇଥାଏ । ତାଙ୍କୁ ଲୋକେ ଧରାଧରି କରି ଆଶ୍ରମର ଗୋଟିଏ କୋଠରିରେ ଶୁଆଇଦେଲେ । ମହର୍ଷିଙ୍କୁ ଖବର ଦେଲେ । ମହର୍ଷି ଭଜନରେ ବ୍ୟସ୍ତ ଥିଲେ । ଅଧଘଣ୍ଟାଏ ପରେ ଆସିଲେ, ସେତେବେଳେକୁ ମମ୍‌ଙ୍କର ଚେତା ଫେରି ଆସିଥାଏ । ମାତ୍ର ବାକ୍ୟ ସ୍ଫୁରୁନଥାଏ । ସେ ମହର୍ଷିଙ୍କୁ ଚାହିଁ ରହିଲେ । ମହର୍ଷି ମଧ୍ୟ

ତାଙ୍କ ଆଡକୁ ଚାହିଁ ରହିଲେ । ଦୃଷ୍ଟିବିନିମୟରେ ଦୁହିଁଙ୍କର କଥା ହୋଇଗଲା । ମମ୍ ଫେରି ଆସି ତାଙ୍କ ଅଭିଜ୍ଞତା ବିଷୟରେ ଲେଖିଥିଲେ, ''ମହର୍ଷି ମୋ ଆଡକୁ ଚାହିଁଲେ । ମୋର ଅନ୍ତସ୍ଥଳି ଭେଦକରି ତାଙ୍କର ଦୃଷ୍ଟି ସୁଦୂର ପ୍ରସାରୀ ହୋଇଗଲା । ମୋର ଯାହା ପ୍ରଶ୍ନଥିଲା ତାହା ପଚାରିଲି । ଯାହାକିଛି ଉତ୍ତର ପାଇବାର କଥା ତାହା ପାଇଲି । ବାକ୍ୟ ବା ଭାଷା ତାହାର ଅନ୍ତରାୟ ହେଲା ନାହିଁ ।'' ପ୍ୟାରିସ୍‌ରେ ଗୋଟିଏ ପତ୍ରିକାକୁ ଏ ବିଷୟରେ କହିବାକୁ ଯାଇ ମମ୍ ବକ୍ତବ୍ୟ ରଖିଥିଲେ ଯେ ସେ ପୃଥିବୀର ବହୁ ଦର୍ଶନ ଅଧ୍ୟୟନ କରିଛନ୍ତି । ମାତ୍ର ଭାରତର ଦର୍ଶନରେ ''ବିଶ୍ୱାସ ବାଦ'' ଠାରୁ ବଳି ଆଉ କିଛି ମହନୀୟ ଦର୍ଶନ ତାଙ୍କର ଦୃଷ୍ଟି ଗୋଚର ହୋଇନାହିଁ ।

ସେହିପରି ଆଉ ଗୋଟିଏ ଦୃଷ୍ଟାନ୍ତ କୃଷ୍ଣପ୍ରେମଙ୍କର । ସେ ଜଣେ ଇଂରେଜ ଅଧ୍ୟାପକ ଥିଲେ ବିଲାତରେ । ଉଡାଜାହାଜରେ ଅନ୍ୟତ୍ର ଯିବାବେଳେ, ଉଡାଜାହାଜ - ଦୁର୍ଘଟଣାରେ ପଡିଲା । ସେ ଈଶ୍ୱରଙ୍କୁ ବିଶ୍ୱାସ କରୁ ନ ଥାନ୍ତି । ସେଦିନ ମନେ ମନେ କହିଲେ, ଯଦି କୌଣସି ଭଗବାନ ଥାଆନ୍ତି ତେବେ ସେ ମୋତେ ରକ୍ଷା କରନ୍ତୁ । ଉଡାଜାହାଜ ଭାଙ୍ଗି ପଡିଲା । ସବୁ ଯାତ୍ରୀ ପ୍ରାଣ ହରାଇଲେ ତାଙ୍କ ଛଡା । ସେ ବୁଝିଲେ ଯେ ଈଶ୍ୱର ଅଛନ୍ତି । ତାଙ୍କୁ ଉପଲବ୍ଧ କରିବା ପାଇଁ ପାଗଳ ପରି ହେଲେ । ସମସ୍ତଙ୍କୁ ପଚାରନ୍ତି, କେହି ଉପଯୁକ୍ତ ଉତ୍ତର ଦେଇପାରନ୍ତି ନାହିଁ । ଶେଷରେ ଜଣେ କହିଲେ ଭାରତକୁ ଗଲେ ସେଠାରେ କୌଣସି ସାଧୁ ତୁମକୁ ବାଟ ଦେଖାଇ ପାରନ୍ତି । ସେ ଆହ୍ଲାହାବାଦ ବିଶ୍ୱବିଦ୍ୟାଳୟରେ ଚାକିରି ନେଇ ଆସିଲେ । ଗଙ୍ଗାକୂଳରେ ସବୁବେଳେ ବୁଲୁଥାଆନ୍ତି ଗୁରୁ ଅନ୍ୱେଷଣରେ । ବହୁଦିନପରେ ଦେଖାପାଇଲେ । ଆଲମୋଡାରୁ ଟିକିଏ ଦୂରରେ ଗୋଟିଏ ପାହାଡ ଗୁମ୍ଫାରେ ତପସ୍ୟା କରି ସିଦ୍ଧିଲାଭ କଲେ । ତାଙ୍କ ନାମ ହେଲା ତା'ପରଠାରୁ ''କୃଷ୍ଣପ୍ରେମ'' ବୋଲି ।

ବହୁ ଭକ୍ତ ତାଙ୍କର ଦର୍ଶନାପ୍ରାର୍ଥୀ ହୋଇଯାଉଥିଲେ । ସେମାନଙ୍କ ମଧ୍ୟରୁ ଜଣେ ହେଲେ ଶ୍ରୀ ଜିତେନ୍ଦ୍ରନାଥ ମହାନ୍ତି, ଦର୍ଶନ ଶାସ୍ତ୍ରରେ ମହାନ ପଣ୍ଡିତ, ବର୍ତ୍ତମାନ ଯୁକ୍ତରାଷ୍ଟ୍ରରେ ଗବେଷଣା-ଅଧ୍ୟାପକ । ସେ ମୋତେ ତାଙ୍କର ଅଭିଜ୍ଞତା ବର୍ଣ୍ଣନା କରିଥିଲେ । କୃଷ୍ଣପ୍ରେମ ଥରେ ଆଲିଙ୍ଗନ କଲେ ଭକ୍ତ ମାନଙ୍କର ଈଶ୍ୱରାନୁଭୂତି ହୋଇଯାଉଥିଲା । ସେ ମହାପୁରୁଷ ଦେହରକ୍ଷା କରି ସାରିଲେଣି । ଏହିପରି ଅମୃତର ଆହ୍ୱାନ ଆସିଛି ଅଗଣିତ ଲୋକଙ୍କର ଜୀବନରେ । ମାତ୍ର କେତେଜଣ ଏହି ଆହ୍ୱାନକୁ ଅନୁସରଣ କରି ଚୈତନ୍ୟମୟ ଜଗତର ସନ୍ଧାନ ପାଇଁ ସେଥିରେ ନିଜକୁ ନିମଜ୍ଜିତ କରି ଜୀବନ ସଫଳ କରିପାରିଛନ୍ତି, ଲାଭ କରିଛନ୍ତି ବହୁ ଜୀବନ ଧରି ପ୍ରତୀକ୍ଷିତ ସିଦ୍ଧି । ସେମାନେ ସେହି ଅମୃତମୟ ଜଗତର ବାଣୀ ବହନ କରି ଆଣିଛନ୍ତି ଅନ୍ୟମାନଙ୍କ ପାଇଁ ।

ତେବେ ଅମୃତ ଲାଭର ଉପାୟ କଣ ? ବାଟ କଣ ? ପନ୍ଥା କଣ ? ମହାଭାରତରେ ବର୍ଣ୍ଣିତ ଅଛି ଧର୍ମଦେବଙ୍କ ପ୍ରଶ୍ନ ଓ ଯୁଧିଷ୍ଠିରଙ୍କ ଉତ୍ତର । ''ମହାଜନ ଯେନ ଗତଃ ସଃ ପନ୍ଥା'' ମହାଜନମାନେ ଯେଉଁ ରାସ୍ତାରେ ଯାଇଛନ୍ତି ତାହାହିଁ ପ୍ରକୃଷ୍ଟ ପନ୍ଥା । ବହୁ ମୁନି ଋଷି ଗୃହ ତ୍ୟାଗ କରି ପର୍ବତର କନ୍ଦରରେ, ଗଛ ମୂଳରେ, ହିମାଳୟର ବକ୍ଷରେ ତପସ୍ୟା କରି ସିଦ୍ଧିଲାଭ କରିଛନ୍ତି, ତେବେ ସମସ୍ତେ କ'ଣ ଗୃହ ତ୍ୟାଗ କରି, ସନ୍ନ୍ୟାସୀ ହୋଇ ହିମାଳୟରେ ଆଶ୍ରୟ ଗ୍ରହଣ କରି ତପସ୍ୟାରତ ହେବେ ? ତେବେ ସେମାନଙ୍କୁ ଆହାର ଯୋଗାଇବ କିଏ ? ସେମାନେ ଆଳୁଅ, ପାଣି ଇତ୍ୟାଦି ପାଇବେ କେଉଁଠୁ ? ଏତେ ଲୋକଙ୍କ ପାଇଁ ତ ପର୍ଯ୍ୟାପ୍ତ ପରିମାଣରେ ସମ୍ଭାର ହିମାଳୟ ବ୍ୟବସ୍ଥା କରି ରଖିନାହିଁ. ସମଗ୍ର ମାନବ ସମାଜ ପାଇଁ ? ତାଛଡା ସମସ୍ତେ ଯଦି ମୁନି ଋଷି ହୋଇ ସଂସାର ତ୍ୟାଗ କରନ୍ତି, ତେବେ କାଳକ୍ରମେ ମାନବ ସମାଜ ତ ଲୁପ୍ତ ହୋଇଯିବ । ଏହା କ'ଣ ଈଶ୍ୱରଙ୍କର ଅଭିପ୍ରେତ ହୋଇପାରେ ? ପୃଥିବୀକୁ ତ ମାନବ ସୃଷ୍ଟି କରିନାହିଁ । ବିଶ୍ୱନିୟନ୍ତା ଏହି ଗ୍ରହକୁ ସୃଷ୍ଟି କରି କ'ଣ ତାକୁ ଧ୍ୱଂସ ପଥରେ ଚାଳିତ କରିବାର ବୁଦ୍ଧି ସ୍ଥିରଚିତ୍ତ ସିଦ୍ଧପୁରୁଷ ମାନଙ୍କ ମନରେ ପ୍ରୋଥିତ କରିଛନ୍ତି ? ତା'ଛଡା ପୃଥିବୀରେ ତ ସବୁକିଛି ବିଲୟମାନ ନୁହେଁ । ଜଣେ ମନିଷୀ ଆଉ ଗୋଟିଏ ଦିଗକୁ ଦୃଷ୍ଟି ଆକର୍ଷଣ କରିଛନ୍ତି । ସେ ହେଲେ ନୋବେଲ ପୁରସ୍କାର ବିଜୟୀ ବିଶ୍ୱବିଖ୍ୟାତ ସାହିତ୍ୟିକ ଜର୍ଜ ବର୍ଣ୍ଣାଡଶ । ସେ "Every body's Political What's What" (ତାଙ୍କ ଗ୍ରନ୍ଥ) ରେ ଲେଖିଛନ୍ତି ଯେ ମନୁଷ୍ୟ ଯଦି ତାର ଜୀବନର କ୍ଷୁଦ୍ରତ୍ୱ ବିଷୟରେ ଅନୁଧାବନ କରେ, ସେ ଦେଖିବ ଏହା ଏତେ କ୍ଷଣସ୍ଥାୟୀ ଯେ ତାହା ପ୍ରକୃତରେ ମୂଲ୍ୟହୀନ । ସେ ସଂସାର ତ୍ୟାଗ କରିବାକୁ ପ୍ରବୃତ ହେବ । ମାତ୍ର, ସେ ଯଦି ଜୀବନକୁ ଅନ୍ୟ ଏକ ଦୃଷ୍ଟିକୋଣରୁ ଦେଖେ, ତେବେ ସେ ଦେଖିବ ଯେ ସମାଜର କେତୋଟି ସ୍ତର ଅବିନଶ୍ୱର । ଯଥା - ଜୀବନରେ ଚିରନ୍ତନ ବାଲ୍ୟାବସ୍ଥା, ଯୌବନାବସ୍ଥା ଓ ବାର୍ଦ୍ଧକ୍ୟ ରହିଛି । ଜଣେ ମଣିଷ ମରିଗଲେ ମଧ ବହୁ ନୂତନ ଲୋକେ ଜନ୍ମ ଗ୍ରହଣ କରୁଛନ୍ତି । ମନୁଷ୍ୟ ସମାଜ କେବଳ ଜୀବିତ ଅଛି ତାହା ନୁହେଁ । ଏହା ପତ୍ରାୟିତ, ପୁଷ୍ପାୟିତ ଓ ଦୃମାୟିତ ହୋଇ ମହା ମହିରୁହରେ ପରିଣତ ହୋଇଅଛି । ବିଶାଳ ମାନବ ସମ୍ବଳ ସମଗ୍ର ଧରାରେ ନାନା ଧାରାରେ ପ୍ରବାହିତ ହୋଇ ବହୁ ସମ୍ଭାବନାମୟ ସମୃଦ୍ଧି ସାଧନ କରିଛି । ମାନବ ସମାଜର ଭବିଷ୍ୟତ ଭୌତିକ ଦୃଷ୍ଟିକୋଣରୁ ଦେଖିଲେ ଉଜ୍ଜ୍ୱଳ ହେବାପରି ମନେହୁଏ । ତେବେ ଏହି ବିଶାଳ ମାନବ ସମାଜର ଉନ୍ନତି ସାଧନ କ'ଣ ଉପେକ୍ଷଣୀୟ ? ଏହାର ଭବିଷ୍ୟତ ଚିନ୍ତା କ'ଣ ସର୍ବାଦୌ ତ୍ୟାଜ୍ୟ ? ବ୍ୟକ୍ତି ବିଶେଷର ଉନ୍ନତି ଚିନ୍ତା କେବଳ ଶ୍ରେୟ ଓ ଧେୟ ବସ୍ତୁ : ଏହି ଇହ ଜଗତରେ କ'ଣ ନିଜର ସ୍ୱାର୍ଥ ଏକମାତ୍ର ଲକ୍ଷ୍ୟ ମନୁଷ୍ୟ ଜୀବନରେ ? ଏଥିରୁ ଆଉଏକ ପ୍ରଶ୍ନ ଉଠେ

ଯେ ପ୍ରତ୍ୟେକ ମନୁଷ୍ୟର ବ୍ୟକ୍ତିଗତ ମୁକ୍ତି କ'ଣ ଏକମାତ୍ର କାମ୍ୟ ବସ୍ତୁ ? ସମାଜର ଅନ୍ୟ ବ୍ୟକ୍ତିମାନେ ମରନ୍ତୁ ବା ସରନ୍ତୁ ତାହାପାଇଁ କ'ଣ କୌଣସି ବ୍ୟକ୍ତିର ଧ୍ୟାନ ଦେବାର ଆବଶ୍ୟକତା ନାହିଁ ? ସମଷ୍ଟିର କ୍ଷତି କ'ଣ ବ୍ୟଷ୍ଟିର କ୍ଷତି ବୋଲି ପରିଗଣିତ ନୁହେଁ ? ବ୍ୟଷ୍ଟିର ଅସ୍ତିତ୍ୱ କ'ଣ ସମଷ୍ଟିର ବିଲୟରୁ ରକ୍ଷା ପାଇ ପାରିବ ?

ଏ ବିଷୟରେ ରବୀନ୍ଦ୍ରନାଥଙ୍କର ଅତି ଚିନ୍ତାସ୍ନିଗ୍ଧ କବିତା କେତୋଟି ତାଙ୍କର ଅସ୍ତିବାଚକ ମନୋଭାବରେ ''ଜୀବନ'' କୁ ଉଜ୍ଜ୍ୱଳ କରି ରଖିଛି; ''ମାୟାବାଦ'' ବୋଲି ଏକ କବିତାରେ ଲେଖିଛନ୍ତି ଯେ ଆମର ନିରାନନ୍ଦ ଦେଶରେ ଜୀର୍ଣ୍ଣଜରାକୁ ବେଶଭୂଷାଦେଇ କେତେକ ତଥାକଥିତ ବିଜ୍ଞଲୋକ ଭାବନ୍ତି ଯେ ଈଶ୍ୱରଙ୍କର ପ୍ରବଞ୍ଚନାକୁ ସେମାନେ ସୁଚତୁର ସୂକ୍ଷ୍ମଦୃଷ୍ଟି ଦ୍ୱାରା ଧରି ପାରିଛନ୍ତି । ନିଜ ଘରକୋଣରେ ବସି ସେମାନେ ଭାବନ୍ତି ଯେ ବିଶ୍ୱ ବସୁନ୍ଧରା ଓ ଗ୍ରହତାରାମୟ ସୃଷ୍ଟି ଗୋଟିଏ ମିଥ୍ୟା ଜାଲ । ଯୁଗ ଯୁଗାନ୍ତର ଧରି ଏହି ବିଶ୍ୱରେ ଅଗଣିତ ମଣିଷ ଅଚ଼ଳ ନିର୍ଭୟରେ ବିଧାତାର କୋଳ ବୋଲି ମାନି, ଏହି ପୃଥିବୀରେ ନିଶ୍ୱାସ ନେଇଛନ୍ତି । ମାତ୍ର ସେହି ବିଜ୍ଞବ୍ୟକ୍ତି ମାନେ ଏହା ବିଶ୍ୱାସ ନକରି କହନ୍ତି ଏହା ପିଲାଖେଳ ବୋଲି । ରବୀନ୍ଦ୍ରନାଥ ଲେଖିଛନ୍ତି ଖେଳ ହେଲେ ମଧ, ଏହି ଖେଳରେ ଯୋଗ ଦେବାକୁ ପଡ଼ିବ ଆନନ୍ଦ କଲ୍ଲୋଳ ଭରା ନିଖିଳ ବିଶ୍ୱର ସହିତ । ନିଜେ ଅନ୍ଧକାରର କୋଣରେ ବସିବା ଅର୍ଥହୀନ । ସେହି ଜ୍ଞାନୀବୃଦ୍ଧମାନେ ପ୍ରକୃତରେ ଶିଶୁ; ଯେତେ ଜାଣିଲେ ମଧ ଅନନ୍ତ କାଳର କୋଳରେ ଗଗନ-ପ୍ରାଙ୍ଗଣରେ ଯେତେ ଜାଣିବା କଥା ମନେକଲେ ମଧ, ସେମାନେ କିଛି ଜାଣନ୍ତି ନାହିଁ । ବର୍ଣ୍ଣଗନ୍ଧ-ଗୀତମୟ ଏହି ଜୀବନର ମହା-ଖେଳନାକୁ ମଣିଷକୁ ତାହାର ସ୍ରଷ୍ଟା ଦେଇଛନ୍ତି । ଏହା ଧୂଳି ହେଲେ ମଧ୍ୟ ଏହାର ତୁଳନା ଅଛିକି ? ଯଦି ଏହି ସଂସାରକୁ ବନ୍ଧନ ବୋଲି କୁହାଯାଏ ତେବେ ତାହାହିଁ ହେଉ । ଏପରି ସ୍ନେହ, ପ୍ରେମ, ସୁଖ ତୃଷ୍ଣାର ବନ୍ଧନ ନବ ନବ ରସସ୍ରୋତରେ ମଣିଷକୁ ଟାଣିନେଇ ମନ ପୂର୍ଣ୍ଣ କରି ପାନ କରାଉଅଛି । ମଣିଷର ସହଜ ତୃଷ୍ଣା, ଆଶା, ପ୍ରେମ, ସ୍ନେହ ସବୁବେଳେ ତାକୁ ଆକର୍ଷଣ କରୁଅଛି । ଜନ୍ମଜନ୍ମାନ୍ତର ଧରି ଦୁର୍ଲଭ ଜୀବନ ପ୍ରଦାନ କରୁଅଛି । ନବ ନବ ସ୍ୱାଦରୁ ନବ ନବ ଆଶାର ପ୍ରସାର ହେଉଅଛି । ଅବଶ୍ୟ ସୁଖ ଦୁଃଖ, ହସ କ୍ରନ୍ଦନରେ ପରିପୂର୍ଣ୍ଣ ଜୀବନରେ କ୍ଷତ ଚିହ୍ନ ମଧ ପଡିଯାଉ ଅଛି ପ୍ରତ୍ୟେକ ଗ୍ରନ୍ଥିରେ, ସଂସାରର ସମୁଦ୍ର ମନ୍ଥନ ଯୋଗୁ । କିଏ ବା ତାର ସୌଭାଗ୍ୟ ଯୋଗୁ ସୁଧା ପାନ କରୁଅଛି; ଆଉକିଏ ବିଷ ପାନ କରୁଅଛି । ସେ ରହସ୍ୟ ଜାଣିବାପାଇଁ ରବୀନ୍ଦ୍ରନାଥ ପଣ୍ଡିତର ଦ୍ୱାରସ୍ଥ ହେବାକୁ ଚାହାନ୍ତି ନାହିଁ । କାରଣ ସେ ବିଶ୍ୱ ଗ୍ରନ୍ଥକୁ ଛିଣ୍ଡେଇ ଦେଇ ଶେଷ ରହସ୍ୟକୁ ପାଇବା ପାଇଁ ଚିନ୍ତିତ ନୁହନ୍ତି । ଲକ୍ଷ କୋଟି ପ୍ରାଣୀ ସହିତ ଯୁକ୍ତ ମହାବିଶ୍ୱର ଡୋରିକୁ ସେ କାହିଁକି ଛିଣ୍ଡେଇବେ ? ବରଂ ସେମାନଙ୍କ ସହିତ ଏକଗତି ପ୍ରାପ୍ତି ତାଙ୍କର କାମ୍ୟ । ସେ ସ୍ୱାର୍ଥପର ଭାବରେ କ୍ଷୁଦ୍ର ଆତ୍ମାଟିକୁ ଅବଲମ୍ବନ କରି

ମୁକ୍ତି ଚାହାନ୍ତି ନାହିଁ । କାରଣ ତାଙ୍କ ପାଖଦେଇ ବିଶ୍ୱ ମହାତରୀ ଯାତ୍ରୀମାନଙ୍କୁ ନେଇ ଶୁଭ୍ର କିରଣ ସହିତ ଦଶଦିଗ ଗୀତରେ ଭରିଦେଇ, ବିଚିତ୍ର ସୌନ୍ଦର୍ଯ୍ୟ ପୂର୍ଣ୍ଣ ପ୍ରାଣ ସହକାରେ ଧୀରେ ଧୀରେ ଦୂରକୁ ଚାଲିଯିବ, ଅନନ୍ତ ଜଗତ ଭରା ଦୁଃଖ ଶୋକ ସହିତ । ଯଦି ସମଗ୍ର ବିଶ୍ୱ କାନ୍ଦି କାନ୍ଦି ଚାଲିଯାଏ ତାଙ୍କ ପାଖ ଦେଇ, ସେ କଣ ଏକା ବସି ପାରିବେ ମୁକ୍ତି ସମାଧିରେ ? ସେ ଯେଉଁଠାକୁ ଆସିଛନ୍ତି, ସେହି ଦୀନ ଧରଣୀର ସେ ଜଣେ ଅଧିବାସୀ । ସେହି ବସୁନ୍ଧରା ମାତାଙ୍କୁ ସେ ଅନାଦର କରିପାରିବେ ନାହିଁ । ଏହି ଧରଣୀବାସୀମାନଙ୍କ ସହିତ ସାମିଲ ହୋଇ ଏଠାର ଆନନ୍ଦ ନିରାନନ୍ଦରେ ଭାଗନେଇ ଜୀବନ କଟାଇ ଦେବେ ସିନା, ମାୟାବାଦକୁ ଆଦରିବେ ନାହିଁ । ପୁଣି ରବୀନ୍ଦ୍ରନାଥ କହିଛନ୍ତି ଯେ ବୈରାଗ୍ୟ-ସାଧନରେ ମୁକ୍ତି ତାଙ୍କ ପାଇଁ ନୁହେଁ । ସେ ଏହି ସୁନ୍ଦର ଭୁବନରେ ମରିବାକୁ ଚାହାନ୍ତି ନାହିଁ । ମଣିଷ ମାନଙ୍କ ଗହଣରେ ବଞ୍ଚିବାକୁ ଚାହାନ୍ତି । କବି ଚଣ୍ଡିଦାସ ଲେଖିଛନ୍ତି ଯେ ସମସ୍ତଙ୍କ ଉପରେ ମନୁଷ୍ୟ ସତ୍ୟ । ତାହା ଉପରେ ଆଉ କିଛି ନାହିଁ । ଅବଶ୍ୟ ଏଗୁଡିକ ସେମାନଙ୍କର ବ୍ୟକ୍ତିଗତ ମତ । ଏଗୁଡିକ ସମାଧାନ - ସାପେକ୍ଷ, ମୀମାଂସା ଯୋଗ୍ୟ ମୁଖ୍ୟ ପ୍ରଶ୍ନବାଚୀ । ଏହି ମୀମାଂସାରେ ମନୋନିବେଶ କରିବା ପୂର୍ବରୁ ଆବଶ୍ୟକତା ଅଛି ବିହଙ୍ଗାବଲୋକନର । କାରଣ ଏହି ବିଶ୍ୱ ବହୁଦୂର ପ୍ରସାରିତ, ବହୁ ବିସ୍ମୟକର ଆଲୋକମଣ୍ଡଳରେ ପରିପୂର୍ଣ୍ଣ । ପୁନଶ୍ଚ, ବହୁ ଘନିଭୂତ ଅନ୍ଧକାର ଗହ୍ୱରର ଉପସ୍ଥିତି ରହିଛି ଏହି ଅନନ୍ତ ମହାକାଶରେ । ମହାକାଶ ଏକ ଅଭାବନୀୟ ବସ୍ତୁ, ଏକ ଚାଞ୍ଚଲ୍ୟକର ବ୍ୟାପ୍ତି, ଏକ ଅଚିନ୍ତନୀୟ ପରିକଳ୍ପନା । ସ୍ୱାଭାବିକ ଭାବରେ ପ୍ରଶ୍ନଉଠେ ଏହାର ଉପକରଣ ଓ ଉପାଦାନ କଣ ? ଏହାର ଉତ୍ପତ୍ତି, ସ୍ଥିତି, ବିକାଶ କିପରି ସମ୍ଭବପର ହେଲା ? ଏହାର ଆଦି ବା ଅନ୍ତ କେଉଁଠି ? ମହାବିଶ୍ୱର ବିବିଧ ଚିନ୍ତା ଆବିଷ୍ଟ କରି ରଖେ ମନୁଷ୍ୟ ମନକୁ । ଅନ୍ତହୀନ ବିଚିତ୍ରତାରେ ବିଭ୍ରାନ୍ତ କରି ଦିଏ ମାନବକୁ ।

## ମହାବିଶ୍ୱ

''ବାଗାର୍ଥାଇବ ସଂପୃକ୍ତୌ ବାଗର୍ଥ ପ୍ରତିପତ୍ତୟେ
ଜଗତଃ ପିତରୌ ବନ୍ଦେ ପାର୍ବତୀ ପରମେଶ୍ୱରୌ ।
କ୍ୱ ସୂର୍ଯ୍ୟ ପ୍ରଭବୋ ବଂଶଃ କ୍ୱଚାଲ୍ପୋ ବିଷୟା ମତିଃ ,
ତିତିର୍ଷୁ ଦୁଷ୍କରଂ ମୋହାତ୍ ଉଡୁପେନାସ୍ମି ସାଗରମ୍ ।।''

''ମହାକାବ୍ୟ ରଘୁବଂଶ''ର ପ୍ରାରମ୍ଭରେ କାଳିଦାସ ଶିବପାର୍ବତୀଙ୍କ ବନ୍ଦନାପରେ ଲେଖିଲେ ଯେ ରଘୁବଂଶ ମହାନବଂଶ । ତାଙ୍କପରି ଅଳ୍ପ ବୁଦ୍ଧି ବିଶିଷ୍ଟ ଲୋକ ପକ୍ଷରେ ଏହି

ବଂଶ ବିଷୟରେ ଲେଖିବା ଭେଳା ସାହାଯ୍ୟରେ ମହାସାଗର ମୋହରେ ପାରହେବା ଭଳି ଏକ ପ୍ରୟାସ । ''ମହାବିଶ୍ୱ''ର ସିନ୍ଧୁରେ ମହାସାଗର ଏକ ବିନ୍ଦୁ ମଧ ନୁହେଁ । ତେଣୁ ସେ ବିଷୟରେ କଳନା କରିବା, ସେଥିରେ ଅବଗାହନ କରି ତାହା ମଧରେ ଥିବା ଜଳବିନ୍ଦୁକୁ ଆହରଣ କରିବା ଏକ ଅସୀମ ଦୁଃସାହସିକତା, ଇହ ଜଗତର ମାନବ ପକ୍ଷରେ । କାରଣ ମହାବିଶ୍ୱରେ ପୃଥିବୀ ଏକ ବିନ୍ଦୁମଧ ନୁହେଁ । ଆଉ ମଣିଷ କିବା ଛାର ? ତାର ଅସ୍ତିତ୍ୱ କେତେ ଟିକିଏ ? ତାର ସାଧ କଣ ବିଶ୍ୱର ମହାବ୍ୟାପ୍ତିକୁ ତାର ଚିନ୍ତାର ପରିଧି ବା ବୃତ୍ତରେ ଅନ୍ତର୍ଭୁକ୍ତ କରିବା ପାଇଁ । ଯେତେ କ୍ଷୁଦ୍ର ହେଲେ ମଧ ଏହି କ୍ଷୁଦ୍ର ଜୀବଟିର ଜିଜ୍ଞାସା ଦୁର୍ଦ୍ଦମନୀୟ । ଜ୍ଞାନର ପିପାସା ଅସୀମ; ପ୍ରୟାସ ଅନନ୍ତ । ଯୁଗ ଯୁଗଧରି ପ୍ରକୃତିର ରହସ୍ୟ ଉଦ୍‌ଘାଟନ ତାର ସମସ୍ତ ଶକ୍ତି ପ୍ରୟୋଗକରି ଯେଉଁ ପ୍ରଚେଷ୍ଟା ମନୁଷ୍ୟ ଚଳାଉଛି, ସେଥିରେ କିୟଦଂଶରେ ସାଫଲ୍ୟମଧ ଲାଭ କରିଛି । ଅନ୍ଧକାର ଯୁଗରୁ ବହୁ ଉଦ୍ୟମ କରି ଆଲୋକ ଯୁଗ ଆଡକୁ ଆଗେଇ ଚାଲିଛି ମାନବ ସମାଜ ତାର ଅଦମ୍ୟ ସାହସ, ଇଚ୍ଛାଶକ୍ତି, ତ୍ୟାଗ, ତିତିକ୍ଷା ଓ ମହନୀୟ ଶ୍ରମ ସାଧନାରେ; ଅଜେୟ ଚିତ୍ତବୃତ୍ତି ବଳରେ ଅହରହ ସଂଗ୍ରାମ ଓ ଅକ୍ଳାନ୍ତ ସାଧନା ମଣିଷକୁ ତାର ଅଭିଷ୍ଟ ସିଦ୍ଧିଲାଭ ଆଡ଼କୁ ଆଗେଇ ନେଉଛି । ତାର ମହାନ ଲକ୍ଷ୍ୟରୁ ସେ କେବେହେଲେ ଭ୍ରଷ୍ଟ ନୁହେଁ । ଗୋଟିଏ ଲୋକ ମରିଗଲେ କୋଟିଏ ଲୋକ ତାର ସ୍ଥାନ ପୂରଣ କରୁଛନ୍ତି । ଜଣେ ତାର ଚେଷ୍ଟାରେ ବିଫଳ ହେଲେ ମଧ, ସେ ତାର ପତାକା ଅନ୍ୟ ଜଣକୁ ଧରେଇ ଦେଇ ଇହଧାମ ତ୍ୟାଗ କରୁଛି । ସେହି ପତାକା ହାତରୁ ହାତକୁ ଚାଲିଯାଉଛି ଯୁଗ ଯୁଗ ଧରି ; ମାତ୍ର ରହସ୍ୟ ସନ୍ଧାନରେ ମଣିଷ କେବେହେଲେ ନିବୃତ୍ତ ହେଉନାହିଁ । ଅବିଶ୍ରାନ୍ତ ଭାବରେ ତାର ନିରବଚ୍ଛିନ୍ନ ପ୍ରୟାସ ଜାରି ରଖିଛି ପ୍ରଜନ୍ମ ପ୍ରଜନ୍ମ ଧରି । ତାର କ୍ଳାନ୍ତି ନାହିଁ, ଅବସାଦ ନାହିଁ । ବିନିଦ୍ର ରଜନୀରେ ମହାବିଶ୍ୱକୁ ଅନାଇ ଏହାର ରହସ୍ୟ ଉଦ୍‌ଘାଟନର ଚିରପ୍ରୟାସୀ ବୈଜ୍ଞାନିକ, ସୌରସଂଧାନୀ, ଗାଣିତ୍ୟିକ, ଖଗୋଳ ଶାସ୍ତ୍ରୀ, ଦାର୍ଶନିକ, ପଣ୍ଡିତ ମେଧାବୀ ଚିନ୍ତକ ଓ ଆହୁରି ଆହୁରି ଅନେକ ରହସ୍ୟ ଭେଦୀ ମଣିଷ ଯେଉଁମାନଙ୍କର ଶୟନେ, ସ୍ୱପନେ, ନିଦ୍ରା, ଜାଗରଣେ ଏକମାତ୍ର ପ୍ରଶ୍ନ ଏହି ମହାବିଶ୍ୱ କଣ ? କେଉଁ ଉପାଦନରେ ଗଠିତ ? ଏହାର ଉତ୍‌ପତ୍ତି କେଉଁଠାରୁ ? ଏହା କେଉଁ ଆଡକୁ ଧାବମାନ ଓ ଏହାର ଅନ୍ତ କେଉଁଠି ? ଏ ପ୍ରଶ୍ନ ଆଜିର ନୁହେଁ । ମଣିଷର ଚିନ୍ତା ଉଦ୍ରେକ ହେଲାପରେ ଅନନ୍ତ କାଳଧରି ଏହି ଜିଜ୍ଞାସା ମନୁଷ୍ୟ ମନରେ ଉଦ୍‌ବେଳିତ । ବିଶ୍ୱସୃଷ୍ଟି ବିଷୟରେ ନାନା କଳ୍ପନା, ଜଳ୍ପନା, ଗଳ୍ପ ଆଖ୍ୟାୟିକା ଆଦିମ କାଳରୁ ପ୍ରଚଳିତ । ନାନା ଦେଶର ପୁରାତନ ଗ୍ରନ୍ଥ ଗୁଡିକରେ ମହାବିଶ୍ୱର ସୃଷ୍ଟି ସମ୍ବନ୍ଧରେ ବହୁ ରୂପର ଆଲେଖ୍ୟରେ ବହୁ ବର୍ଣ୍ଣନା ଲିଖିତ ଅଛି । ସେ ଗୁଡିକ କଳ୍ପନା ପ୍ରସୂତ ନା, ଗଭୀର ଚିନ୍ତାଜନିତ ଅର୍ଥପୂର୍ଣ୍ଣ ଅଭିବ୍ୟକ୍ତି ତାହା

ଯୁକ୍ତି-ସାପେକ୍ଷ । ମାତ୍ର ଏହା ନିର୍ଭୁଲ ଭାବରେ ପ୍ରତୀୟମାନ ହୁଏ ଯେ ମନୁଷ୍ୟ ଏକ ସିଦ୍ଧାନ୍ତରେ ଉପନୀତ ହୋଇଥିଲା । ସେ ନିଶ୍ଚିତ ଭାବରେ ବିଶ୍ୱାସ କରିଥିଲା ଯେ ଏହି ବିଶ୍ୱ ଦିନେ ସୃଷ୍ଟି ହୋଇଥିଲା । ଏହା କେବେହେଲେ ଆଦିଅନ୍ତହୀନ ନୁହେଁ । ସେ ପ୍ରାକୃତିକ ଶକ୍ତିଗୁଡିକୁ ଜୀବନର ଅଙ୍ଗବୋଲି ମାନିନେଇଥିଲା - ଯେପରି ଜଳ, ସ୍ଥଳ, ସୂର୍ଯ୍ୟ, ବହ୍ନି, ଆକାଶ, ପବନ, ଆଲୋକ ଇତ୍ୟାଦି । ଏପରିକି ଏମାନଙ୍କୁ ଦେବତା ରୂପରେ ଜ୍ଞାନ କରି ସେମାନଙ୍କ ପ୍ରତି ସ୍ତୁତି, ପ୍ରାର୍ଥନା, ଶ୍ଳୋକ, ଗୀତ ଇତ୍ୟାଦି ମଧ୍ୟ ରଚନା କରି ସେମାନଙ୍କର ବହୁଳ ଗୁଣଗାନରେ ଆପ୍ଲୁତ ରହୁଥିଲା ଯୁଗ ଯୁଗ ଧରି । ହଜାର ହଜାର ବର୍ଷ ପୂର୍ବର ବୈଦିକ ରଚନା, ଗାଥା, ବର୍ଣ୍ଣାଢ଼୍ୟ ଆଖ୍ୟାୟିକା, ଗଳ୍ପ ସମୂହରେ ଏହି ଭାବଧାରାର ପରିପୂର୍ଣ୍ଣ ପ୍ରକାଶ ଲକ୍ଷଣୀୟ । ସେହିପରି ଉପନିଷଦରେ ମଧ୍ୟ ଏହାର ପ୍ରତିମ୍ବିତ ପ୍ରତିଫଳିତ । ଆର୍ଯ୍ୟ ଋଷିମାନଙ୍କର ମହିମାମୟ ଛନ୍ଦ ଗାନରେ ପବିତ୍ର ମନ୍ତ୍ର ଉଚ୍ଚାରଣରେ ଏହା ବିଶେଷ ଭାବରେ ଅଣୁରଣିତ । ବେଦର ସାମଗାନ, ପରିବର୍ତ୍ତୀ କାଳରେ ଅରଣ୍ୟଗେୟ ଗାନ, ଗ୍ରାମଗେୟ ଗାନ ଓ ମାର୍ଗ ସଙ୍ଗୀତରେ ଏହାର ସୁଲଳିତ ଧାରା ସୁସ୍ପଷ୍ଟ ।

ଏ ବିଷୟରେ ମିଶରଦେଶୀୟ ଧାରଣାର ଅବତାରଣା କରିବା ଆବଶ୍ୟକ । କାରଣ ମିଶର ର ସଭ୍ୟତା ଅତ୍ୟନ୍ତ ପ୍ରାଚୀନ ଓ ତାର ପ୍ରଗତି ଅନୁଧାବନ ଯୋଗ୍ୟ । ପୃଥିବୀର ଯେଉଁ କେତୋଟି ସଭ୍ୟତା ସୁପ୍ରାଚୀନ ତା ମଧ୍ୟରେ ଚୀନଦେଶ, ମିଶର, ଭାରତ ଅନ୍ୟତମ । ମିଶର ଦେଶୀୟ ପୁରାତନ ରଚନାରୁ ପ୍ରତୀୟମାନ ହୁଏ ଯେ ବିଶ୍ୱର ଆଦିମ ପଦାର୍ଥ ଥିଲା ଜଳୀୟ । ସେଥିରେ ରୂପ ରସ ନଥାଇ, ତାହା ଥିଲା ଏକ ବିଶୃଙ୍ଖଳ ପଦାର୍ଥ । ଏହି ଆଦି ଅକୃତିମ ପଦାର୍ଥକୁ ମିଶରବାସୀ କହୁଥିଲେ ''ନନ୍'' ବୋଲି । ଏହି ଆଦି ପଦାର୍ଥ ନନ୍‌ରୁ ଆଦିମ ଦେବତା ''ଆତୁମ''ଙ୍କ ଆର୍ବିଭାବ । ''ଆତୁମ'' ଜାତହେଲା ପରେ ସେହି ଜଳୀୟ ପଦାର୍ଥରୁ ଉଦ୍‌ଗତ ହୋଇଥିଲା ଏକ ମହାଶିଳାବିଶିଷ୍ଟ ପର୍ବତ ଶିଖର । ଆତୁମ୍ ତାହା ଉପରେ ବସି ଏହି ସୃଷ୍ଟି ରଚନା କରିଥିଲେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଭାରତର ସୃଷ୍ଟି ରଚନା ସମ୍ଭାରରେ ବ୍ରହ୍ମାଙ୍କ ଭୂମିକା ସହିତ ଆତୁମ୍‌ଙ୍କ ରଚନାର କେତେକ ସାମଞ୍ଜସ୍ୟ ବର୍ତ୍ତମାନ ।

ମେସୋପଟାମିଆ ଅଧିବାସୀମାନଙ୍କ ଧାରଣାରେ ସୃଷ୍ଟି ରହସ୍ୟ ମିଶର ସହିତ ତୁଳନାତ୍ମକ । ସେମାନଙ୍କ ମତରେ ଆଦିମ ପଦାର୍ଥ ଥିଲା ଲୁଣିଆ ପାଣି ଓ ମିଠାପାଣିର ସଂମିଶ୍ରଣ । ତାଙ୍କ ଭାଷାରେ ''ତିଆମତ୍'' ଓ ''ଅପ୍ସୁ'' ଶବ୍ଦ ଦୁଇଟି ବ୍ୟବହୃତ ହୋଇଛି ।

ଏହି ସଂମିଶ୍ରିତ ଜଳରୁ ଦେବଦେବୀ ମାନଙ୍କର ଉତ୍ପତ୍ତି ଓ ଆବିର୍ଭାବ ସମ୍ଭବପର ହୋଇଥିଲା । ବାବିଲୋନୀୟ ସଭ୍ୟତାରେ ଏହି ଦେବତାଙ୍କୁ ''ମାର୍ଦୁକ'' ବୋଲି ଅଭିହିତ କରାଯାଇଅଛି । ପ୍ରକୃତପକ୍ଷେ, କଳ୍ପନାର ପ୍ରସାର ସମଗୋତ୍ରୀୟ ବୋଲି ମନେହୁଏ । ପରସ୍ପର ପରିପୂରକ ନହେଲେ ମଧ୍ୟ, ସମଭାବଗତ ବୋଲି ପ୍ରତୀୟମାନ ହୁଏ । କେହି ଜଣେ ସ୍ରଷ୍ଟା ପ୍ରଥମେ ଆବିର୍ଭୁତହୋଇ ଏହି ମହାନ ଜଗତକୁ ସୃଷ୍ଟି କରିଅଛନ୍ତି, ଏହାହିଁ ଏହି ଦେଶର ଗ୍ରନ୍ଥ ଗୁଡ଼ିକର ପ୍ରତିପାଦ୍ୟ ବିଷୟ । ଏହା ସମସାୟିକ ମନୁଷ୍ୟ ମନର ଏକ ସ୍ୱାଭାବିକ ପ୍ରତିଫଳନ । ସୃଷ୍ଟି ବିଷୟରେ ସେ ଯୁଗର ଏକ ପ୍ରଚଳିତ ଧାରଣାର ପରିପ୍ରକାଶ ।

ଏଥର ଖ୍ରୀଷ୍ଟିୟାନ ମାନଙ୍କର ଧର୍ମଗ୍ରନ୍ଥ ''ବାଇବେଲ୍''ର ଆଲୋଚନା ଅତି ପ୍ରାସଙ୍ଗିକ ହେବ । ବାଇବେଲର ପ୍ରଭାବ ଅବିନଶ୍ୱରଭାବେ ପାଶ୍ଚାତ୍ୟ ସଭ୍ୟତାରେ ପ୍ରତିଫଳିତ; ଏହା ବିଶ୍ୱାସର ଦୃଢ଼ ଭିତ୍ତିଭୂମି ମଧ୍ୟ । ଏହାର ଆହ୍ୱାନ ସୁଦୂର ପ୍ରସାରୀ ହୋଇଥିଲା । ସେକାଳର ଦିଗ୍‌ମଣ୍ଡଳକୁ ଉଦ୍‌ଭାସିତ କରିଥିଲା । ଏଥିରେ ସୃଷ୍ଟିର କାହାଣୀ ପରିସ୍ଫୁଟ ଭାବରେ ଚିତ୍ରିତ ଓ ବର୍ଣ୍ଣିତ । ପ୍ରଥମ ଛ'ଦିନର ବିଶଦ ବର୍ଣ୍ଣନା ଅତି ସୁସ୍ପଷ୍ଟ ଓ ମନୋମୁଗ୍ଧକର । ''ଶବ୍‌ଦ'' ହିଁ ଥିଲା ପ୍ରଥମେ; ଏବଂ ଈଶ୍ୱରଙ୍କ ସହିତ ''ଶବ୍ଦ'' ଥିଲା । ଈଶ୍ୱର କହିଲେ - ''ଆଲୋକ ଜାତ ହୁଅ ।'' ଆଲୋକର ବିଦ୍ୟୁଚ୍ଛଟା ସମଗ୍ର ବିଶ୍ୱକୁ ପ୍ରତିଭାତ କଲା ଅନ୍ଧକାରର ଗର୍ଭରୁ । "First there was Word, Word was with God........ God said " "Let there be light" and there was Light" କିନ୍ତୁ ସେଥିରେ ଉଲ୍ଲିଖିତ ଅଛି ଯେ ସୃଷ୍ଟି ପୂର୍ବରୁ ଆଦିମ ଜଳୀୟ ଅନ୍ଧକାରରେ ବିଶ୍ୱ ବ୍ୟାପୃତ ହୋଇ ଥିଲା । ବିଶୃଙ୍ଖଳା ବିରାଜମାନ କରୁଥିଲା । ଇଂରାଜୀ ଭାଷାରେ ତାହାର ବିବରଣି ନିମ୍ନଲିଖିତ ରୂପେ ଶବ୍ଦାୟମାନ : - And the earth was waste and Void and darkness was upon the face of the deep " ଈଶ୍ୱର ବିଶ୍ୱବ୍ରହ୍ମାଣ୍ଡ ରଚନା କରିଥିଲେ । ସେଥିରେ ଆଦିମ ମାନବ ଓ ମାନବୀ (Adam and Eve) ଙ୍କୁ ସୃଷ୍ଟି କରିଥିଲେ । ଇଡେନ ଉଦ୍ୟାନରେ ସେମାନେ ପ୍ରଥମେ ବସବାସ କରୁଥିଲେ । ବହୁ ଜ୍ଞାନୀ, ଗୁଣିଙ୍କ ମତରେ ଏଗୁଡ଼ିକ ପ୍ରତୀକମାତ୍ର । ତାହାର ଅନ୍ତର୍ନିହିତ ଅର୍ଥ ରହସ୍ୟ ରୂପେ ଏହି ପ୍ରତୀକ ଗୁଡ଼ିକରେ ପୋଥିତ ଅଛି । ସେ ଯାହା ହେଉନା କାହିଁକି, ସୃଷ୍ଟିର ବର୍ଣ୍ଣନା ବାଇବେଲରେ ସୁସ୍ପଷ୍ଟରୂପେ ବର୍ଣ୍ଣିତ ଅଛି ।

''ଋକ୍ ବେଦ''ର ଦଶମମଣ୍ଡଳ (୧୨୧,୧,୨,୩)ରେ ନିମ୍ନ ଲିଖିତ ବର୍ଣ୍ଣନା ଅଛି ।

''ହିରଣ୍ୟଗର୍ଭ ସମବର୍ତ୍ତତାଗ୍ରେ ଭୂତସ୍ୟ ଜାତ ପତିରେକ ଆସୀତ୍ ।
ସଦାଧାର ପୃଥିବୀଂ ଦ୍ୟାମୁତେମାଂ କସ୍ମୈ ଦେବାୟ ହବିଷା ବିଧେମ ॥

ଯ ଆତ୍ମଦା ବଳଦା ଯସ୍ୟ ବିଶ୍ୱ ଉପାସତେ ପ୍ରଶିଷଂଯସ୍ୟ ଦେବାଃ ।
ଯସ୍ୟ ଛାୟାମୃତଂ ଯସ୍ୟ ମୃତ୍ୟୁଂ କସ୍ମୈ ଦେବାୟ ହବୀଷା ବିଧେମ ।।
ଯଃ ପ୍ରାଣତୋ ନିମିଷତୋ ମହିତ୍ୱୈକ ଇଦ୍ରାଜା ଜଗତଃ ବଭୂବ ।
ଯ ଇଶେ ଅସ୍ୟ ଦ୍ୱିପଦ ଶ୍ଚତୁପଦଃ କସ୍ମୈ ଦେବାୟ ହବିଷା ବିଧେମ ।।
ଯେନ ଦୌରୁପ୍ରା ପୃଥିବୀ ଚ ଦୃହ୍‌ଲ୍ହା ଯେନ ସ୍ୱଃ ସ୍ତଭିତଂ ଯେନ ନାକଃ ।
ଯୋ ଅନ୍ତରୀକ୍ଷେ ରଜସୋ ବିମାନଃ କସ୍ମୈ ଦେବାୟ ହବିଷା ବିଧେମ ।।''

ପ୍ରଥମେ, ଆଦିକାଳରେ ଆଲୋକର ମୂଳ ସ୍ୱରୂପ ହିରଣ୍ୟଗର୍ଭ ବର୍ତ୍ତମାନ ଥିଲେ । ସବୁ ପ୍ରାଣୀମାନଙ୍କର ସେ ଥିଲେ ରାଜା । ସେ ପୃଥିବୀ ଓ ସ୍ୱର୍ଗାଦିକୁ ଧାରଣ କରିଥିଲେ । ଆମ୍ଭେମାନେ ସମସ୍ତେ କେବଳ ତାଙ୍କୁହିଁ ପ୍ରାର୍ଥନା କରିଥାଉ । ସେହିଁ କେବଳ ଆଧାତ୍ମିକ ଜ୍ଞାନ ଓ ଶକ୍ତିଦାତା, ତାଙ୍କର ଆଦେଶକୁ ହିଁ କେବଳ ସବୁ ଜ୍ଞାନୀ ଗୁଣୀମାନେ ପାଳନ କରିଥାଆନ୍ତି । ତାଙ୍କର ଆଶ୍ରୟହିଁ ଅମରତ୍ୱ ଓ ତାଙ୍କର ଛାୟାହିଁ ମୃତ୍ୟୁ । ଆମ୍ଭେମାନେ ସମସ୍ତେ ତାଙ୍କୁହିଁ ପ୍ରାର୍ଥନା କରିଥାଉ । ସେ ହିଁ କେବଳ ତାଙ୍କର ମହତ୍ୱ ଦ୍ୱାରା ଦ୍ୱିପଦ, ଚତୁସ୍ପଦ ପ୍ରାଣୀମାନଙ୍କର ଈଶ ସଦୃଶ ପ୍ରତିଭାତହୋଇ ସ୍ଥାବର ଓ ଜଙ୍ଗମ ମାନଙ୍କର ରାଜା ଭାବରେ ପ୍ରତିଷ୍ଠିତ; ତାଙ୍କୁହିଁ କେବଳ ଆମ୍ଭେମାନେ ପ୍ରାର୍ଥନା ଜଣାଇ ଥାଉ । ସେହିଁ କେବଳ ନିଜ ଶକ୍ତିରେ ଅନ୍ତରୀକ୍ଷସ୍ଥିତ ସମସ୍ତ ଗ୍ରହ ନକ୍ଷତ୍ରଙ୍କୁ ଉଦ୍ଧୃତକରି ପୃଥିବୀକୁ ଦୃଢ଼ ଭାବରେ ସ୍ଥାପନ କରି ଅଛନ୍ତି; ତାଙ୍କରି ଦ୍ୱାରା ଅନ୍ତରୀକ୍ଷରେ ଆଲୋକ ମଣ୍ଡଳ ଉଦ୍‌ଭାସିତ ଓ ସେ ସମସ୍ତ ବିଶ୍ୱକୁ ନିଜର ଆଧାତ୍ମିକ ଉପସ୍ଥିତି ଦ୍ୱାରା ଭରି ରଖି ଅଛନ୍ତି । କେବଳ ତାହାଙ୍କୁହିଁ ଆମ୍ଭେମାନେ ପ୍ରାର୍ଥନା ଜଣାଇ ଥାଉ ।

ଋକ୍‌ବେଦ, ବିଶ୍ୱ ବିଧାତା ପରମବ୍ରହ୍ମ ହିରଣ୍ୟଗର୍ଭଙ୍କର ଉପର୍ଯ୍ୟୁକ୍ତ ବର୍ଣ୍ଣନାରେ ତାଙ୍କର ଗୁଣାବଳୀ କୀର୍ତ୍ତନ କରିଅଛନ୍ତି । ହିରଣ୍ୟଗର୍ଭଙ୍କର ଆଦି ସୃଷ୍ଟି ଋକ୍‌ବେଦର ଭାଷାରେ ଉଜ୍ଜ୍ୱଳ ସତ୍ୟର ଭାସ୍ୱର ଚିତ୍ର ରଚନା କରିଅଛି । ଭାରତରେ ସୃଷ୍ଟି ରହସ୍ୟ ବିଶଦ ଭାବରେ ପରିସ୍ଫୁଟ ଆମର ଧର୍ମଗ୍ରନ୍ଥ ଗୁଡିକରେ । ହିରଣ୍ୟଗର୍ଭ ହେଉଛନ୍ତି ପ୍ରଥମ ପୁରୁଷ ଯେ କାରଣ-ସଲିଳରେ ପରିବ୍ୟାପ୍ତହୋଇ ମହା ଯୋଗରେ ନିମଗ୍ନ ଥିଲେ । ବହୁ, ବହୁକାଳ ପରେ ତାଙ୍କ ମନରେ ସୃଷ୍ଟି କରିବାର ଇଚ୍ଛା ଜାତ ହେଲା । ତାଙ୍କ ନାଭିରୁ କମଳ ଜାତ ହୋଇ କୋଟି ସୂର୍ଯ୍ୟର ଜ୍ୟୋତିରେ ଉଦ୍‌ଭାସିତ ହେଲା । ତାପରେ ହିରଣ୍ୟଗର୍ଭ ସୃଷ୍ଟିକଲେ ବ୍ରହ୍ମାଙ୍କୁ । ସେହି ପଦ୍ମ ଉପରେ ବିରାଜମାନ ହୋଇ, ପଦ୍ମଯୋନି ବ୍ରହ୍ମା ସୃଷ୍ଟି ବିଷୟରେ ଗଭୀର ଚିନ୍ତାରେ ମଗ୍ନ ହୋଇ ରହିଲେ । ଏତିକିବେଳେ ହିରଣ୍ୟଗର୍ଭଙ୍କ କର୍ଣ୍ଣମଳରୁ 'ମଧୁ' ଓ 'କୈଠବ' ନାମକ ଦୁଇଟି ରାକ୍ଷସ ଜାତ ହୋଇ ପଦ୍ମଯୋନି ବ୍ରହ୍ମାଙ୍କୁ ଆକ୍ରମଣ କଲେ । ସେମାନଙ୍କ

ଆକ୍ରମଣରେ ବ୍ୟଥିତ ହେଲେ ବ୍ରହ୍ମା । ତାଙ୍କର ସୃଷ୍ଟି-ଚିନ୍ତାରେ ଗଭୀର ବ୍ୟାଘାତ ହେଲା । ଏଥିରେ ବ୍ୟଥିତ ହୋଇ ହିରଣ୍ୟଗର୍ଭ ତାଙ୍କର ଚକ୍ରରେ ଅସୁରଦ୍ୱୟଙ୍କୁ ବିନାଶ କଲେ । ତାହାପରେ ବ୍ରହ୍ମା ମହାସୃଷ୍ଟିରେ ମନୋ ନିବେଶ କଲେ । ତାଙ୍କର ଗଭୀର ଧ୍ୟାନରୁ ଉଦ୍‌ଗତ ହେଲା ଏହି ଅନାଦି, ଅନନ୍ତ, ରହସ୍ୟମୟ ବୈଚିତ୍ର୍ୟ ପୂର୍ଣ୍ଣ, ଅଭାବନୀୟ, ଅପରିକଳ୍ପନୀୟ, ମହାବ୍ୟାପ୍ତିସଂବୃଦ୍ଧ ମହାବିଶ୍ୱ । ଏହା ଘୂର୍ଣ୍ଣାୟମାନ କାଳଚକ୍ରରେ ଚାଳିତ; ପରିବ୍ୟାପ୍ତ ଓ ସଂକୁଚିତ; ସୃଷ୍ଟି, ସ୍ଥିତି ଓ ସଂହାର ର ଅନଧିଗମ୍ୟ ନିୟମରେ ଅବଧାରିତ, ମନୁଷ୍ୟ ବୁଦ୍ଧିର୍ଗ ଅଗମ୍ୟ ଏକ ବିସ୍ମୟକର ପରିକଳ୍ପନା ବିଶ୍ୱ-ନିୟନ୍ତା ହିରଣ୍ୟ ଗର୍ଭଙ୍କର । ମହାପ୍ରଳୟରେ ବିଲୀନ ହୋଇଯାଆନ୍ତି ସବୁ ଈଶ୍ୱରସୃଷ୍ଟ ଜୀବ : - ଯଥା, ମନୁଷ୍ୟ, ପଶୁପକ୍ଷୀ ଓ ସ୍ଥାବର , ଜଙ୍ଗମ, ଦେବଦେବୀ, ମୁନିଋଷି, ଏବଂ ପ୍ରାକୃତିକ ଶକ୍ତି ଯଥା - ଭୂମି, ଆପ, ଜଳ, ବାୟୁ, ଅଗ୍ନି, ଗ୍ରହ, ତାରା, ନକ୍ଷତ୍ର - ଆଲୋକ ମଣ୍ଡଳ, ନିହାରିକା ପୁଞ୍ଜ ଓ ସବୁକିଛି । ଏମାନେ ସମସ୍ତେ କାରଣ - ସଲିଳରେ ନିଜର ଅସ୍ତିତ୍ୱକୁ ହରାଇ ବସନ୍ତି ଏକ ଅମୋଘ କାଳଚକ୍ରର ଆବର୍ତ୍ତନରେ । ଏହି ସଲୀଳ ଏକ ଆଦିମ ମହାସମୁଦ୍ର । ଏକ କଳ୍ପ ପାଇଁ ଏହି ମହାବିଶ୍ୱ ସମ୍ପୂର୍ଣ୍ଣରୂପେ ବିଲୟପ୍ରାପ୍ତ ହୁଏ । ସେହି ଅନ୍ଧକାରମୟ ଗହ୍ୱରରେ । ଏହି କଳ୍ପର ଅନ୍ତରେ ପୁଣି ସୃଷ୍ଟି ହୁଏ ଏହି ବିଶ୍ୱ, ଆଲୋକର ପୁନଃପ୍ରକାଶରେ । ଭଗବାନ ଶ୍ରୀକୃଷ୍ଣ ଶ୍ରୀମଦ୍ ଭଗବତ୍ ଗୀତାରେ ଅର୍ଜ୍ଜୁନଙ୍କୁ ଜଣାଇଛନ୍ତି ଯେ ଏହି ଆଲୁଅ-ଅନ୍ଧକାରର ପ୍ରକାଶ ଓ ବିଲୁପ୍ତି ଜଗତରେ ଶାସ୍ୱତ ନିୟମ "ଶୁକ୍ଳକୃଷ୍ଣ ଗର୍ତିହ୍ୟେତେ ଜଗତଃ ଶାଶ୍ୱତେ ମତେ ।"

ସ୍ୱାଭାବିକ ପ୍ରଶ୍ନ ଉଠେ ମନୁଷ୍ୟ ମନରେ - କାହିଁକି ଏହି ବିଶ୍ୱର ଉତ୍ଥାନ ଓ ପତନ, ଆବିର୍ଭାବ ଓ ତିରୋଭାବ, ପ୍ରକାଶ ଓ ବିଲୟ ? ଏହାର ଉତ୍ତର ମଧ୍ୟ ସୁବିଦିତ । ଅନାଦି ଅନନ୍ତ ହିରଣ୍ୟ ଗର୍ଭ ଥିଲେ "ଏକମ୍ ଏବଂ ଅଦ୍ୱିତୀୟମ୍ " । ତାଙ୍କର ଇଚ୍ଛା ଜାତ ହେଲା"ଏକୋହମ୍ ବହୁସ୍ୟାମ୍ ପ୍ରଜାୟେୟେତି" । " ମୁଁ ବର୍ତ୍ତମାନ ଏକ ଏବଂ ଅଦ୍ୱିତୀୟ "ସତ୍" ଭାବରେ ପ୍ରତିଷ୍ଠିତ ଅଛି । ମାତ୍ର ମୋର ବହୁ ହେବାକୁ ଇଚ୍ଛା ।" ତାହାଙ୍କର ଏହି ଇଚ୍ଛାରୁ ପ୍ରଥମେ ପ୍ରକାଶିତ ହେଲା "ତେଜ" । ସେହି ତେଜର ଇଚ୍ଛା ହେଲା ସେ ମଧ୍ୟ ବହୁ ହେବ । ସେଥିରୁ ଉତ୍‌ପନ୍ନ ହେଲା "ଜଳ" ବା "ଆପଃ" । ଜଳର ଇଚ୍ଛା ହେଲା ସେ ବହୁ ହେବ । ସେଥିରୁ ଉତ୍ପନ୍ନ ହେଲା "ଅନ୍ନ" । ଅନ୍ନରୁ ଉତ୍‌ପନ୍ନ ହେଲେ ଜୀବନ ଧାରଣକାରୀ ପ୍ରାଣୀ ସମୂହ । ଏକ କୋଷଧାରଣକାରୀ ପ୍ରାଣୀ ପ୍ରଥମେ ଜାତ ହେଲା, ସେଥିରୁ କାଳ କ୍ରମେ ବହୁ କୋଷ ଧାରଣକାରୀ ପ୍ରାଣୀ ପ୍ରବିଷ୍ଟ ହେଲେ । ସମଗ୍ର ବିଶ୍ୱକୁ ଭରି ରଖିଲେ ବହୁ ରୂପରେ, ପ୍ରଜାତିରେ, ପ୍ରଜନ୍ମ ପ୍ରଜନ୍ମ ଧରି । ଉପନିଷେଦରେ "ସତ୍"ର ପରିକଳ୍ପନା ଅବିନଶ୍ୱର ମହାବିଶ୍ୱବ୍ୟାପୀ ସର୍ବବସ୍ତୁ ଅନ୍ତର୍ଗତ ଚିନ୍ମୟ ବ୍ରହ୍ମରେ ପର୍ଯ୍ୟବସିତ । ଏହା କେବଳ

ବସ୍ତୁବାଦରୂପେ ନିରୂପିତ ନୁହେଁ । ଭାରତର ଦର୍ଶନର ବିଭିନ୍ନ ବିଭାଗର ଚିନ୍ତା କିନ୍ତୁ ପୃଥକ୍ ପୃଥକ୍ ଭାବରେ ପ୍ରକାଶିତ । ସେଥିରେ ବହୁ ମତବାଦ ନିଜର ସ୍ଥାନ ପ୍ରତିଷ୍ଠା କରିବା ନିମନ୍ତେ ବଦ୍ଧପରିକର ହୋଇ ଅଛନ୍ତି । ସାଂଖ୍ୟ ଦର୍ଶନ ମତରେ ଏହି ବିଶ୍ୱ ଜଡ ପଦାର୍ଥରେ ନିର୍ମିତ । ତେଣୁ ଏହାର କାରଣ ମଧ ଜଡ ହେବାର ସମ୍ଭାବନା ଅତ୍ୟଧିକ । ଏହାର ଆଦି କାରଣର ସ୍ୱରୂପକୁ ପ୍ରକୃତିଭାବରେ ନିରୂପିତ କରାଯାଇଅଛି । ଏହି ଦର୍ଶନର ମୂଳଦୁଆ ହେଲା ''କାର୍ଯ୍ୟ-କାରଣ'' ସମ୍ପର୍କରୁ ଫଳର ଆଗମ ଚିନ୍ତା କରିବା ଯୁକ୍ତି ଯୁକ୍ତ ଭାବେ ବିଧେୟ । ଏହି ଦର୍ଶନ ବସ୍ତୁତଃ କାର୍ଯ୍ୟକାରଣ ବାଦକୁ ''ପରିଣାମବାଦ'' ରୂପେ ଚିହ୍ନିତ କରିଛି । ''କାରଣ'' ମଧରେ ଅବ୍ୟକ୍ତ ଭାବରେ ''ଫଳ'' ର ଉପସ୍ଥିତି ଅନସ୍ୱୀକାର୍ଯ୍ୟ । କାର୍ଯ୍ୟ ହେଉଛି କାରଣର ପରିଣାମ । ଆଦି କାରଣକୁ ''ପ୍ରକୃତି'' ବା ''ପ୍ରଧାନ'' ଭାବେ ଚିହ୍ନିତ କରାଯାଇଅଛି । ମାତ୍ର ଆଦିମ ପଦାର୍ଥ କେବଳ ସ୍ଥୂଳ ମାଧ୍ୟମରେ ପର୍ଯ୍ୟବସିତ ନୁହେଁ । ଏହା ଅତ୍ୟନ୍ତ ସୂକ୍ଷ୍ମ । ଏହା ଇନ୍ଦ୍ରିୟଗ୍ରାହ୍ୟ ନୁହେଁ । ଏହି ସୂକ୍ଷ୍ମ ପଦାର୍ଥ ଅସୀମ, ସର୍ବବ୍ୟାପୀ ଓ ଅରୂପ । ଏଥିରେ ସମନ୍ୱୟ ହୋଇଛି ତିନୋଟି ଗୁଣର । ଯଥା ସତ୍ତ୍ୱ, ରଜ, ତମ । ସତ୍ତ୍ୱଗୁଣ ଯୋଗୁ ଚୈତନ୍ୟର ପ୍ରକାଶ ସମ୍ଭବ ହୋଇଅଛି । ରଜୋଗୁଣ ଯୋଗୁ ଶକ୍ତିର ପ୍ରସାର ସମ୍ଭବ ହୋଇଅଛି । ଆଉ, ତମୋଗୁଣ ଯୋଗୁ ଅଜ୍ଞାନ, ମୋହ, ଜଡତାର ଉଦ୍‌ଭବ ଓ ପ୍ରକାଶ ସମଗ୍ର ବିଶ୍ୱରେ ପ୍ରସାରଲାଭ କରିଛି । ସାଂଖ୍ୟ ଦର୍ଶନରେ ମହାଜାଗତିକ ବିବର୍ତ୍ତନର ସୁଚିନ୍ତିତ ବିବରଣ ମିଳେ । ଅବ୍ୟକ୍ତର ପ୍ରଥମ ବିକାଶ ହେଲା ବୁଦ୍ଧି; ବୁଦ୍ଧିରୁ ଅହଂକାର; ଏହି ଅହଙ୍କାରରୁ ମନ, ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚ ତନ୍ମାତ୍ରର ଆଗମନ ଓ ବିକାଶ । ସୂକ୍ଷ୍ମ ତନ୍ମାତ୍ର ମଧ୍ୟରୁ ଉତ୍‌ପତ୍ତି ହୁଏ କ୍ଷିତି, ଅପ୍, ତେଜ, ମରୁତ୍ ଓ ବ୍ୟୋମ-ରୂପୀ ମହାଭୂତ । କେବଳ ଦେହର ନୁହେଁ ମନୁଷ୍ୟର ମନୋବୁଦ୍ଧି ମଧ ସୃଷ୍ଟି ହୋଇଥିଲା ସେହି ଆଦିମ ସୂକ୍ଷ୍ମବସ୍ତୁ ମଧ୍ୟରୁ । ପରେ ଯେଉଁ ''ପୁରୁଷର'' କଳ୍ପନା କରାଯାଇଥିଲା ସାଂଖ୍ୟ ଦର୍ଶନରେ, ତାହା କେବଳ ଚିନ୍ମୟ ରୂପେ ନୁହେଁ, ତାହାକୁ ଉଦାସୀନ ଓ ଅପ୍ରଧାନରୂପେ ବର୍ଣ୍ଣନା କରାଯାଇଥିଲା । ଏସବୁ ଚିନ୍ତାଧାରା କେବଳ ପ୍ରଣିଧାନ ଯୋଗ୍ୟ ନୁହେଁ, ମୀମାଂସାର ଦାବି ମଧ କରେ । ବିଜ୍ଞାନର ବିଭିନ୍ନ ମତବାଦର ବିଚାର କଲାପରେ, ଦର୍ଶନ ସହିତ ତାହାର ସନ୍ତୁଳନ ବିଧେୟ । ତାନହେଲେ ମୀମାଂସା ଏକଦେଶ ଦର୍ଶୀ ହେବ, ଏଥିରେ ସନ୍ଦେହ ନାହିଁ । ତେଣୁ ଆଧୁନିକ ବିଜ୍ଞାନର ମତାମତକୁ ପ୍ରମୁଖ ସ୍ଥାନ ଦେବା ଏହି ବିଚାରର ଏକ ବିଶେଷ ଓ ସୁଦୃଢ଼ ଭିତ୍ତିଭାବରେ ପରିଗଣିତ ହେବ । କାରଣ ବିଜ୍ଞାନ ଭୌତିକ ପରୀକ୍ଷାପରେ ବସ୍ତୁର ସ୍ୱରୂପ ନିର୍ଣ୍ଣୟ କରିବାରେ ସମର୍ଥ ।

ସାର୍ ଆଇଜାକ୍ ନିଉଟନଙ୍କ ମତରେ ଈଶ୍ୱର ଏହି ଜଗତକୁ ତାଙ୍କର ଇଚ୍ଛାରେ ସୃଷ୍ଟି କରିଛନ୍ତି । ଏହି ଜଗତକୁ ଚାଳିତ କରୁଥିବା ପ୍ରାକୃତିକ ଓ ମହାଜାଗତିକ ନିୟମ ଗୁଡିକ

ମନୁଷ୍ୟ ରଚିତ ବା ପ୍ରଯୋଜିତ ନିୟମ ନୁହେଁ । ଏଗୁଡିକ ଇଶ୍ୱରଙ୍କରହିଁ ନିୟମ । ବୈଜ୍ଞାନିକମାନେ କେବଳ ନିଜର ପ୍ରଗାଢ଼ ଚିନ୍ତା-ଶକ୍ତି ଦ୍ୱାରା ସେଗୁଡିକ ଚିହ୍ନି ପାରିଥିଲେ । ସମସ୍ତ ବିଶ୍ୱବ୍ରହ୍ମାଣ୍ଡ ଗୋଟିଏ ସୁବିଶାଳ ଯନ୍ତ୍ରରୂପେ ବିଧି ନିର୍ଦ୍ଦେଶକୁ ମାନି ଆବହମାନ କାଳରୁ ନିଜ ଗନ୍ତବ୍ୟ ପଥରେ ଧାବମାନ । ସେଥିରେ ବିଶୃଙ୍ଖଳା ଦେଖାଯାଉ ନାହିଁ । ଗ୍ରହ, ନକ୍ଷତ୍ର ତାରା ରାଜି ଯେ ଯାହା କକ୍ଷ ପଥରେ ଘୂର୍ଣ୍ଣାୟମାନ ହୋଇ ଯୁଗ ଯୁଗାନ୍ତ ଧରି ଚାଲିଛନ୍ତି । ସେଥିରେ ବିରାମ ନାହିଁ କି ବିଶ୍ରାମ ନାହିଁ । ତେଣୁ ଅନୁସନ୍ଧାନ ପର୍ବ ଜାରି ରଖିଲେ ମଧ ବିଜ୍ଞାନର ଈଶ୍ୱରଙ୍କ ଅସ୍ତିତ୍ୱ ସହିତ ସହାବସ୍ଥାନ କରିବାର ବାଧା କେଉଁଠି ? ମାତ୍ର ଗବେଷକ ମାନଙ୍କର ଗଭୀର ଚିନ୍ତା ରାଜ୍ୟରେ କେତେକ ଅମୀମାଂସିତ ସମସ୍ୟାର ଉଦ୍‌ଭବ ହେଲା କାଳକ୍ରମେ । ଉଦାହରଣ ସଦୃଶ, ନିଉଟନଙ୍କ ମହାକର୍ଷ ବା ମାଧ୍ୟାକର୍ଷଣ ଶକ୍ତିକୁ ଉତ୍ତମରୂପେ ନିରୀକ୍ଷଣ କଲେ ଦେଖାଯିବ ଯେ ପରସ୍ପରକୁ ଆକର୍ଷଣ କରିବା ଫଳରେ ଜାଗତିକ ବସ୍ତୁ ପରସ୍ପର ନିକଟକୁ ଚାଲି ଆସିବା ନିଶ୍ଚିତ । ଦୂରତ୍ୱ ଯୋଗୁ ପରସ୍ପରକୁ ଆକର୍ଷଣ କରିବାର କ୍ଷମତା କମିଗଲେ ମଧ ବିଶ୍ୱର ମହା-ଆକର୍ଷଣ ଶକ୍ତିର ନିର୍ବିଶେଷ ଫଳ ଅନୁସାରେ ଏହା ସଂକୁଚିତ ହୋଇ ଦିନେ ସବୁ ଜାଗତିକ ଭ୍ରାମ୍ୟମାଣ ବସ୍ତୁ ଏକାଠି ହୋଇ ମିଶିଯିବାର ସମ୍ଭାବନା ସୁଦୃଢ଼-ନ୍ୟାୟନୀତି ଭିତ୍ତିରେ ଅନୁମାନ ଯୋଗ୍ୟ । ଏହା ଅନସ୍ୱୀକାର୍ଯ୍ୟ ଯେ ଏହି ମହାବିଶ୍ୱ ଚଳମାନ ହୋଇ ଚିରସ୍ଥାୟୀ ଅବସ୍ଥାରେ ପ୍ରତିଷ୍ଠିତ ହୋଇ ରହି ନ ପାରେ । ତାହା ଯଦି ସମ୍ଭବପର ହୁଏ, ତେବେ ମାଧ୍ୟାକର୍ଷଣ ଶକ୍ତିର ଉପଯୁକ୍ତ କ୍ଷମତା ପ୍ରତି ବିଜ୍ଞାନର ସନ୍ଦେହ ହେବା ସ୍ୱାଭାବିକ । ଅନ୍ୟ ଏକ ସମ୍ଭାବନା ମଧ ଗବେଷକର ମନରେ ଉଦୟ ହୁଏ । ଏହି "ମହାସଂକୋଚନ"କୁ ଏଡାଇ ଦେବା ପାଇଁ ଯଦି ଗ୍ରହ ନକ୍ଷତ୍ରମାନେ ଓ ତତ୍ ସହିତ ନିହାରିକାପୁଞ୍ଜମାନେ ପରସ୍ପରଠାରୁ ତୀବ୍ରଗତିରେ ଦୂରକୁ ଚାଲିଯିବା ପାଇଁ ସଚେଷ୍ଟ ହୁଅନ୍ତି । ତେବେ ଏହି ସଂକୋଚନର ସମ୍ଭାବନା ବିରଳ ହୋଇପାରେ । ୧୯୨୯ ସାଲରେ ମହାନ ସୌରବିଜ୍ଞାନୀ ଏଡ୍‌ଉଇନ୍ ହବଲ ପ୍ରଥମେ ଲକ୍ଷ୍ୟ କଲେଯେ କେତେକ ନିହାରିକା ଆମ ନିହାରିକାଠାରୁ ପ୍ରଚଣ୍ଡ ବେଗରେ ଦୂରକୁ ଧାବମାନ ହେଉଅଛନ୍ତି । ସାଧାରଣତଃ ଯେଉଁ ଗତିରେ ଆମ ନିହାରିକା ବା ଏହାର ପ୍ରତିବେଶୀ ନିହାରିକା "ଆଣ୍ଡ୍ରୋମିଡା" ଯେଉଁ ଗତିରେ ଚାଲିଛି, ତାହା ଅପେକ୍ଷା ଅନ୍ୟ ନିହାରିକାମାନେ ଅତ୍ୟନ୍ତ ଦ୍ରୁତଗତିରେ ସୁଦୂରକୁ ଚାଲିଯାଉଛନ୍ତି । ସେମାନେ ଆଲୋକର ଗତି ବେଗରେ ବହୁଦୂରକୁ ଚାଲିଯାଉଛନ୍ତି ପରସ୍ପରଠାରୁ । ସେମାନେ ଗତିଶୀଳ ହୋଇ ଦୂରତ୍ୱକୁ କ୍ରମାଗତ ଭାବରେ ବର୍ଦ୍ଧନକଲେ, ଏକ ବିସ୍ଫୋରଣମୁଖୀ ପରସ୍ଥିତି ସୃଷ୍ଟି ହେବାର ସମ୍ଭାବନା ଅତ୍ୟଧିକ । ଯଦି ବିଶ୍ୱସୃଷ୍ଟିର କୋଟି କୋଟି ବର୍ଷପରେ ଆମ୍ଭେମାନେ ଏହି ପରିସ୍ଥିତିରେ ଉପନୀତ ହୋଇଥାଉ,

ତାହାହେଲେ ମୂଳସ୍ଥିତି ଆଡକୁ ଦୃଷ୍ଟିଦେବା ଅତ୍ୟନ୍ତ ପ୍ରୟୋଜନ । ସୁଦୂର ଅତୀତରେ ଦିନେ ନିଶ୍ଚୟ ଏହି ନିହାରିକାପୁଞ୍ଜ ଓ ତାରାପୁଞ୍ଜ ଗୁଡିକ ଘନିଭୂତ ଅବସ୍ଥାରେ ସ୍ତୁପାକାରରେ କେନ୍ଦ୍ରିଭୂତ ହୋଇ ଏକ ସ୍ଥିରନିଶ୍ଚିତ ବିନ୍ଦୁରେ ପର୍ଯ୍ୟବସିତ ହୋଇଥିଲେ । ସାଧାରଣ ଭାବରେ ଚିନ୍ତା କଲେ ମନେ ହୁଏ ଏହାହିଁ ଥିଲା ଆଦି ବ୍ରହ୍ମାଣ୍ଡର ଅସଲ ସ୍ୱରୂପ । ଅନ୍ୟଭାଷାରେ ବିଜ୍ଞାନୀମାନେ କହିଛନ୍ତି ଯେ ଏହା ଏକ ଅତ୍ୟନ୍ତ ଘନ ଆଦିମ ପଦାର୍ଥର ସଂମିଶ୍ରଣ ଥିଲା । ଏହାକୁ ସେମାନେ ବିଶୃଙ୍ଖଳ ପଦାର୍ଥ (Soup) ବୋଲି ଅଭିହିତ କରି ଅଛନ୍ତି । ଏହି ବର୍ଣ୍ଣନାରୁ ଏହା ସହଜରେ ଅନୁମେୟଯେ ଆମର ପୁରାଣ କାହାଣୀମାନଙ୍କରେ ବର୍ଣ୍ଣିତ ଆଦି ମହାସମୁଦ୍ରର ଏହା ଏକ ରୂପାନ୍ତର ମାତ୍ର; ବୈଜ୍ଞାନିକ ଭାଷାରେ ଆଧୁନିକ ଭାବରେ ସଜ୍ଜିତ ଏବର ବ୍ୟବହୃତ ''ସୁପ୍'' ସହିତ ତୁଳନୀୟ ବୋଲି ଆଖ୍ୟାତ । ବସ୍ତୁତଃ, ଭାବଧାରାର ସାମଞ୍ଜସ୍ୟ ବିଶେଷଭାବରେ ଲକ୍ଷଣୀୟ ହେଲେମଧ, ବିଜ୍ଞାନ ବସ୍ତୁନିଷ୍ଠ, ପ୍ରମାଣ ଯୋଗ୍ୟ ଯୁକ୍ତି ଉପରେ ନିର୍ଭରଶୀଳ, ଗ୍ରହଣଯୋଗ୍ୟ ସତ୍ୟରେ ଉଦ୍‌ଭାସିତ, ଗବେଷଣାଗାରରେ ପରୀକ୍ଷିତ ନିତ୍ୟ ସିଦ୍ଧାନ୍ତ ଉପରେ ସୁଦୃଢ଼ ଭାବରେ ପ୍ରତିଷ୍ଠିତ । ଏହା କପୋଳକଳ୍ପିତ ଚିନ୍ତାଧାରା ନୁହେଁ । ଏହା ମାନସିକ ଧାନ ଧାରଣା ନୁହେଁ । ଏହା ବାସ୍ତବବାଦୀ ନିଷ୍କର୍ଷ ଯାହାର ପ୍ରମାଣ ଆମ ଆଖି ଆଗରେ ପ୍ରତିଦିନ ପରିଦୃଷ୍ଟ । ଏହିସବୁ କାରଣରୁ ବିଜ୍ଞାନର ଦୃଷ୍ଟି-ସମ୍ଭାର ସ୍ୱାଗତ ଯୋଗ୍ୟ ଆଜିର ଜଗତରେ । କାରଣ ବିଜ୍ଞାନର ଆବିଷ୍କାରରେ ଓ ଉଦ୍‌ଭାବନରେ ସମୃଦ୍ଧ ଏ ଯୁଗର ମାନବ ସଂବଳ ଓ ଏହାର ସୁଖୀ ଜୀବନ ।

ଏଥର ବିଜ୍ଞାନର ଆବିଷ୍କାର ପ୍ରତି ଦୃଷ୍ଟିଦେବା ବିଧେୟ । ବର୍ତ୍ତମାନର ବିଜ୍ଞାନ ଏହି ସିଦ୍ଧାନ୍ତରେ ଉପନୀତ ହୋଇଛି ଯେ ଏହି ଆଦି ବ୍ରହ୍ମାଣ୍ଡ ସୃଷ୍ଟି ମୁହୂର୍ତ୍ତରେ ୧/୧୦୦ ସେକେଣ୍ଡପରେ ବ୍ରହ୍ମାଣ୍ଡର ତାପମାତ୍ରା ଥିଲା ଦଶହଜାର କୋଟି ସେଣ୍ଟିଗ୍ରେଡ୍। ଏହି ମୁହୂର୍ତ୍ତରେ ଯେପରି ଭୀଷଣାବସ୍ଥାରେ ତାପମାତ୍ରା ଉପନୀତ ହୋଇଥିଲା ତାହା ସବୁଠାରୁ ବେଶୀ ଉତ୍ତପ୍ତ ତାରାମାନଙ୍କ ମଧରେ ମଧ ଦୃଶ୍ୟମାନ ନୁହେଁ । ଏପରି-ତାପରେ ସବୁ ଅଣୁ-ପରମାଣୁ ଅସ୍ତିତ୍ୱହୀନ ହୋଇ ବିଲୀୟମାନ ହୋଇଯିବାର ସମ୍ଭାବନା ବେଶୀଥିଲା । ମାତ୍ର ଏହା ଏକ ପରୀକ୍ଷିତ, ନିର୍ଦ୍ଧାରିତ, ବୈଜ୍ଞାନିକ ସତ୍ୟ । ଏହି ତଥ୍ୟ ମହାବିକ୍ଷୋଭ ବା "Big Bang" ଧାରଣା ଉପରେ ପ୍ରତିଷ୍ଠିତ । ଏହି ''ମହାବିକ୍ଷୋଭ'' ଏକ ମାନସିକ ଚିନ୍ତାର ସ୍ଥୂଳ ପ୍ରୟୋଗ ନୁହେଁ । ଏହା ଏକ ''ମହାଗୁଞ୍ଜନ''ର ଆବିଷ୍କାରରୁ ଅନୁସୃତ ସତ୍ୟ । ଦୁଇ ମହାବିଜ୍ଞାନୀ, ଏ. ପେନ୍‌ଜିଆସ ଓ ଆର୍. ଉଇଲସନ୍ ଏହି ବେତାର ଗୁଞ୍ଜନର ପ୍ରାମାଣିକ ସତ୍ୟ ଆବିଷ୍କାର କରିଥିଲେ । ବେଲ୍ ଟେଲିଫୋନ ଲାବରେଟୋରିରେ ଏକ ଅତି ସୂକ୍ଷ୍ମ ''ଆଣ୍ଟିନା''ରେ ପରୀକ୍ଷା ଚଳାଉଥିବା ସମୟରେ ସେମାନେ ଏକ ନିର୍ଭୁଲ ସଂକେତ ପାଇଲେ ଗୋଟିଏ

କ୍ଷୀଣ ବେତାର ଗୁଞ୍ଜନର । ସେମାନେ ଦେଖିଲେ ସବୁଆଡ଼ୁ ଏହି ଗୁଂଜନ ସମାନ ଭାବରେ ତାଙ୍କର ପରୀକ୍ଷିତ ଯନ୍ତ୍ର ଉପରେ ନିକ୍ଷିପ୍ତ ହେଉଅଛି ।

ସାଧାରଣ ମାନବ ବର୍ଷ ବର୍ଷ ଧରି ଦେଖୁଛି ଯେ ସୂର୍ଯ୍ୟ ଠିକ୍ ସକାଳେ ଉଦୟ ହୋଇ ସନ୍ଧ୍ୟାରେ ଅସ୍ତ ଯାଉଛନ୍ତି । ଗ୍ରୀଷ୍ମ, ବର୍ଷା, ହେମନ୍ତ, ଶୀତ ଓ ବସନ୍ତ ଋତୁରାଜି ନିଜ ନିଜର ନିର୍ଦ୍ଧାରିତ ସମୟ ଅନୁସାରେ ପ୍ରବର୍ତ୍ତିତ ହେଉ ଅଛନ୍ତି ନିର୍ଦ୍ଧାରିତ ନିୟମରେ । ସେହିପରି ଆକାଶରେ ତାରା ଗୁଡିକ ମଧ୍ୟ ଯେ ଯାହା ସ୍ଥାନରେ ସ୍ଥାନିତ ହୋଇ ନୈଶ ଆକାଶର ଶୋଭା ବର୍ଦ୍ଧନ କରୁ ଅଛନ୍ତି । ପ୍ରକୃତି ତାହାର ପ୍ରକୃଷ୍ଟ ନିୟମରେ ବୃକ୍ଷ, ଲତା, ଶସ୍ୟର ସମ୍ଭାର ପୃଥିବୀକୁ ଅଜାଡି ଦେଉଛି । ମାନବ ଜାତି ଓ ଅନ୍ୟ ଜୀବମାନେ ତାହାର ନିୟମରେ ପ୍ରତିପାଳିତ ହୋଇ ନିଜର ସମୃଦ୍ଧି ସାଧନ କରି ବଞ୍ଚି ରହିଛନ୍ତି । କେତେକ ଜୀବ ମୃତ୍ୟୁ ମୁଖରେ ପଡିଲେ ମଧ୍ୟ ଅନ୍ୟ ଅନେକେ ସେମାନଙ୍କର ସ୍ଥାନ ପୂରଣ କରୁଅଛନ୍ତି । ଏହି ସସାଗରା ଧରା ବିଧି ନିୟମରେ ଅନନ୍ତକାଳ ଧରି ଚାଲିଛି । ତେଣୁ ମନୁଷ୍ୟ ମନରେ ଏ ଜଗତ ବିଷୟରେ ଏକ ସୁଦୃଢ଼ ଧାରଣା ଜନ୍ମିଛି ଯେ ଏହି ବିଶ୍ୱର ହ୍ରାସବୃଦ୍ଧି ନାହିଁ । ଏହା ଆବହମାନକାଳରୁ ଏକଭାବରେ ଚାଲିଛି ଏବଂ ଚାଲିବ । ଏହି ଧାରଣା ମନୁଷ୍ୟ ମନରେ ଗଭୀର ଭାବରେ ପ୍ରୋଥିତ । ତେଣୁ ହବଲ୍‌ଙ୍କ ଆବିଷ୍କାର ଏକ ଯୁଗାନ୍ତକାରୀ ଘଟଣା । ଏହି ଆବିଷ୍କାର ଯୁଗଯୁଗ ଧରି ସୁଦୃଢ଼ ଭାବରେ ପ୍ରୋଥିତ ହ୍ରାସବୃଦ୍ଧିହୀନ ବିଶ୍ୱର ସ୍ୱରୂପକୁ ସମ୍ପୂର୍ଣ୍ଣ ଭାବରେ ବଦଳାଇ ଦେଇଛି । ମାତ୍ର ଏହି ଧାରଣା ନିଉଟନଙ୍କ ମାଧ୍ୟାକର୍ଷଣ ଶକ୍ତିର ଆବିଷ୍କାରରୁ ମଧ୍ୟ ଅନୁସୃତ ହୋଇପାରି ଥାଆନ୍ତା । ଏହି ପରସ୍ପରପ୍ରତି ଆକର୍ଷଣ ଶକ୍ତି ମହା ଜାଗତିକ ଗ୍ରହ ନକ୍ଷତ୍ରମାନଙ୍କୁ ସଂକୋଚନ ଆଡକୁ ନେଇଯିବା ଅତ୍ୟନ୍ତ ସ୍ୱାଭାବିକ । ମହାକର୍ଷ ଫଳରେ ବିଶ୍ୱ ପରିଶେଷରେ ସଂକୁଚିତ ହୋଇ ପଡିବାର ସମ୍ଭାବନା ପ୍ରବଳ ଭାବରେ ପରିସ୍ଫୁଟ ହୋଇଥିଲା । ମହାସଂକୋଚନ ପଦ୍ଧତିକୁ ରୋକିବା ନିମନ୍ତେ ଆବଶ୍ୟକ ହେଲା ''ମହାସଂପ୍ରସାରଣ''। ନିଉଟନେଙ୍କ ମହାକର୍ଷଣ ଶକ୍ତି ଆବିଷ୍କାର ପରେ ଯୁକ୍ତି ଯୁକ୍ତ ଭାବରେ ଚିନ୍ତାକଲେ ଉପର୍ଯ୍ୟୁକ୍ତ ସତ୍ୟରେ ବିଜ୍ଞାନୀମାନେ ସହଜରେ ଉପନୀତ ହୋଇପାରିଥାଆନ୍ତେ । ମାତ୍ର ସେମାନେ ହ୍ରାସବୃଦ୍ଧି ହୀନ ଜଗତ ବିଷୟରେ ଏତେ ପରିମାଣରେ ସ୍ଥିର ନିଶ୍ଚୟ ଥଲେ ଯେ, ହବଲ୍‌ଙ୍କର ମହାନ୍ ଆବିଷ୍କାର ପର୍ଯ୍ୟନ୍ତ ସେମାନଙ୍କର ପୂର୍ବଧାରଣା ବଳବତ୍ତର ଥିଲା । ଏପରିକି ପ୍ରସିଦ୍ଧ ବୈଜ୍ଞାନିକ ଆଲବର୍ଟ ଆଇନ୍‌ଷ୍ଟାଇନ୍ ମଧ୍ୟ ଏହି ବିଶ୍ୱାସର ବଶବର୍ତ୍ତୀ ଥିଲେ । ଯେତେବେଳେ ୧୯୧୫ ସାଲରେ ସାଧାରଣ ଆପେକ୍ଷିକତା ବାଦ (general theory of relativity) କୁ ଭିତ୍ତିକରି ନୂତନ ମାଧ୍ୟାକର୍ଷଣ ଶକ୍ତି ସହିତ ସଂଯୋଗ କଲେ, ସେତେବେଳେ ଦେଖାଗଲା ଯେ ଏହି ଶକ୍ତି ଗୁଡିକର ପରସ୍ପର ପ୍ରଭାବ ଫଳରେ ବିଶ୍ୱର

ହ୍ରାସବୃଦ୍ଧି ଘଟିବା ଅତ୍ୟନ୍ତ ସ୍ୱାଭାବିକ। ତେଣୁ ସେ ତାଙ୍କର ଆପେକ୍ଷିକତା ବାଦର ପ୍ରୟୋଗକୁ ହବଲ୍‌ଙ୍କ ଆବିଷ୍କାର ପରେ କିୟତ୍ ପରିମାଣରେ ପରିବର୍ତ୍ତନ କରି କହିଲେ, ''ମୋର ଜୀବନର ଏକ ବଡ ଭୁଲ ହେଲା ମୋର ବଦ୍ଧମୂଳ ଧାରଣା ଯେ ଏହି ବିଶ୍ୱ ହ୍ରାସ ବୃଦ୍ଧି ହୀନ।'' ଆଇନଷ୍ଟାଇନଙ୍କ ପରିବର୍ତ୍ତିତ ମତରେ ବିଜ୍ଞାନୀମାନଙ୍କର ବିଶ୍ୱାସ ଉପୁଜିଲା। ସେମାନେ ମଧ୍ୟ ସେମାନଙ୍କର ପୂର୍ବଧାରଣା ତ୍ୟାଗକରି ନୂତନ ତଥ୍ୟର ପ୍ରୟୋଗରେ ମନୋନିବେଶ କଲେ ପ୍ରକୃତ ତଥ୍ୟର ଅନୁସନ୍ଧାନ ନିମନ୍ତେ। ମାତ୍ର ମହାବିଶ୍ୱର ସତ୍ୟ ନିରୁପଣ ସହଜସାଧ୍ୟ ନୁହେଁ। ଏହା ଅତ୍ୟନ୍ତ ଜଟିଳ, କଷ୍ଟସାଧ୍ୟ, ଗଭୀର ଚିନ୍ତା ସାପେକ୍ଷ ଏକ ଅନୁସନ୍ଧାନ।

ଅନେକ ପ୍ରଶ୍ନର ଉତ୍ତର ଯୁକ୍ତିଯୁକ୍ତ ଭାବରେ ସମାଧାନର ଦାବି କରେ। ଯଥା - ଏହି ବିଶ୍ୱର ଆଦି ମୁହୁର୍ତ୍ତରେ ପ୍ରଥମ ସେକେଣ୍ଡର ୧/୧୦୦ ଅଂଶ କାଳ ବିଷୟରେ ଏକ ଗଭୀର ଅସ୍ୱଷ୍ଟତା ବିଦ୍ୟମାନ। କାହିଁକି ଏତେ ବେଶୀ ଉତ୍ତାପ ସେହି ମୁହୂର୍ତ୍ତରେ ବିଦ୍ୟମାନ ଥିଲା ତାହା ଜଣାନାହିଁ। ଏହାର କୌଣସି ଯୁକ୍ତି ସଂଗତ ବ୍ୟାଖ୍ୟା ମଧ୍ୟ ନାହିଁ। ଜ୍ୟୋତିରେଣୁର ସଂଖ୍ୟା ଶହେ କୋଟି ଥିବାର କାରଣ ବିଶେଷ ଭାବରେ କ'ଣ ହୋଇପାରେ ସେ ବିଷୟରେ କୌଣସି ଉପଲବ୍ଧ ତଥ୍ୟ ମିଳିନାହିଁ। ତାହାର ବୈଜ୍ଞାନିକ ବିଶ୍ଳେଷଣ ମଧ୍ୟ ନାହିଁ। ତା'ଛଡା, କିପରି ଭାବରେ ମହା ବିକ୍ଷୋଭ ବା Big bang ହଠାତ୍ ଘଟିଲା ସେ ବିଷୟରେ ମଧ୍ୟ କିଛି ଜଣା ନାହିଁ। ଏହା ପୂର୍ବରୁ ମହାବିଶ୍ୱ କେଉଁ ଅବସ୍ଥାରେ ଥିଲା ତାହା ପରିଷ୍ଫୁଟ ନୁହେଁ। ଏହାର ପ୍ରକୃଷ୍ଟ ଉତ୍ତର ବୈଜ୍ଞାନିକ ମାନଙ୍କର ମସ୍ତିଷ୍କରେ ଏପର୍ଯ୍ୟନ୍ତ ଉଦୀୟମାନ ହୋଇନାହିଁ। ପ୍ରଶ୍ନହେଲା, ସେ ସମୟରେ ବିଶ୍ୱର ଘନତ୍ୱ ଥିଲା ଅସୀମ। ଏପରି ଅବସ୍ଥାରେ ମହାବିଜ୍ଞାନୀ ଆଇନଷ୍ଟାଇନଙ୍କ ବୈଜ୍ଞାନିକ ତଥ୍ୟ ଓ ତାହାଙ୍କର ସୂତ୍ର ରାଜିର ପ୍ରୟୋଗ ଅସମ୍ଭବ। ଯଦି ବିଶ୍ୱ ସୃଷ୍ଟିର ପ୍ରାରମ୍ଭରେ ବିଶୃଙ୍ଖଳା ଥିଲା, ତେବେ ଶୃଙ୍ଖଳାର ପ୍ରଭାବ କେବେ, କିପରି ଓ କାହାଦ୍ୱାରା ଆରୋପିତ ହେଲା ? କେବଳ ଶୃଙ୍ଖଳା ନୁହେଁ, ଏହି ମହାବିଶ୍ୱର ଯେଉଁ ସାବଲୀଳ ଧାରା ସୁନ୍ଦର ଭାବରେ ଯୁଗଯୁଗଧରି ପ୍ରବାହିତ ହେଉଛି, ତାହାର ପ୍ରଚଳନ କିଏ କଲା ? ଏହି ସୁନ୍ଦର ଶୈଳୀ ବା Symmetry ର ରୂପରେଖ କିପରି ନିର୍ଦ୍ଧାରିତ ହେଲା ? ଯଦିବା ବିଶୃଙ୍ଖଳାରୁ ଶୃଙ୍ଖଳା ଆବିର୍ଭୂତ ହେଲା, ତେବେ ଏହା କେଉଁ ପରିଣତି ଆଡକୁ ଧାବମାନ ? ପ୍ରଶ୍ନ ଉଠେ, ଏହି ମହାବିଶ୍ୱ କ'ଣ ଚିରକାଳ ସମ୍ପ୍ରସାରିତ ହେଉଥିବ ନା ଭବିଷ୍ୟତରେ ସଂକୋଚିତ ହୋଇ ଏହି ନିହାରିକା ପୁଞ୍ଜ ଓ ଜ୍ୟୋତିପୁଞ୍ଜ ଦ୍ରବିଭୂତ ହୋଇ ଆଦିମ ଉପାଦାନରେ ପରିଣତ ହେବେ? ଏହିପରି ବହୁ ବହୁ ସମସ୍ୟାର ସମାଧାନ ବୈଜ୍ଞାନିକ ମାନଙ୍କ ପ୍ରତି ମହା ଆହ୍ୱାନ ସୃଷ୍ଟି କରିଛି। କାରଣ ସୃଷ୍ଟିର ପ୍ରାରମ୍ଭରେ ଯେଉଁ

ସମସ୍ୟାରାଜି ପ୍ରତୀୟମାନ ହୋଇଛନ୍ତି, ସୃଷ୍ଟିର ଶେଷ ଦିନରେ ମଧ୍ୟ ଅନୁରୂପ ସମସ୍ୟା ଗୁଡିକ ଦେଖାଦେବେ । ତେଣୁ ବୈଜ୍ଞାନିକମାନେ ଏ ବିଷୟରେ ସେମାନଙ୍କର ପରୀକ୍ଷା ନିରୀକ୍ଷା, ଅନୁସନ୍ଧାନ, ଚିନ୍ତା, ପ୍ରଚେଷ୍ଟା ଚଳାଇଛନ୍ତି ନିରଳସ ଭାବରେ ।

ଏହି ସମୟରେ ଜଣେ ବିଶ୍ୱବିଖ୍ୟାତ ଋଷିୟ ବୈଜ୍ଞାନିକଙ୍କ ତଥ୍ୟ ନିରୂପଣ ବିଷୟରେ ବିଶ୍ୱବାସୀ ଜାଣି ନଥିଲେ । ଆଲେକ୍‌ଜାଣ୍ଡର ଫ୍ରିଡମାନ୍ ସାଧାରଣ ଆପେକ୍ଷିକତା ବାଦର ବିଶେଷ ଅନୁଶୀଳନରେ ଏହି ହ୍ରାସବୃଦ୍ଧିହୀନ ଧାରଣା ତ୍ୟାଗକରି, ହାବଲ୍‌ଙ୍କ ବୈପ୍ଳବିକ ଆବିଷ୍କାରର କେତେକ ବର୍ଷ ପୂର୍ବେ, ତାଙ୍କର ମତ ପ୍ରକାଶ କରିଥିଲେ । ତାହା ବହୁପରେ ପାଶ୍ଚାତ୍ୟ ବିଜ୍ଞାନୀମାନଙ୍କର ଦୃଷ୍ଟି ଗୋଚର ହୋଇଥିଲା । ସେ କହିଥିଲେ ଯେ ମନୁଷ୍ୟ ଯେଉଁ ଦିଗକୁ ଦୃଷ୍ଟି ନିକ୍ଷେପ କଲେ ମଧ୍ୟ ସେ ଦେଖିବ ଯେ ପ୍ରାୟ ଏକ ଧରଣର ବିନ୍ୟାସ ଏହି ମହା ବିଶ୍ୱର । ତାଛଡା, ସେ ବିଶ୍ୱାସ କରିଥିଲେ ବିଶ୍ୱର ଯେ କୌଣସି ସ୍ଥାନରୁ ଦୃଷ୍ଟି ଦେଲେ ଏହା ପ୍ରତୀୟମାନ ହେବ ଯେ ବିଶ୍ୱ ସମ-ପ୍ରତିବିମ୍ୱରେ ଉଦ୍‌ଭାସିତ, ସମ-ପ୍ରତିଚ୍ଛବିରେ ଭାସ୍ୱର ।  ମାତ୍ର ତାଙ୍କର ପ୍ରଥମ ବକ୍ତବ୍ୟ ଯୁକ୍ତି ସାପେକ୍ଷ ନୁହେଁ । ପେନ୍‌ଜିଅସ୍ ଓ ଉଇଲସନ୍ ଆବିଷ୍କୃତ ବେତାର ଗୁଞ୍ଜନ ପ୍ରମାଣ କରେଯେ ଏହି ଅଦ୍ଭୁତପୂର୍ବ ବେତାର ଗୁଞ୍ଜନର ସ୍ରୋତ୍ ଆମର ନିହାରିକାର ବାହାରୁ ନିଷ୍କ୍ରାନ୍ତ ହୋଇ ପୃଥିବୀରେ ଉପସ୍ଥିତ ହେଉଅଛି । ପୃଥିବୀର ସ୍ଥାନ ପରିବର୍ତ୍ତନ ସତ୍ତ୍ୱେ ଏହି ଅଣୁ ତରଙ୍ଗର ମାତ୍ରାରେ ହ୍ରାସ ବା ବୃଦ୍ଧି ପରିଲକ୍ଷିତ ହେଉନାହିଁ । ଏଣୁ ଏହା ସନ୍ଦେହାତୀତ ଭାବରେ ସୁସ୍ପଷ୍ଟ ଯେ ଏହି ବେତାର-ସଂକେତ ଦୃଶ୍ୟମାନ ଜଗତ ପାରହୋଇ ଆମ ଗ୍ରହରେ ଆସି ଉପସ୍ଥିତ । ଏଥିରୁ ଏହି ତଥ୍ୟ ନିର୍ଦ୍ଧାରଣ କରାଯାଇ ପାରେ ଯେ ବିହଙ୍ଗାବଲୋକନ କଲେ ଜଣାଯିବ ସମଗ୍ର ବିଶ୍ୱ ସବୁ ଦିଗରୁ ପ୍ରାୟ ଏକ ପ୍ରକାର ଭାବେ ଦୃଶ୍ୟମାନ ହେବ । ଆମର ଦୃଶ୍ୟମାନ ଜଗତଠାରୁ ବହୁ ଗୁଣରେ ବିଶାଳ ବିଶ୍ୱ ଅବଧାରିତ ସତ୍ୟରୂପେ ପ୍ରତିଭାତ ହୋଇ ରହିଅଛି । ବେତାର ଗୁଞ୍ଜନ ସେହି ମହାନ ଅସ୍ତିତ୍ୱର ତରଙ୍ଗ ବହନ କରି ଆଣୁଛି ଆମର ଅବଗତି ନିମନ୍ତେ । ଫ୍ରିଡ୍‌ମାନ୍ ପୁଣି ଦେଖାଇଥିଲେ ଯେ ସମସ୍ତ ନିହାରିକା ପୁଞ୍ଜ ପରସ୍ପରଠାରୁ ଦ୍ରୁତ ଗତିରେ ଦୂରକୁ ଚାଲିଯାଉଛନ୍ତି । ଏହି ସିଦ୍ଧାନ୍ତ ସହିତ ହବଲ୍‌ଙ୍କ ଆବିଷ୍କୃତ ତଥ୍ୟର ସାମଞ୍ଜସ୍ୟ ସମ୍ପୂର୍ଣ୍ଣଭାବେ ମିଳିଯାଇଛି । ତାଙ୍କର ଏହି ସିଦ୍ଧାନ୍ତ ଆଗରୁ ଜଣାଯାଇନଥିଲା ପାଶ୍ଚାତ୍ୟ ଜଗତରେ । ୧୯୩୫ ସାଲରେ ଆଉ ଦୁଇଜଣ ବୈଜ୍ଞାନିକ - ରବର୍ଟସନ ଓ ବାକର, ଫ୍ରିଡ୍‌ମାନ୍‌ଙ୍କ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ । ଫ୍ରିଡ୍‌ମାନ୍‌ଙ୍କ ତଥ୍ୟ ବିଶ୍ଳେଷଣ କଲେ ଜଣାଯିବ ଯେ ଯେଉଁ ମହାସଂପ୍ରସାରଣ ଆରମ୍ଭ ହୋଇଛି ନିହାରିକାମାନଙ୍କର, ଏହି ଶକ୍ତି ମାଧ୍ୟାକର୍ଷଣର ଆକର୍ଷଣକୁ ଚିରକାଳ ପାଇଁ ପ୍ରତିହତ କରିପାରିବ ନାହିଁ । ଦିନେ ନା ଦିନେ ସଂପ୍ରସାରଣ

ପରାଜୟ ଲାଭ କରିବ ମାଧ୍ୟାକର୍ଷଣ ନିକଟରେ । ଏହି ମହାକର୍ଷ ସଂପ୍ରସାରଣକୁ ଆସ୍ତେ ଆସ୍ତେ ସ୍ତିମିତ କରି ଆଣିବ । ତାହାକୁ କ୍ୱାଳକ୍ରମେ ସୀମିତ କରି ସଂକୋଚନ ଆଡକୁ ନେଇଯିବ । ମହାକର୍ଷର ପ୍ରବଳ ପ୍ରଭାବରେ ତିନି ମାତ୍ରା ବିଶିଷ୍ଟ ବସ୍ତୁ (three dimensional) ଶେଷରେ ବର୍ତ୍ତୁଳାକାର ଧାରଣ କରେ । ଏହି ବର୍ତ୍ତୁଳାକାର ବସ୍ତୁ ଯେତେ ବଡ ହେଲେ ମଧ ଏହା ଅସୀମ ନୁହେଁ । ଏହା ନିଶ୍ଚିତ ଭାବରେ ସସୀମ । କାରଣ ଏହାର ଆଦି ଓ ଅନ୍ତ ବିଦ୍ୟମାନ । ଏହି ମହାବିଶ୍ୱ ଚିରକାଳପାଇଁ ସମ୍ପ୍ରସାରିତ ହେଉଥିବ ନା ଦିନେ ସଂକୁଚିତ ହେବ ଏହାର ସମାଧାନ ଏତେ ସହଜ ସାଧ ନୁହେଁ । ପ୍ରଥମେ ନିରୁପଣ କରିବାକୁ ହେବ ସଂପ୍ରସାରଣହାର । ଯଦି ଦେଖାଯାଏ ଏହା ମହାକର୍ଷର ଶକ୍ତିଠାରୁ ଅତ୍ୟଧିକ; ତେବେ ସମ୍ପ୍ରସାରଣ ଅନ୍ତ ହେବ ନାହିଁ । ଏହି ସମ୍ପ୍ରସାରଣର ହାର ମାପିବା କିପରି ? ଏହା ନିର୍ଭର କରେ ଏହି ମହାବିଶ୍ୱର ଘନତ୍ୱ ଉପରେ । ମାତ୍ର ଏହି ଘନତ୍ୱକୁ ନିଶ୍ଚିତ ଭାବରେ ଭ୍ରମରେ ନ ପଡ଼ି ମାପିବା କାଠିକର ପାଠ । ଏହା ଛଡା ପ୍ରଥମେ ଜାଣିବାକୁ ହେବ ନିହାରିକା ମାନଙ୍କ ମଧରେ ଦୂରତ୍ୱ । ତା ନହେଲେ ମହାବିଶ୍ୱର ଘନତ୍ୱର ସମ୍ପୂର୍ଣ୍ଣ କଳନା ନିରର୍ଥକ ହୋଇ ପଡିବ । କାରଣ ମହାବିଶ୍ୱର ନିଛିଦ୍ର-ସ୍ୱରୂପ ନଜାଣିଲେ ତାହାର ଘନତ୍ୱର ପରିକଳ୍ପନା ଅସମ୍ଭବ । ତାହାର ପରିମାପ କରିବା ଅଭାବନୀୟ । ''ନୈବଚ୍ ନୈବଚ୍''। ନିହାରିକା ମାନଙ୍କ ମଧରେ ଦୂରତ୍ୱ ମାପିବାର ପ୍ରକୃଷ୍ଟ ପ୍ରଣାଳୀ ବର୍ତ୍ତମାନସୁଦ୍ଧା ନିର୍ଭୁଲ ଭାବେ ବିଜ୍ଞାନର ପରିସରଭୁକ୍ତ ହୋଇନାହିଁ । ତେଣୁ ଏହି ଘନତ୍ୱ ମାପିବା ବୈଜ୍ଞାନିକ ମାନଙ୍କ ପକ୍ଷରେ ସୁଦୁର ପରାହତ । ବର୍ତ୍ତମାନର ସମ୍ପ୍ରସାରଣରୁ ଦେଖାଯାଉଅଛି ଏହା ବସ୍ତୁତଃ ଅପ୍ରତିହତ । ଏହାର ଧାବମାନ ଗତି ଅପ୍ରତିରୋଧ । ନିଶ୍ଚିତ ଭାବରେ କୌଣସି ସିଦ୍ଧାନ୍ତରେ ଉପନୀତ ହେବା ସମ୍ଭବପର ନୁହେଁ । କାରଣ ଏହି ମହାବିଶ୍ୱର ସମସ୍ତ କ୍ରିୟାଶୀଳ ଶକ୍ତି ବର୍ତ୍ତମାନ ସୁଦ୍ଧା ସମ୍ପୂର୍ଣ୍ଣରୂପେ ଆବିଷ୍କୃତ ହୋଇନାହିଁ । ବିଜ୍ଞାନ ତାହାର ଅନୁସନ୍ଧିତ୍ସାର ପ୍ରୟୋଗ ଚଳାଇଯାଉଅଛି । କ୍ରମେ କ୍ରମେ ମହାଶକ୍ତିର ଉପାଦାନ ଗୁଡିକ ବିଜ୍ଞାନର ଦୃଶ୍ୟପଟରେ ଆବିର୍ଭୂତ ହେଉ ଅଛନ୍ତି । ଏହା ପ୍ରକୃତରେ ଅନୁମାନ ଯୋଗ୍ୟ ଯେ ବିଶ୍ୱରେ ବହୁ ଶକ୍ତିଧର ପିଣ୍ଡ, ପଦାର୍ଥ ବା ବସ୍ତୁ ବିସ୍ତୃତ ଭାବରେ ପରିବ୍ୟାପ୍ତ ହୋଇ ଅଛନ୍ତି । ସେମାନଙ୍କର ପ୍ରଚ୍ଛନ୍ନ ଶକ୍ତି ଏହି ସମ୍ପ୍ରସାରଣକୁ ପ୍ରତିରୋଧକରି ସଂକୋଚନ ପଥକୁ ସୁବିସ୍ତୃତ କରିପାରେ । ମୌଳିକ୍ ରେଣୁ ମାନଙ୍କ ମଧରେ ଏକୀକୃତ ତତ୍ତ୍ୱ ଗୁଡିକ ମଧରେ ଏହିପରି ଅଭିନବ ପଦାର୍ଥର ଅସ୍ତିତ୍ୱ ସମ୍ବନ୍ଧରେ କିଛି କିଛି ଦିଗ୍‌ଦର୍ଶନ ମିଳୁଛି । ସେ ବିଷୟରେ ଅନୁସନ୍ଧାନ ମଧ ପୁରାମାତ୍ରାରେ ଚାଲିଛି ଓ ଚାଲିବ । ବିଜ୍ଞାନ କୌଣସି ବିଷୟରେ ସ୍ଥିର ନିଶ୍ଚିତ ହୋଇ ସମ୍ଭାବନାମୟ ଭବିଷ୍ୟତକୁ ଉପେକ୍ଷା କରେ ନାହିଁ । ଏହା ସବୁ ବିଷୟରେ ସଦା ଉତ୍କୀର୍ଣ୍ଣ ରହି ସବୁ

ରକମର ସମ୍ଭାବନାକୁ ଉଜ୍ଜୀବିତ କରି ରଖେ । କାରଣ ଗୋଟିଏ ଦୃଷ୍ଟିକୋଣରେ ନିଜକୁ ଆବଦ୍ଧ ରଖି ଅନ୍ୟ ଦୃଷ୍ଟିକୋଣକୁ ଅବଜ୍ଞା କରିବା ଆଧୁନିକ ବିଜ୍ଞାନର ପନ୍ଥା ନୁହେଁ । ପ୍ରୟୋଗଶାଳାରେ ନିତ୍ୟନୈମିତ୍ତିକ ଗବେଷଣା ଜାରି ରହିଛି । ସେଥିରୁ ବେଳେବେଳେ ପରସ୍ପର ବିରୋଧୀ ତଥ୍ୟ ମଧ୍ୟ ଉଦ୍‌ଘାଟିତ ହେଉଛି । ସେଗୁଡିକର ବିଶେଷ ପରୀକ୍ଷା କରାଯାଇ ସତ୍ୟ ନିରୁପଣ କରାଯାଉଅଛି । କୌଣସି ତଥ୍ୟକୁ ସ୍ଥିର ନିଶ୍ଚିତ ଭାବରେ ଘୋଷଣା କରିବାପୂର୍ବରୁ ବହୁଦେଶର ବୈଜ୍ଞାନିକମାନେ ବହୁ ଦିଗରୁ ଏ ବିଷୟରେ ଗଭୀର ନିଷ୍କର୍ଷ ପ୍ରତିପାଦନ କରୁଛନ୍ତି । ଏହି ପରୀପ୍ରେକ୍ଷୀରେ ପୃଥିବୀର ମହାନ ବୈଜ୍ଞାନିକ, ନିଉଟନଙ୍କ-ଚେଆର-ଅଭିଷିକ୍ତ କ୍ୟାଂବ୍ରିଜ ବିଶ୍ୱବିଦ୍ୟାଳୟର ପ୍ରଖ୍ୟାତ ପ୍ରଫେସର ହକିଂଙ୍କ ଉକ୍ତି ଉଲ୍ଲେଖଯୋଗ୍ୟ । ସେ କହିଛନ୍ତି ଯେ ଆପେକ୍ଷିକତା ବାଦ ସହିତ କ୍ୱାଟଂ ତତ୍ତ୍ୱର ସଂଯୋଗ କଲେ ମହାକାଳକୁ (time) ତିନିମାତ୍ରା ବିଶିଷ୍ଟ ବସ୍ତୁଭଳି ଏହା ବିଶାଳ ଓ ବୃହତ୍ ହେଲେ ମଧ୍ୟ, ସୀମିତରୂପେ ଚିନ୍ତା କରାଯାଇପାରେ । ବିଶ୍ୱକୁ ଆଦି ଅନ୍ତହୀନ ରୂପେ କଳ୍ପନା କଲେ ବହୁ ସମସ୍ୟା ଉତ୍ପନ୍ନ ହୁଏ । ଏହି ଅବସ୍ଥାରେ ବିଜ୍ଞାନର ଧ୍ୟାନ, ଧାରଣା, ସୂତ୍ରାବଳି ଏଥିରେ ପ୍ରଯୁଯ୍ୟ ହୋଇପାରେନାହିଁ । କାଳ ଯଦି ଆଦି-ଅନ୍ତ ହୀନ ହୁଏ, ତାହାହେଲେ କେଉଁଠି ତାହାର ଉତ୍ପତ୍ତି ଓ କେଉଁଠି ତାର ବିଲୟ ତାହା ଅଜଣା ରହିଯାଏ । ସେ ବିଷୟରେ ଚିନ୍ତା ମଧ୍ୟ କରିହୁଏ ନାହିଁ । ମାତ୍ର, ହକିଂର ମତ ହେଲା ଯେ ‘‘ମହାବିକ୍ଷୋଭ’’ ବା Bigbang ମୁହୂର୍ତ୍ତରେ କାଳର ଜନ୍ମହୋଇନାହିଁ । ଅନ୍ତହୀନ ସମୟ ଓ ଆଦିହୀନ ବିଶ୍ୱହିଁ ସତ୍ୟ । କାଳର ସଂକ୍ଷିପ୍ତ ଇତିହାସ ଲେଖିବାକୁ ଯାଇ ଅଧ୍ୟାପକ ହକିଂ ଏକ ବିଶାଳ ତତ୍ତ୍ୱର ଅବତାରଣା କରିଛନ୍ତି ତାଙ୍କର ବିଶ୍ୱବିଖ୍ୟାତ ପୁସ୍ତକ "Brief History of time" ରେ । ତାହା ଅନ୍ୟ ଅଧ୍ୟାୟର ବିବେଚ୍ୟ ବସ୍ତୁ । ପରେ ତାହାର ବିଚାର କରାଯିବ ।

ମହାବିକ୍ଷୋଭ ତତ୍ତ୍ୱରୁ ଉଦ୍‌ଭୂତ କେତେକ ତଥ୍ୟାବଳିର ବିଚାର ଅତ୍ୟାବଶ୍ୟକ । ସୌର ସନ୍ଧାନୀମାନେ ବିଶ୍ୱସୃଷ୍ଟି ହେବାର ଦୁଇ ମିନିଟ ମଧ୍ୟରେ ଦୂରସ୍ଥ ନିହାରିକାପୁଞ୍ଜ ମଧ୍ୟରେ ଥିବା ମହାଶୂନ୍ୟରେ ନିଶ୍ଚିତ ଭାବରେ ‘‘ହିଲିଅମ୍’’ ପ୍ରଭୁତ ଭାବରେ ପରିପୂର୍ଣ୍ଣ ହୋଇଥିବା ବିଷୟଟି ଆବିଷ୍କାର କରିଛନ୍ତି । ମହାବିକ୍ଷୋଭ ଠିକ୍ ପରେ ପରେ ଶୂନ୍ୟସ୍ଥାନରେ ହିଲିଅମ୍ ଗ୍ୟାସ୍ ଭର୍ତ୍ତି ହୋଇଗଲା । ଦଶକୋଟି ବର୍ଷ ପୂର୍ବେ ସୃଷ୍ଟିର ଆଦି ମୁହୂର୍ତ୍ତରେ ବିଶ୍ୱର ପ୍ରଥମ-ଆଦି ବସ୍ତୁ (element) ‘‘ହିଲିଅମ୍’’ ପରିପୂର୍ଣ୍ଣ ଭାବରେ ପ୍ରସାର ଲାଭ କରିବାରୁ ସେଥିରୁ ତାରକାପୁଞ୍ଜ ଓ ନିହାରିକାପୁଞ୍ଜର ସୃଷ୍ଟି ହେଲେ । ମହାବିଶ୍ୱର ସୃଷ୍ଟିର ଠିକ୍ ପରେ ପରେ ହାଲୁକା ପଦାର୍ଥ ଗୁଡିକର ଉପସ୍ଥିତି ଏକାନ୍ତ ତାତ୍ପର୍ଯ୍ୟ ପୂର୍ଣ୍ଣ । ହିଲିଅମ୍ ଓ ହାଇଡ୍ରୋଜେନ୍ ପରି ହାଲୁକା ପଦାର୍ଥ ମହା ବିକ୍ଷୋଭ ଜନିତ ଅତ୍ୟନ୍ତ ଉତ୍ତପ୍ତ ବାତାବରଣକୁ ଶୀତଳ ହେବାର

ପ୍ରଣାଳୀକୁ ସାହାଯ୍ୟ କରିଥିଲା । ଏହାର ଅନେକପରେ ତାରକା ରାଜିର ସୃଷ୍ଟି ହେବାର ପରବର୍ତ୍ତୀ ପରିସ୍ଥିତିରେ ତାରକା ମାନଙ୍କ ଗର୍ଭରେ ନାନା ବିକ୍ଷୋଭ ଜନିତ ଘଟଣାରୁ ସୃଷ୍ଟି ହେଲା ଅପେକ୍ଷାକୃତ ଭାରି ପଦାର୍ଥ- କାର୍ବନ୍, ନାଇଟ୍ରୋଜେନ୍, ଅକ୍ସିଜେନ, ପ୍ରଭୃତି । ଅବଶ୍ୟ ଏଗୁଡିକ ହିଲିଅମ୍ ଓ ହାଇଡ୍ରୋଜେନର ପରସ୍ପର ସଂମିଶ୍ରଣ ଜନିତ ପ୍ରକ୍ରିୟାରୁ ଉଦ୍‌ଭୂତ । ଏହି ହିଲିଅମ୍ ପ୍ରାଥମିକ ବିଶ୍ୱସୃଷ୍ଟି ସହିତ ସଂଶ୍ଲିଷ୍ଟ ତାରକାପୁଞ୍ଜ ମଧ୍ୟରେ ଆବିଷ୍କୃତ ହୋଇଅଛି । ଏଠାରେ ଉଲ୍ଲେଖଯୋଗ୍ୟ ବିଷୟ ହେଲା ଯେ ୯୦ ପ୍ରତିଶତ ନିହାରିକାପୁଞ୍ଜର ବସ୍ତୁ ବର୍ତ୍ତମାନ ସୁଦ୍ଧା ଏକ ପ୍ରହେଳିକା ମାତ୍ର; ଆଉ ୯୯ ପ୍ରତିଶତ ନିହାରିକାପୁଞ୍ଜ ବର୍ତ୍ତମାନ ସୁଦ୍ଧା ମନୁଷ୍ୟ ପକ୍ଷରେ ଅଦୃଶ୍ୟ ଜଗତର ଅଧିବାସୀ । ମାତ୍ର ହିଲିଅମ୍ ଆବିଷ୍କାରର ଏକ ବିଶେଷ ସନ୍ତୋଷଦାୟକ ବିଭାବ ହେଲା ଯେ ଏହା ନିହାରିକାପୁଞ୍ଜ ମାନଙ୍କ ମଧ୍ୟରେ ଥିବା ଶୂନ୍ୟସ୍ଥାନରୁ ମିଳିଛି । ଏହି ଶୂନ୍ୟସ୍ଥାନରେ କୌଣସି ତାରା, ଅନ୍ୟ ବାଷ୍ପ, ଅନ୍ୟ ପିଣ୍ଡ, ଅନ୍ୟ ପଦାର୍ଥ ନାହିଁ । ଏହି ଶୂନ୍ୟସ୍ଥାନରେ କିଛି ନାହିଁ କହିଲେ ଅତ୍ୟୁକ୍ତି ହେବନାହିଁ । ଏହାପୂର୍ବରୁ ସୌର ବିଜ୍ଞାନୀମାନଙ୍କୁ ଜଣାଥିଲା ଯେ ନିହାରିକା ମଧ୍ୟବର୍ତ୍ତୀ ଅଂଶରେ ଧୂଳିକଣା, ଗ୍ୟାସ, ବାୟୁ, ସୂର୍ଯ୍ୟାଣୁ, ଅତିକ୍ଷୁଦ୍ର ଉଲ୍କାପିଣ୍ଡ, ଅତି କ୍ଷୁଦ୍ର ତାରାଂଶ, ତାରା ରେଣୁ, ଧୂମକେତୁ ପ୍ରଭୃତି ପରିପୂର୍ଣ୍ଣ ଭାବରେ ଥିଲା । ସେମାନେ ଜାଣିଥିଲେ ଯେ ଏହି ଶୂନ୍ୟାଂଶ ବହୁ ଗ୍ୟାସ, ଧୂଳିକଣା, ଭାରି ପଦାର୍ଥ (element), ଅଣୁ ପରମାଣୁ, ହାଇଡ୍ରୋଜେନ ଇତ୍ୟାଦିରେ ବିଶେଷ ଭାବରେ ଭରପୁର ଥିଲା । ଏହି ସବୁ ବସ୍ତୁ ରାଜିରୁ ଜନ୍ମ ନେଇଥିଲେ ତାରକାପୁଞ୍ଜ । ସେମାନେ ବର୍ତ୍ତମାନ ସୁଦ୍ଧା ଉପର୍ଯୁକ୍ତ ପଦାର୍ଥରୁ ଜନ୍ମଗ୍ରହଣ କରୁଛନ୍ତି ମଧ୍ୟ । ମାତ୍ର ସେମାନଙ୍କର ଧାରଣା ନଥିଲା ନିହାରିକା ମଧ୍ୟବର୍ତ୍ତୀ ମାଧ୍ୟମର ଉପାଦାନ ବିଷୟରେ । ସେମାନଙ୍କ ପାଖରେ କୌଣସି ଚାକ୍ଷୁସ ପ୍ରମାଣ ନଥିଲା ଏହି ଆର୍ନ୍ତ-ନିହାରିକା କ୍ଷେତ୍ରର ମାଧ୍ୟମ ବିଷୟରେ । ସେମାନେ ଏତିକି ଜାଣିଥିଲେ ଯେ କେତେକ ମେଘପୁଞ୍ଜରେ ବିଚ୍ଛୁରିତ ହୋଇଥିଲା ହାଇଡ୍ରୋଜେନ, ସେହି ଆଦି-ସୃଷ୍ଟି କାଳରେ । ଏହି ଧାରଣାର ବିଶେଷ ପ୍ରମାଣ ଅଭାବରେ ସୁଦୃଢ଼ ପରିପୁଷ୍ଟି ମଧ୍ୟ ନ ଥିଲା । ସେମାନେ କେବଳ ଅନୁମାନ କରିଥିଲେ ଯେ ସୃଷ୍ଟିର ସମକାଳରେ ଉପରିଉକ୍ତ କ୍ଷେତ୍ରରେ ଭାରିଗ୍ୟାସର ଉପସ୍ଥିତି ଅବଶ୍ୟମ୍ଭାବି ବୋଲି । ଏହାଛଡା ଏହି ଶୂନ୍ୟ କ୍ଷେତ୍ରରେ ଆଦି ସୃଷ୍ଟି ପରେ ପରେ, କେତେକ ଆଦି କଣା ବିଚ୍ଛୁରିତ ଭାବରେ ଉପସ୍ଥିତ ହୋଇଥିବ, "ମହାବିକ୍ଷୋଭ" ଘଟଣାର ଫଳ ସ୍ୱରୂପ । ଡଂ ଡେଭିଡ୍‌ସନ୍ ଆମେରିକାର ବଲ୍ଟିମୋରଠାରେ ହିଲିଅମ୍ ଆବିଷ୍କାରର ବିଷୟ ଆମେରିକାର ସୌରବିଜ୍ଞାନ ସଂସ୍ଥାର ସଭାରେ ଘୋଷଣା କଲେ । ଏହି ଆବିଷ୍କାର ଏକ ସୁଦୃଢ଼ ଭିତ୍ତି ଉପରେ ପ୍ରତିଷ୍ଠିତ । "ଏନ୍‌ଡେଭର" ବୋଲି ଏକ ମହାକାଶ ଯାନରେ ଏକ ଦୂରବୀକ୍ଷଣ ଯନ୍ତ୍ର ଖଞ୍ଜାଯାଇଥିଲା । ସେହି ଯନ୍ତ୍ର ଅଲଟ୍ରାଭାୟୋଲେଟ୍ ରଶ୍ମିସମ୍ପନ୍ନ ଥିଲା । ସେଥିରୁ ପ୍ରମାଣିତ ହେଲା ଯେ ସୁଦୂର

ଆନ୍ତ-ର୍ନିହାରିକାର ଶୂନ୍ୟଦେଶରେ ହିଲିଅମ୍ ପୂରାମାତ୍ରାରେ ଭରପୂର ରହିଅଛି । ଏହି ଆବିଷ୍କାରରୁ "ମହା ବିକ୍ଷୋଭ" ଜନିତ ବିଶ୍ୱ ସୃଷ୍ଟିର ଧାରଣା ବଦ୍ଧମୂଳ ହେଲା । ଡେଭିଡ୍‌ସନ୍ ସାମ୍ବାଦିକ ମାନଙ୍କୁ କହିଲେ ଯେ ମହା ବିକ୍ଷୋଭ ଯୋଗୁ ବିଶ୍ୱ ସୃଷ୍ଟିର ଧାରଣାର ଦୃଢ଼ିକରଣ ହେଲା ଏହି ଆବିଷ୍କାର । ସେ ସଭାରେ ଉପସ୍ଥିତ ସବୁ ବୈଜ୍ଞାନିକ ଏହି ଉକ୍ତିର ସମର୍ଥନ କଲେ । ୱାଶିଂଟନ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ମାର୍ଗନ୍ କହିଲେ ଏହି ସିଦ୍ଧାନ୍ତ ବିଶେଷ ତାତ୍‌ପର୍ଯ୍ୟପୂର୍ଣ୍ଣ, କାରଣ ବହୁବର୍ଷ ଧରି ସୌର ସନ୍ଧାନୀମାନେ ଏପରି ଏକ ତଥ୍ୟ ଜାଣିପାରି ନଥିଲେ । ଏଥର ପ୍ରକୃଷ୍ଟ ଭାବରେ ଜଣାଗଲା ଯେ ଆନ୍ତ-ର୍ନିହାରିକା କ୍ଷେତ୍ରରେ ଏକ ବିଶିଷ୍ଟ ମାଧ୍ୟମ ଉପସ୍ଥିତ ରହିଅଛି । ଅନ୍ୟ ସୌର ବିଜ୍ଞାନୀମାନେ ମଧ୍ୟ ମହାବିକ୍ଷୋଭ ତତ୍ତ୍ୱର ପ୍ରମାଣ ସ୍ୱରୂପ ଏହି ହିଲିୟମ୍ ଆବିଷ୍କାରକୁ ମାନିନେଲେ । କେବଳ ହିଲିଅମ୍ ଆବିଷ୍କୃତ ହେଲେ ମଧ୍ୟ ହାଇଡ୍ରୋଜେନ ଗ୍ୟାସ୍‌ର ଉପସ୍ଥିତି ଏହି ଆବିଷ୍କାରରେ ଅନ୍ତର୍ଭୁକ୍ତ ନଥିଲା । ପ୍ରଫେସର ଡେଭିଡ୍‌ସନ୍ କହିଲେ - "ହାଇଡ୍ରୋଜେନ ନ ମିଳିଲେ ମଧ୍ୟ ତାର ଉପସ୍ଥିତି ଅନୁମାନ ଯୋଗ୍ୟ; ଯେପରି କୁକୁର ଲାଞ୍ଜ ଦେଖାଗଲେ କୁକୁରର ଉପସ୍ଥିତି ନିଶ୍ଚିତ ଭାବରେ ଅନୁମେୟ ।" ସେ କହିଲେ ଯେ ଏହି ଲାଞ୍ଜରୁ ମନେହୁଏ ଏହା ଏକ ମସ୍ତ ବଡ କୁକୁର୍ ।

ଏହି ଆବିଷ୍କାରର ପୁଙ୍ଖାନୁପୁଙ୍ଖ ବିଚାରର ଆବଶ୍ୟକତା ରହିଛି । ଗବେଷକ ପରୀକ୍ଷା କରି ଦେଖିଲେ ଯେ ଗୋଟିଏ ହିଲିୟମ କଣା ସହିତ ବାରୋଟି ହାଇଡ୍ରୋଜେନ୍ କଣାର ଉପସ୍ଥିତି ନିର୍ଭର ଯୋଗ୍ୟ ଭାବରେ ନିଶ୍ଚିତ । ଏହି ଆନ୍ତ-ର୍ନିହାରିକା-ମଣ୍ଡଳ ଏକ ଶୂନ୍ୟ କ୍ଷେତ୍ର ହୋଇଥିଲେ ମଧ୍ୟ, ଏହା ବିସ୍ତୀର୍ଣ୍ଣ ଭାବରେ ପରିବ୍ୟାପ୍ତ ଏକ ଅନ୍ତହୀନ ବିସ୍ତୃତିର କ୍ଷେତ୍ର । ଏଠାରେ ହିଲିଅମ୍-କଣା ଅତି କମ୍ ମାତ୍ରାରେ ଉପଲବ୍ଧ ହେଲେ ମଧ୍ୟ, ଅନନ୍ତ ସୁବିସ୍ତୃତ, ବିଶାଳ ଶୂନ୍ୟକ୍ଷେତ୍ରରେ ଯେତିକି କଣା ମିଳିବ, ତାହାସବୁ ଏକତ୍ରିତ ହେଲେ ଆମର ଆଜି ପର୍ଯ୍ୟନ୍ତ ଜଣାଶୁଣା ବିଶ୍ୱର ତାରାପୁଞ୍ଜ, ନିହାରିକାପୁଞ୍ଜ, ଗ୍ରହ ଓ ନକ୍ଷତ୍ର ରାଜିରେ ଉପସ୍ଥିତ ଜଡ ପଦାର୍ଥରୁ ବେଶୀ ହୋଇପାରେ; ମାତ୍ର କେବେହେଁ ଉଣା ହେବନାହିଁ । ଏ ସମ୍ବନ୍ଧରେ ଗୋଟିଏ ଉକ୍ତି ପ୍ରଣିଧାନ ଯୋଗ୍ୟ । ଜଣେ ଆମେରିକାର ସିନେଟର ଥରେ କହିଥିଲେ ଆମ ବଜେଟ୍‌ର ବିଭିନ୍ନ ବିଭାଗରେ କେତେଶହ କୋଟି ଟଙ୍କାର ପ୍ରସ୍ତାବ ଭିନ୍ନ ଭିନ୍ନ ବିଷୟରେ ଅନ୍ତର୍ଭୁକ୍ତ ହୋଇଥିଲେ ମଧ୍ୟ, ସେଗୁଡିକ ଏକତ୍ର କଲେ ଏକ ବିରାଟ ବଜେଟରେ ପରିଣତ ହୁଏ । ସେହିପରି ବିଶ୍ୱର ଶୂନ୍ୟମଣ୍ଡଳରେ ଉପସ୍ଥିତ ଥିବା ହିଲିୟମ୍-ସଂଭାର ମହା ବିଶ୍ୱର ଏକ ଅପରିମେୟ ସମ୍ପତ୍ତି । ଏହି ହିଲିୟମ୍ ଗ୍ୟାସର ଆବିଷ୍କାର ପଦ୍ଧତି ଉପରେ ଆଲୋକପାତ ଅତ୍ୟନ୍ତ ସ୍ପୃହଣୀୟ । ବିଶ୍ୱ ସୃଷ୍ଟିର ଆଦିମ ମୁହୂର୍ତ୍ତଠାରୁ ଅନେକ ଆଲୋକ ମଣ୍ଡଳ ଦୃଷ୍ଟିଗୋଚର ହେଉଅଛି । ସେଗୁଡିକରୁ ତୀବ୍ର ଆଲୋକ ରଶ୍ମି ନିର୍ଗତ

ହେଉଅଛି । ବହୁଦୂରକୁ ଏହି ରଶ୍ମିର ଆଲୋକ ଘନ କୁହୁଡି ମଧ୍ୟ ଦେଇ ମଟର ଗାଡ଼ିର ହେଡ୍ ଲାଇଟ୍ ରଶ୍ମିଭଳି ପ୍ରତିଭାତ ହୁଏ । ଗୋଟିଏ ଆଲୋକ ମଣ୍ଡଳ (quasar) ପୃଥିବୀ ଠାରୁ ଦଶକୋଟି ଆଲୋକ ବର୍ଷ ଦୂରରେ ଅବସ୍ଥିତ । ଏହାକୁ HS1700+64 ନାମରେ ନାମିତ କରାଯାଇଅଛି । ଏହି କ୍ୱାସାର ଗୁଡ଼ିକ ୧୯୬୦ ସାଲରେ ସୌର ବିଜ୍ଞାନୀ ମାନଙ୍କ ଦ୍ୱାରା ଆବିଷ୍କୃତ ହୋଇଥିଲା । ପୂର୍ବ କଥିତ କ୍ୱାସାରକୁ ଅନୁଧ୍ୟାନ କରିବା ନିମନ୍ତେ ଅଲଟ୍ରାଭାୟୋଲେଟ ରଶ୍ମି କ୍ଷମତା ସମ୍ପନ୍ନ ଦୂର ବୀକ୍ଷଣ ଯନ୍ତ୍ର ଏକ ମହାକାଶଯାନ ରେ ସ୍ଥାନିତ କରାଯାଇ ମହାକାଶ ଗବେଷଣାରେ ନିଯୁକ୍ତ କରାଯାଇ ଥିଲା । ଏହାର ଉଦ୍ଦେଶ୍ୟ ହେଲା ବିଶିଷ୍ଟ ରଶ୍ମି ସାହାଯ୍ୟରେ ବିଶ୍ୱର ସ୍ୱରୂପ ନିରୂପଣ । ଏପରି ଗବେଷଣା ପୂର୍ବରୁ ଏହି ରଶ୍ମି ବିନା ବିଫଳ ହେଉଥିଲା । ଅନ୍ୟ ଗବେଷକ ମାନେ ଦୂରତ୍ୱ ବାଧା ଅତିକ୍ରମ କରିପାରୁନଥିଲେ । ମହାକାଶଯାନ ଏହି ବାଧା ଅତିକ୍ରମ କରି ବହୁ ପ୍ରତୀକ୍ଷିତ ଗବେଷଣାଲବ୍ଧ ଫଳକୁ ସେମାନଙ୍କର ଦ୍ୱାର ଦେଶରେ ଉପନୀତ କରିଦେଲା । ଡେଭିଡସନ୍ କହିଲେ ତଥ୍ୟାବଳି ନିରୀକ୍ଷଣ କଲେ ସମସ୍ତେ ବୁଝିବେଯେ ଏହି ସିଦ୍ଧାନ୍ତ ସଙ୍ଗତିପୂର୍ଣ୍ଣ ଓ ଅପରିବର୍ତ୍ତନୀୟ ।

ବିଶ୍ୱର ପ୍ରକୃତ ସ୍ୱରୂପ ବିଷୟରେ ବିଜ୍ଞାନୀମାନଙ୍କର ଅନ୍ୟଚିନ୍ତାଧାରା ମଧ୍ୟ ଉପେକ୍ଷଣୀୟ ନୁହେଁ । ଯେଯାହାର ମାପକାଠି ଅନୁସାରେ କେତେକ ବିଭିନ୍ନ ରୂପଦେବାର ଚେଷ୍ଟା କରିଅଛନ୍ତି । ସମସ୍ତେ ଯେ "ମହାବିକ୍ଷୋଭ" ତଥ୍ୟରେ ବିଶ୍ୱାସୀ ଏପରିନୁହେଁ । ଯଦି କାଳର ଆଦିଅନ୍ତ ଅଛି ଏହା ବିଶ୍ୱାସ କରାଯାଏ, ତେବେ ଈଶ୍ୱରଙ୍କୁ ଅବିଶ୍ୱାସ କରିବା ଅସମ୍ଭବ ହୋଇପଡେ । ତାର ଅର୍ଥହେଲା କୌଣସି ବସ୍ତୁ ବିଶେଷର ଅସ୍ତିତ୍ୱକୁ ଗ୍ରହଣ କରିବା ତାର ସ୍ରଷ୍ଟାକୁ ଗ୍ରହଣ କରିବା ପର୍ଯ୍ୟନ୍ତ ପରିବ୍ୟାପ୍ତ । ଏଥିରୁ ପ୍ରତିପାଦିତ ହେବ ଯେ କାଳକୁ କେହି ଜଣେ ସୃଷ୍ଟି କରିଛି । ସ୍ରଷ୍ଟାଙ୍କୁ ଯେକୌଣସି ନାମରେ ନାମିତ କରାଗଲେ ମଧ୍ୟ, ସେ ଈଶ୍ୱରଙ୍କପରି ଶକ୍ତିଧର ଅନାଦି ପୁରୁଷ ହେବାକୁ ବାଧ୍ୟ ।

କେତେକ ବୈଜ୍ଞାନିକ ଯଥା ହରମାନ ବଣ୍ଡି, ଟମାସଗୋଲ୍ଡ ଇତ୍ୟାଦି ଏକ ପରିକଳ୍ପନା କରିଥିଲେ ଏହି ବିଶ୍ୱ ସମ୍ବନ୍ଧରେ । ବିଶ୍ୱ ଚିରକାଳ ଏକରକମ ଭାବରେ ପ୍ରତିଭାତ ଥିଲା ଏବଂ ଥିବ ମଧ୍ୟ । ମାତ୍ର ସେଥିରେ ହ୍ରାସବୃଦ୍ଧି ହେବନାହିଁ ଏପରି ଚିନ୍ତା ଅମୂଳକ । ଏହା ସମ୍ପୂର୍ଣ୍ଣ ପରିବର୍ତ୍ତନହୀନ ନୁହେଁ । ସେମାନଙ୍କର ନିର୍ଦ୍ଧାରିତ ମତ ହେଲା ଏହି ମହାବିଶ୍ୱର ସମ୍ପ୍ରସାରଣ ସହିତ ବହୁ ନୂତନ ବସ୍ତୁ, ପଦାର୍ଥ, ଚଳମାନ ପିଣ୍ଡ, ଧାବମାନ ଗ୍ରହ ନକ୍ଷତ୍ରଙ୍କର ନୂତନଭାବେ ସୃଷ୍ଟି ହେଉଅଛି ଏବଂ ତଦ୍ଦ୍ୱାରା ଶୂନ୍ୟସ୍ଥାନ ପୂରଣ ହେଉଅଛି । ତାର ପରିଧି ବା ପରିସର ମଧ୍ୟରେ ମହାବିଶ୍ୱ ନୂତନ ସୃଷ୍ଟିଜାତ ପଦାର୍ଥରେ ସମୃଦ୍ଧ ହେଲେ ମଧ୍ୟ, ତାହାର

ବହିଃଦୃଶ୍ୟପଟରେ ବିଶେଷ କୌଣସି ପରିବର୍ତ୍ତନ ଲକ୍ଷଣୀୟ ହେଉନାହିଁ । ଅନ୍ୟଦିଗରୁ ଚିନ୍ତାକଲେ ଏହା ହୁଏତ ପରିସ୍ଫୁଟ ହେବ ଯେ ଅନେକ ଦିନ ଧରି ଅଳ୍ପ ଅଳ୍ପ କରି ବହୁ ବସ୍ତୁ ଏହି ମହାବିଶ୍ୱ ସହିତ ସଂଯୋଜିତ ହେଉଅଛି । ଅନ୍ୟ ବିଜ୍ଞାନୀମାନେ ପ୍ରାୟ ଏକମତ ହୋଇ ବଣ୍ଡିଙ୍କ ସିଦ୍ଧାନ୍ତକୁ ଭୁଲ୍‌ବୋଲି ପ୍ରମାଣ କରିଅଛନ୍ତି । କାରଣ ଏହି ତତ୍ତ୍ୱରେ ମାଇକ୍ରୋ ରଶ୍ମିର ଅସ୍ତିତ୍ୱ ସମ୍ବନ୍ଧରେ କୌଣସି ଅବଧାରିତ ନିୟମ ବିଷୟରେ ଗ୍ରହଣଯୋଗ୍ୟ ବ୍ୟାଖ୍ୟା ମିଳେନାହିଁ । ଏହାଛଡା ରେଡିଓ ଜ୍ୟୋତିବିଜ୍ଞାନର ଆବିଷ୍କାରରୁ ଏହା ପ୍ରତିପାଦିତ ହୋଇଅଛି ଯେ ଏହି ମହାବିଶ୍ୱ ଅନନ୍ତ କାଳଧରି ଏକ ଭାବରେ ପ୍ରତିଭାତ ହୋଇନଥିଲା । ଅନ୍ୟ ଦିଗରେ ଏହା ସୁସ୍ପଷ୍ଟ ଭାବରେ ପ୍ରମାଣିତ ହୋଇଛି ଯେ ଏହି ମହାବିଶ୍ୱର ଏକ ମହାନ ବିବର୍ତ୍ତନ ଯୁଗଯୁଗ ଧରି ପରିଲକ୍ଷଣୀୟ । ଏହାର କ୍ରମବିକାଶ ଏକ ଅବଧାରିତ ସତ୍ୟ । ଏହାଛଡା ବର୍ତ୍ତମାନ ଏକ ସ୍ମରଣୀୟ ଆବିଷ୍କାର ହୋଇଅଛି ଅତି ସୂକ୍ଷ୍ମାତି ସୂକ୍ଷ୍ମ ପରୀକ୍ଷା ନିରୀକ୍ଷା ଓ ଗବେଷଣାରୁ ନିର୍ଦ୍ଧାରିତ ହୋଇଅଛି; ନିହାରିକା ସୃଷ୍ଟିର ପୂର୍ବକାଳରେ ଆଦିମବସ୍ତୁ କିପରି ଭାବରେ ସୁଗଠିତ ହୋଇ (crystalised) ବିଶ୍ୱ ସୃଷ୍ଟିର ପ୍ରଥମ ସୋପାନ ସୃଷ୍ଟି କରିଥିଲା । ଏହି ଗବେଷଣାରୁ ବୈଜ୍ଞାନିକମାନେ ଏକ ଦୃଢ଼ ବିଶ୍ୱାସରେ ଉପନୀତ ହୋଇ ଅଛନ୍ତି ଯେ ଏହି ବିଶ୍ୱ ସୃଷ୍ଟିର ପ୍ରାକ୍ କାଳରେ ଅନ୍ୟ ଭାବରେ ପ୍ରକାଶିତ ଥିଲା । ବିବର୍ତ୍ତନର ବିଶେଷ ପ୍ରଭାବରେ ଏହା ଆଦି ଯୁଗର ପ୍ରକାଶିତ ରୂପରୁ ବର୍ତ୍ତମାନ ସମ୍ପୂର୍ଣ୍ଣ ଭାବେ ଅନ୍ୟରୂପରେ ଉଦ୍‌ଭାସିତ ।

ଗୋଟିଏ ବିଶେଷ ସିଦ୍ଧାନ୍ତ ଉପରେ ବିଚାର କଲେ ପ୍ରଶ୍ନ ଉଠେ ପ୍ରସିଦ୍ଧ ବୈଜ୍ଞାନିକ ଆଇନଷ୍ଟାଇନଙ୍କର ଆବିଷ୍କୃତ ଆପେକ୍ଷିକତା ବାଦ (Theory of Relativity) କୁ ବିଶ୍ୱାସ କଲେ "ମହାବିକ୍ଷୋଭ" ତତ୍ତ୍ୱ କ'ଣ ସମ୍ପୂର୍ଣ୍ଣରୂପେ ଗ୍ରହଣ ଯୋଗ୍ୟ ? ଏହା କ'ଣ ଏକାବେଳେକେ ଅପରିହାର୍ଯ୍ୟ ତଥ୍ୟ ରୂପେ ଉଦ୍‌ଭାସିତ ହୁଏ ? ଦୁଇ ଜଣ ମହାବିଜ୍ଞାନୀ, ରଜର ପେନ୍‌ରୋଜ ଓ ଷ୍ଟିଫେନ ହକିଂଙ୍କ ମତ ହେଲା ମହାବିକ୍ଷୋଭ (Big Bang) ତତ୍ତ୍ୱ ଅବିସଂବାଦିତ ସତ୍ୟ । ଏହା ପରିହାରଯୋଗ୍ୟ ନୁହେଁ କେବେହେଲେ । ଏହାକୁ ଖଣ୍ଡିତ କରିବାକୁ ହେଲେ କ୍ୱାଂଟଂ ତତ୍ତ୍ୱର ସାହାଯ୍ୟ ନେଇ ଏହାର ସତତାକୁ ଘନତ୍ୱ ବିଚାରରେ ଭ୍ରମାତ୍ମକ ବୋଲି ପ୍ରମାଣ କରିବାକୁ ହେବ । ସେଥିପାଇଁ ସମ୍ପୂର୍ଣ୍ଣରୂପେ ନିର୍ଭରଯୋଗ୍ୟ ପ୍ରମାଣର ବିଶେଷ ଆବଶ୍ୟକତା ପଡିବ । ମାତ୍ର ଏହି ପ୍ରଚେଷ୍ଟା ଅତ୍ୟନ୍ତ ଦୁରୁହ । ସୁଦୂର ପରାହତ କହିଲେ ଅତ୍ୟୁକ୍ତି ହେବନାହିଁ । କାରଣ ସୃଷ୍ଟିର ଆଦି ମୁହୂର୍ତ୍ତରେ ମହାବିଶ୍ୱର ଘନତ୍ୱ ଅଭାବନୀୟ ଭାବେ ଅସୀମ । ଅନଧିଗମ୍ୟଭାବେ ଅପରିମେୟ । ଏହି ଘନତ୍ୱର ମାପକାଠି କ'ଣ ମାନବ ପକ୍ଷରେ ତିଆରି କରିବା ସମ୍ଭବପର ? କାରଣ ଏପରି ଅବସ୍ଥାରେ

ଆଇନଷ୍ଟାଇନ୍‌ଙ୍କ ସୂତ୍ର ଗୁଡିକର ଗାଣିତ୍ୟିକ ପ୍ରୟୋଗ ଅସମ୍ଭବ । ଆଉ କ୍ୱାଂଟଂ ତତ୍ତ୍ୱ ସହିତ ସାଧାରଣ ଆପେକ୍ଷିକତାବାଦକୁ ସଂଯୋଜନ କରିବା ମଧ୍ୟ ଦୁଷ୍କର । ଏପରି ଅବସ୍ଥାରେ ମହାବିକ୍ଷୋଭ ତତ୍ତ୍ୱକୁ ଗ୍ରହଣ କରିବାଛଡା ଗତ୍ୟନ୍ତର ନାହିଁ । ଏହା ହକିଂଙ୍କର ଦୃଢ଼ ମତ, ବହୁ ସୌର ବିଜ୍ଞାନୀ ମାନଙ୍କ ଦ୍ୱାରା ପରିପୁଷ୍ଟ ଓ ଦୃଢ଼ିକୃତ । ଏହା ଏ ଯୁଗର ବିଜ୍ଞାନୀ ମାନଙ୍କର ସୁଦୃଢ଼ ଧାରଣା ଉପରେ ପ୍ରତିଷ୍ଠିତ । ମାତ୍ର ଏହାକ'ଣ ଶେଷ ମୀମାଂସା ? ବିଜ୍ଞାନ ପ୍ରଗତିଶୀଳ, ଏହା ଏକ ସ୍ଥାଣୁ ଧାରଣା ବିଶିଷ୍ଟ ଜ୍ଞାନର ଧାରା ନୁହେଁ । ଏହା ଏକ ଆବଦ୍ଧ ଜଳାଧାର ନୁହେଁ । ଏହା ନିତ୍ୟନୂତନ ଆବିଷ୍କାର ଓ ଉଦ୍‌ଭାବନ ଦ୍ୱାରା ସମୃଦ୍ଧ । ଏହା ଏକ ଚଳମାନ ଓ ପ୍ରବହମାନ ସ୍ରୋତସ୍ୱିନୀ । ଏଥିରେ କୁଟାକାଠି ଭଳି ବହୁ ଧ୍ୟାନ ଧାରଣା ମତବାଦ ଭ୍ରମାତ୍ମକ ତଥ୍ୟ ଓ ପ୍ରତିଷ୍ଠିତ ତତ୍ତ୍ୱ ଏକ ପ୍ରଣାଳୀରେ ଭାସି ବୁଲୁଛନ୍ତି । ଏହି ସବୁ ତତ୍ତ୍ୱ ନିର୍ଦ୍ଧାରଣ ପ୍ରଚେଷ୍ଟାର ଆଦି ଅନ୍ତ ନାହିଁ । ଆଜି ଏକ ତଥ୍ୟ ଦୃଷ୍ଟିଗୋଚର ହେଲା ତ କାଲି ଆଉ ଗୋଟିଏ । ଏ ଗୁଡିକ ସଂଗ୍ରହ କରି ଏକ ସନ୍ତୁଳନରେ ଉପସ୍ଥିତ ହେବାର ପ୍ରଚେଷ୍ଟା ମନୁଷ୍ୟର ବୁଦ୍ଧିର ଉନ୍ମେଷ ହେବା ସମୟରୁ ଜାଗ୍ରତ ରହିଅଛି । ଫଳରେ ବହୁ ତତ୍ତ୍ୱ, ତଥ୍ୟ, ସିଦ୍ଧାନ୍ତ ସ୍ଥିର ହେବାପରେ ପୁଣି ନୂତନ ତଥ୍ୟର ଆଲୋକରେ ଅନ୍ଧକାର ଗର୍ଭକୁ ଚାଲିଯାଉ ଅଛନ୍ତି । ସେହିପରି "ମହାବିକ୍ଷୋଭ - ତତ୍ତ୍ୱ" ବିପକ୍ଷରେ କେତେକ ବିଷୟ ବର୍ତ୍ତମାନ ଯୁଗରେ ବିଚାର ଯୋଗ୍ୟ ବୋଲି ବିବେଚିତ ହୋଇଅଛି । ମାତ୍ର ତାହା ଏହି ତତ୍ତ୍ୱକୁ ସମ୍ପୂର୍ଣ୍ଣ ଭାବରେ ପ୍ରତ୍ୟାଖ୍ୟାନ କରିପାରିନାହିଁ । ଏପର୍ଯ୍ୟନ୍ତ ଏହି ତତ୍ତ୍ୱ ସର୍ବଜ୍ଞାନ-ସମ୍ମତ ମହତ-ଆବିଷ୍କାରର ତେଜରେ ଉଦ୍‌ଭାସିତ ହୋଇ ରହିଅଛି ।

ସୌରବିଜ୍ଞାନୀ ମାନଙ୍କର ମତରେ "ମହାକାଳ" (time) ୧୦ କୋଟିରୁ ୨୦ କୋଟି ବର୍ଷପୂର୍ବେ ଆରମ୍ଭ ହୋଇଥିଲା । ମାତ୍ର ଏପରି ଧାରଣାର ଅସ୍ତିତ୍ୱ ବିଷୟରେ ଦୃଢ଼ଯୁକ୍ତିର ଅଭାବ ରହିଅଛି । ତେଣୁ ସେବିଷୟରେ ଘୋର ମତଦ୍ୱୈଧ ବର୍ତ୍ତମାନ ପ୍ରଚଳିତ । ସେହିପରି ମହାବିକ୍ଷୋଭ ସମ୍ବନ୍ଧରେ ମଧ୍ୟ ମତାନୈକ୍ୟ ବିଦ୍ୟମାନ । ମହାବିକ୍ଷୋଭ ତତ୍ତ୍ୱର ପ୍ରାଧାନ୍ୟ ୧୯୨୦ରେ ହବଲ୍‌ଙ୍କ ଆବିଷ୍କାରରୁ ଉଦ୍‌ଭୂତ । ଏହି ବିଶ୍ୱ କ୍ରମବର୍ଦ୍ଧିତ ହୋଇ ବର୍ତ୍ତମାନ ସ୍ୱରୂପରେ ବିକଶିତ ହୋଇଅଛି । ଏ ବିଷୟରେ ଚିନ୍ତା କରିବାକୁ ହେଲେ କ୍ରମ ଅପସୃୟମାନ ଜଗତର କ୍ରମବର୍ଦ୍ଧନର ମାପ କରିବା ଆବଶ୍ୟକ । ଏହି ବିଶ୍ୱର ସଂପ୍ରସାରଣର ମାପ ସାଧାରଣତଃ ଅନ୍ୟ ନିହାରିକା ମାନଙ୍କର ଗତିରୁହିଁ ନିରୁପିତ ହୋଇଥାଏ । ଯେତେବେଳେ ନିହାରିକାମାନେ ଦ୍ରୁତ ଗତିରେ ଅଗ୍ରସର ହୁଅନ୍ତି, ସେମାନଙ୍କର ଗତିରୁ ସୃଷ୍ଟିହୁଏ ଏକରକମର ରକ୍ତିମ ଅପସାରଣ (red shift), କାରଣ ଗତି ଯୋଗୁ ନିର୍ଦ୍ଦିଷ୍ଟ ରକ୍ତିମ ଆଭା ପରିମିତ ପରିମାଣରେ ନିର୍ଗତ ହୋଇ ଏକ ଦୂରତ୍ୱବୋଧର ଇଙ୍ଗିତ ନେଇଥାଏ । ମାତ୍ର ମାଧ୍ୟାକର୍ଷଣ

ଶକ୍ତି ଏହି ଗତିକୁ ସୀମିତ କରିଦିଏ । ଏହି ମାଧ୍ୟାକର୍ଷଣ ଶକ୍ତି ନିର୍ଭର କରେ ଏହି ବିଶ୍ୱମଧ୍ୟରେ ପରିପୂର୍ଣ୍ଣ ଜଡ ପଦାର୍ଥ ଉପରେ (matter) । କିନ୍ତୁ ଏହି ଜଡ଼ର ସମଷ୍ଟିଗତ ପରିମାପ ଏ ପର୍ଯ୍ୟନ୍ତ ଜଣାଯାଇନାହିଁ । ନିର୍ଭରଯୋଗ୍ୟ ହିସାବ ଅଭାବରୁ ଗତିର ନିରୁପଣ ବିଷୟରେ ମତଭେଦ ସୁସ୍ପଷ୍ଟରୂପେ ପ୍ରତିଭାତ ବିଜ୍ଞାନୀ ମାନଙ୍କ ମଧ୍ୟରେ । ଏହା ସହିତ ସଂପ୍ରସାରଣର ବେଗର ଅନିଶ୍ଚୟତା ଯୁକ୍ତହେଲେ, ବିଶ୍ୱର ବୟସ ନିରୁପଣ ଅନେକ ପରିମାଣରେ ବାଧାପ୍ରାପ୍ତ ହୁଏ । ଏସବୁ ସତ୍ତ୍ୱେ, ସାଧାରଣତଃ ଏ ବିଶ୍ୱର ବୟସ ୧୦କୋଟିରୁ କୋଡିଏ କୋଟି ବର୍ଷ ବୋଲି ପ୍ରତୀୟମାନ ହୁଏ । ଆଉଗୋଟିଏ ଦିଗରୁ ମହାବିକ୍ଷୋଭ ତତ୍ତ୍ୱ ପ୍ରତି ସନ୍ଦେହ ଜାତ ହୋଇଅଛି । ତାରାମାନଙ୍କର ବୟସ ନିର୍ଦ୍ଧାରଣ ଅନ୍ୟ ଏକ ପଦ୍ଧତିରେ କରାଯାଏ । ଏହି ପଦ୍ଧତି ପ୍ରୟୋଗ କରିବାପରେ ଦେଖାଗଲା ଯେ କେତେକ ତାରାଙ୍କର ବୟସ ୧୫କୋଟି ବର୍ଷ ବା ଆହୁରି ଅଧିକ । ଅତଏବ ୧୦ କୋଟି ବର୍ଷ ବୟସ ବିଶିଷ୍ଟ ବିଶ୍ୱରେ ୧୫କୋଟି ବୟସ୍କ ତାରା ରହିବା ଅସମ୍ଭବ । ଏପରି ଅବସ୍ଥାରେ ଭାବିବାକୁ ହେବ ଯେ ବିଶ୍ୱର ବୟସସୀମା ନିର୍ଭୁଲ ଭାବରେ ନିରୂପଣ କରାଯାଇନାହିଁ । ହବଲ୍‌ଙ୍କ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ବହୁଦୂରରେ ଅବସ୍ଥିତ ନିହାରିକା ମାନଙ୍କ ମଧ୍ୟବର୍ତ୍ତୀ ତାରାମାନେ ଛ'କୋଟି ଆଲୋକବର୍ଷ ଦୂରରେ ଥିବା ନିରୁପିତ ହୋଇଅଛି । ଏହି ତାରାମାନଙ୍କ ମଧ୍ୟରେ କେତେକ ବିଶିଷ୍ଟ ତାରା ଏକ ବିଶେଷ ଧରଣର ଆଲୋକ ବିଚ୍ଛୁରିତ କରନ୍ତି । ଏମାନଙ୍କୁ Ceptoid variable ବୋଲି ଅଭିହିତ କରାଯାଏ । ଏମାନଙ୍କର ବିଚ୍ଛୁରଣ ପ୍ରଭାବରୁ, ଅନ୍ତର୍ନିହିତ ଉଜ୍ଜ୍ୱଳତାର ପରିମାପ କରାଯାଇଥାଏ । ପୃଥିବୀର ଉଜ୍ଜ୍ୱଳତା ସହିତ ତୁଳନାତ୍ମକ ପରିମାପ କରି ଏହାର ପୃଥିବୀଠାରୁ ଦୂରତ୍ୱର ହିସାବ କରାହୁଏ । ଏହି ପଦ୍ଧତି ବହୁପରିମାଣରେ ନିର୍ଭର ଯୋଗ୍ୟ ଓ ବିଜ୍ଞାନୀ ମଣ୍ଡଳରେ ବିଶେଷଭାବରେ ସ୍ୱୀକୃତ ଓ ଆଦୃତ ମଧ୍ୟ । ଯେତେବେଳେ ସୌର ବିଜ୍ଞାନୀ ମାନେ ଏକ ନିହାରିକାର ଦୂରତ୍ୱ କଳନା କରି ଏହାର ରକ୍ତିମ ଆଭା ନିରୁପଣ କରିବାରେ ସଫଳ ହୁଅନ୍ତି, ସେତେବେଳେ ସେମାନେ ବିଶ୍ୱର ସଂପ୍ରସାରଣ ଗତିର ରୂପରେଖ ନିର୍ଦ୍ଧାରଣ କରିବାକୁ ସକ୍ଷମ ହୁଅନ୍ତି । ଏକ ବର୍ଷ ଆଗେ, ସେମାନେ ଏହି ପଦ୍ଧତିରେ କନ୍ୟା ରାଶି ସ୍ଥିତ ନିହାରିକା ପୁଞ୍ଜର ଗତି ନିରୁପଣ କରି ଦେଖିଲେ ଯେ ଏହା ସୌର ବିଜ୍ଞାନୀମାନିଙ୍କର ପୂର୍ବଧାରଣାରୁ ଦ୍ୱିଗୁଣିତ ଗତିରେ ଧାବମାନ । ଏହି ହିସାବରେ ନିର୍ଦ୍ଧାରିତ ହେଲେ, ମହାବିଶ୍ୱର ବୟସ ୮ ରୁ ୧୨ କୋଟି ବର୍ଷ ହେବ । ଏହା ମହାବିକ୍ଷୋଭ ତତ୍ତ୍ୱର ପରିମାପ ବିରୁଦ୍ଧରେ ଇଙ୍ଗିତ ଦିଏ ।

ସିଂହ ରାଶି ସ୍ଥିତ ନିହାରିକାପୁଞ୍ଜଙ୍କ ଗତି ବିଷୟରେ କେତେକ ଇଂରେଜ-ଅନୁସନ୍ଧାନକାରୀ ଦଳ ପରୀକ୍ଷା କରି ଦେଖିଲେ ଯେ ସଂପ୍ରସାରଣର ବେଗ ଅନେକ ବେଶୀ ।

ମାତ୍ର ଏହି ପରୀକ୍ଷା କେତେକ ସଂପୃକ୍ତ ତଥ୍ୟ ପ୍ରତି ଧ୍ୟାନ ଦେଇନାହିଁ । ଯେପରି ନଦୀ ବକ୍ଷରେ ଜଳର ବେଗ ସର୍ବତ୍ର ସମାନ ନୁହେଁ - କାରଣ ତଟପ୍ରାନ୍ତରେ ଅନେକ କୁଟା, କାଠି, ଗଛପତ୍ର, ଲତା ଇତ୍ୟାଦି ବେଗକୁ ସୀମିତ କରି ରଖେ; ମାତ୍ର ନଦୀର ମଧ୍ୟଭାଗର ସ୍ରୋତ ଅପ୍ରତିହତ ଅବସ୍ଥାରେ ବେଗବାନ ହୁଏ । ସେହିପରି ମହାବିଶ୍ୱର ବହୁ ବସ୍ତୁ, ପିଣ୍ଡ, ପଦାର୍ଥ ଅଛି ଯାହା ସ୍ରୋତସ୍ୱିନୀ ନଦୀର ମଧ୍ୟଭାଗରେ ଅବସ୍ଥିତ ନୁହେଁ । ସେମାନଙ୍କର ବେଗ ମଧ୍ୟ-ସ୍ରୋତ ସହିତ ସମାନ ନହୋଇ ପାରେ । ତେଣୁ ବେଗର ପରିମାଣ ନିର୍ଦ୍ଧାରଣ ଦୁରୁହ । ହବଲ୍‌ଙ୍କ ଦୂରବୀକ୍ଷଣ ଯନ୍ତ୍ର ବହୁଦୂରବର୍ତ୍ତୀ ସୌର ପଦାର୍ଥ (Cephoids) ଅନ୍ୱେଷଣରେ ଅସଫଳ । ଏହିପରି ନାନା କାରଣରୁ ମହାବିଶ୍ୱର ବୟସ ନିର୍ଦ୍ଧାରଣରେ ମତପ୍ରଭେଦ ଦେଖାଯାଉଅଛି । ଅନ୍ୟ ଏକ ମତରେ ମାଧ୍ୟାକର୍ଷଣ ଶକ୍ତି ଛଡା ଅନ୍ୟ ଏକ ଶକ୍ତି ମଧ୍ୟ ମହା ସମ୍ପ୍ରସାରଣକୁ ବାଧା ଦେଉଅଛି ଯାହାଫଳରେ ସଂପ୍ରସାରଣର ବେଗ କଳନୀୟ-ଧାରା ଅନୁସାରେ ଦୃଢ଼ ହୋଇପାରୁନାହିଁ । ୧୯୧୭ ସାଲରେ ଆଇନ୍‌ଷ୍ଟାଇନ୍ କହିଥିଲେ ଯେ ଅନ୍ୟଏକ ଶକ୍ତି ଏହି ସଂପ୍ରସାରଣକୁ ପ୍ରତିହତ କରୁଅଛି । ମାତ୍ର ସୌର ସନ୍ଧାନୀମାନେ ଏହି ଉକ୍ତିକୁ ଗୁରୁତ୍ୱ ଦେବାକୁ ଅନିଚ୍ଛୁକ । ନାନା ଧାରଣାର ବିରୋଧାଭାସରେ ବର୍ତ୍ତମାନର ତଥ୍ୟରାଜି ମନ୍ଦୀକୃତ ଅବସ୍ଥାରେ ଉପନୀତ ହୋଇଅଛନ୍ତି ।

ଅନ୍ୟ ଏକ ବିଶ୍ଳେଷଣରୁ ମହାବିକ୍ଷୋଭ ତତ୍ତ୍ୱ ଦ୍ୱନ୍ଦ୍ୱର ସମ୍ମୁଖୀନ ହୋଇଅଛି । ମହାବିଜ୍ଞାନୀ ଷ୍ଟିଫେନହକିଂର ବିଶିଷ୍ଟ ତଥ୍ୟ ହେଲା ଯେ ଅନ୍ଧକାର ଗହ୍ୱର ବା Black Hole ଗୁଡିକ ଶେଷରେ ଶୂନ୍ୟରେ ମିଳାଇଯାଏ ବାଷ୍ପ ଆକାରରେ । ତାହାର ଚିହ୍ନ ରହେନାହିଁ । କିନ୍ତୁ ଏହି ତଥ୍ୟ ବିରୋଧରେ ଜଣେ ଋଷୀୟବୈଜ୍ଞାନିକ ସ୍ୱର ଉତ୍ତୋଳନ କରିଛନ୍ତି । ପ୍ରକୃତ ପକ୍ଷେ ଜନ୍ ହ୍ୱିଲର ୧୯୬୮ ରେ ଏହି ଅନ୍ଧକାର ଗୌହର ବିଷୟରେ ଲେଖିଥିଲେ ଯେ ଏଗୁଡିକ ବିଶାଳ ଆଲୋକ ଖାଦକ ପ୍ରବଳ ମାଧ୍ୟାକର୍ଷଣ-ଶକ୍ତି-ବିଶିଷ୍ଟ ପ୍ରଚଣ୍ଡ ଶକ୍ତି ସମ୍ପନ୍ନ ସୌର ଜଗତର ଏକ ବିସ୍ମୟକର ସୃଷ୍ଟି । ତାଙ୍କ ପୂର୍ବରୁ ଲାପ୍ଲାସ୍ କହିଥିଲେ ଯେ ଏହି ଗହ୍ୱର ଏକ ମହାଜାଗତିକ ବସ୍ତୁ ଯାହାର ମାଧ୍ୟାକର୍ଷଣ ଶକ୍ତି ଏତେ ପ୍ରବଳ ଯେ ଆଲୋକ ଏହା ମଧ୍ୟରୁ ବାହାରକୁ ନିର୍ଗତ ହୋଇପାରେ ନାହିଁ । ହକିଂକର ବିଶ୍ୱବିଖ୍ୟାତ ପୁସ୍ତକ ''ସମୟର ସକ୍ଷିପ୍ତ ଇତିହାସ'' ପଢିବାପରେ ସାଧାରଣ ମାନବର ଏହି ବିଷୟରେ ଅଦ୍ଭୁତପୂର୍ବ ଚିନ୍ତାବିଳାସ ଉତ୍‌ପନ୍ନ ହୋଇଅଛି । ଏହି ଗହ୍ୱରର ଅସ୍ତିତ୍ୱ ପ୍ରମାଣ କରିବାଲାଗି ବହୁ ଗାଣିତିକ ବିଶ୍ଳେଷଣ କରାଯାଇ, ସୂତ୍ର ସାହାଯ୍ୟରେ ଏହାର ସ୍ଥିତି ନିରୂପିତ ହୋଇଅଛି । କିନ୍ତୁ ପ୍ରକୃତରେ କହିବାକୁ ଗଲେ ଏହି ଗହ୍ୱରର ବାସ୍ତବତା ସୌର ବିଜ୍ଞାନର ରଞ୍ଜନରଶ୍ମି ପରୀକ୍ଷାରେ ନିର୍ଦ୍ଧାରିତ ସତ୍ୟ । ଏଥିପାଇଁ ଗାଣିତିକ ବିଶ୍ଳେଷଣ ଅନାବଶ୍ୟକ ମନେହୁଏ । ମାତ୍ର ସେମାନଙ୍କର

ଅନ୍ତର୍ନିହିତ ଗୁଣାବଳୀ ବିଷୟରେ ନାନା ମତବାଦ ପ୍ରକାଶିତ । ସେଥିରୁ ମତଭେଦ ମଧ୍ୟ ଦୃଷ୍ଟି ଗୋଚର ହୁଏ । ଯଥା - କେତେକଙ୍କ ମତରେ ଏହି ଅନ୍ଧକାର ଗହ୍ୱରର ଆକାର କମିଯିବାର ସମ୍ଭାବନା ନାହିଁ । ଅପର ପକ୍ଷରେ ଏହାର ଆକାର ବୃଦ୍ଧିହେବାର ସମ୍ଭାବନା ଯଥେଷ୍ଟ । ଏ ବିଷୟରେ ମହାବିଜ୍ଞାନୀ ହକିଂ ବିଶେଷଭାବରେ ଅନୁସନ୍ଧାନ କରିଥିଲେ । ୧୯୭୪ ସାଲରେ ସେ ଏହି ବିଷୟରେ ପୁଙ୍ଖାନୁପୁଙ୍ଖ ବିଚାର କରି ଏହି ସିଦ୍ଧାନ୍ତରେ ଉପନୀତ ହେଲେ ଯେ ଏହି ଗୌହର ଗୁଡିକ ବାଷ୍ପରେ ମିଳାଇଯାଇ ପାରନ୍ତି । ବିଶେଷଭାବରେ କ୍ଷୁଦ୍ର ଗହ୍ୱର ଗୁଡିକର ଅନ୍ତର୍ଦ୍ଧାନ ହୋଇଯିବାର ସମ୍ଭାବନା ଅତ୍ୟଧିକ । ସେ ଗହ୍ୱର ବସ୍ତୁଟି କ୍ଷୁଦ୍ରଅଣୁରେ ରୂପାନ୍ତରିତ ହୋଇ ମହାକାଶର ଶୂନ୍ୟରେ ବିଲୀନ ହୋଇଯାଏ । ଏହି ପ୍ରଣାଳୀଟି ''ହକିଂଙ୍କ ବିକିରଣ'' ବୋଲି ପରିଚିତ (Hawkings Radiation) । ମାତ୍ର ଏ ବିଷୟରେ ଗଭୀର ଗବେଷଣା କରି ଜଣେ ଋଷୀୟ ବୈଜ୍ଞାନିକ, ବେଲସିଂକି, ଏହି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ ହକିଂଙ୍କର ମତ ଗାଣିତ୍ୟିକ ସୁତ୍ର ଉପରେ ଚେଷ୍ଟାକୃତ ରୂପରେ ଆରୋପିତ । ଏହା ପ୍ରକୃତରେ ବିଜ୍ଞାନର ତଥ୍ୟ ଉପରେ ପ୍ରତିଷ୍ଠିତ ନୁହେଁ । ଏପରି (radiation) ବିକିରଣ ଏକାବେଳେକେ ଅସମ୍ଭବ । କ୍ଷୁଦ୍ର ଅନ୍ଧକାର-ଗହ୍ୱର ଗୁଡିକ କିପରି ଭାବରେ ଆକାଶରେ ମିଳାଇ ଯାଇପାରେ ଏହା ଜନସାଧାରଣଙ୍କର ଧାରଣାତୀତ । ଯାହାହେଉ, ହକିଂଙ୍କର ସିଦ୍ଧାନ୍ତ ଭବିଷ୍ୟତର ବୈଜ୍ଞାନିକ ପରୀକ୍ଷା ନିରୀକ୍ଷା ଉପରେ ନିର୍ଭରଶୀଳ । ଏହାର ସତତା ପ୍ରମାଣ ଯୋଗ୍ୟ । ଏଥିରୁ ଏହା ପ୍ରତୀୟମାନ ହେଉଛି ଯେ ମହାବିଶ୍ୱ-ତତ୍ତ୍ୱ ''ମହା ବିକ୍ଷୋଭ'' ଉପରେ ଏକାନ୍ତ ଭାବରେ ସ୍ଥିର ନିଶ୍ଚୟ ବା ସ୍ଥିର ନିର୍ଭର ନୁହେଁ ।

କିଛିଦିନ ପୂର୍ବେ ବାଙ୍ଗାଲୋର ସହରରେ ସୌରବିଜ୍ଞାନୀ ମାନଙ୍କର ଏକ ମହାନ ସମାବେଶ ହୋଇଥିଲା । (JNCASR ଙ୍କ ସୌଜନ୍ୟ ଯୋଗୁ) । ବିଷୟବସ୍ତୁ ଥିଲା ''ମହାବିକ୍ଷୋଭ ତତ୍ତ୍ୱ ଓ ବିକଳ୍ପ ସୃଷ୍ଟିତତ୍ତ୍ୱ ବିଷୟରେ ଏକ ଗଭୀର ଆଲୋଚନା'' ଏଥିରେ ପାଶ୍ଚାତ୍ୟ ମନୀଷିମାନେ ବହୁ ସଂଖ୍ୟାରେ ଯୋଗ ଦେଇଥିଲେ । ମହାବିକ୍ଷୋଭ ତତ୍ତ୍ୱର ସମର୍ଥକ ଯେତିକିଥିଲେ ସେମାନଙ୍କଠାରୁ ବେଶୀ ସଂଖ୍ୟାରେ ଯୋଗଦେଇଥିଲେ ବିରୋଧି ଗୋଷ୍ଠୀର ବୈଜ୍ଞାନିକମାନେ ଯୟନ୍ତବିଷ୍ଣୁ ନାର୍ଲିକର ଥିଲେ ସେମାନଙ୍କ ମଧ୍ୟରେ ଅନ୍ୟତମ ।

୧୯୪୮ ସାଲରେ ମହାନ ସୌର ବିଜ୍ଞାନୀ ଫ୍ରେଡହଏଲ୍, ହରମାନବଣ୍ଡି ଓ ଟମାସ୍ ଗୋଲ୍ଡ ସ୍ଥିର-ବିଶ୍ୱ-ତତ୍ତ୍ୱରେ ବିଶ୍ୱାସ କରିଥିଲେ । ମହାଶୂନ୍ୟରୁ ବିଶ୍ୱର ଉତ୍ପତ୍ତି ହୋଇଛି ବୋଲି ସେମାନଙ୍କର ବିଶ୍ୱାସ ହେଲାନାହିଁ । ସେମାନେ କହିଲେ ଯେ ମହାବିଶ୍ୱର ସଂପ୍ରସାରଣ କ୍ଷେତ୍ରରେ ଶୂନ୍ୟସ୍ଥାନ ପୂରଣ କରୁଛି ନୂଆ ବସ୍ତୁର ଚିରନ୍ତନ ସୃଷ୍ଟି, ମହାସଂପ୍ରସାରଣ ସହିତ ତାଳ ରକ୍ଷାକରି । କିନ୍ତୁ ଏହି ତତ୍ତ୍ୱ ୧୯୬୫ ରେ ପେନ୍‌ଜିଆସ୍ ଓ

ଉଇଲ୍‌ସନଙ୍କ ଧ୍ୱନିତରଙ୍ଗ ଆବିଷ୍କାର ପରେ ବିଶ୍ୱାସଯୋଗ୍ୟ ବୋଲି ବିବେଚିତ ହେଲାନାହିଁ । ମାତ୍ର ମହାବିକ୍ଷୋଭ ତତ୍ତ୍ୱର ପ୍ରସାରପରେ ମଧ ବହୁ ସମସ୍ୟା ପ୍ରତୀୟମାନ ହେଲା । ବିଜ୍ଞାନୀମାନେ ଦେଖିଲେ ଯେ ସର୍ବତ୍ର ଏକ ସାମଞ୍ଜସ୍ୟପୂର୍ଣ୍ଣ ବିକିରଣ ସମଗ୍ର ବିଶ୍ୱରେ ପ୍ରସାରଣଶୀଳ ହୋଇ ରହିଅଛି । ମାତ୍ର ମହାବିକ୍ଷୋଭ ଉପରେ ଏପରି ସାମଞ୍ଜସ୍ୟ ହେବାର ସମ୍ଭାବନା ନଥିଲା । ବିକ୍ଷୋଭ ଜନିତ ମହାକାଶର ପିଣ୍ଡରାଜି ବିକ୍ଷୁବ୍ଧ ଭାବରେ ଦୂରଦୂରାନ୍ତରରେ ବିସ୍ତୃତ ହେବାର ପ୍ରବଳ ସମ୍ଭାବନା ଥିଲା । ଏହି ବିକ୍ଷୁବ୍ଧ ପିଣ୍ଡରୁ ସାମଞ୍ଜସ୍ୟ ପୂର୍ଣ୍ଣ ମହାକାଶ ବକ୍ଷରେ ବିସ୍ତୃତ ପିଣ୍ଡରାଜିର ଉଦ୍‌ଭବର ପ୍ରମାଣ ସ୍ୱରୂପ ସେହି ମୂଳ ନିହାରିକା ଗୁଡିକର ଅସ୍ତିତ୍ୱ ନାହିଁ । ସେଗୁଡିକ ଗଲେ କୁଆଡେ ? ୧୯୯୨ ସାଲରେ ‘‘ନାସା’’ (NASA) ପ୍ରେରିତ ଉପଗ୍ରହରୁ ସନ୍ଧାନ ମିଳିଲାଯେ ମହାବିଶ୍ୱର ଅନ୍ୟ ସ୍ଥାନରୁ ବିକିରଣ ହେଉଥିବା ତାପ ଏକ ଡିଗ୍ରିର ୧/୧୦୦,୦୦୦ ପରିମାଣରେ ବେଶୀ ଥଣ୍ଡା ଆମର ଜ୍ଞାତ ହିସାବ ଅପେକ୍ଷା । ଏହି ଆବିଷ୍କାରରେ ଉଦ୍‌ବୁଦ୍ଧ ହୋଇ ଷ୍ଟିଫେନ ହକିଂସ୍ କହିଲେ ଏହା ଏହି ଶତାବ୍ଦୀର ମହାନ୍‌ତମ ଆବିଷ୍କାର; ସର୍ବ ଯୁଗର ମହତ୍ତମ ମଧ ହୋଇପାରେ । ଏହା ମହାବିକ୍ଷୋଭ ତତ୍ତ୍ୱକୁ ପ୍ରମାଣ କରୁଅଛି ।

ମାତ୍ର ବିରୋଧିବାଦୀ ବୈଜ୍ଞାନିକମାନେ ଏବେ ମଧ ସକ୍ରିୟ ଅଛନ୍ତି । ବାଙ୍ଗାଲୋର ସମ୍ମେଳନ ଏହାର ପ୍ରମାଣ ଦେଇଛି । ଆଲଫ୍ରେଡ ହୋଏଲ୍, ନାରଲିକର, ଜିଓଫ୍ରି ବରବ୍ରିଜ, ପ୍ରଭୃତି ସ୍ଥିର - ସ୍ଥିତି ତତ୍ତ୍ୱର ସମର୍ଥକ । ସେମାନେ ଏହି ବିଷୟରେ ଦୃଢ଼ ମତ ବ୍ୟକ୍ତ କରିଥିଲେ । ଅଧାପକ ଆର୍ପ କହିଲେ ଯେ କ୍ୱାସାର ଗୁଡିକରୁ ଆମର ସୂର୍ଯ୍ୟ ଅପେକ୍ଷା ବହୁ ବହୁ ଗୁଣ ଆଲୋକରଶ୍ମି ନିର୍ଗତ ହେଉଅଛି । ଏହା କିପରି ସମ୍ଭବ ହେଲା ? ଲୋହିତ ରଶ୍ମି ବିକିରଣ ତାରତମ୍ୟ ମଧ ଦୁର୍ଜ୍ଞେୟ । କେତେକ କ୍ୱାସାର ନିହାରିକା ପୁଞ୍ଜର ଅନ୍ତର୍ଗତ ହେଲେହେଁ ସେମାନଙ୍କର ବିଚ୍ଛୁରିତ ଆଲୋକ ସେହି ନିହାରିକା ମାନଙ୍କଠାରୁ ଅତ୍ୟଧିକ । ନାରଲିକରଙ୍କ ମତରେ ଏହି କ୍ୱାସାରମାନେ ବର୍ତ୍ତମାନ ସୁଧା ସୃଷ୍ଟି ଘଟଣା ଦେଖୁଛନ୍ତି । ଅର୍ଥାତ୍ ସୃଷ୍ଟି ପଦ୍ଧତି ବର୍ତ୍ତମାନ ସୁଦ୍ଧା ଜାଗ୍ରତ ଅଛି କ୍ରିୟାତ୍ମକ ହୋଇ । ସ୍ଥିର-ସ୍ଥିତି ତତ୍ତ୍ୱରେ ସୃଷ୍ଟି ପ୍ରକ୍ରିୟା ନିୟତ କ୍ରିୟାଶୀଳ । ଏହି ଲୋହିତ ରଶ୍ମି ବିକିରଣ ମହାବିକ୍ଷୋଭ ତତ୍ତ୍ୱ ବିରୁଦ୍ଧରେ ଏକ ପ୍ରାମାଣିକ ତଥ୍ୟ । ଆଧୁନିକ ଓ ପୁରାତନ ବୈଜ୍ଞାନିକ ମାନଙ୍କ ମତଭେଦରେ ବରବ୍ରିଜ୍ ବିଶେଷ ଭାବରେ ଦୁଃଖିତ । ତାଙ୍କ ମତରେ ଅର୍ଥାଭାବ ଯୋଗୁ ନବ୍ୟ ସଭ୍ୟମାନଙ୍କର ବୈଜ୍ଞାନିକ ଅନ୍ୱେଷଣ ବାଧା ପ୍ରାପ୍ତ । ବିଜ୍ଞାନ ଗୋଟିଏ ପରେ ଗୋଟିଏ ମତର ଶ୍ରାଦ୍ଧ-ସୋପାନ ଉପର ଦେଇ ଅଗ୍ରଗତି କରୁଅଛି । ଆଇନ୍‌ଷ୍ଟାଇନ୍ କହିଥିଲେ - ‘‘ମୁଁ ବିଜ୍ଞାନର ସମାଧିକ୍ଷେତ୍ରରେ ଜୀବନସାରା ପୂଜା ଦେଇଅଛି ।’’

ଆଉ ଗୋଟିଏ ଆବିଷ୍କାର ପୃଥିବୀର ବୈଜ୍ଞାନିକ ମାନଙ୍କୁ ହତ ଚକିତ କରି ଦେଇଛି । ସୌର ବିଜ୍ଞାନୀମାନେ ଲକ୍ଷ୍ୟ କରୁଛନ୍ତି ଯେ ମହାବିଶ୍ୱରୁ ବହୁଦୂରରେ ଅବସ୍ଥିତ କୌଣସି ଶକ୍ତି ଚମକ୍‌ପ୍ରଦ ଭାବରେ ଛାୟାପଥସ୍ଥିତ ନିହାରିକା ପୁଞ୍ଜ ଓ ତାହାର ନିକଟବର୍ତ୍ତୀ ନିହାରିକା ମାନଙ୍କ ଉପରେ ଏକ ପ୍ରଚଣ୍ଡ ଆକର୍ଷଣର ପ୍ରଭାବ ପକାଉଛି । ଆମର ସୌରଜଗତ ଏହି ନିହାରିକାର ମଧବର୍ତ୍ତୀ କେଉଁ ଶକ୍ତି ବା ପଦାର୍ଥ ବା ପିଣ୍ଡ ଏହି ମହାକର୍ଷଣର କାରଣ ତାହା ଜଣାପଡୁନାହିଁ । ସୌର ସନ୍ଧାନୀମାନେ ଏ ବିଷୟରେ କୌଣସି ଆଶୁ ଉତ୍ତର ଦେଇପାରୁ ନାହାନ୍ତି । ଆମର ଜ୍ଞାନତତ୍ତ୍ୱ ଗୁଡିକ ଏହି ପରିସ୍ଥିତିର ସବିଶେଷ ବ୍ୟାଖ୍ୟା କରି ପାରୁନାହାଁନ୍ତି । ଏ ଶକ୍ତିର କ୍ଷମତା ଏତେ ବେଶୀ ଯେ ଏହା ଏପର୍ଯ୍ୟନ୍ତ ବିଜ୍ଞାନ ଲବ୍ଧ ଶକ୍ତି ଗୁଡିକୁ କ୍ଷୁଦ୍ରାତିକ୍ଷୁଦ୍ର ରୂପରେ ପର୍ଯ୍ୟବେସିତ କରି ଦେଉଅଛି । ବୈଜ୍ଞାନିକମାନେ ଭାବୁଛନ୍ତି ଯେ ଏହି ଶକ୍ତି ଅଦୃଶ୍ୟ ଘନତା ବିଶିଷ୍ଟ ବସ୍ତୁରୁ ଉଦ୍‌ଭୂତ ହୋଇ ଏହି ମହାବିଶ୍ୱକୁ ତାହାପ୍ରତି ଆକୃଷ୍ଟ କରୁଅଛି । ଏହି ଘନିଭୂତ ପଦାର୍ଥ ଆବିଷ୍କୃତ-ତଥ୍ୟରାଜିଦ୍ୱାରା ବୁଝିହେଉନାହିଁ । ତେଣୁ ସୌର ବିଜ୍ଞାନୀ ବୃନ୍ଦ ଏହି ମହୀୟାନ୍ ଶକ୍ତିର କ୍ଷମତା ପରିଲକ୍ଷଣ କରି ଏବେ ଭାବିଲେଣି ଯେ ଏହି ବିଶ୍ୱର ସୃଷ୍ଟି ବିଷୟରେ ଏପର୍ଯ୍ୟନ୍ତ ଯେଉଁ ସବୁ ତଥ୍ୟ ନିରୁପିତ ହୋଇଅଛି, ତାହା ବୋଧହୁଏ ସମ୍ପୂର୍ଣ୍ଣ ଭାବରେ ନିର୍ଭୁଲ ନୁହେଁ । ଅନନ୍ତ ଏହି ମହାଜଗତ ଶକ୍ତି ଯାହାକି ନିହାରିକା ବୃନ୍ଦକୁ ତାହା ଆଡକୁ ଟାଣି ନେବାର ଶକ୍ତି ଧାରଣ କରେ, ତାହା ବିଜ୍ଞାନ ପ୍ରତି ଏକ ବଡଧରଣର ଆହ୍ୱାନ (Challenge) ଏହା ଅନସ୍ୱୀକାର୍ଯ୍ୟ । ଦୁଇଜଣ ସୌରବିଜ୍ଞାନୀ ଡଂ ଲଉଅର ଓ ଡଂ ମାର୍କ ପୋଷ୍ଟମାନ୍ ଆମେରିକାରେ ଏକ ଗବେଷଣାରୁ ଏହି ବିଷୟରେ କେତେକ ତଥ୍ୟ ପ୍ରଦାନ କରିଥିଲେ । ଏହି ବିଶ୍ୱ ନିଜର ସଂପ୍ରସାରଣ-ବେଗଯୁକ୍ତ ହେବା ସଙ୍ଗେ ସଙ୍ଗେ ଆଉଗୋଟିଏ ଦୂରସ୍ଥ ବିଶ୍ୱଦ୍ୱାରା ଆକୃଷ୍ଟ ହୋଇ ସେହି ଦିଗରେ ଧାବମାନ ହେଉଅଛି । ଏହି ବେଗର ଗତି ହେଲା ପ୍ରତି ସେକେଣ୍ଡରେ ୪୨୫ ମାଇଲ । ଏହା କନ୍ୟାରାଶିସ୍ଥିତ ତାରା ସମଷ୍ଟି ଦିଗରେ ଗତିଶୀଳ ହେବାର ଦେଖାଯାଉଅଛି । ବୈଜ୍ଞାନିକମାନେ କହିଲେ ଯେ ଏହି ନୂତନ ଆବିଷ୍କୃତ ଶକ୍ତି ବିଷୟରେ ସେମାନଙ୍କୁ କିଛି ଜଣାନାହିଁ । ସେମାନେ କେବଳ ଆବିଷ୍କାର କଲେ ଯେ ପୂର୍ବ ନିର୍ଦ୍ଧାରିତ ଦିଗ ବା ଗତି ସହିତ ଏହି ବେଗର କୌଣସି ସାମଞ୍ଜସ୍ୟ ନାହିଁ । ଏହା ଅତୀବ ଶ୍ଳକ୍ତିଶାଳୀ ଏବଂ ୩୦କୋଟି ଆଲୋକବର୍ଷ ଦୂରରେ ଅବସ୍ଥିତ ହେବାର ସମ୍ଭାବନା ପ୍ରବଳ । ଏହାର ଘନତ୍ୱ ଆମର ଛାୟାପଥସ୍ଥିତ ସବୁ ନିହାରିକା, ନକ୍ଷତ୍ରପୁଞ୍ଜଠାରୁ ପ୍ରାୟତଃ ଲକ୍ଷେଗୁଣ । ଏଥିରେ ୧୦୦ କୋଟି ନକ୍ଷତ୍ର ଥିବାର ଅନୁମାନ କରାଯାଏ । ସେମାନେ ତାଙ୍କର ଆବିଷ୍କାରର ଏକ ତୁଳନାତ୍ମକ ବର୍ଣ୍ଣନା ଦେଇଛନ୍ତି । ଯେପରି ବାଣମରାହେଲେ ସେଥିରୁ ଉତ୍ପନ୍ନ ଆଲୋକ ରଶ୍ମି ଆକାଶକୁ ଯାଇ ସେଠାରେ ଅଧିକ ବେଗରେ ବ୍ୟାପୃତ

ହୋଇ ପ୍ରସାର ଲାଭ କରେ, ମାତ୍ର ବାୟୁବେଗ ଥିଲେ ସେଗୁଡିକୁ ପବନ ଏକ ଦିଗକୁ ଉଡେଇ ନେଇଯାଏ; ସେହିପରି ଆମର ଜ୍ଞାତବିଶ୍ୱ ବିକଶିତ ହେବାବେଳକୁ, ଅନ୍ୟଏକ ବୃହତ୍ତର ବିଶ୍ୱ ତାର ମହାକର୍ଷର ଅତ୍ୟଧିକ କ୍ଷମତା ବଳରେ ଆମବିଶ୍ୱକୁ ନିଜ ଆଡକୁ ଟାଣିନେଇ ଯାଉଛି । ଏହି ତଥ୍ୟକୁ ପ୍ରତ୍ୟାଖ୍ୟାନକରି ଡଃ ପ୍ରାଇମାକ୍ ନାମକ ଜଣେ ବିଜ୍ଞାନୀ କହିଛନ୍ତି ଯେ'ଏହି ଗବେଷଣାରେ ଗାଣିତିକ ଭୁଲଥିବାର ସମ୍ଭାବନାକୁ ଏଡାଇ ଦିଆଯାଇ ନ ପାରେ ।

ଦୃଶ୍ୟମାନ ଜଗତ ଶତାଂଶରୁ ମାତ୍ର ଏକ ଭାଗ । ବାକି ୯୯ଭାଗ ଅଦୃଶ୍ୟବସ୍ତୁ । କାରଣ ଏହି ବସ୍ତୁ ଆଲୋକିତ ନୁହେଁ । ତେଣୁ ଆଖିକୁ ଦେଖାଯାଏ ନାହିଁ । ଅନ୍ଧକାର ପୂର୍ଣ୍ଣ ଆକାଶ ଓ ତତ୍ ସଂଲଗ୍ନ ବସ୍ତୁରାଜି ଏକ ବିଷମ ପ୍ରହେଳିକା । ଏହି ଚମକପ୍ରଦ ପ୍ରହେଳିକାର ଯାଦୁ ବିଦ୍ୟାର ପ୍ରଭାବରେ ବହୁ ରହସ୍ୟମୟ ଘଟଣାର ଆବିର୍ଭାବ ହେଉଅଛି । ଆମ୍ଭେମାନେ ଅଜ୍ଞାତ ହସ୍ତର ସୂତ୍ର-କ୍ରୀଡା ପରିଦର୍ଶନ କରୁଥାଇଁ । ଏହି ମନ୍ତବ୍ୟ Dr. Primack ଙ୍କର । କିଏ କହିପାରେ ପ୍ରକୃତ ସତ୍ୟ କଣ ? କେବଳ ଆମ ଜାଣତରେ "ମହାବିଶ୍ୱ" କଣ ଏକମାତ୍ର ବାସିନ୍ଦା ଏହି ଅସୀମ, ଅନନ୍ତ, ଦିଗ୍‌ବଳୟହୀନ ମହାଶୂନ୍ୟର ? ନା, ଏହା ଛଡା ଅନ୍ୟ ବାସିନ୍ଦା ବିଶ୍ୱରାଜି ଅଛନ୍ତି ଦୂରରେ, ବହୁଦୂରରେ ଆମର କଳ୍ପନାର ବାହାରେ ? ଏ ବିଷୟରେ ଅନ୍ୟଜଣେ ମହାମନୀଷି କହିଛନ୍ତି ଯେ ଯେଉଁ ସବୁ ଶକ୍ତି ସୃଷ୍ଟିର ଆଦିକାଳରେ ଉପସ୍ଥିତ ଥାଇ ଏହି ମହାବିଶ୍ୱର ତିଆରିରେ ପ୍ରମୁଖ ଭୂମିକା ନେଇଥିଲେ ସେମାନେ କାଳକ୍ରମେ ଅନ୍ତର୍ହିତ ହୋଇ, ଅନ୍ୟ ଶକ୍ତି ସମୂହକୁ ସ୍ଥାନ ଦେଇପାରି ଥାଆନ୍ତି । ସେଗୁଡିକୁ ଆମ୍ଭେମାନେ ବିଜ୍ଞାନର ପରିସରକୁ ନ ଆଣିପାରି, ଯାଦୁବିଦ୍ୟା ବୋଲି ଭାବୁଛୁ । ଶକ୍ତି କ୍ଷେତ୍ର ଅଭାବନୀୟ ଭାବରେ ବିଶାଳ, ବିରାଟ ଓ ଦୁର୍ଜ୍ଞେୟ; ପ୍ରକୃତରେ ଯବନିକା ଦ୍ୱାରା ଦୃଶ୍ୟ ପଟରୁ ବିଦୂରୀତ ହୋଇ ରହିଅଛି । ଭବିଷ୍ୟତହିଁ ଏହି ପର୍ଦ୍ଦାକୁ ଉଠାଇ ବିଜ୍ଞାନକୁ ଦିବ୍ୟଦୃଷ୍ଟି ଦେଇପାରେ । ଏଥିରେ ବିଜ୍ଞାନୀମାନଙ୍କର ନିରାଶ ହେବାର କୌଣସି ଅବକାଶ ନାହିଁ ।

ଜଣେ ମହାବିଜ୍ଞାନୀ, ପଦାର୍ଥ ବିଦ୍ୟା ବିଶାରଦ, ବିଶ୍ୱ ବିଦ୍ୟାଳୟର ଅଧ୍ୟାପକ ଆଶାରବାଣୀ ବହନ କରି ଆଣିଛନ୍ତି ସମଗ୍ର ମାନବ ସମାଜ ପାଇଁ । ଖଗୋଳ ଶାସ୍ତ୍ରୀ ଫ୍ରାନ୍କ. ଯେ. ଟିପ୍‌ଲର୍ (F. J. Typler) ହେଉଛନ୍ତି ଆମେରିକାର ଟିଉଲେନ ବିଶ୍ୱବିଦ୍ୟାଳୟର ୪୭ ବର୍ଷ ବୟସ୍କ ଅଧ୍ୟାପକ । ସେଠାରେ ତାଙ୍କର ଶିକ୍ଷାଦେବାର ବିଷୟବସ୍ତୁ ହେଲା "ଆପେକ୍ଷିକତା" । ମେରିଲାଣ୍ଡ ବିଶ୍ୱବିଦ୍ୟାଳୟ ସେ ସ୍ନାତକୋତ୍ତର ପରୀକ୍ଷା ପାଶ୍ କରି ଡକ୍ଟରେଟ୍ ଉପାଧି ଲାଭ କଲାପରେ ମଧ୍ୟ ସେ ଗବେଷଣା କରିବା ନିମନ୍ତେ ଯାଇଥିଲେ Oxford ଓ Berklay ବିଶ୍ୱବିଦ୍ୟାଳୟକୁ । ସେଠାରୁ ଅନୁରୂପ ବିଦ୍ୟା ହାସଲ କରି ଅତି ବିଶିଷ୍ଟ ବିଜ୍ଞାନୀରେ ପରିଣତ ହେଲେ ଟିପ୍‌ଲର୍ । ତାଙ୍କ ପିଲାଦିନରୁ ପ୍ରତିଭାର ଉନ୍ମେଷ

ହୋଇଥିଲା ଅତି ପ୍ରଖର ଭାବରେ । ସେ ଶିଶୁଶ୍ରେଣୀ ଗୁଡିକରେ ପଢ଼ିବାବେଳେ ଏକ ଅଦ୍ଭୁତ ଘଟଣା ଘଟିଲା । ସେତେବେଳେ ''ଉନ୍‌ବ୍ରାଉନ୍'' ବୋଲି ଜଣେ ମହା ସୌରବିଜ୍ଞାନୀ ପୃଥିବୀରେ ଶ୍ରେଷ୍ଠ ବିଜ୍ଞାନୀ ବୋଲି ବିବେଚିତ ହୋଇଥିଲେ । ମହାକାଶରେ କୃତ୍ରିମ ଉପଗ୍ରହ ପଠାଇବା ନିମନ୍ତେ ବିଶ୍ୱ ସେତେବେଳେ ଉଦ୍‌ଗ୍ରିବ; ବ୍ରାଉନଙ୍କ ନିର୍ଦ୍ଦେଶରେ ଏହି ପରିକଳ୍ପନାର ବିନ୍ୟାସ ଓ ପ୍ରସ୍ତୁତି ଚାଲିଥାଏ । ତାଙ୍କ ବିଷୟରେ ସମଗ୍ର ବିଶ୍ୱ ଜାଣିବାକୁ ଉତ୍ସାହୀ ଥିଲା । ଗୋଟିଏ ପାଞ୍ଚବର୍ଷର ପିଲା ବ୍ରାଉନ୍‌ଙ୍କୁ ଚିଠି ଲେଖିଥିଲା ଏହି ମହାକାଶଚାରୀ କୃତ୍ରିମ ଉପଗ୍ରହ ପଠାଇବାପାଇଁ କେଉଁ ଇନ୍ଧନ ଶ୍ରେଷ୍ଠ ସେ ବିଷୟରେ ଜାଣିବାକୁ । ବ୍ରାଉନଙ୍କର ସମୟ ଖୁବ୍ କମ୍ । ସେ ନୂତନ ପ୍ରକଳ୍ପଘେନି ମହାବ୍ୟସ୍ତ । ତାଙ୍କର ସେକ୍ରେଟେରି ଜବାବ ଦେଇଥିଲେ, ବ୍ରାଉନ ଦୁଃଖିତ । ଟିପ୍‌ଲର୍‌ଙ୍କ ପଛନ୍ଦ-ପୁଷ୍ଟ-ଇନ୍ଧନ ତାଙ୍କର ଜଣାନାହିଁ ବୋଲି । ମହାକାଶର ଆକର୍ଷଣ ଦୁର୍ବାର ସ୍ରୋତରେ ସେହି ପିଲାଟିର ଜୀବନକୁ ଭରିରଖିଥିଲା । ପରଜୀବନରେ ସେ ଜ୍ୟୋତିବିଜ୍ଞାନ ପଢ଼ି ଗବେଷଣାକଲେ ଏହି ମହାବିଶ୍ୱର ଅତୀତ ଓ ଭବିଷ୍ୟତକୁ ନେଇ । ଅଗାଧ ନିଷ୍ଠା, ଅକ୍ଳାନ୍ତ ପରିଶ୍ରମ, ଅନମନୀୟ ମନୋବୃତ୍ତି, ଅବିରାମ ଗବେଷଣାର ଫଳ ତାଙ୍କୁ ଅବଶେଷରେ ମିଳିଲା । ମାତ୍ର ୪୭ ବର୍ଷ ବୟସରେ ଏହି ଜ୍ୟୋତିପଦାର୍ଥ ବିଜ୍ଞାନୀ ବିଶ୍ୱକୁ ଉପହାର ଦେଲେ ଏକ ବିସ୍ମୟକର ଓ ଚମକପ୍ରଦ ନବଲବ୍ଧ ମହାନ ତତ୍ତ୍ୱ ''ଓମେଗା ପୟେଣ୍ଟ'' (Omega point theory) । ଏହା ବିଜ୍ଞାନ-ଜଗତରେ ଏକ ଚହଳ ପକାଇ ଦେଲା । କାରଣ ବିଜ୍ଞାନୀ-ମନର ଦ୍ୱିଧା ଦ୍ୱନ୍ଦ୍ୱକୁ ଜଳାଞ୍ଜଳି ଦେଇ ସତ୍ୟର ପ୍ରକାଶରେ ଦୃଢ଼ ଚିତ୍ତବୃତ୍ତିର ପରିଚୟ ଦେଲେ ଟିପ୍‌ଲର୍ । ଏହି ତଥ୍ୟର ବାର୍ତ୍ତା ସୁଦୂର ପ୍ରସାରୀ ଓ ବିଷୟବସ୍ତୁ ଏ ଯୁଗର ବୈଜ୍ଞାନିକ ମାନଙ୍କ ପକ୍ଷରେ ବୈପ୍ଲବିକ ବୋଲି ମନେହୁଏ । ସେ ଗାଣିତିକ ପ୍ରମାଣ ସହ ତାଙ୍କର ପ୍ରତିପାଦ୍ୟ ବିଷୟ ପ୍ରତିଷ୍ଠା କରି କହିଲେ ଯେ ଈଶ୍ୱର ଅଛନ୍ତି । ସ୍ୱର୍ଗ ଅଛି । ପୁନର୍ଜନ୍ମର ବ୍ୟବସ୍ଥା ଅଛି । ସମସ୍ତ ମାନବ ସମାଜ ଓ ଜୀବ ସମାଜ ପାଇଁ ଏକ ଜ୍ୟୋତିଃ-ପଦାର୍ଥ ବିଜ୍ଞାନୀ ପକ୍ଷରେ ଏପରି ଏକ ଦ୍ୱର୍ଥହୀନ ପୌରାଣିକ ଉକ୍ତି ଏବଂ ବିଜ୍ଞାନ ଜଗତରେ ଅସହନୀୟ ହୋଇ ଉଠିଲା । ମାତ୍ର ସେ କହିଲେ "From the physics point of view, theology is nothing but physical cosmology" ତାଙ୍କର ପ୍ରତିପାଦ୍ୟ ବିଷୟରେ ବିଶେଷ ବ୍ୟାଖ୍ୟା କରିବାକୁ ଯାଇ ଟିପ୍‌ଲର କହିଲେ ଏହି ମହାବିଶ୍ୱ ସବୁ ବସ୍ତୁର ଆଧାର ସଦୃଶ । ସବୁ ତତ୍ତ୍ୱ ଓ ସତ୍ୟର ମଧ୍ୟ । ଯଦି ଈଶ୍ୱର ସତ୍ୟ ହୁଅନ୍ତି, ତାହାହେଲେ ସେ ନିଶ୍ଚୟ ଏହି ମହାବିଶ୍ୱରେ ସର୍ବବ୍ୟାପ୍ତ ହୋଇ ଅଛନ୍ତି । ପଦାର୍ଥ ବିଦ୍ୟାର ଚରମ ଲକ୍ଷ୍ୟ ହେଲା ସତ୍ୟର ସର୍ବଶେଷ ରୂପର ଅନୁଧାବନ । ''ଯଦି ଈଶ୍ୱର ସତ୍ୟ ହୁଅନ୍ତି ତେବେ ବିଜ୍ଞାନୀମାନେ ତାଙ୍କୁ ଖୋଜି ପାଇବେ । ମୋର ଧାରଣା ପଦାର୍ଥବିଦ୍ୟା ତାଙ୍କର ସନ୍ଧାନ

ପାଇଛି ବୋଧହୁଏ । ଈଶ୍ୱର ସର୍ବତ୍ର ଅଛନ୍ତି । ଆମ୍ଭେମାନେ ତାଙ୍କୁ ଦେଖିପାରୁନାହୁଁ, କାରଣ ଆମ୍ଭେମାନେ ବ୍ରହ୍ମାଣ୍ଡକୁ ପ୍ରକାଣ୍ଡ ବଡ ମାପରେ ବିଚାର କରିପାରୁ ନାହୁଁ ବୋଲି '' ଏହାହିଁ ଟିପ୍‌ଲର୍‌ଙ୍କ ଉକ୍ତି । ଟିପ୍‌ଲର୍‌ଙ୍କ ଏହି ମହାବିଶ୍ୱକୁ ଭିନ୍ନ ଭାବରେ ଦୃଷ୍ଟିପାତ କରିବାର ଫଳ ହେଲା ତାଙ୍କର ଈଶ୍ୱର-ଆବିଷ୍କାର । ବିଜ୍ଞାନୀମାନେ ସାଧାରଣତଃ ଏହି ବିଶ୍ୱସୃଷ୍ଟି ବିଷୟରେ ଚିନ୍ତିତ । ସେମାନେ କେବଳ ଦୁଇ ହଜାର-କୋଟି ବର୍ଷର ବିଶ୍ୱର ବିବର୍ତ୍ତନ ଇତିହାସରେ ନିମଗ୍ନ । ମାତ୍ର ପ୍ରକୃତପକ୍ଷେ ବିଚାରକରି ଦେଖାଯାଇ ଅଛି ଯେ ବ୍ରହ୍ମାଣ୍ଡର ଆୟୁ ଅନ୍ତତ ବାର ହଜାର କୋଟି ବର୍ଷ । ମହାକାଳ ଓ ମହା ବିସ୍ତୃତିର ସ୍ଥାନ ସମ୍ମିଳିତ ଭାବରେ ଭବିଷ୍ୟତର ଗର୍ଭରେ ଲୁକ୍କାୟିତ । ସେହି ଭବିଷ୍ୟତରେ ଶେଷସୀମାପ୍ରତି ଦୃଷ୍ଟିପାତ କରିଛନ୍ତି ଟିପ୍‌ଲର । ସେହି ଶେଷ ମୁହୂର୍ତ୍ତରେ ଏହି ମହାବିଶ୍ୱ, ଏହି ମହାସିନ୍ଧୁ, ଏକ ବିନ୍ଦୁରେ ପରିଣତ ହୋଇ ଗୋଟିଏ ସୀମାରେ ଉପନୀତ ହେବ । ତାହାକୁ ଟିପଲର ନାମିତ କରିଛନ୍ତି ''ଓମେଗା ପୟେଣ୍ଟ'' ।

ବହୁ ଗାଣିତିକ ତଥ୍ୟ-ନିସୃତ ହୋଇ ଏହି "Omega point" ଟିପ୍‌ଲରଙ୍କର ବିଶ୍ୱବାସୀଙ୍କପ୍ରତି ଏକ ଆଶୀର୍ବାଦର ବାଣୀ ବହନ କରି ଆଣୁଛି । ନୈରାଶ୍ୟ ବାଦର ଇତି । ଆଶାର ଉଦୟ ହୋଇଛି ମାନବ ଜାତିର ଏହି ଓମେଗା ପଏଣ୍ଟରୁ । କିପରି ??? ତାଙ୍କର ଗଣନା ଅନୁଯାୟୀ ଏହି ବିନ୍ଦୁରେ ପହଞ୍ଚିଲା ପରେ ଅତ୍ୟନ୍ତ କ୍ଷମତା ବିଶିଷ୍ଟ କମ୍ପ୍ୟୁଟର ସାହାଯ୍ୟରେ, ଅମିତ ବିକ୍ରମରେ ପୂର୍ବଜାତ ସମସ୍ତ ପ୍ରାଣୀ ସକଳକୁ ପୁନଃନିର୍ମାଣ କରାଯାଇ ସେମାନଙ୍କୁ ପୂନର୍ଜନ୍ମ ଦିଆଯାଇପାରେ । ଏହା ବାସ୍ତବତା-ସମୃଦ୍ଧ ସତ୍ୟରେ ପ୍ରତିଭାତ ହେବ କମ୍ପ୍ୟୁଟର ସାହାଯ୍ୟରେ । ଓୟେନବର୍ଗ ଲେଖିଥିଲେ ଯେ ମୃତ୍ୟୁକୁ ମାନିବାପାଇଁ ଯେ ଆଶ୍ୱାସନା ଆମ୍ଭେମାନେ ଧର୍ମରୁ ପାଇଥାଉ ତାହା ବିଜ୍ଞାନରୁ ମିଳିବ ବୋଲି ଧାରଣା ମୁଁ ମୁହୂର୍ତ୍ତେ ପାଇଁ ମଧ ପୋଷଣ କରେ ନାହିଁ । ମାତ୍ର ଏ ସମ୍ବନ୍ଧରେ କହିବାକୁ ଯାଇ ଟିପ୍‌ଲର୍ କହିଛନ୍ତି, ଏ ଧାରଣା ଅମୂଳକ । ମୃତ୍ୟୁକୁ ସ୍ୱାଗତକରିବାପାଇଁ ଯେଉଁ ଆଶ୍ୱାସନା ଆଜି ପର୍ଯ୍ୟନ୍ତ ଧର୍ମ ଦେଉଥିଲା; ତାହାହିଁ ଏବେ ବିଜ୍ଞାନ ଦେଇପାରେ । ଯେଉଁମାନେ ଆମ୍ଭମାନଙ୍କ ଭିତରୁ ଅନ୍ତର୍ହିତ ହୋଇଯାଇଛନ୍ତି ମୃତ୍ୟୁଯୋଗୁ; ସେମାନେ ସମସ୍ତେ ଦିନେ ବଞ୍ଚିଉଠିବେ । ତେଣୁ ଆଶ୍ୱସ୍ତ ହୁଅନ୍ତୁ । ଆଉ ଭୟନାହିଁ ।

ଏପର୍ଯ୍ୟନ୍ତ ବିଜ୍ଞାନ ଚିନ୍ତା ମାନବ ସମାଜକୁ ଯେଉଁ ଉପହାରମାନ ଦେଇଥିଲା ସେଗୁଡିକ ଉଲ୍ଲେଖ କରିବା ଅତ୍ୟନ୍ତ ଆବଶ୍ୟକ । ଏହି ପଟଭୂମିରେ ଷୋଡଶ ଶତାବ୍ଦିରେ ବିଜ୍ଞାନ ତାହାର ମହାନଯାତ୍ରା ଆରମ୍ଭ କରିଥିଲା । କୋପରନିକସ୍ ପ୍ରଥମ ପଥପ୍ରଦର୍ଶନ କରିଥିଲେ ଏକ ନବ ଦିଗନ୍ତ ଉନ୍ମୋଚନ କରି, ଈଶ୍ୱରଙ୍କର ଉଦ୍ୟାନରୁ ମନୁଷ୍ୟ ଓହ୍ଲେଇ

ଆସିଥିଲା ବିଜ୍ଞାନର ହାତଧରି । ଏହି ଅବରୋହଣରେ ବିଶେଷ ଉଦ୍ୟୋଗ ନେଇଥିଲେ ଚାର୍ଲସ୍ ଡାରଉଇନ୍ । ସେ ତାଙ୍କର ପ୍ରତିପାଦ୍ୟ ବିଷୟରେ ଉଲ୍ଲେଖ କଲେ ମଣିଷ ଈଶ୍ୱର ସନ୍ତାନ ନୁହେଁ । ସେ ପଶୁମାନଙ୍କଠାରୁ କ୍ରମ ବିବର୍ତ୍ତନରେ ଉଦ୍‌ଭୂତ ଏକ ଜୀବ । ସେମାନଙ୍କର ପରବର୍ତ୍ତୀ ପ୍ରଜନ୍ମ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ପ୍ରଖ୍ୟାତ ମନସ୍ତାତ୍ତ୍ୱିକ ଶିଗ୍‌ମଣ୍ଡ ଫ୍ରୟେଡ୍ କହିଲେ ଯେ ମଣିଷ ତାର ମନର ଦାସ ମାତ୍ର; ପ୍ରଭୁ ନୁହେଁ । ବିଜ୍ଞାନର ଜୟଗାନ କରି ଭୌତିକ ଭୋଗବାଦରେ ଆପ୍ଲୁତ ହୋଇ, ଜୀବନର ବିଭିନ୍ନ ସୁଖରେ ନିମଜ୍ଜିତ ହୋଇ ମନୁଷ୍ୟ ନିଜର ନିଜତ୍ୱ ପ୍ରାୟ ହରାଇ ବସିଛି । ଉନ୍ନତ ଶିଖରରୁ ଓହ୍ଲାଇ ଆସି ନିଜର ଉଚ୍ଚ ମାନସିକତା ହରାଇ ନିଜକୁ ବିଜ୍ଞାନର ସ୍ତାବକରୂପେ ପ୍ରତିଷ୍ଠିତ କରିଛି । ଜଣେ ମହାମନୀଷି, ବରଟ୍ରାଣ୍ଡ ରସେଲଙ୍କ ଉକ୍ତି ଏହି ପରିପେକ୍ଷୀରେ ପ୍ରଣିଧାନ - ଯୋଗ୍ୟ । ସେ ଲେଖିଛନ୍ତି ଯେ ବିଜ୍ଞାନ ଆମ୍ଭମାନଙ୍କୁ ଏକ ଉଦ୍ଦେଶ୍ୟବିହୀନ ଓ ଅର୍ଥହୀନ ବିଶ୍ୱ ଉପହାର ଦେଇଅଛି । ଆମର ବିଶ୍ୱାସ ବୋଧରସ୍ଥାନ ହେଉଛି ଏହି ଜଡ ଜଗତ । ମଣିଷ କେବଳ କେତେକ ଜାଗତିକ କାରଣଯୋଗୁ ଆବିର୍ଭୂତ ହୋଇଅଛି । ଅନ୍ତିମ ଲକ୍ଷ୍ୟ ବିଷୟରେ କୌଣସି ସଚେତନତା ତାହାର ନାହିଁ । ମଣିଷର ବିବର୍ତ୍ତନ, ଆଶା, ଆକାଂକ୍ଷା, ବେଦନା, ବିଶ୍ୱାସ, ପ୍ରେମ ଇତ୍ୟାଦି କେତେଗୁଡିଏ ପରମାଣୁର ଆକସ୍ମିକ ସମଷ୍ଟିଛଡା ଆଉକିଛି ନୁହେଁ । ଏପରିକି ତାର ଶୌର୍ଯ୍ୟ, ବୀର୍ଯ୍ୟ, ଚିନ୍ତା ଓ ଚେତନାର ମଧ୍ୟ ବିଶେଷ ଗୁରୁତ୍ୱ କିଛି ନାହିଁ । ଯେପରିକି, ଯୁଗଯୁଗଧରି ତାହାର ପରିଶ୍ରମ, ନିଷ୍ଠା, ଉତ୍ସାହ, ମନୀଷାର ଦିପ୍ତି କେବଳ ସୌର ଜଗତର ଧ୍ୱଂସ ସହିତ ଏହି ଗୁଣାବଳିମଧ ଅବଲୁପ୍ତି ନିମନ୍ତେ ଅପେକ୍ଷାରତ । ମାନବ ସମାଜର ସାଫଲ୍ୟର ବିଶାଳ ଅଟ୍ଟାଳିକା ଏହି ବିଲୀୟମାନ ବିଶ୍ୱରେ ଦିନେ ଅଧୋଗାମୀ ହୋଇ ବିଲୟଲାଭ କରିବ । ଏହି ଚିନ୍ତାଧାରାର ପ୍ରତିଧ୍ୱନି ଶୁଣାଯାଇଥିଲା ଓୟୋନବର୍ଗଙ୍କ ଭାଷାରେ ମଧ୍ୟ । ଏହି ପଦାର୍ଥ ବିଜ୍ଞାନୀ ତାଙ୍କର ପ୍ରସିଦ୍ଧ ଗ୍ରନ୍ଥ ''ପ୍ରଥମ ତିନିମିନିଟ''ରେ ଲେଖିଛନ୍ତି ଯେ ମଣିଷର ଏହି ବିଶ୍ୱ ସହିତ ଯେଉଁ ଯୋଗସୂତ୍ର ରହିଛି ସେତାକୁ ଅତିକ୍ରମ କରିପାରିବ ନାହିଁ । ସେ ମାନିବାକୁ ପ୍ରସ୍ତୁତ ନୁହେଁ ଯେ ତାହାର ଅସ୍ତିତ୍ୱ କେତେକ ଆକସ୍ମିକ ଘଟଣାର ଫଳ । ଏହି ପୃଥିବୀଯେ ଗୋଟିଏ ବିଶାଳ ବ୍ରହ୍ମାଣ୍ଡର ଅଂଶମାତ୍ର; ଏବଂ ଏହା ଯେ ଦିନେ ବିଲୀନ ହୋଇଯିବ ପ୍ରଚଣ୍ଡ ଅସହ୍ୟ ଉତ୍ତାପ ଯୋଗୁ ବା ଅସୀମ ଶୀତର ପ୍ରବାହରେ ଏହା ମାନିନେବା ଏକାନ୍ତ କଷ୍ଟକର । ଆମ୍ଭେମାନେ ଯେତେବେଳେ ଏହି ବିଶ୍ୱର ବିସ୍ତୃତ ପରିଚୟ ପାଇଛୁ; ସେତିକି ବେଶୀ ଉଦ୍ଦେଶ୍ୟହୀନ ବୋଲି ଏହାକୁ ମନେ ହେଉଅଛି । ପ୍ରକୃତପକ୍ଷେ, ଏହି ଅର୍ଥହୀନତା ଅତ୍ୟନ୍ତ କ୍ଲେଶ-ଦାୟକ । ଏହି ବିଶାଳ ବିଶ୍ୱର କୌଣସି ଉଦ୍ଦେଶ୍ୟ ନାହିଁ ? କୌଣସି ବିଶେଷ ଅର୍ଥ ନାହିଁ ? କୌଣସି ଆଦର୍ଶ ନାହିଁ ? କୌଣସି ଲକ୍ଷ୍ୟ ନାହିଁ ? ଏହା ବିଶ୍ୱାସ କରିବାକୁ ମଣିଷ ଆନ୍ତରିକଭାବେ ଚାହେଁ ନାହିଁ । ଏପରି ଏକ

ନୈରାଶ୍ୟଜନକ, ଅର୍ଥହୀନ ବିଶ୍ୱଚିନ୍ତାରୁ ମଣିଷକୁ ଶେଷରେ ମୁକ୍ତି ଦେଇଛନ୍ତି ମହାବିଜ୍ଞାନୀ ଫ୍ରାନ୍କ ଟିପ୍‌ଲର୍ ଓ ତାଙ୍କର ମହାନ ସହଯୋଗୀ ବିଜ୍ଞାନୀ ବ୍ୟାରୋ । ସେମାନେ ପ୍ରମାଣ କରିଛନ୍ତି ଯେ ଏହି ବିଶ୍ୱର ଅପ୍ରତିରୋଧ ଗତିରେ ମାନବ କେବଳ ଏକ ନଗଣ୍ୟ ଦର୍ଶକ ନୁହେଁ, ତାହାର ଭୂମିକା ତାତ୍‌ପର୍ଯ୍ୟପୂର୍ଣ୍ଣ । ସେମାନଙ୍କର ପ୍ରତିପାଦ୍ୟ ବିଷୟ ହେଲା ''ମହାଜାଗତିକ ଯୋଗାଯୋଗ'' ଯାହାକୁ ଇଂରାଜିରେ କୁହାଯାଏ Cosmic Coincidence । ଏହି ମହାଜାଗତିକ ମୁହୂର୍ତ୍ତ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ, ତାତ୍‌ପର୍ଯ୍ୟ ସମୃଦ୍ଧ, ଉଦ୍ଦେଶ୍ୟ ସ୍ନିଗ୍ଧ, କ୍ରମ-ପରିମାଣ ବିଶିଷ୍ଟ ଏକ ବିଶେଷ ଆଶୀର୍ବାଦ ମହାଜାଗତିକ କ୍ରମବିକାଶର । ଏହି ମହାଜାଗତିକ ସମ୍ବନ୍ଧକୁ ବିଶ୍ଲେଷଣ କରିବାକୁ ଗଲେ ଅତିସାଧାରଣ ଭାବରେ ମହାକର୍ଷର ସୂତ୍ରକୁ ଟିକିଏ ତଳେଇ ବୁଝିବାର ଚେଷ୍ଟା କରିବାକୁ ହେବ । କାରଣ ଏହି ସୂତ୍ର ଉପରେ ମହାଜାଗତିକ ସ୍ଥିତି ସମ୍ପୂର୍ଣ୍ଣ ଭାବରେ ନିର୍ଭର କରେ । ନିଉଟନ୍‌ଙ୍କର ମାଧ୍ୟାକର୍ଷଣ ତତ୍ତ୍ୱ ଏକ ସ୍ଥିର ନିଶ୍ଚିତ-ମାନ ବା ଧ୍ରୁବକକୁ ଅନୁସରଣ କରି ଆଗେଇ ଯାଇଛି । ଏହି ନିୟମ ଅନୁଯାୟୀ ଦୁଇଟି ଜିନିଷର ମାସ୍ M ଆଉ m ହେଲେ; ସେମାନଙ୍କର ଦୂରତ୍ୱ D ହେଲେ, ଆଉ ଯେଉଁ ଆକର୍ଷଣ କରୁଥିବା ଶକ୍ତି ଦୁଇଜଣକୁ ଟାଣେ ତାହା ଯଦି F ହୁଏ, ତେବେ ସୂତ୍ରଟି ହେବ - $F = G \times \frac{M \times m}{D^2}$ । ଏହି ଫର୍ମୁଲାରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଉପାଦାନ ହେଲା "G" ଯାହାର ଅର୍ଥ ମହାକର୍ଷଣ ଧ୍ରୁବକ ବା ସ୍ଥିର ନିଶ୍ଚିତ-ମାନ; ଦୁଇଟି ବସ୍ତୁ କେତେ ବେଗରେ ଉଭୟ ଉଭୟଙ୍କୁ ଟାଣୁଛନ୍ତି, ଏହି ବିଷୟରେ ବିଶେଷ ଭୂମିକା ହେଉଛି ଏହି ଉପଯୁକ୍ତ ଧ୍ରୁବକ-ମାନର । ଯଦି ଏହି ମାନର କ୍ଷମତା କମ୍ ହୁଏ ତେବେ ଆକର୍ଷଣ ଶକ୍ତିର ମାନ ମଧ୍ୟ କମିଯିବ; ଯଦି ବଢ଼େ ତେବେ ଆକର୍ଷଣ ଶକ୍ତି ବଢ଼ିବ । ଏହି ଆକର୍ଷଣ ଶକ୍ତିର ହ୍ରାସବୃଦ୍ଧି ଉପରେ ଗ୍ରହ ନକ୍ଷତ୍ର ମାନଙ୍କର ଗତିପଥ ନିର୍ଭର କରେ । ସେମାନଙ୍କର ଅବସ୍ଥାନ ମଧ୍ୟ ନିରୂପିତ ହୁଏ । ଏହି ତଥ୍ୟ ସମସ୍ତେ ନିର୍ଭୁଲ ଭାବରେ ବୁଝିଥିଲେ ଯେ ମହାବିଶ୍ୱ ଏହି ମହାକର୍ଷ ଉପରେ ସମ୍ପୂର୍ଣ୍ଣ ଭାବରେ ନିର୍ଭର କରେ । ଏହା ବିଶ୍ୱ ସ୍ରଷ୍ଟାଙ୍କର ଏକ ମହାନ ଇଙ୍ଗିତ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ପୃଥିବୀର ଅତି ପ୍ରସିଦ୍ଧ ମହାବିଜ୍ଞାନୀ ନିଉଟନ୍ ଏହି ତତ୍ତ୍ୱର ଆବିଷ୍କାରର ପରେ ମଧ୍ୟ କହିଥିଲେ ଯେ ଯଦି ଏହି ସୂତ୍ର ସାହାଯ୍ୟରେ ପ୍ରମାଣିତ ହୁଏ ଈଶ୍ୱରଙ୍କ ମହାନ ଅସ୍ତିତ୍ୱ, ତେବେ ତାଙ୍କର ପରିଶ୍ରମ ସାର୍ଥକ ବୋଲି ସେ ମନେ କରିବେ । ସେ ଥିଲେ ମନ-ପ୍ରାଣରେ ଗଭୀର ଈଶ୍ୱର-ବିଶ୍ୱାସୀ । ମାତ୍ର କେତେକ ବିଶିଷ୍ଟ ବୈଜ୍ଞାନିକ ନିଉଟନ୍‌ଙ୍କୁ ଭୁଲ ପ୍ରମାଣ କରିବାର ପ୍ରଚେଷ୍ଟାରେ ବିଫଳ ହୋଇଥିଲେ । ଯଥା, ପଲ୍ ଡିରାକ୍ । ସେ କହିଥିଲେ ଯେ ସମୟର ଅଗ୍ରଗତି ସହିତ ଏହି ଧ୍ରୁବକ ମଧ୍ୟ ପରିବର୍ତ୍ତନଶୀଳ । ମାତ୍ର ବହୁ ପରୀକ୍ଷା ପରେ ଦେଖାଗଲା

ଯେ ଏହା ବଦଳାଏ ନାହିଁ, ଏହା ବାସ୍ତବିକ ଧ୍ରୁବ, ସ୍ଥିର, ଅପରିବର୍ତ୍ତନୀୟ । ସୂକ୍ଷ୍ମଭାବରେ ଦୃଷ୍ଟିପାତ କଲେ ବୁଝାଯିବ ଯେ ଏହି ଧ୍ରୁବମାନ, ମନୁଷ୍ୟର ପୃଥିବୀରେ ଆବିର୍ଭାବ ସହିତ ଓତପ୍ରୋତଭାବେ ଜଡିତ, ସ୍ଥିରୀକୃତ ଓ ସଂପୃକ୍ତ । ଏହି ବିଷୟର ଧାରାବାହିକ ବିଶ୍ଳେଷଣ ପ୍ରଣିଧାନଯୋଗ୍ୟ । ବିଶ୍ଳେଷଣବିନା ଏହି ମହାଜାଗତିକ ମାଧ୍ୟାକର୍ଷଣ ଶକ୍ତି ଏକ ମାନସିକ ଧାରଣାରେ କେବଳ ପର୍ଯ୍ୟବେସିତ ହେବ । ମାତ୍ର ଏହାର ପ୍ରୟୋଗଶକ୍ତି-ବିଚାରରେ ଧ୍ୟାନଧାରଣାର ମୂଳଦୁଆ ଶକ୍ତହେବ ।

ମହାକାଶବକ୍ଷରେ ଅଗଣିତ ନକ୍ଷତ୍ରମାନଙ୍କର ଅବସ୍ଥିତି ବିଷୟରେ ଚିନ୍ତା କରାଯାଉ । ନକ୍ଷତ୍ର ମାନଙ୍କ ମଧ୍ୟ ଅବିରତ ପାରମାଣବିକ ବିକିରଣ ଚାଲିଛି । ଆଉ ବାହାରେ ବହୁବସ୍ତୁ ବିସ୍ତୃତ ହୋଇ ମହାକାଶରେ ଅବସ୍ଥାନ କରୁଛନ୍ତି । ସେମାନେ ଏକତ୍ରିତ ଭାବରେ ମାଧ୍ୟାକର୍ଷଣ ଶକ୍ତିର ପ୍ରୟୋଗ କରୁଅଛନ୍ତି ଏହି ନକ୍ଷତ୍ର ମାନଙ୍କ ଉପରେ । ଆଭ୍ୟନ୍ତରୀଣ ବିସ୍ଫୋରଣ ନକ୍ଷତ୍ରକୁ ବିସ୍ତାରିତ କରିବାପାଇଁ ସଚେଷ୍ଟ; ଆଉ ବାହାରର ଅଂଶକୁ ଏକତ୍ରଭାବେ ରଖିବାକୁ ଚେଷ୍ଟାକରେ ବହୁବସ୍ତୁର ମହାକର୍ଷଶକ୍ତି । ଏହି ଆକର୍ଷକ ଶକ୍ତିର ଦ୍ୱିବିଧ ପ୍ରଚେଷ୍ଟାରେ ନିର୍ଦ୍ଧାରିତ ହୁଏ ନକ୍ଷତ୍ରର ଆୟତନ । ଅନ୍ୟଭାବରେ ଚିନ୍ତାକଲେ ଦେଖାଯିବ ଯେ ମହାକର୍ଷୀୟ ଧ୍ରୁବକ (G) ର ମାନ କମ୍ ବୋଲି ନକ୍ଷତ୍ରମାନଙ୍କର ଆୟତନ ବିଶାଳ, ଯଦି ଓଲଟା ହୁଅନ୍ତା, ତେବେ ନକ୍ଷତ୍ରମାନେ ଆକାରରେ ଛୋଟହୁଅନ୍ତେ । ତାହାହେଲେ ସୂର୍ଯ୍ୟପରି ବିରାଟ ନକ୍ଷତ୍ରମାନେ ଜନ୍ମନେଇ ପାରନ୍ତେ ନାହିଁ । ସେମାନେ ବଡ ନହେଲେ ଏବଂ ବାହାର ପିଣ୍ଡରୁ ସେମାନଙ୍କ ଉପରେ ଚାପ ନ ପଡ଼ିଲେ, ସେମାନଙ୍କ ଅର୍ନ୍ତସ୍ଥଳିରୁ ବିକିରଣ ପ୍ରକ୍ରିୟା ସମ୍ଭବପର ହୋଇନଥାନ୍ତା; ଏବଂ ଏହି ପ୍ରକ୍ରିୟା ନଥିଲେ, ତାପ ଓ ଆଲୋକ ବିକିରଣ ମଧ୍ୟ ସମ୍ଭବପର ହୁଅନ୍ତା ନାହିଁ । ଅତି ସାମାନ୍ୟ ମାତ୍ରାରେ ହେଲେ ମଧ, ତାହା ସ୍ୱଳ୍ପାୟୁ ହୁଅନ୍ତା । ଆଉ ଅତି କମ୍‌ଦିନ ସେମାନଙ୍କର ଅସ୍ତିତ୍ୱ ରହିଲେ, ସେଥିରେ କ୍ରମ-ବିବର୍ତ୍ତନ ପ୍ରଭାବରେ ପ୍ରାଣର ଉତ୍‌ପତ୍ତି, ବିକାଶ ଓ ସମୃଦ୍ଧି ସମ୍ଭବପର ହୁଅନ୍ତା ନାହିଁ । ଅତଏବ ଏହି ଧ୍ରୁବକର ମାନ ଏପରି ଭାବରେ ନିର୍ଣ୍ଣାୟିତ ହୋଇଛି ଯେ, ଏହା ପୃଥିବୀରେ ବିବର୍ତ୍ତନର ମାନସ୍ଥିରକରି ଏଥିରେ ଜୀବନର ଉନ୍ମେଷ, ବିକାଶ ଓ ପ୍ରଗତିର ପଥ ସୁଗମକରି, ଏହାକୁ ସୁଚାରୁ ରୂପେ ନିୟନ୍ତ୍ରିତ କରିବାରେ ସହାୟକ ହୋଇଅଛି । ଏହି ତତ୍ତ୍ୱର ବିଶେଷ ବିଚାର କରି ମହାନ ବିଜ୍ଞାନୀ ଟିପ୍‌ଲର୍ ଓ ବ୍ୟାରୋ ସେମାନଙ୍କର ଯୁଗାନ୍ତକାରୀ ଚିନ୍ତାଧାରାର ବାଖ୍ୟା ପ୍ରଦାନ କରିଥିଲେ " Anthropic Principle" ନାମକ ଗ୍ରନ୍ଥରେ । ସେମାନେ ଏହି ତତ୍ତ୍ୱର ବିଶ୍ଳେଷଣ କରି ଏହି ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ, ଏହି ବିଶ୍ୱବ୍ରହ୍ମାଣ୍ଡରେ କେତୋଟି ସ୍ଥିରନିଶ୍ଚିତମାନ ବା ଧ୍ରୁବକ ଏହି ମହାବିଶ୍ୱରେ ସେମାନଙ୍କର ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଭୂମିକା

ପାଳନ କରିବାରେ ବ୍ୟସ୍ତ । ଏହି ଧ୍ରୁବକଗୁଡ଼ିକ ବିଜ୍ଞାନୀମାନଙ୍କୁ ମିଳିଲା ପରୀକ୍ଷା ନିରୀକ୍ଷା ପଦ୍ଧତିରେ । ସେଗୁଡ଼ିକ ବିଜ୍ଞାନ ତାହାର ତତ୍ତ୍ୱ ମାଧ୍ୟମରେ ଉଦ୍‌ଭାବନ କରିନାହିଁ । ମନେହୁଏ ଏହି ଧ୍ରୁବକ ଗୁଡ଼ିକ ବିଶ୍ୱସୃଷ୍ଟି ସମୟରେ ପୂର୍ବ-ନିର୍ଦ୍ଧାରିତ ମାନନେଇ ଅବତରଣ କରିଛନ୍ତି । ଏହି ଧ୍ରୁବମାନ ଆଉ କେବେହେଲେ ତାହାର ମାନଚ୍ୟୁତ ହୋଇନାହିଁ । ଯଦି ଏହି ମାନର ମାନଦଣ୍ଡ ଟିକିଏ ବଦଳିଯାଆନ୍ତା, ତାହାହେଲେ ସମଗ୍ର ବିଶ୍ୱର ରୂପରେଖ ନିଶ୍ଚୟ ବଦଳିଯାଆନ୍ତା । ଯଦି ଏପରି ପରିବର୍ତ୍ତନ ସାଧିତ ହୋଇଥାଆନ୍ତା, ତେବେ ପୃଥିବୀରେ ମାନବର ଆବିର୍ଭାବ ହେବାର ନିଶ୍ଚିତ ବିଘ୍ନ ଘଟନ୍ତା । ଏହି ବିଷୟରେ ପ୍ରଖ୍ୟାତ ଉକ୍ତି ବିଜ୍ଞାନୀ ଫ୍ରିମାନଙ୍କର । ସେ କହିଥିଲେ, ''ମୋର ମୋଟେ ମନେହୁଏ ନାହିଁ ମୁଁ ଏହି ବିଶ୍ୱର ଜଣେ ଆଗନ୍ତୁକ ବୋଲି । ଯେତେ ଏହି ବିଶ୍ୱକୁ ଅନୁଧାବନ କରେ ଓ ଏହା ବିଷୟରେ ପ୍ରମାଣ ସଂଗ୍ରହ କରେ ସେତେ ମୋର ମନେହୁଏ ଯେ ଏ ବିଶ୍ୱ ଭଲ ଭାବରେ ଜାଣିଥିଲା ଆମର ଆସିବାର ବାର୍ତ୍ତା ।''

ବହୁ ବୈଜ୍ଞାନିକ ମନେ କରନ୍ତି ଯେ ବିଶ୍ୱତତ୍ତ୍ୱ ଓ ଧର୍ମତତ୍ତ୍ୱ ପରସ୍ପରର ନିକଟବର୍ତ୍ତୀ । ଯଦି ମହାବିସ୍ଫୋରଣରୁ ବିଶ୍ୱସୃଷ୍ଟି ହୋଇଥାଏ, ତାହାହେଲେ ଏହି ବିସ୍ଫୋରଣର କାରଣ କ'ଣ ଏହା ଏକ ଅତି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ । ସେହି ଏକ ଅଣୁ-ପରମାଣୁ ସୃଷ୍ଟି କରିଛି ମହା ନକ୍ଷତ୍ରପୁଞ୍ଜ ଓ ତାରାରାଜି; ଏବଂ ସେହି ଅଣୁରୁ ଜାତ ହୋଇଛି ମନୁଷ୍ୟ, ସେ ବିଜ୍ଞାନୀ ହେଉ ବା ଧାର୍ମିକ ହେଉ । ମଣିଷ ଜାତହେବାପରେ ଏହି ବିଶ୍ୱ ସୃଷ୍ଟିର ରହସ୍ୟ ଉଦ୍‌ଘାଟନରେ ବ୍ରତୀ ହୋଇ ପଡ଼ିଲା । ମଣିଷର ଆବିର୍ଭାବ ନିମନ୍ତେ ଏହି ମହାବିଶ୍ୱ ଏକ ବିଶେଷ ମୁହୂର୍ତ୍ତ ସୃଷ୍ଟି କରିଥିଲା । ଏହି ପ୍ରସ୍ତୁତି ପର୍ବକୁ ବିଜ୍ଞାନୀମାନେ ଆଖ୍ୟା ଦେଇଛନ୍ତି ''ସୂକ୍ଷ୍ମ ସଂଯୋଗ'' (Fine tuning) । ବିଶ୍ୱବିବର୍ତ୍ତନର ଇତିହାସରେ ଏପରି ସୂକ୍ଷ୍ମ-ଯୋଗାଯୋଗର ଦୃଷ୍ଟାନ୍ତ ବିରଳନୁହେଁ, ଉଦାହରଣ ସ୍ୱରୂପ ମହାବିସ୍ଫୋରଣ ସୃଷ୍ଟିର ଏକ ସେକେଣ୍ଡପରେ ସଂପ୍ରସାରଣର ହାର ଯଦି ୧/୧୦, ୦୦୦, ୦୦୦, ୦୦୦, ୦୦୦, ୦୦୦ ଭାଗ କମ୍ ହୁଅନ୍ତା, ତାହାହେଲେ ଏହି ବିଶ୍ୱ ଆଜିର ଆକାରରେ କେବେହେଲେ ଉପସ୍ଥିତ ହୋଇପାରନ୍ତା ନାହିଁ । ଏହି ଅବସ୍ଥାର ଅନେକ ପୂର୍ବରୁ ସଂକୋଚନ ଆରମ୍ଭ ହୋଇଯାଇ ଥାଆନ୍ତା । ଅର୍ଥାତ୍ ମନୁଷ୍ୟର ଆବିର୍ଭାବ୍ ପାଇଁ ଉଦ୍‌ଗ୍ରୀବ ଥିଲା ଏହି ବିଶ୍ୱ । କାରଣ କେବଳ ମଣିଷହିଁ ଏହି ବିଶ୍ୱ ବିଷୟରେ ଗଭୀର ଚିନ୍ତା କରି ଏହାର ଉଦ୍ଦେଶ୍ୟ, ଆଦର୍ଶ, ସୃଷ୍ଟି, ସ୍ଥିତି, ପ୍ରଳୟ ବିଷୟରେ ସମ୍ୟକ୍ ପ୍ରମାଣ ସଂଗ୍ରହ କରି ଏହାର ନିୟାମକଙ୍କ ରୂପରେଖ ଅନ୍ୱେଷଣରେ ସଫଳ ହୋଇପାରେ । ଏହି ମାନବ-ସଂଶ୍ଳିଷ୍ଟ ପଦ୍ଧତି ବା ନରତ୍ତ୍ୱୀୟ ନୀତି (Anthropic Principle) ନାମରେ ଅଭିହିତ । ଏହି ତତ୍ତ୍ୱ ଈଶ୍ୱର ବିଶ୍ୱାସକୁ ଦୃଢ଼ିଭୂତ କରେ । ସୃଷ୍ଟିକର୍ତ୍ତାଙ୍କର ଉଦ୍ଦେଶ୍ୟକୁ ଭିତ୍ତିଭୂମିରେ

ପରିଣତ କରେ । ତେଣୁ ଜନସାଧାରଣଙ୍କ ପ୍ରତି ଏହି ତତ୍ତ୍ୱର ଗଭୀର ଆହ୍ୱାନ ପରିଲକ୍ଷିତ ହୁଏ । ଏ ଯୁଗର ଅବକ୍ଷୟଗତ ଜୀବନରେ, ଅବିଶ୍ୱାସ ପୂର୍ଣ୍ଣ ମାନସିକତାରେ, କ୍ଷଣଭଙ୍ଗୁର ଆଦର୍ଶବାଦର ପରିପ୍ରେକ୍ଷୀରେ ଏହି ତତ୍ତ୍ୱର ଗଭୀରତା ଆକର୍ଷଣୀୟ । ଏହାର ଆବେଦନ ଦୁର୍ନିର୍ବାର । ବିଶ୍ୱର ପ୍ରସିଦ୍ଧ ବିଜ୍ଞାନୀମାନଙ୍କର ମହାସଭାରେ ଚେକ୍ ପ୍ରେସିଡେଣ୍ଟ, ହାଭେଲ୍, କହିଥିଲେ, ''ଏହି ବିଶ୍ୱରେ ଆମ୍ଭେମାନେ ମୋଟେ ଆକସ୍ମିକ ଦୁର୍ଘଟଣା ନୋହୁଁ ବ୍ରହ୍ମାଣ୍ଡ ସହିତ ଯୋଗସୂତ୍ର ଆମର ରହିଛି । ଆମ୍ଭେମାନେ ଉନ୍ନତ ସତ୍ତାର ଅଂଶ ବିଶେଷ ।''

ବିଜ୍ଞାନୀ ବା ପଣ୍ଡିତମାନଙ୍କର ମତ, ବିରୋଧାଭାସର ପ୍ରତୀକ । ଯୁଗଯୁଗଧରି ବିଶ୍ୱାସ ଅବିଶ୍ୱାସର ଦୋଳାରେ ଦୋଳାୟମାନ ମନୁଷ୍ୟର ଧାରଣା । ସତ୍ୟକୁ ଭ୍ରମ ଓ ଭ୍ରମକୁ ସତ୍ୟ ନିରୂପଣ କରିବାର ଦ୍ୱନ୍ଦାତ୍ମକ ପ୍ରବୃତ୍ତି ମନୁଷ୍ୟ ମନରେ ଆବହମାନ କାଳରୁ ପ୍ରୋଥିତ । ମାତ୍ର ମହାବିଜ୍ଞାନୀ ଟିପ୍‌ଲର୍ ନିସନ୍ଦେହ ଭାବରେ ଓ ଅବିଚଳିତ ଚିତ୍ତରେ ପ୍ରକାଶ କରିଛନ୍ତି ଯେ ''ପ୍ରାଣ''ର ପ୍ରକାଶ ମହାବିଶ୍ୱରେ ଏକ ଯୁଗାନ୍ତକାରୀ ସତ୍ୟ ଏବଂ ଏହାହିଁ ଏହି ମହାବିଶ୍ୱର ଅସଲ ଉଦ୍ଦେଶ୍ୟ । ଏହି ବିଷୟ ପ୍ରତିପାଦନ କରିବାକୁ ଯାଇ ତାଙ୍କର ବିଶ୍ୱବିଖ୍ୟାତ ଗ୍ରନ୍ଥ : "The physics of immortality" ର ମୁଖବନ୍ଧରେ ସେ ଲେଖିଛନ୍ତି - ''ଆଜିର ଯୁଗରେ ଧର୍ମ ଓ ବିଜ୍ଞାନ ଏକିକରଣ ନେଇ ଲେଖା ଅତ୍ୟନ୍ତ ବିରଳ । ଧର୍ମତତ୍ତ୍ୱ ପଦାର୍ଥ ବିଜ୍ଞାନର ଏକ ଶାଖା ବିଶେଷ । ବିଜ୍ଞାନୀମାନେ ଗଣନାକରି ଈଶ୍ୱରଙ୍କର ଅସ୍ତିତ୍ୱ ଅନୁମାନ କରିପାରନ୍ତି ବା ମୃତ ମନୁଷ୍ୟର ଅନନ୍ତଜୀବନର ସମ୍ଭାବନାମଧ ପ୍ରତିପାଦିତ କରିପାରନ୍ତି; ଠିକ୍ ଯେପରି ସେମାନେ ଇଲେକ୍‌ଟ୍ରନର ଚରିତ୍ର ଗଣନାକରି ନିର୍ଦ୍ଧାରିତ କରିପାରନ୍ତି ସେପରିଭାବରେ । ଏହି ସମନ୍ୱୟ ସଂବଳିତ ଲେଖା ଏବେ ଏକାବେଳେକେ ବିରଳ । କିନ୍ତୁ ଏହି ବହିରେ ମୁଁ ଏକାନ୍ତଭାବେ ସେହି ପ୍ରଚେଷ୍ଟା କରିଛି । ଅନ୍ୟମାନେ ହୁଏତ ଭାବିପାରନ୍ତି ଯେ ମୁଁ ପ୍ରକୃତରେ ବସ୍ତୁନିଷ୍ଠ କି ନୁହେଁ ? ମାତ୍ର ମୁଁ ଏବିଷୟରେ ସମ୍ପୂର୍ଣ୍ଣଭାବେ ସ୍ଥିର ନିଶ୍ଚିତ । ମୁଁ ପୁଣି ପାଠକମାନଙ୍କ ସହିତ ମୋର ବିସ୍ମିତ ହେବାର ଅଭିଜ୍ଞତା ମଧ ପ୍ରକାଶ କରୁଛି । କାରଣ ୨୦ବର୍ଷ ପୂର୍ବେ ମୁଁ ଯେତେବେଳେ ଜ୍ୟୋତି ପଦାର୍ଥବିଦ୍ ରୂପେ ମୋର ଜୀବନ ଆରମ୍ଭ କରେ, ସେତେବେଳେ ମୁଁ ଥିଲି ଜଣେ ଦୃଢ଼ ନାସ୍ତିକ, ସ୍ୱପ୍ନରେ ମଧ ମୋର ଧାରଣା ନଥିଲା ଯେ ଦିନେ ଏପରି ଗୋଟିଏ ବହି ଲେଖିବି ଯାହା ଇହୁଦି ଓ ଖ୍ରୀଷ୍ଟିଆନ୍ ମାନଙ୍କର ମୂଳ ଧର୍ମତତ୍ତ୍ୱର ସତ୍ୟତା ପ୍ରମାଣ କରିବା ପାଇଁ ଉଦ୍ଦିଷ୍ଟ ହେବ । ଏହି ସବୁ ଧର୍ମତତ୍ତ୍ୱର ଉପାଦାନ ଗୁଡିକ ଯେଉଁ ବହିରେ ପଦାର୍ଥ ବିଦ୍ୟାର ସୂତ୍ରମାନଙ୍କରୁ ସାବଲିଳ ଭାବରେ ନିସୃତ ହୁଏ, ସେହି ବହିରେ ଆଲୋଚିତ ହେବ । ଯେଉଁ ପଦାର୍ଥ ବିଦ୍ୟାର ବିଶେଷ ବିଭାବ ନେଇ ମୋର ଗବେଷଣା, ସେହି ବିଷୟରୁ ଅନୁସୃତ ଅକାଟ୍ୟ ଯୁକ୍ତିହିଁ ମୋତେ ଏହି ସିଦ୍ଧାନ୍ତ ଆଡକୁ ଅଗ୍ରସର ହେବାକୁ ବାଧ କରିଛି ଯେ, ଆମର ମୃତ୍ୟୁପରେ ବିଭିନ୍ନ-ଧର୍ମ-

ବର୍ଣ୍ଣିତ ସ୍ୱର୍ଗ ରାଜ୍ୟରେ ଆମ୍ଭେମାନେ ଜୀବନ ଯାପନ କରିବା । ଏହାଛଡା, ମୁଁ ପ୍ରମାଣ କରିପାରେ ଯେ ଏହି ମହାବିଶ୍ୱରେ ପ୍ରାଣର ଭୂମିକା ଅକିଞ୍ଚିତକର ନୁହେଁ । ବରଂ ତାହା ଏହି ବିଶ୍ୱର ମୂଳ ଉଦ୍ଦେଶ୍ୟରୂପେ ଉଦ୍‌ଭାସିତ । କିପରି ଭାବରେ ଏହିସବୁ ଧାରଣା ପ୍ରମାଣ ସାପେକ୍ଷ ହେବ, ତାହାହିଁ ମୋର ବହିର ମୂଳ ଉପଜୀବ୍ୟ । ଏହି ପ୍ରାମାଣ୍ୟ ବିଷୟବସ୍ତୁଯେ ବୈଜ୍ଞାନିକ ବିଶ୍ଳେଷଣର ଫଳଶୃତି ହେବ ଏହା ମୋ ପକ୍ଷରେ ଏକ ବିରାଟ ବିସ୍ମୟ । ପଦାର୍ଥବିଦ୍ ହିସାବରେ ଜୀବନ ଆରମ୍ଭ କରିବାସମୟରେ ଏପରି କଥା କେବେହେଲେ କଳ୍ପନା ମଧ୍ୟ କରିନାହିଁ । ସ୍ୱପ୍ନରେ ମଧ୍ୟ ଭାବି ନଥିଲି ଯେ ମୁଁ ଦିନେ ଲେଖିବି ଯେ ସ୍ୱର୍ଗରାଜ୍ୟର ଅସ୍ତିତ୍ୱ ଅଛି । ଆଉ ମୃତ୍ୟୁପରେ ପ୍ରତ୍ୟେକେ ପୁନର୍ଜନ୍ମ ଲାଭ କରିବେ ବୋଲି । ପିଲାଦିନେ ଏପରି ଭାବନାକୁ ଭୁଲବୋଲି କେତେଥର ମନରୁ ତଡେଇ ଦେଇଛି । ମାତ୍ର, ଆଜି ପଦାର୍ଥବିଦ୍ ରୂପେ ମୋର ବସ୍ତୁତଃ ଅବସ୍ଥାନ ଉପର୍ଯ୍ୟୁକ୍ତ ରୂପେ ପରିସ୍ଫୁଟ । ଏହାର ଅନ୍ୟଥା କରିବାର କ୍ଷମତା ମୋରନାହିଁ ।''

ଟିପ୍‌ଲର୍ କହିଛନ୍ତି ଯେ ଅନ୍ୟ ବୈଜ୍ଞାନିକ, ପଦାର୍ଥବିଦ୍ ଓ ପଣ୍ଡିତମାନେ ତାଙ୍କୁ ସ୍ୱର୍ଗ, ଭଗବାନ ଇତ୍ୟାଦି ଶବ୍ଦ ପରିହାର କରିବାକୁ ଉପଦେଶ ଦେଇଥିଲେ । ସେମାନଙ୍କର ମତ ଯେ ଦାର୍ଶନିକ ଓ ଧାର୍ମିକ ମାନଙ୍କ ପ୍ରଭାବ ଯୁକ୍ତ ହୋଇ ଏହି ଶବ୍ଦଗୁଡିକ ମୂର୍ଖତାରେ ପରିଣତ । ତେଣୁ ''ଭଗବାନ'' ଶବ୍ଦଟିକୁ ନିମ୍ନଗାମୀ କରିଦେବା ଅନୁଚିତ । ସେମାନେ ଟିପ୍‌ଲର୍‌ଙ୍କୁ ଜଣାଇଥିଲେ ଯେ "OMEGA POINT" ଗୋଟିଏ ଅତି ଚମତ୍କାର ବୈଜ୍ଞାନିକ ଚିନ୍ତା । ତାକୁ ଭଗବାନ ରୂପେ ଚିତ୍ରିତ କରି ବିଷୟବସ୍ତୁଟିକୁ ଅତି ସାଧାରଣ, ତରଳ ଭାବରେ ଚିତ୍ରଣ କରିବା ସମୀଚିନ ନୁହେଁ । ଟିପ୍‌ଲର୍ ଲେଖିଛନ୍ତି ଯେ ବନ୍ଧୁମାନଙ୍କର ଉକ୍ତି ଯୁକ୍ତି ନିର୍ଭର ଏଥିରେ ସନ୍ଦେହ ନାହିଁ । ମାତ୍ର ଯେଉଁ ଶବ୍ଦ ଗୁଡିକ ଧର୍ମ-ନିର୍ଭର, ସେଗୁଡିକର ମନୁଷ୍ୟମନରେ ଏକ ବିଶେଷ ସ୍ଥାନ ନିରୂପିତ ହୋଇ ଅଛି । ସେଥିପାଇଁ ଏହି ଶବ୍ଦଗୁଡିକ ବୈଜ୍ଞାନିକ ପ୍ରତିଶବ୍ଦ ରୂପେ ସେ ଚାଲୁକରିବାକୁ ଚାହାନ୍ତି । ତେଣୁ ତାଙ୍କ ବହିରେ ଏହି ଚାଲୁ ଶବ୍ଦ ଗୁଡିକର ବ୍ୟବହାର, ଅର୍ଥ ବୁଝିବାରେ ପାଠକ ମାନଙ୍କୁ ସାହାଯ୍ୟ କରିବବୋଲି ସେଗୁଡିକର ବ୍ୟବହାର କରିଅଛନ୍ତି । ପୁନର୍ଜନ୍ମ କହିଲେ ସାଧାରଣ ମଣିଷର ମନରେ ଗୋଟିଏ ସୁସ୍ପଷ୍ଟ ଅର୍ଥ ଅଛି । ତେଣୁ ପଦାର୍ଥବିଦ୍ ଯଦି ପୂର୍ବାଭାସ ଦିଅନ୍ତି ଯେ ଏଭଳି ଘଟଣା ଦିନେ ପୁଣି ଘଟିବ, ତାହାହେଲେ ଏବିଷୟର ବାଖ୍ୟା କରିବା ନିମନ୍ତେ ଅନ୍ୟ ଶବ୍ଦର ବ୍ୟବହାର, ତାଙ୍କପକ୍ଷରେ ଅଯୌକ୍ତିକ ବୋଲି ମନେହୋଇଥିଲା ।

ଅନ୍ୟ ବୈଜ୍ଞାନିକ ମାନେ କଠୋର ଭାବେ ନାସ୍ତିକ । ସେମାନେ ଭାବନ୍ତି ଯେ ଧର୍ମଚିନ୍ତା, ବିଜ୍ଞାନର ଅବତରଣ କରିବାର ପୂର୍ବ ଭାବନା । ସେମାନେ ସ୍ଥିର ନିଶ୍ଚିତ ଯେ

ଈଶ୍ୱର ବିଶ୍ୱାସ ବହୁଦିନ ପୂର୍ବେ ପରିତ୍ୟକ୍ତ ହୋଇଛି ବିଜ୍ଞାନୀମାନଙ୍କ ଦ୍ୱାରା । ତାଙ୍କ ଜୀବନର ଟିପ୍‌ଲର୍ ଅନୁଭବ କରିଛନ୍ତି ଯେ ଅନେକ ପୂର୍ବଚିନ୍ତା, ଯାହା ପରିତ୍ୟକ୍ତ ହୋଇଥିଲା ବିଜ୍ଞାନୀ ମାନଙ୍କ ଦ୍ୱାରା, ତାହାର ପୁନର୍ବିବେଚନା ହେବାର ଆବଶ୍ୟକତା ରହିଛି । ତାଙ୍କ ମତରେ ବିଜ୍ଞାନୀ ମାନଙ୍କ ଈଶ୍ୱର ବିଶ୍ୱାସ ବିଷୟରେ ଭାବିବାର ସମୟ ଆସିଛି । ସେ ଦୃଢ଼ ମତ ପୋଷଣ କରିଥିଲେ ଯେ ତାଙ୍କ ବହି ଏ ଦିଗରେ ବିଜ୍ଞାନୀମାନଙ୍କୁ ନବପ୍ରେରଣା ଦେଇ ଏହି କାର୍ଯ୍ୟରେ ନିୟୋଜିତ କରିପାରିବ । ଧର୍ମତତ୍ତ୍ୱକୁ ପଦାର୍ଥବିଦ୍ୟାର ଅନ୍ତର୍ଭୁକ୍ତ କରିବାର ବେଳ ଉପସ୍ଥିତ । ସ୍ୱର୍ଗକୁ ଏକ ଇଲେକଟ୍ରନ୍ ପରି ବାସ୍ତବତାରେ ପରିଣତ କରିବାର ସମୟ ଆସିଛି ବୋଲି ମନେହୁଏ ତାଙ୍କ ମତରେ । ଆଉ ଗୋଟିଏ ବିଷୟରେ ସେ ନିଶ୍ଚିତ ଭାବରେ ମାନବ ସମାଜକୁ ସତର୍କ କରିଦେଇ ଅଛନ୍ତି । ସୂର୍ଯ୍ୟ ପ୍ରତିଦିନ ଟିକିଏ ଟିକିଏ କରି ବେଶୀ ଉଜ୍ଜ୍ୱଳ ହେଉଛି । ସାତକୋଟି ବର୍ଷପରେ ତାର ବହିରାବଣର ସ୍ଥିତ ହୋଇ ପୃଥିବୀ ଗ୍ରାସ କରିପକାଇବ । ତାହାର ପ୍ରଚଣ୍ଡ ତାପରେ ବାଷ୍ପହୋଇଯିବ ଏହି ଛୋଟ ଗ୍ରହ, ପୃଥିବୀ; ତାହାର ଅଧିବାସୀଙ୍କର ପ୍ରାଣ ଅଚିରେ ନିଃଶେଷିତ ହେବ । ଏହି ଅବସ୍ଥାର ବହୁ ପୂର୍ବରୁ ଅସମ୍ଭବ ଉତ୍ତାପ ଫଳରେ ଉଦ୍‌ଭିଦର ଅନ୍ତହେବ ଏହି ପୃଥିବୀର ମାଟିରୁ । ୭୦୦/୯୦୦ କୋଟିବର୍ଷ ମଧ୍ୟରେ ଏହି ଗ୍ରହରେ ପ୍ରାଣୀ ଓ ଜୀବ ଜଗତ ନିଶ୍ଚିହ୍ନ ହୋଇଯାଇପାରେ । ଏହି ଅବସ୍ଥାର ବହୁ ପୂର୍ବରୁ ''ପ୍ରାଣ'' କୁ ପୃଥିବୀ ଛାଡି ଅନ୍ୟ କୌଣସି ଗ୍ରହର ଅଧିବାସୀ ହେବାକୁ ପଡିବ ଏହି ବିଶ୍ୱରେ । ଅନ୍ୟ ଅଂଶ ଦଖଲ କରିବାକୁ ହେବ ଏହି ମହାବିଶ୍ୱରେ । ଏହା କିପରି ଭାବରେ ସମ୍ଭବପର ହେବ ତାହାର ଇଙ୍ଗିତ ମଧ୍ୟ ନେଇଛନ୍ତି ଟିପ୍‌ଲର୍ । ମଣିଷ ତିଆରି କଣ୍ଢେଇ-ରୋବଟ ପଠାଯିବ ମହାଶୂନ୍ୟକୁ ନଭଶ୍ଚାରୀରୂପେ । ଗୋଟିଏ ନକ୍ଷତ୍ର ଅନ୍ୟ ନକ୍ଷତ୍ର ଠାରୁ ବହୁ ଆଲୋକ ବର୍ଷ ଦୂରରେ ଅବସ୍ଥିତ । ଆଲୋକର ବେଗ ହେଲା ସେକେଣ୍ଡରେ ୩ ଲକ୍ଷ କିଲୋମିଟର । ମଣିଷକୁ ଅନ୍ୟ ନକ୍ଷତ୍ରକୁ ଯିବାକୁ ହେଲେ ଲାଗିବ ବହୁଯୁଗ । ତେଣୁ ରୋବଟ୍ ନିକ୍ଷେପଛଡା ଅନ୍ୟ ଗତି ନାହିଁ । ରୋବଟ ଅତ୍ୟନ୍ତ ହାଲୁକା, ତେଣୁ ତାର ଗତି ମଧ୍ୟ ତୀବ୍ର କରାଯାଇପାରେ । ସେ ହେଉଛି ଶ୍ରେଷ୍ଠ ଅଗ୍ରଦୂତ । କମ୍ପ୍ୟୁଟର ମାଧ୍ୟମରେ ତାକୁ ପଠାଇ ଦୂରସ୍ଥ ଗ୍ରହରେ ପ୍ରାଣର ବୀଜ ବପନ କରାଯାଇପାରେ । ଏହି ବୀଜ ବିଜ୍ଞାନର DNA ସୂତ୍ର ଅନୁସରଣକରି ବିଭିନ୍ନ ପ୍ରାଣୀମାନଙ୍କଠାରୁ ସଂଗ୍ରହକରି ଉନ୍ନତ ଫର୍ମୁଲା ସାହାଯ୍ୟରେ ଗ୍ରହାନ୍ତରରେ ପ୍ରବେଶଲାଭ କରି ସେଠାରେ ପ୍ରାଣ ସଂଚାର କରିବ କମ୍ପ୍ୟୁଟର । ଟିପ୍‌ଲର୍‌ଙ୍କ ଗଭୀର ବିଶ୍ୱାସ ଯେ ଏହି କମ୍ପ୍ୟୁଟର ଯନ୍ତ୍ର ଦିନେ ମନୁଷ୍ୟ ଭଳି ବୁଦ୍ଧିମାନ ହେବ । ଏହି ଧାରଣାର ପରିପୁଷ୍ଟି ନିମନ୍ତେ ବହୁଯୁକ୍ତି ସମ୍ବଳିତ ଉକ୍ତି ତାଙ୍କର ପୁସ୍ତକରେ ସ୍ଥାନ ପାଇଅଛି । ସେ ରାଜାର୍ ପେନ୍‌ରୋଜ୍ ଓ ଅନ୍ୟାନ୍ୟ ବିଜ୍ଞାନୀ ମାନଙ୍କର

ମତକୁ ଏଡାଇ ଦେଇ ଲେଖିଛନ୍ତି ଯେ ଏହି ଯନ୍ତ୍ର ଗୁଡିକ ଗତ ୨୦ ବର୍ଷରେ କ୍ଷମତାରେ ହଜାର ଗୁଣ ଶକ୍ତିଶାଳୀ ହୋଇପଡିଛି । ବିଶେଷଜ୍ଞ ମାନଙ୍କ ମତକୁ ଆଶ୍ରୟ କରି ସେ ଏହି ସିଦ୍ଧାନ୍ତରେ ଉପନୀତ ଯେ ଏହି ଦଶବର୍ଷ ମଧ୍ୟରେ ଏହି କମ୍ପ୍ୟୁଟର ବୁଦ୍ଧିରେ ମନୁଷ୍ୟର ସମକକ୍ଷ ହୋଇପାରିବ । ଶୀଘ୍ର ଏହାର କର୍ମ କ୍ଷମତା ଆଶାତୀତ ଭାବରେ ବୃଦ୍ଧିପାଇ ବହୁ ବିସ୍ମୟକର କାର୍ଯ୍ୟ ସମ୍ପାଦନା କରିବାରେ ସଫଳ ହୋଇପାରିବ । ଆଉ, ରୋବଟ କଥା ଲେଖିବାକୁ ଯାଇ ଟିପ୍‌ଲର୍ କହିଛନ୍ତି ଯେ ଏହାର ଆକୃତି ଖୁବ୍ ଛୋଟ ହେବ । ତାନହେଲେ ମହାକାଶଯାନ ବେଶୀ ଭାରି ହୋଇପଡିବ । ତାହାହେଲେ ଦୂରଯାତ୍ରାରେ ଇନ୍ଧନ ଆବଶ୍ୟକ ହେବ ପ୍ରଚୁର ପରିମାଣରେ । ଭବିଷ୍ୟତରେ ଯାତ୍ରୀ ହେବ କ୍ଷୁଦ୍ରାତିକ୍ଷୁଦ୍ର କମ୍ପ୍ୟୁଟର, ଆଉ ଏହାର ଇନ୍ଧନ ଯୋଗାଇବ ପେଟ୍ରୋଲଜାତ ଦ୍ରବ୍ୟ ନୁହେଁ - ''ଆଣ୍ଟିମ୍ୟାଟର୍'' ଅର୍ଥାତ୍ ଜଡର ବିପରୀତ ଶକ୍ତି । ଏଥିରେ ବସ୍ତୁ କଣା ଗୁଡିକ ଜଡ ପଦାର୍ଥରେ ପ୍ରବାହିତ ବିଜୁଳି ଚାର୍ଯର ଠିକ୍ ବିପରୀତ । ମ୍ୟାଟର୍ ସଂସ୍ପର୍ଶରେ ଆସିଲେ ଆଣ୍ଟିମ୍ୟାଟର ନଷ୍ଟହୋଇ ତିଆରିକରେ ଅସମ୍ଭବ କ୍ଷମତା ସମ୍ପନ୍ନ ବିଦ୍ୟୁତ୍ ଶକ୍ତି । ଏହାର ଉତ୍ପାଦନ ଅତ୍ୟନ୍ତ ଦୁରୁହ । ମାତ୍ର ଅତି ଅଳ୍ପକ୍ଷମତା ବିଶିଷ୍ଟ ଶକ୍ତିରେ ବହୁଳ କର୍ମ ସାଧିତ ହୋଇପାରେ । ଏହା ବିଶେଷ ଉପଯୋଗୀ ମଧ୍ୟ । ଏହା ସାହାଯ୍ୟରେ ଅସାଧସାଧନ ସମ୍ଭବପର ହୋଇପାରେ । ଟିପ୍‌ଲର୍ କହିଛନ୍ତି ଯେ ବ୍ରହ୍ମାଣ୍ଡବ୍ୟାପୀ ପ୍ରାଣୀ ସମାଜର ବିସ୍ତାର ଧୀରେ ଧୀରେ ଘଟିବ । ରୋବଟ ପ୍ରଥମେ ଗୋଟିଏ ନକ୍ଷତ୍ରରେ ପ୍ରାଣୀ ସମାଜର ସୃଷ୍ଟି କରିବ । ତାପରେ ଏହା ନକ୍ଷତ୍ରରୁ ଅନ୍ୟ ନକ୍ଷତ୍ରକୁ ବ୍ୟାପିବ । ଏହିପରି ବିସ୍ତାର ଲାଭ କରି ସମଗ୍ର ଛାୟାପଥରେ ଘନବସତି ସୃଷ୍ଟି କରିବ ପ୍ରାଣୀମାନଙ୍କର । ତାଙ୍କ ମତରେ ଏହି ଅବସ୍ଥା ପ୍ରାପ୍ତହେବ ୬ଲକ୍ଷ ବର୍ଷ ଭିତରେ । ତାପରେ ନିହାରିକା ଆଣ୍ଡ୍ରୋମିଡାରେ ବସତି ସ୍ଥାପନ କରିବାକୁ ଲାଗିବ ୩ଲକ୍ଷ ବର୍ଷ । ଭାରଗୋ (କନ୍ୟା) ନିହାରିକାରେ ବସତି ସ୍ଥାପନ କରିବାକୁ ଲାଗିବ ୧୦ଲକ୍ଷବର୍ଷ । ଏହିପରି ପ୍ରାଣୀ-ରାଜ୍ୟ-ବିସ୍ତାର ଅଗ୍ରଗତି ଲାଭକରିବ ଦ୍ରୁତ ଗତିରେ । ଏହି ବିସ୍ତାରର ଗୋଟିଏ ବିଶେଷ ଉଦ୍ଦେଶ୍ୟ ମଧ୍ୟ ଅଛି । ଏହାର ବିସ୍ତାର ହେଲେ ମହାସଂକୋଚ (Big Crunch) ଜନିତ ପୂର୍ଣ୍ଣ ସଂହାର କିଛି ପରିମାଣରେ ସ୍ଥଗିତ ହେବାର ସମ୍ଭାବନା ଉଜ୍ଜ୍ୱଳ । ଯଦି ଏହି ମହାସଂକୋଚନ ସବୁ ଦିଗରୁ ସମାନ ଭାବରେ ଆରମ୍ଭ ହୁଏ, ତାହାହେଲେ ସର୍ବନାଶର ଗତି ତ୍ୱରାନ୍ୱିତ ହେବ । ଏହି ସଂକୋଚକୁ ନିୟନ୍ତ୍ରଣ କରିବା ଏକାନ୍ତ ଆବଶ୍ୟକ ।

କିପରିଭାବେ ଏହି ସର୍ବନାଶକୁ ପ୍ରତିରୋଧ କରାଯାଇପାରେ ତାର ସୂତ୍ର ମଧ୍ୟ ଜଣାଇଛନ୍ତି ଟିପ୍‌ଲର୍ । ଏହି ବିଶ୍ୱର ଧ୍ୱଂସ ପ୍ରକ୍ରିୟାର ମଧ୍ୟ ଆଶିଂକ ଗତିରୋଧ କରାଯାଇପାରିବ ଏକ ମହାବିଶ୍ୱତତ୍ତ୍ୱ ସୂତ୍ର ଅବଲମ୍ବନ କରି । ଏହି ଧ୍ୱଂସପ୍ରକ୍ରିୟାକୁ

ବିଜ୍ଞାନୀମାନେ ମହାବିଶୃଙ୍ଖଳା ବା Chaos ନାମ ଦେଇଛନ୍ତି ଏହାର ଲହରୀ କୌଣସି ଏକସ୍ଥାନରେ ବିଶୃଙ୍ଖଳାର ଲୀଳା ଦେଖାଗଲେ, ବିଶ୍ୱର ଅନ୍ୟସ୍ଥାନରେ ଏହାର ବିପୁଳ ପ୍ରଭାବ ଅନୁଭୂତ ହୋଇଥାଏ । ଅର୍ଥାତ୍ ସାମାନ୍ୟ କ୍ରିୟାରେ ବିଶାଳ ପ୍ରତିକ୍ରିୟା । ଧରନ୍ତୁ ଯଦି ଲଣ୍ଡନରେ ଗୋଳମାଳ ହୁଏ ତାହାର ପ୍ରଭାବ ଯାଇ ପଡିବ ଟୋକିଓ ଉପରେ । କୌଣସି ଏକ ସ୍ଥାନରେ ପାଣିପାଗର ଅବନତି ଦେଖାଦେଲେ, ତାହାର ପ୍ରଭାବ ପଡିବ ପୃଥିବୀରେ ଅବସ୍ଥିତ ଅପରପାର୍ଶ୍ୱରେ । ସେହି ''ମହାବିଶୃଙ୍ଖଳା''ର ସାହାଯ୍ୟ ନେଇ ମହାସଂକୋଚର ଅବରୋଧ ମଧ କରାଯାଇପାରେ । ଯଦି ଜୀବନ ବିଭିନ୍ନ ନିହାରିକାରେ ଅବସ୍ଥାପିତ ହୋଇ ତାହାର ବିକାଶ ଓ ଅଗ୍ରଗତି ସାଧିତ ହୁଏ, ତାହାହେଲେ ଏହି ମହାସଂକୋଚନ ବିରୁଦ୍ଧରେ ବିଭିନ୍ନ ପଦକ୍ଷେପ ଦୂରଦୂରାନ୍ତରେ ଜୀବନୀ ଶକ୍ତିର ପ୍ରଭାବରେ ନିଆଯିବାର ବାଧା ରହିବ ନାହିଁ । ମହାକର୍ଷ ହେଉଛି ମହାସଂକୋଚନର ଆଦି-ମୂଳ । ସେହି ମାଧ୍ୟାକର୍ଷଣ ଶକ୍ତିକୁ ବାଧା ଦେଲେ ମହାସଂକୋଚନର ଗତି କିୟତ ପରିମାଣରେ ସ୍ତିମିତ ହୋଇଯିବ । ଯଥା ବିଶ୍ୱର ବିଭିନ୍ନ ସ୍ଥାନରେ ବିସ୍ଫୋରଣ ଘଟାଇଲେ ମାଧ୍ୟାକର୍ଷଣ ଶକ୍ତି ବ୍ୟାହତ ହେବ । ସେଥିରେ ବିଶୃଙ୍ଖଳା ବିଚ୍ଛୁରୀତ ହେବ । ତାହାର ଗତି ରୁଦ୍ଧ ନହେଲେ ମଧ ଧୀର ହୋଇଯିବ । ଫଳରେ ମହାସଂକୋଚନ ମଧ ବାଧାପ୍ରାପ୍ତ ହୋଇ ତା ବାଟରେ ଅଗ୍ରସର ହୋଇପାରିବ ନାହିଁ । ବିସ୍ଫୋରଣ ଗୁଡିକର ବିଭିନ୍ନ ମାତ୍ରା ପ୍ରୟୋଗରେ ବିଭିନ୍ନ ସ୍ଥାନରେ ମହା ସଂକୋଚନର ବେଗ ହେବ ବିଭିନ୍ନ ପ୍ରକାରର, ବିଭିନ୍ନ ସ୍ଥାନରେ । ତାପମାତ୍ରା ବିଶ୍ୱର ବିଭିନ୍ନ ସ୍ଥାନରେ ବିଭିନ୍ନ ରକମର ହେବ - କେଉଁଠିବା କମ୍ ଆଉ କେଉଁଠି ବା ବେଶୀ । ଏପରି ଅବସ୍ଥାରେ ବିଶେଷ ଶକ୍ତିକୁ ବିଶେଷ ଉଦ୍ଦେଶ୍ୟରେ ପ୍ରୟୋଗ କରାଯାଇ ପାରେ । ବିଶ୍ୱର ଶେଷ ଲଗ୍ନରେ କମ୍ପ୍ୟୁଟରର ଅତ୍ୟନ୍ତ ଜରୁରୀ କର୍ତ୍ତବ୍ୟ ରହିଛି । ସେହି କମ୍ପ୍ୟୁଟର ସାହାଯ୍ୟରେ କୌଣସି ପ୍ରାଣୀର ବିସ୍ତାରିତ ବିବରଣୀ, ଖବର, ମାନ, ଉପାଦାନ ଇତ୍ୟାଦି ଜଣାଥିଲେ, ପରବର୍ତ୍ତୀ କାଳରେ ସେହି ପ୍ରାଣୀକୁ ଉଜ୍ଜୀବିତ କରାଯାଇପାରେ । ସେ ଯନ୍ତ୍ରଗଣକ ବର୍ତ୍ତମାନ ସୁଦ୍ଧା ଉଦ୍‌ଭାବିତ ହୋଇ ନଥିଲେ ମଧ, ପରବର୍ତ୍ତୀ ଯୁଗରେ ନିଶ୍ଚୟ ଉଦ୍‌ଭାବିତ ହେବ । ଯୁଗର ଜରୁରୀ ଆବଶ୍ୟକତାରୁ ତାହା ଜନ୍ମନେବ, ମାନବର ଅଭାବନୀୟ ଚିନ୍ତା ଶକ୍ତିରୁ । ଏହିପରି ଭାବରେ ଦିନେ Omega Point ର କରୁଣାରୁ ପୁନର୍ଜ୍ଜିବିତ ହେବ ସମସ୍ତ ପ୍ରାଣୀ ସମାଜ ଓ ମନୁଷ୍ୟ ସମାଜ ଇତ୍ୟାଦି । ତେବେ ପ୍ରଶ୍ନ ହେଉଛି ଏହି ''ସର୍ବଶେଷ ବିନ୍ଦୁ'' Omega Point କେତେବେଳେ ବିଶ୍ୱକୁ ରକ୍ଷାକରିପାରେ ? ବହୁ ଗାଣିତିକ ହିସାବ କରି ଟିପ୍‌ଲର୍ ଏହି ସିଦ୍ଧାନ୍ତରେ ପହଞ୍ଚିଛନ୍ତି ଯେ ''ମହାସଂକୋଚନ'' ମୁହୂର୍ତ୍ତର ସାମାନ୍ୟ ସମୟ ପୂର୍ବରୁ (ଅର୍ଥାତ୍ ଏକ ସେକେଣ୍ଡ ବିଭକ୍ତ ୧ଶହ ତେଇଶିଟା ଶୂନ୍ୟ ଯେତେଭାଗ ସେତିକି ସମୟ

ପୂର୍ବରୁ) ପୁର୍ନଜୀବିତ ହେବେ ସମସ୍ତ ପ୍ରାଣୀ । ଏହି ଗଣିତ ତାଙ୍କର ମହାଗ୍ରନ୍ଥ "Physics of Immortality" ର ବହୁପୃଷ୍ଠାରେ ବିସ୍ତୃତ ଭାବରେ ଅବସ୍ଥାପିତ । ଏହି ଗାଣିତ୍ୟିକ ହିସାବ ସେହି ମହାନ ସର୍ବଶେଷବିନ୍ଦୁ ବା Omega Point ର ସ୍ଥିରତା ପ୍ରମାଣ କରିବା ପାଇଁ ଉଦ୍ଦିଷ୍ଟ । ତାହାଛଡା ତାଙ୍କର ଏକ ଯୁଗାନ୍ତ ଆନୟନକାରି ଅନୁମାନକୁ ବିଶେଷ ଭାବରେ ଶକ୍ତ ମୂଳଦୁଆ ଉପରେ ଅବସ୍ଥାପିତ କରିବାର ପ୍ରୟାସ ମଧ୍ୟ ବଳବତ୍ତର ରହିଛି । କାରଣ ସେ ଦୃଢ଼ ନିଶ୍ଚୟ ଭାବରେ ସିଦ୍ଧାନ୍ତ ନେଇଛନ୍ତି ଯେ ତାଙ୍କର ତତ୍ତ୍ୱ ଯଦି ସତ୍ୟ ହୁଏ ତେବେ ତାଙ୍କର ଅନୁସୃତ ତଥ୍ୟମଧ୍ୟ ସତ୍ୟ ହେବ । ଟିପ୍‌ଲର୍‌ଙ୍କ ମତ, ବିଶ୍ୱର ମହାସମ୍ପ୍ରସାରଣ ଦିନେ ବନ୍ଦ ହୋଇ ମହାସଂକୋଚନ ଆରମ୍ଭ ହେବ । ଏହି ସଂକୋଚନର ଶେଷ ଅବସ୍ଥା ହେବ ଏକ ବିନ୍ଦୁରେ ଏହାର ଅବସ୍ଥାନ । ଏହି ବିନ୍ଦୁକୁ ସେ Omega Point ନାମରେ ନାମିତ କରିଛନ୍ତି । ତାଙ୍କର ତଥ୍ୟର ପ୍ରମାଣ ହେଉଛି ଏହି ସର୍ବଶେଷବିନ୍ଦୁ । ତାହା କେବେଯେ ଘଟିବ ତାହା ବର୍ତ୍ତମାନ ଅବସ୍ଥାରେ ପ୍ରମାଣଯୋଗ୍ୟ ନୁହେଁ । ଯଦି କେବେ ଏହା ଘଟେ, ତେବେ ଈଶ୍ୱର ଅବିସମ୍ବାଦିତ ଅସ୍ତିତ୍ୱର ଏହାହେବ ଏକ ଧ୍ରୁବ ପ୍ରମାଣ । ଏହି ବିଷୟବସ୍ତୁର ବୈଜ୍ଞାନିକ ପ୍ରମାଣ ବିଷୟରେ ଅନ୍ୟ ବିଜ୍ଞାନୀମାନେ ସନ୍ଦିହାନ ହୋଇ କଠୋର ସମାଲୋଚନା କରିଛନ୍ତି । କେତେକ ସାମ୍ବାଦିକ ତାଙ୍କୁ ପଚାରିଥିଲେ ଯେ ଆପଣ କ'ଣ ବିଜ୍ଞାନକୁ ଦର୍ଶନ ସହିତ ଅପମିଶ୍ରଣ କରୁନାହାନ୍ତି ? ତାର ଉତ୍ତରରେ ଟିପ୍‌ଲର୍ କହିଥିଲେ ଯେ ଦର୍ଶନରେ ଯେଉଁ ସମସ୍ୟାର ସମାଧାନ ନାହିଁ, ତାକୁ ବିଜ୍ଞାନ ମାଧ୍ୟମରେ ସମାଧାନ କରିବାର ପ୍ରୟାସ କଣ ବିଜ୍ଞାନର ଇତିହାସ ନୁହେଁ ? ଯେପରି ପ୍ରସିଦ୍ଧ ଦାର୍ଶନିକ କ୍ୟାଣ୍ଟ୍‌ଙ୍କ ମତରେ ବିଶ୍ୱସୃଷ୍ଟିର ନିର୍ଦ୍ଦିଷ୍ଟ ସମୟର ସମାଧାନ ହୋଇନପାରେ । ମାତ୍ର ପ୍ରକୃତ ପକ୍ଷରେ ବିଜ୍ଞାନୀମାନେ Big bang ତତ୍ତ୍ୱ ମାଧ୍ୟମରେ ତାହାର ସମାଧାନ ଖୋଜି ପାଇଛନ୍ତି । ସତ କହିବାକୁ ଗଲେ, ସେ ବିଜ୍ଞାନର ପରିସରରୁ ବାହାରକୁ ଯାଇନାହାନ୍ତି । ତାଙ୍କ ପୁସ୍ତକରେ ପରିସ୍ଫୁଟ ହୋଇଛି ଜ୍ଞାନର ଏକ ବିଶାଳ ବାରିଧି । ସେଥିରେ ଆଲୋଚିତ ହୋଇଛି ପଦାର୍ଥ ବିଦ୍ୟା, ପରିବେଶ ବିଦ୍ୟା, ବିବର୍ତ୍ତନବାଦ, ଜୀବବିଜ୍ଞାନ, ମହାକାଶ ସନ୍ଧାନ, କମ୍ପ୍ୟୁଟର ବିଦ୍ୟା, କ୍ୱାଂଟଂ ତତ୍ତ୍ୱ, ସୌର ସନ୍ଧାନ ପ୍ରଭୃତି । ଏହାଛଡା ଦର୍ଶନଶାସ୍ତ୍ରର ସାବଲୀଳ ବିଚାର - ଯଥା ଗ୍ରୀକ୍ ଦର୍ଶନ, ଇହୁଦି ଦର୍ଶନ, ହିନ୍ଦୁ ଶାସ୍ତ୍ର, ବୌଦ୍ଧଧର୍ମ ପ୍ରଭୃତି । ତାଙ୍କର ଜ୍ଞାନର ପରିଧି ପ୍ରକୃତରେ ବିସ୍ମୟକର ଓ ଚିତ୍ତାକର୍ଷକ ମଧ୍ୟ । ଏକଥା ତାଙ୍କର ଶତ୍ରୁମାନେ ମଧ୍ୟ ସ୍ୱୀକାର କରିଛନ୍ତି ।

ଏହି ପରିପ୍ରେକ୍ଷୀରେ ବ୍ରିଟେନର ପ୍ରସିଦ୍ଧ ପତ୍ରିକା Guardion ରେ ଗୋଟିଏ ବିଶେଷ ରଚନା ଲିଖିତ ହୋଇଥିଲା । ମେସିନ ବ୍ରେଗ୍‌ଡର୍ ତାଙ୍କୁ ଭେଟି ତଥ୍ୟ ନିରୁପଣ କରିଥିଲେ । ସେ ଲେଖିଛନ୍ତି ଯେ ୧୫୪୩ ସାଲରେ କୋପରନିକ୍ସସ ଆବିଷ୍କାର କରିଥିଲେ ଯେ ପୃଥିବୀ ସୂର୍ଯ୍ୟର ଚାରିଆଡେ ବୁଲୁଛି । ୧୬୮୭ ସାଲରେ ଆଇଜାକ୍ ନିଉଟନ ଆବିଷ୍କାର

କଲେ ମାଧ୍ୟାକର୍ଷଣ ଶକ୍ତି । ୧୯୦୫ ସାଲ୍‌ରେ ଆଇନ ଷ୍ଟାଇନ୍ ଆବିଷ୍କାର କଲେ Theory of Relativity ଏବେ ଟିପ୍‌ଲର୍ କହୁଛନ୍ତି ଯେ ସେ ଗାଣିତିକ ହିସାବରେ ପ୍ରମାଣ କରିଦେବେ ଈଶ୍ୱରଙ୍କ ଅସ୍ତିତ୍ୱ ଯେପରି ସତ୍ୟ ବିଜ୍ଞାନ ଇଲେକଟ୍ରନ୍‌ର ଯେଉଁ ଅସ୍ତିତ୍ୱ ପ୍ରମାଣ କରିଛି ତାହା ସେହିପରି ସତ୍ୟ । ତାଙ୍କ ପୁସ୍ତକର ସମାଲୋଚନା ଆମେରିକାର ବିଖ୍ୟାତ ପତ୍ରିକା "Science" ରେ ବାହାରିଥିଲା । ସେଥିରେ ଏହି ବହିଟିକୁ ଗୋଟିଏ ଉଚ୍ଚକୋଟିର ରଚନା ବୋଲି ବର୍ଣ୍ଣନା କରାଯାଇଅଛି । ତାଙ୍କ ମତରେ "immortality is information prosessing without end" । ଏପରି Computer ଉଦ୍‌ଭାବିତ ହେବ ଯାହା ଜୀବନ୍ତ ପ୍ରାଣୀପରି କେବଳ ନୁହେଁ, ତାହା ସର୍ବ-କ୍ଷମତା-ସମ୍ପନ୍ନ ହେବ । ଟିପ୍‌ଲର୍ କହିଲେ ଯେତେବେଳେ ଜୀବନ ଆରମ୍ଭ ହେଲା, ଏହା ଏକକୋଷ ପ୍ରାଣୀରୁ ଆରମ୍ଭ ହେଲା । ଏହି ପ୍ରାଣୀଟି ପାଣିରେ ରହୁଥିଲା । ମାତ୍ର ବର୍ତ୍ତମାନର ବହୁକୋଷ ବିଶିଷ୍ଟ ପ୍ରାଣୀ, ପାଣିରୁ ନିଜକୁ ଦୂରରେ ରଖି ବହୁ କ୍ଷମତା ସମ୍ପନ୍ନ ହୋଇପାରିଛି । ମାତ୍ର ''ସମୟ''ର ସୀମାରେ ପହଞ୍ଚି ମଣିଷ ସର୍ବଜ୍ଞାନୀ, ସର୍ବ-କ୍ଷମତା ସମ୍ପନ୍ନ, ସର୍ବବ୍ୟାପ୍ତ ହୋଇପାରିବ । ପ୍ରକୃତ ପକ୍ଷେ ଏହି ତିନୋଟି ଗୁଣ ଈଶ୍ୱରଙ୍କ ବୋଲି ଦର୍ଶନ କହିଥାଏ । Omega Point ରେ ପହଞ୍ଚିବାପରେ ମନୁଷ୍ୟ ଈଶ୍ୱରଙ୍କ ଗୁଣ ଲାଭ କରିବ । ସେ କହିଲେ ଯେ ପଦାର୍ଥ ବିଦ୍ୟାର ନିୟମାବଳିକୁ ସେ ତାଙ୍କ ତତ୍ତ୍ୱରେ ଆରୋପ କରିଛନ୍ତି । ତତ୍ତ୍ୱଟି ବିଜ୍ଞାନ ବହିର୍ଭୂତ ତଥ୍ୟ ସମ୍ବଳିତ ନୁହେଁ । କେବଳ ଏହି ପଦାର୍ଥ ବିଦ୍ୟାର ତଥ୍ୟକୁ ସେ ଅନୁସରଣ କରି ଶେଷପ୍ରାନ୍ତ ରେ ଉପନୀତ ହୋଇଅଛନ୍ତି ମାତ୍ର । ଆଉ କିଛି ନୁହେଁ ।

ବ୍ରେସିଡର୍ ତାଙ୍କ ସହିତ ଆଲୋଚନା କରି ଅଭିଭୂତ ହୋଇଥିଲେ । ଶେଷରେ ସେ ଲେଖିଥିଲେ ଯେ ସେ ଜଣେ ମହାନ ପଣ୍ଡିତ, ଏକ ବିରାଟ ମନୀଷି । ତାଙ୍କର ମହାନ ତତ୍ତ୍ୱର ଅବଗତି ଏକ ଚମକ୍‌ପ୍ରଦ ଅଭିଜ୍ଞତା, ଭବିଷ୍ୟତହିଁ ପ୍ରମାଣ କରିବ ସେ ଜଣେ ବିସ୍ମୟକର ପ୍ରତିଭା କିମ୍ବା ପ୍ରଗଲ୍‌ଭ ପାଗଳ । ଏହିପରି ମନ୍ତବ୍ୟର କାରଣ ହେଲା ଓମେଗା ତତ୍ତ୍ୱ । ଏହାର ପ୍ରତିପାଦ୍ୟ ବିଷୟରେ ଘୋର ଅନିଶ୍ଚୟତା ଓ ତଦୁପରି ଜଟିଳତା । ଏହାକୁ ପ୍ରମାଣିତ କରିବାକୁ ଟିପ୍‌ଲର୍ ସାହାଯ୍ୟ ନେଇଛନ୍ତି ଅତି ଦୁରୁହ ଗାଣିତ୍ୟିକ ତଥ୍ୟର ତତୋଧିକ ଜଟିଳ ସମୀକରଣ ପ୍ରାୟ ୧୨୩ ପୃଷ୍ଠାର । ଏହି ପରିଶିଷ୍ଟରେ ଅତି ଜଟିଳ ମନ୍ତବ୍ୟମାନ ତତ୍ତ୍ୱ-ପ୍ରମାଣ ନିମନ୍ତେ ଉଦ୍ଦିଷ୍ଟ । ଏହାକୁ ବୁଝିବାକୁ ହେଲେ ବିଜ୍ଞାନର ଆପେକ୍ଷିକତା, ପଦାର୍ଥ ବିଦ୍ୟାର ତାତ୍ତ୍ୱିକ ଜଣା, କମ୍ପ୍ୟୁଟର ତତ୍ତ୍ୱରେ ଅନ୍ତତଃ ପି.ଏଚ୍.ଡି ଉପାଧି ଥିବା ଦରକାର; ଏପରି ସ୍ଥଳେ ସାଧାରଣ ବିଜ୍ଞାନୀମାନଙ୍କୁ ଏହି ତଥ୍ୟର ସତ୍ୟତା ସମ୍ବନ୍ଧରେ ସମ୍ୟକ ଧାରଣା କରିବା ପ୍ରାୟ ଅସମ୍ଭବ । କେବଳ ଅନନ୍ୟ ସାଧାରଣ ସୌର ସନ୍ଧାନୀ ଏହାର ବ୍ୟାଖ୍ୟା

କରିବାକୁ ସମର୍ଥ ହୋଇପାରନ୍ତି । ଯେଉଁମାନଙ୍କ ନିକଟରେ ଏହି ପୁସ୍ତକ ଅଗମ୍ୟ, ସେମାନେ ଏହାକୁ ଭୁଲ ପ୍ରମାଣ କରିବାକୁ ନିଶ୍ଚୟ ଚେଷ୍ଟା କରିବେ । ତାହାଛଡା, ନିଜର ଅଜ୍ଞତା କେହି ମାନିନିଏ ନାହିଁ । ସେପରି ଲୋକ ନିଜର ଅହଙ୍କାର ଯୋଗୁ ଏହି ପୁସ୍ତକକୁ ପ୍ରତ୍ୟାଖ୍ୟାତ କରିବେ । କିନ୍ତୁ ଯେଉଁମାନେ ସତ୍ୟାନ୍ୱେଷୀ, ସେମାନେ ନିଜର ଧାରଣାରେ ଅଚଳ ଓ ଅଟଳ । ନିଜ ବିଶ୍ୱାସରେ ବିଶେଷ ଆସ୍ଥାବାନ୍ । ନିଜର ନିଷ୍ଠାରେ ଦୃଢ଼ ପ୍ରତ୍ୟୟ । ସେହିପରି ଜଣେ ହେଉଛନ୍ତି, ଆଇନ୍‌ଷ୍ଟାଇନ୍ । ତାଙ୍କପରେ ଟିପ୍‌ଲର୍ । ତାଙ୍କର ତତ୍ତ୍ୱ ଅତି ସୁଦୂର ଭବିଷ୍ୟତର ଗର୍ଭରେ ପ୍ରୋଥିତ । ଏହାର ସାରବାର୍ତ୍ତା ଭବିଷ୍ୟତ ହିଁ ପ୍ରମାଣ କରିବ । ମାତ୍ର ତାଙ୍କର ବିଶିଷ୍ଟ ତତ୍ତ୍ୱ 'ଓମେଗା-ପଏଣ୍ଟ' ଏକ ଯୁଗାନ୍ତକାରୀ ଚିନ୍ତାଧାରା ଏଥିରେ ସନ୍ଦେହ ନାହିଁ ।

ଈଶ୍ୱରଙ୍କର ବର୍ଣ୍ଣନାରେ କଥିତ ଅଛି ଯେ ସେ "ଅଣୋରଣୀୟାନ୍ ମହତ୍ତୋମହୀୟାନ୍" - ଅର୍ଥାତ୍ ଅଣୁ ପରମାଣୁରୁ ଆହୁରି କ୍ଷୁଦ୍ର ଓ ମହତ୍ତର ବିଶ୍ୱ ପିଣ୍ଡଠାରୁ ବହୁକାଂଶରେ ମହତ୍ତର । ବିଶାଳତ୍ୱରୁ ଆମର ଦୃଷ୍ଟି ଏଥର ଅଣୁପରମାଣୁ ଉପରେ ନିବଦ୍ଧ କରିବାର ପ୍ରୟୋଜନୀୟତା ଜରୁରୀ । କାରଣ କୌଣସି ପଦାର୍ଥର ସମ୍ପୂର୍ଣ୍ଣ ବିଚାର କରିବାକୁ ହେଲେ ତାହାର କ୍ଷୁଦ୍ରାଂଶ ଓ ବିଶାଳାଂଶର ସ୍ୱରୂପ ଜାଣିବା ଏକାନ୍ତ ଆବଶ୍ୟକ । ଯାହାକୁ ଏବେ macro and micro ରୂପରେ ବର୍ଣ୍ଣନା କରାଯାଉ ଅଛି, ବିଜ୍ଞାନର ସବୁ ବିଭାଗରେ । ସତ୍ୟର ସ୍ୱରୂପ ଅନୁସନ୍ଧାନରେ ଅଣୁପରମାଣୁର ରୂପରେଖ ଜାଣିବା ଏକ ବିଶିଷ୍ଟ ପ୍ରେକ୍ଷାପଟ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ଅଣୁରେ ମଧ ସତ୍ୟ ଅକପଟ ଭାବେ ଉଦ୍‌ଭାସିତ । ପ୍ରକୃତପକ୍ଷେ ମହାନ ସ୍ୱରୂପ ଅଣୁର ଏକ ସମଷ୍ଟିର ପ୍ରକାଶ; ଏକ ବିସ୍ତାରିତ ଦୃଶ୍ୟ, ଏକ ସମ୍ମିଳିତ ପ୍ରଜ୍ଞା ଓ ଏକ ସତ୍ୟଦର୍ଶୀ ଉଜ୍ଜ୍ୱଳ ବିଭାର ମାତ୍ର । ସମଷ୍ଟି ଓ ବ୍ୟଷ୍ଟି ଏକ ସତ୍ୟର ଦୁଇ ପାର୍ଶ୍ୱ ରୂପେ ପ୍ରତିଭାତ । ସେମାନେ ଦୁହେଁ ଏକ ଏବଂ ଅଭିନ୍ନ ସତ୍ତା ।

ଏବେ ଗୋଟିଏ ଯନ୍ତ୍ରର ଉଦ୍‌ଭାବନ ହୋଇଅଛି । ତାହାର ନାମ ହେଉଛି ଆକ୍‌ସିଲରେଟର୍ । ଏହି ଯନ୍ତ୍ର ସାହାଯ୍ୟରେ କମ୍ ପରିସର ମଧ୍ୟରେ ଓ ଆୟତନରେ ବହୁଳ ପରିମାଣ ଶକ୍ତିର ଉତ୍ପାଦନ । ମାତ୍ର ଯଦି ଏହାର ଆୟତନ ବିଶାଳ ଆକାର୍‌କୁ ବର୍ଦ୍ଧିତ କରିବାର ପ୍ରଚେଷ୍ଟା ହୁଏ ତାହାହେଲେ ଏହାର ମାପ ଓ ତିଆରି କରିବାର ଖରଚ ବହୁ ପରିମାଣରେ ବୃଦ୍ଧିପାଏ । ଏହା ଗୋଟିଏ ସୀମାର ଉର୍ଦ୍ଧ୍ୱରେ ସମ୍ଭବପର ହୁଏ ନାହିଁ ।

ସୃଷ୍ଟିତତ୍ତ୍ୱର ରହସ୍ୟ ଭେଦରେ ଜଣା ଯାଇଅଛି ଯେ ଏହି ନୀତିରେ ପ୍ରଥମ ସୃଷ୍ଟି ହୋଇଥିଲା । ଯଥା, କମ୍ ଆୟତନ ମଧ୍ୟରେ ଅଧିକ ମାତ୍ରାର ଶକ୍ତି ସଂଚାର ହୋଇଥିଲା

ସୃଷ୍ଟିର ଆଦି ମୁହୁର୍ତ୍ତରେ । ଆଦି ମୁହୂର୍ତ୍ତରେ ବ୍ରହ୍ମାଣ୍ଡ ଅତ୍ୟନ୍ତ ଘନିଭୂତ ଅବସ୍ଥାରେ ଥିଲା ଏବଂ ଏହାର ତାପମାତ୍ରା ଥିଲା ପ୍ରଚଣ୍ଡ ପରିମାଣରେ ବେଶୀ, ମହାବିକ୍ଷୋଭର ଟିକିଏ ପରେ ଆଦି ଉପାଦାନ ଥିଲା, ଇଲେକ୍ଟ୍ରନ, ନିଉଟ୍ରିନୋ ଓ କ୍ୱାର୍କ ନାମକ ଆଧାନ ଯୁକ୍ତ ମୌଳିକ ଅଣୁକଣାର ମିଶ୍ରଣ । ଏହି ବିଷୟରେ ଗବେଷଣା, ବିଜ୍ଞାନୀ ମାନଙ୍କର ପ୍ରୟୋଗ ଶାଳାରେ ବିଶେଷ ସ୍ଥାନ ପାଉଛି । ଏହାଫଳରେ ଗବେଷଣା ଲବ୍ଧ ତଥ୍ୟ ଭିତ୍ତିରେ ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟି ବିଷୟରେ ଅନେକ ମୌଳିକ ଜ୍ଞାନ ପ୍ରାପ୍ତ ହୋଇଅଛି । ମାତ୍ର ତଥାପି ଛାୟା ପଥର ସୃଷ୍ଟି ବିଷୟକ ସମ୍ୟକ୍ ଜ୍ଞାନ ଆହରଣ କରାଯାଇ ପାରିନାହିଁ । ତାହା ସମୟ ସାପେକ୍ଷ ।

ମହାବିଜ୍ଞାନୀମାନେ ମୌଳିକ ଶକ୍ତି ଗୁଡିକର ଏକୀକରଣ କରିବା ପାଇଁ ବିଶେଷ ଗବେଷଣା ଚଳାଇଛନ୍ତି । ସେମାନେ ଆବିଷ୍କାର କରିଅଛନ୍ତି ଯେ ଏହି ମୌଳିକ ଶକ୍ତି ଗୁଡିକ ହେଲା ବିଦ୍ୟୁତ୍ ଚୁମ୍ବକ ଶକ୍ତି, ମାଧ୍ୟାକର୍ଷଣ ଶକ୍ତି, ଦୁର୍ବଳ ପାରମାଣବିକ ଶକ୍ତି ଓ କ୍ଷମତାଶୀଳ ପାରମାଣବିକ ଶକ୍ତି । ପ୍ରଥମ ଦୁଇଟି ଶକ୍ତିର ପ୍ରଭାବ ସୁଦୁର ପ୍ରସାରୀ । ବିଜ୍ଞାନୀମାନଙ୍କର ମତ ଶକ୍ତିଶାଳୀ ପାରମାଣବିକ ଶକ୍ତି ଓ ଇଲେକ୍ଟ୍ରୋୟୁଗ୍ମ ଶକ୍ତି ମଧ୍ୟରେ ସମନ୍ୱୟ ସମ୍ଭବ ହେବାର ଆଶା ଉଜ୍ଜ୍ୱଳ । ଏହି ସମନ୍ୱୟକୁ ''ମହା-ସମନ୍ୱୟ-ତତ୍ତ୍ୱ'' ବୋଲି ଅଭିହିତ କରାଯାଏ । ଯେଉଁ ଶକ୍ତି ଏହି ସମନ୍ୱୟରୁ ଉଦ୍‌ଭୂତ ହେବ, ତାହା ଆକ୍‌ସିଲେଟାର ଦ୍ୱାରା ଉତ୍‌ପନ୍ନ କରାଯାଇ ପାରିବ ନାହିଁ । ଏହା କେବଳ ସମ୍ଭବ୍ ହୋଇଥିଲା ମହାଜାଗତିକ ସୃଷ୍ଟିର ପ୍ରଥମ ମୁହୂର୍ତ୍ତରେ ।

ଏ ଯୁଗର ବୈଜ୍ଞାନିକ ମାନଙ୍କର ଧାରଣା ଯେ ମହାସମନ୍ୱୟଶକ୍ତି ଯୁଗପରେ କ୍ୱାର୍କମାନେ ଏକତ୍ର ହୋଇ ପ୍ରୋଟନ୍ ଓ ନିଉଟ୍ରନ୍ ସୃଷ୍ଟି କରିଅଛନ୍ତି । କ୍ରମେ କ୍ରମେ ତାପମାତ୍ରା କମିଯିବାରୁ ପ୍ରୋଟନ ଓ ନିଉଟ୍ରନ ଏକତ୍ର ହୋଇ ବିଭିନ୍ନ ପରମାଣୁ କେନ୍ଦ୍ର ତିଆରି କରିଛନ୍ତି ଯଥା- ଡିଉଟେରିଅମ୍ ଓ ଲିଥିୟମ । ତାପମାତ୍ରା ଆହୁରି କମିଯିବାରୁ, ଏହି ପରମାଣୁଗୁଡିକ ସହିତ ଇଲେକଟ୍ରନ୍ ଯୁକ୍ତ ହେବା ସମ୍ଭବପର ହେଲା । ଯେତେବେଳେ ସୃଷ୍ଟିର ପ୍ରଥମ ପର୍ଯ୍ୟାୟରେ ପ୍ରାଥମିକ ହିଲିଅମ୍ ଓ ଲିଥିୟମ୍ ପରମାଣୁ ତିଆରି ହୋଇଥିଲା, ସେତେବେଳେ ମହାଜଗତର ତାପମାତ୍ରା ଥିଲା ଏକ କୋଟି ଡିଗ୍ରୀ । ପରେ ଯେତେବେଳେ ଏହି ପରମାଣୁ ଗୁଡିକ ଅଣୁରେ ପରିଣତ ହେଲା ସେତେବେଳେ ତାପମାତ୍ରା ୩୦୦୦ ଡିଗ୍ରୀକୁ କମି ଆସିଥିଲା । ଆଦିମ ପରମାଣୁ ସୃଷ୍ଟି ଓ ସେଗୁଡିକର ଅଣୁରେ ପରିଣତ ହେବାମଧ୍ୟରେ ଦଶଲକ୍ଷ ବର୍ଷ ଅତିବାହିତ ହୋଇଯାଇଥିଲା । ପ୍ରଥମେ ଏହି ବିଶ୍ୱର ଚିତ୍ର ଥିଲା ଗରମ ବାଷ୍ପ ବା ଗ୍ୟାସ୍ ଭଳି । ଏହିଯୁଗ ଅତିବାହିତ ହେବାପରେ ମାଧ୍ୟାକର୍ଷଣର ପ୍ରଭାବ ବୃଦ୍ଧି ଲାଭ କଲା । ଏହି ମହାଜାଗତିକ ଗରମ ବାଷ୍ପ ନାନାସ୍ଥାନରେ ଘନିଭୂତ ହୋଇ ତାରା ଜଗତ ସୃଷ୍ଟି

କରିଅଛି। ଏହି ତତ୍ତ୍ୱର ବିଶେଷ ବିଶ୍ଳେଷଣ ଉପରେ ମହାବିକ୍ଷୋଭ ତତ୍ତ୍ୱର ଅବସ୍ଥିତି। କେତେକ କମ୍ ଓଜନର ପରମାଣୁ ଯଥା ହାଇଡ୍ରୋଜେନ, ହିଲିୟମ୍, ଲିଥିୟମ୍ ଆଦି ବିସ୍ଫୋରଣ ପରେ ସୃଷ୍ଟି ହୋଇଥିଲା। ଏଗୁଡିକ ଆଦିମ ପରମାଣୁ ବୋଲି ଅଭିହିତ କରାଯାଏ। ଆଦିମ ପରମାଣୁ ଗୁଡିକ ଯେଉଁ ପରିମାଣରେ ଉପସ୍ଥିତ ଥିଲେ ଆଦିମ ସୃଷ୍ଟି କାଳରେ, ସେ ଗୁଡିକ ଏବେ ମଧ୍ୟ ଅପରିବର୍ତ୍ତିତ ଅଛନ୍ତି ବୋଲି ବିଜ୍ଞାନୀମାନେ ଆଶା କରନ୍ତି। ମହାବିକ୍ଷୋଭ ତତ୍ତ୍ୱ ଅନୁସାରେ ଆଦିମ ହିଲିଅମ୍ ଇତ୍ୟାଦି ପରମାଣୁ ଗୁଡିକର ପରିମାଣ ଯେତେ ହେବାରକଥା ତାହା ପ୍ରାୟ ସେତିକି ଅଛି ବୋଲି ବିଭିନ୍ନ ବୈଜ୍ଞାନିକ ପରୀକ୍ଷାରୁ ଜଣାପଡିଛି। ତେଣୁ ‘‘ମହାବିକ୍ଷୋଭ-ତତ୍ତ୍ୱ’’ ଉପରେ ନିର୍ଭରତା ବଢ଼ିଛି କେତେକ ବିଜ୍ଞାନୀମାନଙ୍କ ଉପର୍ଯ୍ୟୁକ୍ତ ବିଶ୍ଳେଷଣ ପରେ। ମାତ୍ର ଏହି ମହାବିଶ୍ୱରେ କେବଳ ଗୋଟିଏ ମାତ୍ର ରହସ୍ୟ ନାହିଁ। କୋଟିଏ ରହସ୍ୟ ଥିବାର କହିଲେ ମଧ୍ୟ ପୁରାପୁରି ଠିକ୍ ହେବନାହିଁ। ଏହି ବିଶ୍ୱର ଯେପରି ଅନାଦି ଅନନ୍ତ ବିସ୍ତୃତି, ସେହିପରି ତାହା ମଧ୍ୟରେ ଭରି ରହିଛି ଅଗଣିତ ରହସ୍ୟ। ଏହାର କେନ୍ଦ୍ରବିନ୍ଦୁ କେଉଁଠାରେ ଅବସ୍ଥିତ ତାହା ଏପର୍ଯ୍ୟନ୍ତ କାହାକୁ ଜଣାନାହିଁ। ବୈଜ୍ଞାନିକମାନେ ସେମାନଙ୍କର ବିଦ୍ୟା ବୁଦ୍ଧି ସାହାଯ୍ୟରେ ଅନୁକ୍ଷଣ ସତ୍ୟର ଅନୁଧାବନ କରି ଚାଲିଛନ୍ତି। ମାତ୍ର ସାର ଆଇଜାକ୍ ନିଉଟନ୍ କହିବା ଭଳି ସେମାନେ ଅଜଣା ଜ୍ଞାନର ସାଗର କୂଳରୁ କେବଳ କେତେଖଣ୍ଡ ଉପଳ ମାତ୍ର ସଂଗ୍ରହ କରିଛନ୍ତି। ବିଶାଳ ଜ୍ଞାନର ବାରିଧି ବହୁ ଅଗ୍ରଗତି ସତ୍ତ୍ୱେ ଆଗଭଳି ସେମାନଙ୍କ ନିକଟରେ ଦୁର୍ଜ୍ଞେୟ ହୋଇ ରହିଯାଇଅଛି।

ଅଧୁନା ଆବିଷ୍କୃତ ଅଣୁ ପରମାଣୁ ଜ୍ଞାନର ବିଶ୍ଳେଷଣ କଲେ ଏହି ତଥ୍ୟ ଉଦ୍‌ଘାଟିତ ହୁଏ। ବିଂଶ ଶତାବ୍ଦିର ପ୍ରଥମ ଭାଗରେ ଏହି ବିଷୟରେ ପ୍ରଥମ ସୋପାନ ପାର ହୋଇଥିଲେ ରଥରଫୋର୍ଡ। ଏହି ମହା ବିଜ୍ଞାନୀ କ୍ୟାମବ୍ରିଜ୍ ବିଶ୍ୱବିଦ୍ୟାଳୟର ପ୍ରସିଦ୍ଧ ଗବେଷଣାଗାର, ‘‘କ୍ୟାଭେଣ୍ଡିସ୍’’, ରେ ନିଜର ଗବେଷଣା ଚଳାଇଥିଲେ। ଏହି ବିଶ୍ୱର ମୌଳିକ ଉପାଦାନ ବିଷୟରେ ତାଙ୍କର ଗଭୀର ଅନୁସନ୍ଧିତ୍ସା ଥିଲା। ବହୁ ପ୍ରଚେଷ୍ଟା ପ୍ରଗାଢ଼ ପରିଶ୍ରମ ଓ ନିଷ୍ଠାକୃତ ପରୀକ୍ଷାପରେ ଶେଷରେ ଫଳ ମିଳିଲା। ସେ ଅଣୁ ପଦାର୍ଥର ପ୍ରକୃତ ସ୍ୱରୂପ ଅନୁଧାବନ କରିବା ନିମନ୍ତେ ଆଦି ପଦାର୍ଥ ହିଲିଅମ୍‌କୁ ବିଶ୍ଳେଷଣ କରିବାପାଇଁ ତାହାକୁ ବିଶେଷଭାବରେ ଗୋଟିଏ ଲକ୍ଷ୍ୟବିନ୍ଦୁ ପ୍ରତି ଅତିକ୍ଷମତା ସମ୍ପନ୍ନ ଶକ୍ତି ପ୍ରୟୋଗ କଲେ। ତାଙ୍କର ଉଦ୍ଦେଶ୍ୟ ଥିଲା ପରମାଣୁର ଆକୃତି ଓ ପ୍ରକୃତିର ସ୍ୱରୂପ ନିର୍ଦ୍ଧାରଣ। ଏହି ପ୍ରକ୍ରିୟାରେ ସେ ଦେଖିଲେ ଯେ ଅଣୁ ମଧ୍ୟରେ ଅବସ୍ଥିତ ଅତିକ୍ଷୁଦ୍ର ପରମାଣୁ ଏକ ସେଣ୍ଟିମିଟରର ଏକକୋଟି ଅଂଶର ଏକ ଭାଗମାତ୍ର। ଏହାର ଚାରିଆଡେ ଇଲେକଟ୍ରନ୍ ଗୁଡିକ ଘୁରିବୁଲୁଛନ୍ତି। ଏହି ଯୁଗାନ୍ତକାରୀ ଆବିଷ୍କାର ପରେ ସେ ଏତେ ବିହ୍ୱଳ ହୋଇ ପଡିଲେ ଯେ ସେ ଗବେଷଣାଗାରରେ ସାଙ୍ଗେ

ସାଙ୍ଗେ ସହକର୍ମୀ ମାନଙ୍କୁ ନେଇ ନାଚିବାକୁ ଲାଗିଲେ । ସେ କହିଲେ ବିଜ୍ଞାନ ଯାହାର ଆବିଷ୍କାର ପାଇଁ ଅପେକ୍ଷାରତ ଥିଲା, ତାହା ସବୁ ଆଜି ଜଣାଗଲା । ଭବିଷ୍ୟତରେ ଏ ବିଷୟରେ ଆଉ କିଛି ଜାଣିବାକୁ ବାକି ରହିଲା ନାହିଁ । ମାତ୍ର ତାଙ୍କର ଏହି ଉକ୍ତିର କୌଣସି ସାରବତ୍ତା ନଥିଲା । କାରଣ ୧୯୧୬ ସାଲରେ ପ୍ରଖ୍ୟାତ ବିଜ୍ଞାନୀ ଆଇନଷ୍ଟାଇନ୍ ଆବିଷ୍କାର କଲେ ଯେ ଆଲୋକରଶ୍ମିର ରେଣୁ, ଯାହାକୁ ଫୋଟୋନ୍ କୁହାଯାଏ, ସେଗୁଡିକ ମାଧ୍ୟାକର୍ଷଣ ଶକ୍ତି ଯୋଗୁ ଅବନତ ହୋଇ ପଡନ୍ତି । ଆଉଜଣେ ବୈଜ୍ଞାନିକ ଚାଡ଼ଉଇକ୍ ଆବିଷ୍କାର କଲେ ଯେ ପୂର୍ବକଥିତ ଅତିକ୍ଷୁଦ୍ର ପରମାଣୁ ଭିତରେ ମଧ୍ୟ ଏକ ସଂଗଠିତ ଆଦି ଅଣୁ ରହିଛି । ସେଥିରେ ବିଦ୍ୟୁତ୍ ସଂଚାର ହୁଏ ନାହିଁ । ଏହି ଅଣୁ ଏକ ବିସ୍ମୟକର ବସ୍ତୁରୂପେ ପ୍ରତିଭାତ ହେଲା । ଏହାର ନାମକରଣ ହେଲା ‘‘ପ୍ରୋଟୋନ୍’’ ବୋଲି । ଏହାପରେ ଏକ ଜାପାନୀ ବୈଜ୍ଞାନିକ Ywkawa ଆବିଷ୍କାର କଲେ ଯେ ଏହି ଅଣୁ ମାନଙ୍କ ମଧ୍ୟରେ ବିଚରଣ କରୁଥିବା ଅତି ଆଦିମ ବସ୍ତୁହେଲା ‘‘ମେସନ୍’’ । ଏହି ଭ୍ରାମ୍ୟମାଣ ଅତି କ୍ଷୁଦ୍ର ପରମାଣୁର ଆବିଷ୍କାର ପରେ ପଦାର୍ଥ ବିଦ୍ୟାରେ ଏକ ନୂତନ ଅଧ୍ୟାୟର ସୂତ୍ରପାତ ହେଲା । ଏହି ଆବିଷ୍କାର ପରେ ଅଣୁ ଅଧ୍ୟାୟରେ ମହା ବିଜ୍ଞାନୀମାନଙ୍କର ପରିଶ୍ରମ ଲବ୍ଧ ତଥ୍ୟରାଜି ବିଜ୍ଞାନକୁ ନାନା ସଂଭାରର ଉପହାର ନେଇ ଏହାକୁ ଏକ ମହା ମହୀରୁହରେ ପରିଣତ କଲା । ଯଥା ହାଇସେନ୍‌ବର୍ଗ, ଡିରାକ୍, ମ୍ୟାକ୍ସପ୍ଲାଙ୍କ୍, ପାଉଲି, ନିଲ୍‌ବୋହର୍, ପ୍ରଭୃତି ବିଜ୍ଞାନୀ ମାନେ ଏହି ଅଣୁ ଶାସ୍ତ୍ରରେ ସେମାନଙ୍କର ଆବିଷ୍କାରମାନ ଯୋଗକରି ଏହାକୁ ବିସ୍ତାରିତ ବାରିଧିରେ ପରିଣତ କରିଥିଲେ । ଏଥିରେ ଯୁକ୍ତହେଲା ‘‘ବୋଷ-ଆଇନ୍‌ଷ୍ଟାଇନ୍ ପରିସଂଖ୍ୟାନ’’ ରୁ ଉଦ୍‌ଭୂତ ‘‘ବୋଷୋନ୍’’ । କାରଣ ଅଣୁ ଜଗତରେ ଏହି ପରିସଂଖ୍ୟାନ ରହସ୍ୟ ଜନକ ଭାବରେ ଅଣୁମାନଙ୍କୁ ପ୍ରଭାବିତ କଲା । ଏହା କେବଳ ବର୍ତ୍ତମାନ ଯୁଗ ପାଇଁ ନୁହେଁ, ଭବିଷ୍ୟତର ବିଜ୍ଞାନ ନିମନ୍ତେ ଏକ ଉଜ୍ଜ୍ୱଳ ଅଧ୍ୟାୟ ମଧ୍ୟ । ତାଙ୍କର ସହଧ୍ୟାୟୀ ମେଘନାଦ ସାହା ଗବେଷଣାକରି ଏକ ମହାନ୍ ଆବିଷ୍କାର କଲେ ଏକ ସୂତ୍ରର, "equation of ionisation" । ଉପର୍ଯ୍ୟୁକ୍ତ ସୋପାନଗତ ବୈଜ୍ଞାନିକଜ୍ଞାନରେ ସମୃଦ୍ଧି ବର୍ତ୍ତମାନ ଜଗତରେ ଏକ ନବଧାରଣାର ପ୍ରସାର କରିଛି । ନିଉଟ୍ରନ ଓ ପ୍ରୋଟୋନ ଗୁଡିକର ସଂମିଶ୍ରଣରେ ଏକ ମହାଶକ୍ତିଶାଳୀ କ୍ଷମତାର (energy) ସୃଷ୍ଟି ହୁଏ । ଏହା ଧ୍ୱଂସ ମଧ୍ୟ କରିପାରେ । ସୃଷ୍ଟିରେ ସାହାଯ୍ୟ ଏହାର ପ୍ରକୃଷ୍ଟ ପନ୍ଥା । ପାରମାଣବିକ ଶକ୍ତିର ଧ୍ୱଂସାଭିମୁଖୀ ପ୍ରକ୍ରିୟା ଆଣବିକ ବୋମା ତିଆରି କଲା । ଇଉରାନିଅମ୍ ୨୩୫ ବା ପ୍ଲୁଟୋନିୟମ୍ ୨୩୯ ଅଣୁ ମିଶ୍ରଣରୁ ଏକ ବିରାଟ ଶକ୍ତି ସମ୍ପନ୍ନ ବିସ୍ଫୋରଣ କରାଗଲା ବୈଜ୍ଞାନିକ ଓପେନ୍‌ହାଇମର୍‌ଙ୍କ ନିର୍ଦ୍ଦେଶରେ । ଏଥିରେ ଯୋଗଦେଇଥିଲେ ବିଜ୍ଞାନ ମଣ୍ଡଳିର ସବୁ ପ୍ରସିଦ୍ଧ ତାରକାବୃନ୍ଦ ନିଉମେକ୍ସିକୋରେ

ପ୍ରସିଦ୍ଧ ମାନ୍‌ହାଟାନ୍ ପ୍ରକଳ୍ପ ମାଧ୍ୟମରେ । ସେମାନେ ସମସ୍ତେ ବୁଝିଲେ ଯେ ଏହି ବିସ୍ଫୋରଣ ଦ୍ୱାରା ସମଗ୍ର ପୃଥିବୀକୁ ଅଚିରେ ଧ୍ୱଂସ କରି ଦିଆଯାଇପାରେ । ମାତ୍ର ଏହାର ଏକ ଶାନ୍ତି ପ୍ରସାରର ଦିଗମଧ୍ୟ ଆବିଷ୍କୃତ ହେଲା ଚିକାଗୋଠାରେ ଅତି ପ୍ରସିଦ୍ଧ ବୈଜ୍ଞାନିକ ଫର୍ମି (Enrico Fermi) ଙ୍କ ଦ୍ୱାରା । ପ୍ରୟୋଗଶାଳାରେ ଅତି ସୁରକ୍ଷିତ ବ୍ୟବସ୍ଥାରେ ଶୃଙ୍ଖଳା ଆରୋପିତ ଅବସ୍ଥାରେ ଏହି ସଂମିଶ୍ରିତ-ଅଣୁଦ୍ୱାରା ମହା କ୍ଷମତାଶାଳି ବିଦ୍ୟୁତ୍ ସଂଚାର ଜନ୍ମ ନେଇପାରେ । ତାହା ବ୍ୟବସାୟିକ କ୍ଷେତ୍ରରେ ପ୍ରଯୁକ୍ତ ହୋଇ ଶିଳ୍ପଗଠନରେ ବିଶେଷ ସହାୟକ ହୋଇପାରେ । ଏହି ତଥ୍ୟର ସମୃଦ୍ଧିରେ ଭାରତର ବିଶିଷ୍ଟ ବିଜ୍ଞାନୀ, ହୋମି ଭାବା, ଏକ ପ୍ରକଳ୍ପର ନିର୍ଦ୍ଦେଶକ ଭାବେ ଆମ ଦେଶରେ ଆର୍ଣବିକ ଶକ୍ତି ପ୍ରସାର ନିମନ୍ତେ ପ୍ରଚେଷ୍ଟା ଚଳାଇଥିଲେ । ସେଥିରେ ଭାରତ ଅଣୁ ଅସ୍ତ୍ର ଲାଭରେ ସମର୍ଥହୋଇ ନିଜର ଶକ୍ତି ବୃଦ୍ଧି କରି ନିଜକୁ ବହି ର୍ବିପଦର ସମ୍ମୁଖୀନ ହେବାର ସାହସ ମଧ୍ୟ ଆହରଣ କରିପାରିଛି । ତାଛଡା, ଏହି ଶକ୍ତି ଦେଶର ସମୃଦ୍ଧିରେ ବିଶେଷ ଭାବରେ ନିୟୋଜିତ ହୋଇଅଛି ।

ଏହିସବୁ ଆଲୋଚନାରୁ ଏକ ଗଭୀର ପ୍ରଶ୍ନର ଉଦୟ ହେଲା । ମୌଳିକ ଅଣୁ କଣ କେବଳ ନିଉଟ୍ରନ, ପ୍ରୋଟୋନ୍, ମେସନ୍ ଇତ୍ୟାଦି ଆବିଷ୍କୃତ ଅଣୁମାନଙ୍କ ମଧ୍ୟରେ ଆବଦ୍ଧ ନା ଏହାଛଡା ଆଉକୌଣସି ଅଣୁ ଅଛି ଯାହା ଏହି ଅଣୁ ମାନଙ୍କ ମଧ୍ୟରେ ସଂମ୍ବନ୍ଧ ରକ୍ଷା କରି ସେମାନଙ୍କ ମଧ୍ୟରେ ଯାତାୟାତ କରେ ? ଏହି ଉପାଦାନ କଣ ଆବିଷ୍କୃତ ଅଣୁ ଅପେକ୍ଷା ଅଧିକ ମୌଳିକ ? ଏହାର ଅସ୍ତିତ୍ୱ କଣ ଆହୁରି ସୂକ୍ଷ୍ମ, ମଣିଷର ଯନ୍ତ୍ରାଂଶକୁ ହେୟ ପ୍ରତିପନ୍ନ କରି ସ୍ୱକୀୟ ମହିମାରେ ଚିର ଭାସ୍ୱର ଭାବେ ବିରାଜମାନ ? ବର୍ତ୍ତମାନ ସୁଦ୍ଧା ମଣିଷର ବିଦ୍ୟାବୁଦ୍ଧିର ଅଗମ୍ୟ ? ଏହା କଣ ଏକ ଜୀବନ୍ତ ପ୍ରହେଳିକା ? ଅଣୁ -ପରମାଣୁ ପରୀକ୍ଷା ନିରୀକ୍ଷା ବହୁ ସ୍ତରଦେଇ ଗତି କରି ଆଜି ଏକ ଜ୍ଞାନର ବିଶାଳ ଭଣ୍ଡାର ସୃଷ୍ଟି କରିଅଛି । ପରମାଣୁ ବୋମାର ଉଦ୍‌ଭାବନ ଏକ ଉପେକ୍ଷଣୀୟ ବିଦ୍ୟା ନୁହେଁ; ଏକ ଭ୍ରାନ୍ତି ବିଳାସ ନୁହେଁ, ଏହାଏକ ଗରିମାମୟ ଅଧ୍ୟାୟ ବିଜ୍ଞାନୀ ଶକ୍ତିର, ତାହାର ବ୍ୟବହାର ଶାନ୍ତି ବା ଯୁଦ୍ଧରେ ହେଲେ ମଧ୍ୟ, ମଣିଷର ଅପାର କ୍ଷମତାର ଏକ ଉନ୍ନତ ନିଦର୍ଶନ । ଏଥିରେ ସନ୍ଦେହ ନାହିଁ । ମାତ୍ର ବିଜ୍ଞାନ ସ୍ଥିତିଶୀଳ ନୁହେଁ । ଆଗରୁ କହିଛି ଏହା ଏକ ପ୍ରବହମାନ ସ୍ରୋତସ୍ୱିନୀ । ଏହି ପ୍ରବାହ ଯୋଗୁ ପୁଣି ନୂତନ ତଥ୍ୟର ଆବିର୍ଭାବ ଘଟିଅଛି ଅଣୁରାଜ୍ୟରେ । ଏ ପର୍ଯ୍ୟନ୍ତ କେବଳ ଭୂମିକା ପର୍ଯ୍ୟାୟ ଚାଲିଥିଲା । ଏଥର ପ୍ରକୃତ ସତ୍ୟଲବ୍ଧ କ୍ୱାର୍କ ବିଷୟରେ ଅବତାରଣା । ନୋବେଲ ପୁରସ୍କାର ବିଜୟୀ ମୁରେଜେଲମାନ୍ ନାମକ ଅତିପ୍ରସିଦ୍ଧ ବିଜ୍ଞାନୀ ମନେ କରିଥିଲେ ଯେ କ୍ୱାର୍କ ଗୁଡିକ ଏହି ବିଶ୍ୱ-ସୃଷ୍ଟିର ଆଦି-ମୌଳିକ ଉପାଦାନ । ଏହି ଧାରଣା ବହୁଦିନ ପର୍ଯ୍ୟନ୍ତ ସ୍ଥିତିଲାଭ କରିଥିଲା ବିଜ୍ଞାନୀ-ମଣ୍ଡଳରେ । ମାତ୍ର ଏବେ

କେତେକ ଗବେଷଣାରୁ ଏହି ତଥ୍ୟର ଭିତ୍ତି ଦୋହଲିବାର ସୂଚନା ମିଳିଛି । ଚିକାଗୋ ସହରର ଫର୍ମି ପ୍ରୟୋଗଶାଳାରେ ଏହି ବିଷୟର ଅନୁସନ୍ଧାନ କରାଯାଇ ଗୋଟିଏ ଚିତ୍ର ମିଳିଛି ଏହାର ଗତି ପ୍ରକୃତିର । ଏହା ଏକ ବହୁମୂଲ୍ୟ ଚିତ୍ର । ୨୫ ବର୍ଷପୂର୍ବେ କ୍ୱାର୍କର ଆବିଷ୍କାର ହୋଇଥିଲା । ସେତେବେଳେ ସବୁ ବିଜ୍ଞାନୀ ସ୍ଥିର ନିଶ୍ଚିତ ହେଲେ ଯେ ବିଶ୍ୱର ସବୁଠାରୁ ମୌଳିକ ଉପାଦାନ କ୍ୱାର୍କଛଡା ଆଉ କିଛି ନୁହେଁ । କିନ୍ତୁ ଏହି ଚିତ୍ର ସେମାନଙ୍କ ଧାରଣାକୁ ଭ୍ରମାତ୍ମକ ରୂପେ ଚିତ୍ରିତ କଲା । କାରଣ ଏଥିରେ କ୍ୱାର୍କଠାରୁ ଆହୁରି କ୍ଷୁଦ୍ର ଓ ସୂକ୍ଷ୍ମ ଅଣୁର ଉପସ୍ଥିତି ପରିସ୍ଫୁଟ ଓ ଦୃଶ୍ୟମାନ । ଏଣୁ ବର୍ତ୍ତମାନ ଧାରଣା ହେଲାଣି ଯେ ଏହି କ୍ୱାର୍କ ମଧ୍ୟରେ ନିଶ୍ଚୟ ଅତିକ୍ଷୁଦ୍ର ଅଣୁ ରହୁଅଛି । କେତେକ ବିଜ୍ଞାନୀ ଭାବୁଛନ୍ତି ଯେ ଅଣୁ ସଂଘର୍ଷ ଯୋଗୁ ଏହି ନୂତନ ଅଣୁ ଦୃଶ୍ୟମାନ । ଏହା ଏକାବେଳକେ ମୌଳିକ ଅଣୁ ନୁହେଁ । Don Page (ଡନ୍‌ପେଜ୍) ବୋଲି ଜଣେ ବିଜ୍ଞାନୀଙ୍କ ମତହେଲା ଯେ ପରମାଣୁ ଜଗତ ଏକ କ୍ଷୁଦ୍ରରୁ କ୍ଷୁଦ୍ରରେ ଓ କ୍ଷୁଦ୍ରତମ ଅଣୁ ରାଶିର ସମଷ୍ଟିଦ୍ୱାରା ସୃଷ୍ଟ; ଯେପରି ଅଣୁ, ପରମାଣୁ, ପ୍ରୋଟେନ୍, କ୍ୱାର୍କ ଇତ୍ୟାଦି । ଏହି ସ୍ତରମାନଙ୍କରେ ଆହୁରି କ୍ଷୁଦ୍ର ଅଣୁ ଅନ୍ତର୍ଲୀନ ହୋଇ ଥାଇପାରେ । ଏହା ଚିନ୍ତା କରିବା ସ୍ୱାଭାବିକ । ସମ୍ପୂର୍ଣ୍ଣ ଭାବରେ ଏହି ତତ୍ତ୍ୱର ବିଶ୍ଳେଷଣ ଅନୁସନ୍ଧାନ ଓ ପ୍ରତିଷ୍ଠା ନହେବା ପର୍ଯ୍ୟନ୍ତ ଏହା ଅନୁମାନ-ମାଧ୍ୟମରେ ବିଜ୍ଞାନର ଏକ ତଥ୍ୟ ବୋଲି କୁହାଯାଇପାରେ । ମାତ୍ର ଏଥିରେ ସତ୍ୟର ସ୍ୱାକ୍ଷର ନାହିଁ । କାରଣ ଏହା ଏପର୍ଯ୍ୟନ୍ତ ସ୍ୱପ୍ରତିଷ୍ଠିତ ନୁହେଁ । ଏସବୁ ପ୍ରଚେଷ୍ଟା ମାଧ୍ୟମରେ ଏକ ସତ୍ୟରେ ମଣିଷ ଉପନୀତ ହୋଇପାରେ ଯେ ଅଣୁବିଶ୍ୱ ଏକ ଅତି ରହସ୍ୟମୟ ପ୍ରହେଳିକା । ଅଣୁର ଆଦି-ଅନ୍ତ ଏପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟ ଭାବରେ ପରୀକ୍ଷିତ ସତ୍ୟରୂପେ ପ୍ରତିଷ୍ଠିତ ହୋଇନାହିଁ । ଯେପରି ମହାନରୁ ମହତ୍ତର ଓ ମହତ୍ତମ ଆଲୋକ ମଣ୍ଡଳ ଦୃଶ୍ୟମାନ ଜଗତର ଅନ୍ତର୍ଭୁକ୍ତ ହେଲେ ମଧ୍ୟ, ସେମାନଙ୍କର ଆଦିମୂଳ, ପ୍ରକୃତି-ପ୍ରଗତି, ବିକାଶ-ବିନାଶ ମଣିଷକୁ ଏପର୍ଯ୍ୟନ୍ତ ଜଣାନାହିଁ । ଅଣୁ, ପରମାଣୁ ଚିତ୍ର ମଧ୍ୟ ଏକ ବିସ୍ମୟକର ଜଗତର ଅନ୍ତର୍ଭୁକ୍ତ । ଏହାଛଡା ଯେଉଁ ଜଗତ ଆମର ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ମହାକାଶରୁ ମଧ୍ୟ ଦୃଶ୍ୟମାନ ନୁହେଁ, ମାତ୍ର ତାହାର ମହାକର୍ଷ-ଶକ୍ତିରେ ପ୍ରତି ସେକେଣ୍ଡରେ ୪୨୫ ମାଇଲ ବେଗରେ ଆମର ମହାବିଶ୍ୱକୁ ଟାଣିନେଇ ଯାଉଛି, ତାହାର ଅସ୍ତିତ୍ୱ, ପ୍ରଭାବ, ଶକ୍ତି, ବିସ୍ତୃତି ଓ ଉଦ୍ଦେଶ୍ୟ ବିଷୟରେ ଭାବିଲେ ମଣିଷର-କଳ୍ପନା-ଶକ୍ତି ମଧ୍ୟ ବିସ୍ମୟରେ ସ୍ତମ୍ଭୀଭୂତ ହୋଇଯାଏ । ତଥାପି ମଣିଷ ତାର ଜିଜ୍ଞାସାକୁ ଅବିରତ ଜାଗ୍ରତ କରି ରଖିଛି । କାରଣ ଏହା ତାହାର ମାନସିକ ଧର୍ମ ।

ମନୁଷ୍ୟର ଅଜେୟ ଚିତ୍ତବୃତ୍ତି ତାକୁ ଅଣୁପରମାଣୁରୁ ମହୀୟାନ୍ ଚିନ୍ତା ଆଡକୁ ଟାଣି ନେଉଛି । ଅଣୁର ଶେଷନପାଇ ମହତ୍ତର ବସ୍ତୁରେ ବିଜ୍ଞାନୀମାନେ ମନୋନିବେଶ

କରି ଏକ ସନ୍ତୁଳିତ ଧାରଣା ପ୍ରଦାନ କରିବାକୁ ପ୍ରୟାସୀ ହୋଇଛନ୍ତି ଏହି ମହାବିଶ୍ୱର ବିଭିନ୍ନ ସ୍ୱରୂପର, ବିଭିନ୍ନ ବିଭାଗର ଭିନ୍ନ ଭିନ୍ନ ଚିନ୍ତାଧାରାର । ସେମାନେ ଚେଷ୍ଟା କରୁଛନ୍ତି ଏକ ସୂକ୍ଷ୍ମ ସଂଯୋଗ ସ୍ଥାପନର ସୃଷ୍ଟିର ବିଭିନ୍ନ ପ୍ରକାଶରେ; ଏକ ଅନ୍ତର୍ନିହିତ ସତ୍ୟର ଅନୁଧାବନରେ । ସେମାନେ ଏକ ଯୋଗସୂତ୍ରର ଆବିଷ୍କାରରେ ଲିପ୍ତ । ଯାହାକୁ ଭଗବତ୍ ଗୀତାରେ ଅନବଦ୍ୟ ଭାଷାରେ ପ୍ରକାଶ କରାଯାଉଛି ''ସୂତ୍ରେ ମଣିଗଣାଇବ''; ଯେଉଁ ସୂତ୍ର ସବୁ-ମଣି-ଗୁଡିକୁ ଏକତ୍ରଭାବେ ବାନ୍ଧି ରଖିଛି । ନୋବେଲ ପୁରସ୍କାର ବିଜୟୀ, ମୁରେଜେଲ୍‌ମାନ ଲିଖିତ ଆଧୁନିକ ପୁସ୍ତକ "Qnark and the Jaguar" ରେ ସେ ପ୍ରମାଣ କରିବାକୁ ଚେଷ୍ଟା କରିଛନ୍ତି ଯେ କେତେକ ତଥ୍ୟ ଘଟଣାବଳିର ସୂତ୍ର ନିର୍ଦ୍ଧାରଣରେ ସହାୟକ ହେବ । ଉଦାହରଣ ସ୍ୱରୂପ ସେ ଦୃଷ୍ଟି ଆକର୍ଷଣ କରିଅଛନ୍ତି ଗୋଟିଏ ପିଲାର କୌଣସି ଭାଷା ଶିଖିବାର ପ୍ରଚେଷ୍ଟା, କୌଣସି ଜୀବାଣୁର ଔଷଧ ପ୍ରୟୋଗକୁ ପ୍ରତିହତ କରିବାର ଚେଷ୍ଟା, ଜଙ୍ଗଲରେ ବୃକ୍ଷମାନଙ୍କ ମୃତ୍ତିକା ଅଭ୍ୟନ୍ତରରୁ ବିଶେଷ ଖାଦ୍ୟ ସଂଗ୍ରହ କରି ମହୀରୁହରେ ପରିଣତ ହେବାର ଉଦ୍ୟମ ଏବଂ ଅଂଶଧନର ମୂଲ୍ୟ ବୃଦ୍ଧିର ଉଦ୍ୟୋଗ; ଏ ସବୁ ଗୁଡିକ ଗୋଟିଏ ଜଟିଳ ପ୍ରଣାଳୀର ନିଦର୍ଶନ ନିଜକୁ ବଂଚାଇରଖିବା ପାଇଁ । ଏହି ପ୍ରଣାଳୀ ବା ଧାରାଗୁଡିକ ଶୃଙ୍ଖଳା ଓ ବିଶୃଙ୍ଖଳାର ମଧ୍ୟରେ ଧାବମାନ; ଏକ ବିଜ୍ଞାନ ସମ୍ମତ ପ୍ରଣାଳୀର ଧାରାକୁ ଅବଲମ୍ବନ କରି ନିଜର ଅସ୍ତିତ୍ୱକୁ ସମୃଦ୍ଧ କରିବାପାଇଁ ସଦାସଚେଷ୍ଟ । ଏହାଛଡା ଅନ୍ୟକେତେକ ନୀତିନିୟମର ଅନିର୍ଦ୍ଦିଷ୍ଟତାରୁ ଲାଭବାନ ହେବାକୁ ମଧ ଦ୍ୱିଧା କରନ୍ତି ନାହିଁ । ସବୁ ପଦାର୍ଥ, ଜୀବ, ପ୍ରାଣୀ, ସ୍ଥାବର ଜଙ୍ଗମ ମାନଙ୍କ ଉପରେ ସେମାନଙ୍କର ସ୍ଥିତି, ବିକାଶ, ସମୃଦ୍ଧି ନିମନ୍ତେ ଏକ ବୃହତ୍ ଚାପ, ପ୍ରକୃତି ସୃଷ୍ଟି କରିଛି । ଏହି ଚାପର ବଶବର୍ତ୍ତୀ ହୋଇ ସମଗ୍ର ବିଶ୍ୱ-ବସ୍ତୁ ଜଗତ୍ ସହିତ ନିଜକୁ ଖାପ ଖୁଆଇ ନିଜର ସ୍ୱାସ୍ଥ୍ୟ ଓ ସଂବୃଦ୍ଧି ସୁଦୃଢ଼ କରି ରଖିବାକୁ ସଦା ତତ୍‌ପର । ତାଙ୍କର ଦୃଢ଼ ଆଶା ଯେ ମନୁଷ୍ୟ ଦିନେ ନିଜର ପ୍ରଜ୍ଞାବଳରେ ସର୍ବତତ୍ତ୍ୱ ସମ୍ବଳିତ ସୂତ୍ର, ସମଗ୍ର ବସ୍ତୁ ପ୍ରତି ପ୍ରଜୁଯ୍ୟ ଏକ ମହାନ ସତ୍ୟ ଆବିଷ୍କାର କରିବ । ସେ ଖଣ୍ଡିତ ତଥ୍ୟରେ ସନ୍ତୁଷ୍ଟ ନୁହନ୍ତି; ତାଙ୍କର ଦୃଷ୍ଟି ନିବଦ୍ଧ ଏକ ଅଖଣ୍ଡ ଚିତ୍ର ଉପରେ । ସବୁ ବିଜ୍ଞାନୀ ମାନଙ୍କର ଧାରଣା ସବୁ ଅଂଶକୁ ଏକତ୍ର କଲେ ମଧ ଅଖଣ୍ଡ ପ୍ରାପ୍ତି ହୁଏ ନାହିଁ । ଏହା ପ୍ରକୃତରେ ଏକ ମହତ୍ତର ପରିକଳ୍ପନା ଯାହାର ଶେଷ ପ୍ରାପ୍ତି ଏକ ମହତ୍ତମ ବୃତ୍ତରେ । ଏପରି ଧାରଣା ଏକ ଉଚ୍ଚଭାବାପନ୍ନ ସନ୍ତୁଳନ, ସର୍ବଶେଷ ବାସ୍ତବତାର । ଏପରି ଧାରଣା ଆଗରୁ ମହାବିଜ୍ଞାନୀ ମାନଙ୍କ ମନରେ ମଧ ସ୍ଥାନ ପାଇଥିଲା । ସେମାନଙ୍କ ମଧ୍ୟରେ ଅଗ୍ରଣୀ ଥିଲେ ସାର୍ ଆର୍ଥର ଏଡିଂଟନ୍ । ସେ ଅତ୍ୟନ୍ତ ଗଭୀର ଚିନ୍ତା ସାହାଯ୍ୟରେ ଶେଷ ମୀମାଂସା କରିବାକୁ ଯାଇ ଲେଖିଥିଲେ ନିମ୍ନ ଲିଖିତ ପୁସ୍ତକରେ ଯେ -

"The stuff of the world is mind stuff not spread in space and time. (The Nature of the physical world. - 1928)

୧୯୫୮ ସାଲ୍‌ରେ ମହା-ବିଜ୍ଞାନୀ (ଗତି ବିଦ୍ୟାର ଜନକ) ଏରଉଇନ୍‌ଶ୍ରୋୟେଡିଙ୍ଗାର୍ ତାଙ୍କର ପ୍ରସିଦ୍ଧ ପୁସ୍ତକ "mind and matter" ରେ ଲେଖିଲେ - "There is only one alternative, namely the unification of minds or consciousness. Their multiplicity is only apparent; in truth there is only one mind. This is doctrine of the upanishads."

ଉପର୍ଯ୍ୟୁକ୍ତ ଉଦ୍ଧୃତି ଗୁଡ଼ିକରୁ ସୂଚନା ମିଳେ ଯେ ପଦାର୍ଥ ବିଜ୍ଞାନୀ ମାନେ ପଦାର୍ଥ ବିଦ୍ୟାର ଜଟିଳ ତତ୍ତ୍ୱ, ବିଶ୍ୱରହସ୍ୟ ଉଦ୍‌ଘାଟନ କରିବା ପ୍ରୟାସରେ ନାନା ଗାଣିତ୍ୟିକ, ବୌଦ୍ଧିକ ବିଶ୍ଳେଷଣ କରିବାପରେ, ଶେଷରେ ପରମ ଚୈତନ୍ୟ ରାଜ୍ୟରେ ଉପସ୍ଥିତ ହୋଇଛନ୍ତି । ଏପରି ପରିଣତି ହେବାର ପଦ୍ଧତି ଅଳ୍ପ ପରିସରରେ ଆଲୋଚନା ଯୋଗ୍ୟ । ଆଇନ୍‌ଷ୍ଟାଇନ୍ ତାଙ୍କର ସାଧାରଣ ଆପେକ୍ଷିକତା ବାଦରେ ପ୍ରମାଣ କଲେ ଯେ ମହାବିଶ୍ୱସ୍ଥିତ ସ୍ଥାନ ସସୀମ । ଚାରିମାତ୍ରା ବିଶିଷ୍ଟ ସ୍ଥାନ-କାଳ ପରିବେଷ୍ଟିତ ଚକ୍ରରେ ଯେଉଁଠାରେ ବସ୍ତୁ ଥାଏ ତାହା ଉପରେ ମହାକର୍ଷ ଶକ୍ତିର ପ୍ରଭାବ ପଡେ । ଏହି ମହାକର୍ଷ ଶକ୍ତି ନିସୃତ ସ୍ଥାନକାଳର ଗତିଶୀଳ-ପ୍ରସ୍ଥ ସମ୍ପୂର୍ଣ୍ଣ ବ୍ରହ୍ମାଣ୍ଡକୁ ଆବୋରି ରହିଛି । ଏହି ସ୍ତର ସ୍ତର ଓ ପ୍ରସ୍ଥ ପ୍ରସ୍ଥ ବସ୍ତୁରାଜି ସ୍ଥାନକାଳ ଦ୍ୱାରା ସୃଷ୍ଟ ଏକ ଅବାସ୍ତବ ପ୍ରକାଶ । ରୂପହୀନ, ଅନ୍ତସାରଶୂନ୍ୟ ହେଲେ ମଧ୍ୟ, ଏହା ଆମକୁ ବିଭିନ୍ନ ରୂପରେ ଦୃଶ୍ୟମାନହୁଏ । ଏହାକୁ ମହାବିଜ୍ଞାନୀ ଶ୍ରୋୟାର୍‌ଡିଙ୍ଗର୍ ଅପରୁପ ରୂପେ ବର୍ଣ୍ଣନା କରିଅଛନ୍ତି : - "There is only one thing; and what seems to be plurality, is merely a series of different aspects of one thing, produced by a deception." । ଗୋଟିଏ ଅତି ସାଧାରଣ ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କରାଯାଇପାରେ । ମଣିଷ ଗୋଟିଏ ଭାରିଜୀବ । ସେ ଯେତେବେଳେ ମହାକାଶଯାନରେ ମହାବିଶ୍ୱରେ ବିଚରଣ କରିବାକୁ ଯାଏ, ସେତେବେଳେ ଶୂନ୍ୟ ଆକାଶରେ ତାର ଓଜନ ଏତେ କମିଯାଏ ଯେ ସେ ଚୌକିରେ ବସିପାରେ ନାହିଁ । ତାକୁ ବାନ୍ଧି ରଖିବାକୁ ହୁଏ । ତାହାହେଲେ ସାଧାରଣ ମନୁଷ୍ୟର ଓଜନ ବିଷୟରେ ଯେଉଁ ଧାରଣା ଅଛି, ତାହା ଏକାବେଳେକେ ଭ୍ରାନ୍ତ । ମାଧ୍ୟାକର୍ଷଣ ଶକ୍ତିହିଁ ଆମକୁ ଓଜନ ପ୍ରଦାନ କରିଛି । ସେହି ଶକ୍ତିର ପ୍ରୟୋଗ ମହାକାଶରେ କମିଗଲେ, ରକ୍ତ-ମାଂସ-ହାଡ ବିଶିଷ୍ଟ ପ୍ରାଣୀ ଦେଖିବାକୁ ଏତେ ଓଜନିଆ, ମାତ୍ର ପ୍ରକୃତରେ ତାର ଓଜନ କିଛିନାହିଁ । ତାହା ଅତ୍ୟନ୍ତ ହାଲୁକା । ଓଜନଟା ଗୋଟିଏ ଆପେକ୍ଷିକ ସତ୍ୟ । ମାଧ୍ୟାକର୍ଷ ଶକ୍ତିହିଁ ''ଓଜନ - ଭାବନା''ର

ଜନକ । ଅସଲରେ ପ୍ରଚଳିତ ବିଭିନ୍ନ ଶକ୍ତିରାଜି ନାନା ପରିକଳ୍ପନାର ଜନକ । ସେହି ଶକ୍ତି ଗୁଡିକୁ ବାହାର କରିନେଲେ ସମ୍ପୂର୍ଣ୍ଣ ସତ୍ୟ ବୋଲି ଜ୍ଞାତ ଧାରଣାର ମୂଳଦୁଆ ରହେନାହିଁ । ଅନ୍ୟ ଭାଷାରେ କହିବାକୁ ଗଲେ, ଦୃଶ୍ୟମାନ ବସ୍ତୁ ଆପାତ ଦୃଷ୍ଟିରେ ସତ୍ୟ ହୋଇପାରେ; ମାତ୍ର ତାହାର ଅନ୍ତର୍ନିହିତ ସତ୍ୟ ଭିନ୍ନ । ଆଧୁନିକ ବିଜ୍ଞାନ ବସ୍ତୁ ଓ ଶକ୍ତି ଅଭିନ୍ନ ବୋଲି ପ୍ରତିପାଦିତ କରିଛି । ମାତ୍ର ପୂର୍ଣ୍ଣ ବିଶ୍ଳେଷଣରେ ଦେଖାଗଲା ଯେ ସେଗୁଡିକ ଆପେକ୍ଷିକ ସତ୍ୟ । ସ୍ୱତଃ ଅସ୍ତିତ୍ୱହୀନ । ଅନ୍ୟ ଶକ୍ତିର ପ୍ରୟୋଗରେ ତାର ଅସ୍ତିତ୍ୱର ପ୍ରକାଶ ପ୍ରତୀୟମାନ । ସେ ନିଜେ ପରିବର୍ତ୍ତନହୀନ ସ୍ୱୟଂସମ୍ପୂର୍ଣ୍ଣ ବସ୍ତୁନୁହେଁ । ତାର ରୂପରେଖ ଆପେକ୍ଷିକତା ଓ ଅନ୍ୟ ସମସ୍ତ ଶକ୍ତି ଦ୍ୱାରା ନିର୍ଦ୍ଦେଶିତ ଓ ଦୃଶ୍ୟମାନ - ଏକ ଭଙ୍ଗିମା ମାତ୍ର । ତାନହେଲେ ଗୋଟିଏ ଭାରି ଜିନିଷ ହଠାତ୍ ହାଲୁକା ହୋଇଗଲା କିପରି ? ଅର୍ଥାତ୍ -ଆପାତଦୃଷ୍ଟିରେ ଯାହା ସତ୍ୟ, ବାସ୍ତବଦୃଷ୍ଟିରେ ତାହା ଅସତ୍ୟ ଅଥବା ମିଥ୍ୟା । "Apparent is not the real state" ।

ଅନ୍ୟଗୋଟିଏ ଦୃଷ୍ଟାନ୍ତ ନିଆଯାଉ । ଏହା ଅତି ସାଧାରଣ ଅଭିଜ୍ଞତା । ବଦ୍ରିକାଶ୍ରମରେ ବଦ୍ରିନାଥଙ୍କୁ ଦର୍ଶନ କରିବାକୁ ଯିବାବେଳେ ଯାତ୍ରୀ ମାନଙ୍କର ଶ୍ୱାସକଷ୍ଟ ହୋଇଥାଏ । ବଦ୍ରିନାଥ ପ୍ରାୟ ସମୁଦ୍ର ସ୍ତରରୁ ୧୦ହଜାର ଫୁଟ ଉପରେ । ସେଠାର ବାୟୁସ୍ତର ଅତି ପତଳା । ସେଥିରେ ଯେଉଁ ବାୟୁ ତରଙ୍ଗ ଅଛି ତାହା ମନୁଷ୍ୟର ହୃଦ୍‌ଯନ୍ତ୍ର ପ୍ରତି ସ୍ୱାଭାବିକ ଭାବରେ ସାବଲୀଳ ନୁହେଁ । ଶ୍ୱାସରୋଧ ହେବାର ଅଭିଜ୍ଞତା ହୁଏ । ସେଠାରେ ଡାକ୍ତର ମାନେ ସାଙ୍ଗେ ସାଙ୍ଗେ କୋରାମିନ୍ ଇଞ୍ଜେକ୍‌ସନ୍ ଦେଇ ଯାତ୍ରୀମାନଙ୍କୁ ସୁସ୍ଥ କରନ୍ତି । ମାତ୍ର ଆପାତ ଧାରଣାରେ, ବାୟୁର ଉପାଦାନ ସର୍ବତ୍ର ସମାନ ହେବା ଉଚିତ୍ । ସେଥିରେ ତାରତମ୍ୟ ବା ଭେଦ ସାଧାରଣ ଦୃଷ୍ଟିରେ ପ୍ରତୀୟମାନ ହୁଏ ନାହିଁ । ମାତ୍ର ପ୍ରକୃତରେ ବାୟୁରେ ମଧ ବହୁ ସ୍ତର ବିଦ୍ୟମାନ । ତୁଳାଗଦା ଯେପରି ଅତି ହାଲୁକା ହେଲେ ମଧ, ତଳସ୍ତରରେ ଚାପ ଅଧିକ ଭାବେ ସୃଷ୍ଟି କରିଥାଏ, ସେହିପରି ବାୟୁ ସ୍ତରର ଚାପରେ ପାର୍ଥକ୍ୟ ରହିଛି । ସବୁ ସ୍ତରରେ ସମାନ ଚାପ ଓ ସମାନ ଉପାଦାନ ନହେବା ହେତୁ, ଜୀବନ କେବଳ କେତେକ ବିଶେଷ ସ୍ତରରେ ବିଦ୍ୟମାନ । ତେଣୁ ଉଚ୍ଚସ୍ତରର ବାୟୁମଧରେ ଗତିଶୀଳ ମହାକାଶଯାନ ମଧରେ ପୃଥିବୀର ବାତାବରଣକୁ ସୁହାଇବାଭଳି ବିଶେଷଭାବରେ ବାୟୁମଣ୍ଡଳ ସୃଷ୍ଟିକରାଯାଇ ପଠାଯାଏ । ଆକାଶର ବିଭିନ୍ନ ସ୍ତରରେ ବିଚରଣ କଲେ ମଧ, ଏହାର ଆଭ୍ୟନ୍ତରୀଣ ବ୍ୟବସ୍ଥା କୃତ୍ରିମ ଉପାୟରେ ସ୍ଥିରିକୃତ ହୁଏ । ତେଣୁ ଏହି ଯାନ (capsule) ଯେଉଁ ଯାତ୍ରୀ ମାନଙ୍କୁ ନେଇଯାଏ, ସେମାନଙ୍କର କୌଣସି କ୍ଷତି ହୁଏ ନାହିଁ । ଆପତଃ ଦୃଷ୍ଟିରେ ଯାହା ଅନୁମାନ କରାଯାଏ ତାହା ପ୍ରକୃତରେ ବାସ୍ତବ ନୁହେଁ । ଏହି ଦୁଇ ଦୃଷ୍ଟାନ୍ତରୁ

ପ୍ରତୀୟମାନ ହେଉଛି ଯେ ଆପେକ୍ଷିକତାବାଦ ବିଶ୍ୱତତ୍ତ୍ୱ କେତେକ ପ୍ରତିଷ୍ଠିତ ଧାରଣାକୁ ଅସ୍ତିତ୍ୱହୀନ ରୂପେ ପ୍ରତିପାଦିତ କରୁଛି । ଯାହା ଆପାତଃ ସତ୍ୟରୂପେ ପ୍ରତିଭାତ ହେଉଛି ତାହା କେବଳ ଏକ ମାନସିକ ଭ୍ରାନ୍ତି । ଏହାର ଉତ୍ପତ୍ତି ଏକ ମାୟାରୁ; ଯାହା ବିଶିଷ୍ଟ ବୈଜ୍ଞାନିକ ଶ୍ରୋୟାରଡିଙ୍ଗର କହିଲେ ଯେ ଏକ ଠକାମିଦ୍ୱାରା ପ୍ରଯୋଜିତ । ପ୍ରକୃତରେ ପଦାର୍ଥ ଗୋଟିଏ ମାତ୍ର; ତାହାର ବିଭିନ୍ନ ବିଭାବ ର ବିକାଶ ତାହାର ବହୁଳତ୍ୱର ଧାରଣା ସୃଷ୍ଟି କରିଥାଏ ।

ମାଇକେଲ ଟାଲବଟ୍ ୧୯୯୧ରେ ଲିଖିତ ତାଙ୍କର ପ୍ରସିଦ୍ଧ ଗ୍ରନ୍ଥ "Holographic Universe" ରେ ଲେଖିଲେ ଯେ ଆମ ଜଗତରେ ଥିବା ସମସ୍ତ ପଦାର୍ଥ ବରଫ ଖଣ୍ଡରୁ ଆରମ୍ଭକରି ବୃକ୍ଷଲତା, ନକ୍ଷତ୍ରରାଜି ଆଉ ଭ୍ରାମ୍ୟମାଣ ଇଲେକଟ୍ରନ୍ ପ୍ରଭୃତି ଏକ ଏଭଳି ବାସ୍ତବତାର ପ୍ରକାଶ, ଯାହାମନେ ହୁଏ ଆମର ''ଦେଶ-କାଳ-ବିସ୍ତୃତିରୁ'' ବାହାରେ ଅବସ୍ଥିତ । ଆଇନଷ୍ଟାଇନଙ୍କ ଶିଷ୍ୟ ଓ ବିଖ୍ୟାତ କ୍ୱାଂଟଂ ବୈଜ୍ଞାନିକ David Bohm ଙ୍କ ମତରେ ଆମର ଦୈନନ୍ଦିନ ଜୀବନର ବାସ୍ତବତା ଏକ ପ୍ରକାର ଭ୍ରମବିଶେଷ । ତାଙ୍କ ମତରେ ବାସ୍ତବତାର ଅନ୍ତର୍ନିହିତ ସତ୍ୟ ପ୍ରଛବିଜଡିତ ଅବସ୍ଥାରେ (enfolded) ଅବସ୍ଥିତ । ଆଉ ଆମର ସମଗ୍ର-ଅବସ୍ଥିତି ପ୍ରକାଶ୍ୟମାନ (unfolded) ସ୍ତରର ଏକ ସ୍ୱରୂପ । ସେ ଗୋଟିଏ ସୁନ୍ଦର ଉଦାହରଣ ଦେଇଛନ୍ତି । ନଦୀରେ ଯେଉଁ ଘୂର୍ଣ୍ଣାବର୍ତ୍ତମାନ ସ୍ରୋତ ଦ୍ୱାରା ସୃଷ୍ଟିହୁଏ ସେଗୁଡିକ ବେଶ୍‌ଦୂରକୁ ଘୁରିଘୁରି ଚାଲିଥାଏ, ସେଗୁଡିକ ଭିନ୍ନ ଭିନ୍ନ ଆକୃତି, ବେଗ, ଘୂର୍ଣ୍ଣନର ଦିଗ ପରିଦୃଷ୍ଟ ହୁଏ । ମାତ୍ର କେଉଁଠାରେ ଏହି ଘୂର୍ଣ୍ଣନର ପରିଶେଷ ଏବଂ ତାପରେ କେଉଁଠାରୁ ନଦୀର ଆରମ୍ଭ ହୁଏ ତାହା ନିର୍ଣ୍ଣୟ କରିବା ଦୁଷ୍କର । ସେ ଏ ବିଷୟଟିର ବ୍ୟାଖ୍ୟା କରିବାକୁ ଯାଇ ଲେଖିଛନ୍ତି ଯେ ଆପାତ ଭିନ୍ନତାର ରୂପ ବର୍ହିବିଶ୍ୱରେ ପ୍ରତୀୟମାନ ହେଲେ ମଧ୍ୟ, ଏହି ବର୍ହିଦୃଶ୍ୟ ଓ ଅନ୍ତର୍ଲୀନ ସତ୍ୟ ଏକତ୍ରିଭୂତ ହୋଇ ଏକ ବିଶାଳ ସତ୍ତାର ଅସ୍ତିତ୍ୱ ପ୍ରମାଣ କରେ; ତାର ଅଗଣିତ ହସ୍ତରେ ଏହି ସତ୍ତା ସମଗ୍ର ବିଶ୍ୱ ଓ ଅଜ୍ଞାତ ମହାବିଶ୍ୱମାନଙ୍କୁ ଓ ତତ୍ ସଂଲଗ୍ନ ସମସ୍ତ ବସ୍ତୁ ବିଶେଷଙ୍କୁ ଧାରଣ କରିଅଛି ।

ଏଥର ଆଲୋକ ବିଷୟରେ ଆଲୋଚନା କରିବା ଆବଶ୍ୟକ । ଏହି ଆଲୋକ କିଭଳି ବସ୍ତୁ ? ଏହାର ଉପାଦାନ କଣ ? ଏହାର ଉତ୍ପତ୍ତି କେଉଁଠାରୁ । ଏହି ପ୍ରଶ୍ନଗୁଡିକ ବୈଜ୍ଞାନିକମାନଙ୍କୁ ଚିନ୍ତିତ କରି ରଖିଛି । ସେମାନେ ଏହି ପ୍ରଶ୍ନରାଜିର ସଦୁତ୍ତର ପାଇପାରି ନାହାନ୍ତି । ପ୍ରଥମେ ଆଇନ୍ ଷ୍ଟାଇନ୍‌ଙ୍କ ବକ୍ତବ୍ୟରୁ ଆରମ୍ଭ କରିବା ଉଚିତ୍ । ସେ କହିଲେ ଯେ ୫୦ବର୍ଷ ଧରି ସବୁ ଚିନ୍ତାର ପ୍ରସାର ସତ୍ତ୍ୱେ ଆଲୋକ କିଭଳି ବସ୍ତୁ ଏହାର ଉତ୍ତର ପାଇନାହିଁ । ଯଦିବା ଅନ୍ୟ ଅନେକେ ଭାବନ୍ତି ଯେ ଏହାର ଉତ୍ତର ସେମାନଙ୍କୁ ଜଣା, ମାତ୍ର ସେମାନେ ନିଜକୁ ଠକୁଛନ୍ତି । ତାଙ୍କର ଉକ୍ତିର ପଚାଶବର୍ଷ ପରେ ୧୯୯୩ରେ ଜଣେ ବିଜ୍ଞାନୀ, ଆର୍ଥର

ଯାଜୋନ୍, ଲେଖିଲେ ଯେ ବର୍ତ୍ତମାନ ସୁଦ୍ଧା ବିଜ୍ଞାନ ଆଲୋକ ବିଷୟରେ ସମ୍ପୂର୍ଣ୍ଣ ଜ୍ଞାନ ପ୍ରାପ୍ତ ହୋଇନାହିଁ । କ୍ୱାଂଟଂ ତତ୍ତ୍ୱ ଏକ ତଥ୍ୟର ପ୍ରକାଶ କରିଛି । ମାତ୍ର ଆଇନଷ୍ଟାଇନଙ୍କଠାରୁ ଆରମ୍ଭକରି ଫେଇନ୍‌ମାନ୍‌ଙ୍କ ପର୍ଯ୍ୟନ୍ତ ସମସ୍ତେ ଚେଷ୍ଟାକରି ମଧ୍ୟ ଆଲୋକତତ୍ତ୍ୱ ବୁଝିପାରିନାହାନ୍ତି । ବୋହ୍ମ କହିଲେ "In its generalised sense, light is the means by which the entire universe unfolds into itself. It is energy, information, content, form and structure. It is the potential of every thing." ଆର୍ଥର ଯାଜୋନ୍ ପୁଣି କହିଲେ ଯେ "One of the features of quantum elecertro-dynamics was a new undcstanding of the vacum, of emptiness, where before the vacum had been understood as pure emptiness - no matter, no light, no heat - now there was a residual hidden energy...........After one has removed all matter and all light from space, an infinite energy remains". ଅର୍ଥାତ୍ - କ୍ୱାଂଟଂ ତତ୍ତ୍ୱ ସହିତ ତଡିତ୍‌ଗତିବିଦ୍ୟାର ବିନ୍ୟାସ ପରେ ଏକ ନୂତନ ବିଚାର ନିର୍ଗତ ହେଲା ମହାଶୂନ୍ୟ ବିଷୟରେ । ଆଗରୁ ବୈଜ୍ଞାନିକମାନେ ଭାବିଥିଲେ ଯେ ଶୂନ୍ୟସ୍ଥାନଟା କେବଳ ଖାଲି ବୋଲି । ସେଥିରେ କିଛି ନାହିଁ । ସେଥିରେ ବସ୍ତୁ , ଆଲୋକକଣା, ତାପ ଇତ୍ୟାଦି କିଛି ନାହିଁ । ବର୍ତ୍ତମାନ ବୁଝାଗଲା ଯେ ସେହି ମହାଶୂନ୍ୟରେ ଅବଶିଷ୍ଟ-ଶକ୍ତିରାଜି ଗୁପ୍ତ ଭାବରେ ରହିଅଛନ୍ତି । ଯଦି ସବୁ ବସ୍ତୁ ଓ ଆଲୋକ ବିଶ୍ୱବ୍ୟାପ୍ତିରୁ ବିଯୁକ୍ତ କରାଯାଏ; ତେବେ ମଧ୍ୟ ଅସୀମ ଅନନ୍ତ ଶକ୍ତି ଅବଶିଷ୍ଟ ରହିଯିବ ।

ଉପର୍ଯ୍ୟୁକ୍ତ ମତବାଦରୁ ଏହା ସ୍ପଷ୍ଟ ହେଉଛି ଯେ ବିଜ୍ଞାନ ଆଲୋକ ତତ୍ତ୍ୱର ଚୁଡାନ୍ତ ଜ୍ଞାନ ବିଷୟରେ ଅବହିତ ନୁହେଁ । ବିଭିନ୍ନ ଅନୁମାନ ଉପରେ ଏହାର ମତବାଦ ଆରୋପିତ । ପ୍ରମାଣ ସାପେକ୍ଷ ତଥ୍ୟ ବର୍ତ୍ତମାନ ସୁଦ୍ଧା ଏ ବିଷୟରେ ସ୍ଥିରିକୃତ ହୋଇନାହିଁ । ତେଣୁ, ଏଦିଗରେ ବହୁ ଚିନ୍ତା ଭାବନା ପରୀକ୍ଷା ନିରୀକ୍ଷାର ଆବଶ୍ୟକତା ରହିଛି । ବିଶ୍ୱର ବିଭିନ୍ନ ଉପାଦାନ ବିଷୟରେ ଗବେଷଣା କରି ମଧ୍ୟ ବିଜ୍ଞାନ ସମ୍ପୂର୍ଣ୍ଣ ସତ୍ୟରେ ଉପନୀତ ହୋଇପାରି ନାହିଁ । ସେମାନେ ଗୋଟିଏ ପରୀକ୍ଷାକରି ଦେଖିଲେ ଯେ ଇଲେକଟ୍ରନ୍ କଣାମାନେ, ବୈଜ୍ଞାନିକ ମାନଙ୍କର ଉପସ୍ଥିତିରେ ହେଉ ବା ଅନୁପସ୍ଥିତିରେ ହେଉ, ଯେତେ ସୂକ୍ଷ୍ମ ଯାନ୍ତ୍ରିକ ବ୍ୟବସ୍ଥା ଥିଲେ ମଧ୍ୟ, ଭିନ୍ନ ଧରଣର ଆଚରଣ କରନ୍ତି । ମାତ୍ର ଆଇନ୍‌ଷ୍ଟାଇନ କହିଲେ ଯେ ପ୍ରକୃତିର ପଶା ଖେଳିବାର ପ୍ରବୃତ୍ତି ନାହିଁ । ସେ ନିଜେ ଗୋଟିଏ ପରୀକ୍ଷାର ବ୍ୟବସ୍ଥା କଲେ । ଦୁଇଟି କଣା ପାଖାପାଖି ରହି ଉଭୟଙ୍କୁ ପ୍ରଭାବିତ କରାଗଲା ।

ସେଗୁଡିକର ଦୂରତ୍ୱ ଓ ବେଗ ନିର୍ଦ୍ଧାରଣ କରାଗଲା । ଗୋଟିକୁ ପୃଥିବୀରେ ରଖି ଅନ୍ୟଟିକୁ ବହୁ ଆଲୋକବର୍ଷ ଦୂରକୁ ପଠାଗଲା । ଅନ୍ୟକୌଣସି ଶକ୍ତି ସେମାନଙ୍କୁ ପ୍ରଭାବିତ କଲା ନାହିଁ । ଦୂରସ୍ଥ କଣାର ବେଗମାନ ନିରୁପଣ କରି ଦେଖାଗଲା ଯେ ଗୋଟିଏ କଣା ଅନ୍ୟଟିକୁ ମଧ ପ୍ରଭାବିତ କରିପାରୁଛି । ସେଥିରୁ ଜଣାଗଲା ଯେ ବ୍ରହ୍ମଣ୍ଡରେ କୌଣସି ଘଟଣା ଘଟିଲେ ତାହା ଅନ୍ୟ ଅଂଶକୁ ମଧ ପ୍ରଭାବିତ କରିପାରୁଛି । ଏହାକୁ କୁହାଗଲା '' Mach ନୀତି'' ବୋଲି । ଏଥିରୁ ବୈଜ୍ଞାନିକମାନେ ଭାବିଲେ ଯେ ଏହି ବିଶ୍ୱର ଖଣ୍ଡ-ଅବସ୍ଥାର ତଳେ ରହିଛି ଅଖଣ୍ଡସତ୍ତା । ତାହା ଅଧିଷ୍ଠାନ ବା ମୂଳରେ ରହି ଖଣ୍ଡକୁ ପ୍ରଭାବିତ ଓ ଚାଳିତ କରୁଛି । ଏହି ଅଖଣ୍ଡ ସତ୍ତାକୁ କ୍ୱାଂଟଂ ବିଦ୍ୟା ''କ୍ଷେତ୍ର'' (field) ନାମରେ ନାମିତ କରିଛି । ପ୍ରଥମେ ମନେ ହୁଏ ଏହି କ୍ଷେତ୍ର ଏକ ମହାଶୂନ୍ୟ ବୋଲି । ମାତ୍ର ପରେ ଦେଖାଗଲା ଯେ ''ଭର୍‌ଚୁଆଲ୍'' ନାମକ ବସ୍ତୁ ଶୂନ୍ୟରେ ଉତ୍‌ପତ୍ତି ହୋଇ ନିଜର ପ୍ରକାଶ କରେ, ଘୂରିବୁଲେ ତାପରେ ଉଭେଇ ଯାଏ । ଏହା ଏକପ୍ରକାର କଣାହେଲେ ମଧ କଣା ନୁହେଁ । ସେଗୁଡିକ ''ଅସ୍ତି'' ଓ ''ନାସ୍ତି'' ମଧରେ (ପଜିଟିଭ ଓ ନେଗେଟିଭ) ବିଚରଣ କରିଥାଏ । ଏଗୁଡିକରେ ଶକ୍ତି-ସଂଚାର କଲେ ଏଗୁଡିକ ବାସ୍ତବ କଣାରେ ମଧ ପରିଣତ ହୋଇପାରେ । ଏହି ଆବିଷ୍କାର ବିଜ୍ଞାନର ଆଖି ଖୋଲି ଦେଇଛି । ଯାହାକୁ ଶୂନ୍ୟ ଭାବରେ ଚିନ୍ତା କରାଯାଉଥିଲା, ତାହା ପ୍ରକୃତରେ ଶୂନ୍ୟ ନୁହେଁ । ତାହା ପରିପୂର୍ଣ୍ଣ । ତାହାହେଲେ ଶୂନ୍ୟ କାହିଁକି ଏପରି ଦେଖାଯାଉଅଛି ? କାହିଁକି ବାସ୍ତବ ପଦାର୍ଥ ସେଥିରେ ବିଲୀନ ହୋଇ ଯାଉଛନ୍ତି ? ବିଲୀନ ହେଲେ ମଧ ଶୂନ୍ୟର ଗର୍ଭରେ ସେ ବସ୍ତୁ ଗୁଡିକର ରହଣି ଅଛି, ସେମାନଙ୍କର ବାସସ୍ଥାନ ହେଉଛି ଶୂନ୍ୟର ଗର୍ଭ ? ଏହି ପ୍ରଶ୍ନ ଗୁଡିକର ଏକମାତ୍ର ଉତ୍ତର ହେଲା, ପ୍ରକୃତରେ ଶୂନ୍ୟ ସ୍ଥାନଟି ପୂର୍ଣ୍ଣସ୍ଥାନ । ବାସ୍ତବ ସତ୍ତାର ମିଳାଇଯିବାର ଅର୍ଥହେଲା ରୂପାନ୍ତର ହେବା । ସେଗୁଡିକ ଯେପରି ଭାବରେ ଦୃଶ୍ୟମାନ ହେଉଥିଲେ ସେପରି ନ ହେଲେ ମଧ୍ୟ, ଅନ୍ୟରୂପରେ ସେମାନଙ୍କର ମହାଶୂନ୍ୟରେ ଉପସ୍ଥିତିର ସମ୍ଭାବନା ଅତ୍ୟନ୍ତ ଉଜ୍ଜ୍ୱଳ ।

ଏହା ପରେ ପ୍ରଶ୍ନ ଉଠେ, ସେହି ଶୂନ୍ୟର ଗତି ଓ ପ୍ରକୃତି କଣ ? ଅବସ୍ଥିତି ଓ ବିସ୍ତୃତି କିପ୍ରି ହୁଏ ? ତାହାର ଉପାଦାନ କଣ ? ବିଶ୍ୱର ଏକ ଭାଗରେ ଘଟଣା ଘଟିଲେ ଅନ୍ୟ ଭାଗରେ ତାହାର ପ୍ରଭାବ ପଡେ କିପରି ? ଏହି ସବୁ ପ୍ରଶ୍ନର ଉତ୍ତର ଭୌତିକ ବିଜ୍ଞାନରେ ନ ପାଇ, ମହାବିଜ୍ଞାନୀମାନେ ''ଚୈତନ୍ୟ''ର ଅବତାରଣା କରିଛନ୍ତି, କାରଣ ଭୌତିକବସ୍ତୁର ଶୂନ୍ୟରେ ଅବସ୍ଥିତି ଓ ତାହାର ପ୍ରଭାବ ସେମାନଙ୍କର ପ୍ରୟୋଗଶାଳାରେ ପରୀକ୍ଷିତ ହୋଇପାରିନାହିଁ । ବହୁ ପରିଶ୍ରମ, ପରୀକ୍ଷା ଓ ପ୍ରୟୋଗ କରି ମଧ ସେମାନେ ଚୁଡାନ୍ତ ସତ୍ୟରେ ପହଞ୍ଚି ପାରିନାହାନ୍ତି । ତେଣୁ ବାଧ ହୋଇ ସେମାନେ ଭାବିଛନ୍ତି ଯେ

ଚୈତନ୍ୟମୟ ସତ୍ତା କେବଳ ଏହି ମହାଶୂନ୍ୟକୁ ପୂର୍ଣ୍ଣ କରିପାରେ । କେବଳ ତାହାନୁହେଁ ଏହାଙ୍କୁ ଅର୍ଥପୂର୍ଣ୍ଣ ମଧ କରିପାରେ ; ଶୂନ୍ୟକୁ ଏକ ନୂତନ ଭୂମିକା ପ୍ରଦାନ କରିପାରେ ତାହା ବାସ୍ତବତାର ପ୍ରସାରଣରେ ଏକ ମହୀୟାନ ଶକ୍ତିରୂପେ ପ୍ରତିଭାତ ହେବ। ୧୯୬୭ ସାଲରେ ପଦାର୍ଥ ବିଜ୍ଞାନୀ ହ୍ୱିଗ୍‌ନର୍ ଲେଖିଲେ ଯେ, "Formal inclusion of conscionsness in physics could well become an essential feature of any further advance in our scientific understanding" ଏପରି ଅବସ୍ଥାରେ ଗୋଟିଏ ନୂଆପଦ୍ଧତିର ଅବତାରଣା କରାଯାଇଅଛି । ତାହାର ନାମହେଲା ମନୁଷ୍ୟ-ମୁଖୀ ବା ନରୋତ୍ତୀୟ ନୀତି ବା Anthropic Principle । ବିଭିନ୍ନ ଘଟଣା ପ୍ରବାହ ମଧ ଦେଇ ବିଶ୍ୱଜୀବନ ମଣିଷ ମଧରେ ପ୍ରକାଶଲାଭ କରିଛି । ଏ ବିଷୟରେ କହିବାକୁ ଯାଇ ନୋବେଲ ପୁରସ୍କାର ବିଜୟୀ ଜୀବପଦାର୍ଥବିଦ୍ ଜର୍ଜ ଓୟାଲ୍ଡ ଲେଖିଛନ୍ତି ଯେ ସୃଷ୍ଟିର ମୂଳ ଉଦ୍ଦେଶ୍ୟ ହେଲା ‘‘ମନୁଷ୍ୟ-ମୁଖୀ’’। ତାନହେଲେ ଏହି ବିଶ୍ୱ ଯେତେ ସୁନ୍ଦର ହେଲେ ମଧ ଜୀବନହୀନ ହୋଇଥାଆନ୍ତା । ଏହି ସମ୍ବନ୍ଧରେ ଆଗରୁ ବିଶଦ ଆଲୋଚନା ହୋଇଛି Frank Typler ଙ୍କ ମତାବଳୀର । ସେ ଏହି ମତବାଦକୁ ସଂପ୍ରସାରିତ କରି Omega Point ପର୍ଯ୍ୟନ୍ତ ନେଇଯାଇଛନ୍ତି । ତାଙ୍କର ଧ୍ୟାନ-ଧାରଣାର ସନ୍ତୁଳନ ଶ୍ରୀମଦ୍ ଭଗବତ୍ ଗୀତାର ଶ୍ଳୋକ ସହିତ କିପରି ଓତପ୍ରୋତଭାବେ ଜଡିତ ତାହା ପରେ ବ୍ୟାଖ୍ୟା କରାଯିବ ।

ବର୍ତ୍ତମାନ ସୃଷ୍ଟିତତ୍ତ୍ୱର ବିଶ୍ଳେଷଣ ପ୍ରାସଙ୍ଗିକ ହେବ । ବୈଜ୍ଞାନିକମାନେ କହନ୍ତି ଯେ ବସ୍ତୁର ରୂପାନ୍ତର ହୁଏ, ମାତ୍ର ଧ୍ୱଂସ ହୁଏ ନାହିଁ। ବସ୍ତୁ ଅନାଦି ଓ ଅନନ୍ତ। ତେଣୁ ତାହାର ସୃଷ୍ଟି ବା ଧ୍ୱଂସର ପ୍ରଶ୍ନ କିପରି ଉଠିବ ? ମାତ୍ର ତାପଗତି ବିଦ୍ୟାର ସୂତ୍ର ଏ ପ୍ରଶ୍ନର ସମାଧାନ ପାଇଁ ଉଦ୍ଦିଷ୍ଟ। ଏହି ସୂତ୍ରର ପ୍ରତିପାଦ୍ୟ ବିଷୟ ହେଲା କର୍ମ କଲେ ଶକ୍ତି କ୍ଷୟ ହୁଏ। ଶକ୍ତିଧ୍ୱଂସ ହୁଏ ନାହିଁ। କେତେକ ପରିମାଣରେ ଶକ୍ତି କମିଯାଏ। ଏହାକୁ ବୈଜ୍ଞାନିକ ଭାଷାରେ Entropy କୁହାଯାଏ । କର୍ମର ପରିମାଣ ବଢ଼ିଲେ ଏନ୍‌ଟ୍ରପିର ପରିମାଣ ମଧ ବଢ଼େ । ମାତ୍ର ଅମାପ ଅପ୍ରାପ୍ୟ ଶକ୍ତି ସର୍ବତ୍ର ସମାନଭାବରେ ବିଚ୍ଛୁରିତ ହୋଇପଡେ । ଏହା ଫଳରେ ଭାର-ସାମ୍ୟ ପ୍ରତିଷ୍ଠା ହୁଏ। ଯଦି ବିଶ୍ୱ ଆବଦ୍ଧ ହୋଇ ରହିଛି ବୋଲି ବିଶ୍ୱାସ କରାଯାଏ ଓ ବାହାରୁ ଅନ୍ୟଶକ୍ତି ଆହରଣର ସୁଯୋଗ ନଥାଏ; ତାହାହେଲେ ଉପର୍ଯ୍ୟୁକ୍ତ ସୂତ୍ର ଏହି କ୍ଷେତ୍ରରେ ପ୍ରଯୁଜ୍ୟ ହୋଇଥାଏ । ଏନ୍‌ଟ୍ରପିର ବିପରୀତ ହେଲା ନେଗେନ୍‌ଟ୍ରପି, ଅର୍ଥାତ୍, ଶକ୍ତି କ୍ଷୟର ବିପରୀତ ହେଲା ଶକ୍ତି ସଂଚୟ। ଏହାର ଏକ ଉଦାହରଣ ହେଲା ପୃଥିବୀ ସୂର୍ଯ୍ୟଠାରୁ ଶକ୍ତି ସଂଚୟ କରି ଉଦ୍‌ଭିଦ ପ୍ରଭୃତିଙ୍କୁ ଶକ୍ତି ଯୋଗାଇଥାଏ । ଏହି ଦୁଇ ଭାବଧାରା ପରସ୍ପର ବିରୋଧୀ ହେବାରୁ ସୌରସନ୍ଧାନୀମାନେ ଅନ୍ୟ ଭାବରେ ଚିନ୍ତା କଲେ ସୃଷ୍ଟିର ପ୍ରଥମ

ଅବସ୍ଥାରେ ପ୍ରଚଣ୍ଡ ତାପ ବିଦ୍ୟମାନ ଥିଲା । ସେତେବେଳେ ବସ୍ତୁର ଉପସ୍ଥିତି ଅଭାବନୀୟ ଥିଲା । ସେତେବେଳେ ବିକିରଣ ପ୍ରଭାବ ଓ ଅଗଣିତ କଣାର ଅନ୍ତହୀନ ନୃତ୍ୟ ର ହିଁ କେବଳ ଉପସ୍ଥିତି ଥିଲା । ଶକ୍ତିର ପ୍ରକାଶ ବେଶୀ ଥିବାରୁ ତରଙ୍ଗ ଦୈର୍ଘ୍ୟ କମ୍‌ଥିଲା । ତାହାକୁ "ଗାମା ବିକିରଣ" ବୋଲି ନାମିତ କରାଯାଇଅଛି । ବ୍ରହ୍ମାଣ୍ଡ ଆସ୍ତେ ଆସ୍ତେ ଥଣ୍ଡା ହେବାରୁ, ତରଙ୍ଗଦୈର୍ଘ୍ୟ କ୍ରମେ କ୍ରମେ ବଢ଼ିଲା । ଏହି ତରଙ୍ଗ ଦୈର୍ଘ୍ୟର ସମସ୍ତ ବ୍ରହ୍ମାଣ୍ଡ ମଧ୍ୟରେ ଉପସ୍ଥିତି ସୃଷ୍ଟିର ପ୍ରମାଣ ବୋଲି ଅନୁମାନ କରାଯାଉଥିଲା । ମହାବିଜ୍ଞାନୀ ପେନ୍‌ଜିଅସ୍ ଓ ଉଇଲସନ୍ ଶେଷରେ ବେତାର ସଂକେତକୁ ଖୋଜି ପାଇଲେ । ଏହାର ଦୈର୍ଘ୍ୟ ହେଲା ୭.୩୫ ସେଣ୍ଟିମିଟର । ଏହି ସଂକେତ ମହାକାଶର ସବୁ ଦିଗରୁ ସମାନ ଭାବରେ ଆସୁଛି । ଏଥିରୁ ଏହି ସତ୍ୟରେ ବିଜ୍ଞାନ ଉପନୀତ ହେଲା ଯେ ବ୍ରହ୍ମାଣ୍ଡ ସସୀମ । ଏହାର ସୃଷ୍ଟି ଓ ଲୟ ମଧ୍ୟ ଅଛି । ଆଗରୁ ଆଲୋଚନା କରାଯାଇଛି ଯେ ପ୍ରସାରଣ-ସଂକୋଚନଚକ୍ର ଅନାଦି ଅନନ୍ତ ଭାବରେ ଚାଲିଥିବ । ଏହା କେତେକ ବିଜ୍ଞାନୀଙ୍କର ଦୃଢ଼ ଧାରଣା । Carl Sagan ଲେଖିଛନ୍ତି - "The Cosmos is all that is or ever was or ever will be". (Cosmos 1981)

ପ୍ରାୟ ବାରବର୍ଷ ହେଲା ବିଜ୍ଞାନୀମାନଙ୍କ ମନରେ ଏକ ନୂତନ ଧାରଣା ପ୍ରବେଶ କରିଛି । ଆଗରୁ ଆଶା କରାଯାଉଥିଲା ଯେ କ୍ୱାଂଟଂ ତତ୍ତ୍ୱ ଓ ମହାକର୍ଷ ତତ୍ତ୍ୱର ଏକିକରଣ ହୋଇ ଗୋଟିଏ ସମୂହତତ୍ତ୍ୱ ବାହାରିବ ଯାହା ସବୁ ପଦାର୍ଥ ପ୍ରତି ପ୍ରଯୁଜ୍ୟ ହେବ । ଯାହାକୁ Grand Unified Theory ବୋଲି ଆଖ୍ୟା ଦିଆହୋଇଛି । ବିଂଶ ଶତାବ୍ଦି ଶେଷ ହେବାକୁ ଚାଲିଲା, ମାତ୍ର ଏହି ଆଶା ନିରାଶାରେ ପର୍ଯ୍ୟବସିତ । ଏପର୍ଯ୍ୟନ୍ତ ଏପରି କୌଣସି ତତ୍ତ୍ୱ ନିର୍ଦ୍ଧାରିତ ହେଲା ନାହିଁ ।

ମାତ୍ର ଦୁଇ ବିଜ୍ଞାନୀ ମାଇକେଲ୍ ଗ୍ରୀନ୍ ଓ ଜନ୍ ମୋଆର୍ଜ ଏକ ନୂତନ ତତ୍ତ୍ୱ ପରିବେଷଣ କରିଛନ୍ତି । ଏହାର ନାମିକରଣ ହୋଇଛି "String Theory" ବା "ସୂତ୍ରତତ୍ତ୍ୱ" । ସେମାନଙ୍କର ମତ ହେଲା ମୂଳ-ଉପାଦାନ କଣାନୁହେଁ । ତାହା ସୂତା ଭଳିଆ ଜିନିଷ । ଏହାର ରୂପ ଅତ୍ୟନ୍ତ ସୂକ୍ଷ୍ମ ଓ ସରୁ । ଏହି ସୂତ୍ର ତତ୍ତ୍ୱ ବୈଜ୍ଞାନିକ ପରୀକ୍ଷା ଉପରେ ନିର୍ଭରଶୀଳ ନୁହେଁ । ଏହା ଗାଣିତିକ ତତ୍ତ୍ୱ ଓ ଯୁକ୍ତି ଉପରେ ନିର୍ଭର ଶୀଳ । ଏହି ଆଦି-ଉପାଦାନ ସୂତ୍ରର ଅସ୍ତିତ୍ୱ ଆମ ବିଶ୍ୱରେ ପ୍ରମାଣ ସାପେକ୍ଷ ନୁହେଁ । କାରଣ ଏହାର ଅସ୍ତିତ୍ୱ ଦଶମାତ୍ରା ବିଶିଷ୍ଟ ବିଶ୍ୱରେ ଦର୍ଶନୀୟ । ଏହା ଚାରିମାତ୍ରା ବିଶିଷ୍ଟ ଆମର ବିଶ୍ୱ ଯାହା, ଦୈର୍ଘ୍ୟ, ପ୍ରସ୍ଥ, ଉଚ୍ଚତା ଓ ସମୟଦ୍ୱାରା ଚିହ୍ନିତ, ସେଥିରେ ଦୁଷ୍ପ୍ରାପ୍ୟ । ବିଶ୍ୱର ଆଦି ସୃଷ୍ଟି ସମୟରେ ଦଶମାତ୍ରା ବିଶିଷ୍ଟ ବିଶ୍ୱରେ ଏଗୁଡ଼ିକ ବିଦ୍ୟମାନ ଥିଲେ । ବର୍ତ୍ତମାନ ସେଇ ସୂତ୍ର ଗୁଡିକ ଅଦୃଶ୍ୟ ଅବସ୍ଥାରେ

ଅଛନ୍ତି । କଣାଗୁଡିକ ପ୍ରୟୋଗଶାଳାରେ ''କୋଲାଇଡର୍'' ଯନ୍ତ୍ର ସାହାଯ୍ୟରେ କ୍ଷଣିକ ମୁହୂର୍ତ୍ତପାଇଁ ସୃଷ୍ଟି କରାଯାଏ । ତାପରେ ଏଗୁଡିକର ବିଲୟ ଘଟେ । ମାତ୍ର ଏହି ସୂତ୍ର ସୃଷ୍ଟିପାଇଁ ଯେଉଁ ପରିମାଣର ଶକ୍ତି ଆବଶ୍ୟକ, ତାହା ଏହି ଯନ୍ତ୍ର ସାହାଯ୍ୟରେ ପ୍ରସ୍ତୁତ କରିବା ଏକାବେଳେକେ ଅସମ୍ଭବ । ତଥାପି ଏହି ତତ୍ତ୍ୱ କେତେକ ବିଜ୍ଞାନୀ ମାନଙ୍କୁ ଆକୃଷ୍ଟ କରିଛି । କାରଣ ''କଣାତତ୍ତ୍ୱ''ର ବହୁ ସମାଲୋଚକ ବର୍ତ୍ତମାନ ବାହାରିଲେଣି । ସେମାନେ ''ସୂତ୍ର-ତତ୍ତ୍ୱ''କୁ ସମର୍ଥନ କରୁଛନ୍ତି । ଏହାର ବିଶେଷ କାରଣ ହେଲା ମହାକର୍ଷ ଓ କ୍ୱାଂଟଂ ତତ୍ତ୍ୱକୁ ସେମାନେ ସହାବସ୍ଥାନ କରାଇ ସେହି ବହୁ ପ୍ରତୀକ୍ଷିତ ''ଏକମେବ ଅଦ୍ୱିତୟ'' ତତ୍ତ୍ୱର ସ୍ଥାନରେ ସ୍ଥଳାଭିଷିକ୍ତ ହେବାକୁ ଦାବି କରୁଛନ୍ତି । ସବୁ ବିଷୟ ପ୍ରତି ପ୍ରଯୁଜ୍ୟ ଏହି ତତ୍ତ୍ୱର ସନ୍ଧାନରେ ମହାବିଜ୍ଞାନୀମାନେ ବଡ ଉଦ୍‌ଗ୍ରୀବ । ସେମାନେ ଭାବୁଛନ୍ତି ଯେ ଏହି ସୂତ୍ରତତ୍ତ୍ୱ ସବୁ ତତ୍ତ୍ୱର ଏକମାତ୍ର ସୂତ୍ର ହୋଇପାରେ । ଏହା ଜାଣିଲେ ସବୁ ଅଜଣାର ସମାଧାନ ହୋଇଯିବ । ଭୂତଭବିଷ୍ୟତ ମଧ ନିର୍ଦ୍ଧାରିତ ହୋଇପାରିବ ନିର୍ଭୁଲ ଭାବରେ । ମହାକାଶ ପିଣ୍ଡରୁ ଆରମ୍ଭ କରି କ୍ଷୁଦ୍ରକଣାର ଉତ୍‌ପତ୍ତି, ସ୍ଥିତି ଓ ଲୟ ମଧ ଏହି ସୂତ୍ରରୁ ନିର୍ଦ୍ଦିଷ୍ଟ ହେବ । ଏହା ହେବ ଆଦିର ଆଦି ଓ ମୂଳର ମୂଳ ତତ୍ତ୍ୱ । କିନ୍ତୁ ଏହାର ପ୍ରାମାଣିକ ଭିତ୍ତି ଗାଣିତ୍ୟିକ ଫର୍ମୁଲା ଉପରେ ନିବିଷ୍ଟ, ପରୀକ୍ଷାଗତ ପଦାର୍ଥବିଦ୍ୟା ଉପରେ ନୁହେଁ । ତେଣୁ ଏହାର ଆକର୍ଷଣୀୟତା ସୀମିତ ହେବାର ଆଶଙ୍କା ରହିଛି । ଏହା ଏକ ସମ୍ଭାବ୍ୟ ତଥ୍ୟ ମାତ୍ର । ଏହି ତଥ୍ୟର କେତେକ ସାମଞ୍ଜସ୍ୟ ରହିଛି ବେଦାନ୍ତ ଦର୍ଶନରେ ''ଉର୍ଣ୍ଣନାଭି'' ବା ବୁଢ଼ିଆଣି ତତ୍ତ୍ୱ ସହିତ । ବେଦାନ୍ତରେ ପରିକଳ୍ପନା କରାଯାଇଅଛି ଯେ ବୁଢ଼ିଆଣି ଯେପରି ଜାଲ ଛାଡେ ଏବଂ ପରେ ଇଚ୍ଛାହେଲେ ସେହି ପୁରା ଜାଲଟା ନିଜ ଭିତରକୁ ଟାଣିନିଏ, ସେହିପରି ଏହି ବିଶ୍ୱ ଶୂନ୍ୟରୁ ପ୍ରସାରିତ ହୋଇ ପୁଣି ସଂକୁଚିତ ହୋଇ ଶୂନ୍ୟରେ ପରିଣତ ହୁଏ । ଶୂନ୍ୟର ଅବସ୍ଥା ହେଉଛି ଏକାବେଳେକେ ଶୂନ୍ୟ ନୁହେଁ । ଏହା ଅବ୍ୟକ୍ତ ଅବସ୍ଥା । ଏଥିରୁ ବିଶ୍ୱଜାତ ହୋଇ ବ୍ୟକ୍ତ ଅବସ୍ଥାରେ ପହୁଞ୍ଚେ । ଏହି ବ୍ୟକ୍ତ ଅବସ୍ଥା ଅନିତ୍ୟ । ଏହାର ଜନ୍ମ ମୃତ୍ୟୁ ଅଛି । ମାତ୍ର ଅବ୍ୟକ୍ତ ଅବସ୍ଥା ନିତ୍ୟ, ଅସୀମ ଓ ଚିରନ୍ତନ । ଏହି ଚିରନ୍ତନ ଅବସ୍ଥାରୁ ବ୍ୟକ୍ତ ଅବସ୍ଥାର ଯାତାୟାତ ସମ୍ଭବ ହୁଏ । ଅନାଦି, ଅନନ୍ତ ଭଣ୍ଡାର ନଥିଲେ ଏହି ବ୍ରହ୍ମାଣ୍ଡର ଉତ୍‌ପତ୍ତି, ସ୍ଥିତି ଓ ପ୍ରଳୟ ହେବାର ସମ୍ଭବନା ନଥାନ୍ତା । ତାହାଛଡା ଏହି ଚିରନ୍ତନ ଚକ୍ର ମଧ ପ୍ରବର୍ତ୍ତିତ ହୋଇପାରି ନଥାନ୍ତା । ବେଦାନ୍ତ ଦର୍ଶନରେ ଏହି ଆଦି-ମୂଳ ଅବସ୍ଥା 'ବ୍ରହ୍ମ' ନାମରେ ନାମିତ । ଏହା କୌଣସି ବସ୍ତୁ ନୁହେଁ । ବ୍ରହ୍ମ ସ୍ୱୟଂ-ଚୈତନ୍ୟ । ଏହି ଚୈତନ୍ୟର ପ୍ରତିବିମ୍ବ ମଧ ଚୈତନ୍ୟମୟ ।

ବେଦାନ୍ତ ଦର୍ଶନରେ ବ୍ରହ୍ମ ନିଷ୍କ୍ରିୟ, ନିଶ୍ଚଳ, ସର୍ବବ୍ୟାପୀ, ନିରାକାର ଓ ନିର୍ଗୁଣ । ଅଦ୍ୱୈତ ବେଦାନ୍ତରେ ବ୍ରହ୍ମାଣ୍ଡର ଉପାଦାନ ଓ ସହକାରୀ କାରଣରୁ ''ମାୟା'' ନାମରେ

ଅଭିହିତ କରାଯାଇଅଛି । ଏହି ମାୟା ଅବ୍ୟକ୍ତ ସହିତ ଅସୀମ ଅବସ୍ଥାରେ ଥାଏ । ଏହା ପ୍ରକୃତରେ ବ୍ରହ୍ମର ଶକ୍ତି । ଯେତେବେଳେ ବ୍ରହ୍ମାଣ୍ଡର ସୃଷ୍ଟି ହୁଏ, ସେତେବେଳେ ମାୟା ସସୀମ ହୋଇ ଖଣ୍ଡିତ ଅବସ୍ଥାରେ ପରିଣତ ହୁଏ । ଏହିପରି ଅବସ୍ଥାରେ ତାହା ମୂଳ-ପ୍ରକୃତି ରୂପେ ପ୍ରତିଭାତ ହୁଏ । ଏଥିରେ ବ୍ରହ୍ମର ପ୍ରତିବିମ୍ବ ପଡେ । ଏହି ପ୍ରତିବିମ୍ବକୁ ''ଈଶ୍ୱର'' କୁହାଯାଏ । ଯେଉଁ ସ୍ରଷ୍ଟା ସୃଷ୍ଟି କରନ୍ତି ତାଙ୍କୁ ''ବ୍ରହ୍ମା'' କୁହାଯାଏ । ବ୍ରହ୍ମାଙ୍କର ଆୟୁ ହେଲା ଏକ କଳ୍ପ । କଳ୍ପପରେ ବ୍ରହ୍ମାଣ୍ଡର ଇତିହୁଏ । ବ୍ରହ୍ମାଣ୍ଡ ଏକ ନୁହେଁ । ବ୍ରହ୍ମାଙ୍କ ସଂଖ୍ୟାମଧ୍ୟ ଅଗଣିତ । ''ମାୟା'' ନିଜକୁ ଅସୀମ ଖଣ୍ଡାଂଶରେ ବିଭକ୍ତ କରି ବହୁ ବ୍ରହ୍ମାଣ୍ଡରେ ଲୀଳା କରିଥାଆନ୍ତି । ଏଥିରେ ବ୍ରହ୍ମର ସଗୁଣାତ୍ମକ ସ୍ୱରୂପର ପ୍ରକାଶ । ନିର୍ଗୁଣ ବ୍ରହ୍ମଙ୍କୁ ''ପରମବ୍ରହ୍ମ'' କୁହାଯାଏ । ଯେହେତୁ ବ୍ରହ୍ମାଣ୍ଡ ବ୍ରହ୍ମଙ୍କର ପ୍ରତିବିମ୍ବଦ୍ୱାରା ମାୟାରୁ ନିସୃତ, ତେଣୁ ବେଦାନ୍ତ ଦର୍ଶନରେ ଏହା ଅବାସ୍ତବ ବୋଲି ଅଭିହିତ । ପ୍ରକୃତ ବାସ୍ତବ ଶକ୍ତିକୁ ଆମ୍ଭେମାନେ ବୁଝିପାରୁନାହିଁ । କାରଣ ମାୟାର ଆବରଣଶକ୍ତି ଅନନ୍ତ । ଏହାର ବିକ୍ଷେପ ଶକ୍ତି ଯୋଗୁ, ପ୍ରକୃତ ସତ୍ୟ ବିଭିନ୍ନ ରୂପରେ ପ୍ରତିଭାତ ହୁଏ । ଆଦି ଶଙ୍କର ଦଉଡିକୁ ସାପବୋଲି ଭ୍ରମ ହେବାର ଦୃଷ୍ଟାନ୍ତ ଦେଇଛନ୍ତି । ଏହି ଭ୍ରମଟାର ଅସ୍ତିତ୍ୱ ଅଛି ଭ୍ରମ ହିସାବରେ; ବାସ୍ତବ ରୂପରେ ନୁହେଁ । ତାଙ୍କର ମତରେ ବ୍ରହ୍ମ ସତ୍ୟ; ଜଗତ୍ ମିଥ୍ୟା; ଅସତ୍ୟ ନୁହେଁ । ଏହାକୁ ଶଙ୍କରଙ୍କର 'ଅଧ୍ୟାସବାଦ' ବୋଲି କୁହାଯାଏ (Theory of Superim-position) । ଏହାଫଳରେ ବସ୍ତୁ ଜଗତର ପ୍ରକୃତ ଅବସ୍ଥା ନିର୍ଣ୍ଣୟ କରିବା ସମ୍ଭବପର ନୁହେଁ । ମାତ୍ର ତାଙ୍କର ଗୁରୁଙ୍କ ଗୁରୁ ଗୌଡପାଦଙ୍କ ମତରେ ବ୍ରହ୍ମାଣ୍ଡ ଅବାସ୍ତବ । ଏହାର ଜନ୍ମ ମୃତ୍ୟୁର ପ୍ରଶ୍ନ ଉଠେନାହିଁ । ଚୈତନ୍ୟମୟ ପରଂବ୍ରହ୍ମଙ୍କ ବିଷୟରେ ଅବତାରଣାକରି ବେଦାନ୍ତ ''ଖଳ୍ୱିଦଂବ୍ରହ୍ମ'' ଓ ''ତତ୍‌ସତ୍'' ଇତ୍ୟାଦି ବଚନରେ ତାଙ୍କର ପ୍ରତିଷ୍ଠା କରିବାକୁ ସଚେଷ୍ଟ । ତେବେ ଜଗତରେ ତାଙ୍କର ପ୍ରତିବିମ୍ବ ତତ୍ତ୍ୱ ବିଷୟରେ ଅତି ସଂକ୍ଷେପରେ ଇଙ୍ଗିତ ଦେବା ଆବଶ୍ୟକ । ଏହି ବେଦାନ୍ତ ମତ ଅନୁସାରେ ଜୀବର ଦେହ ହେଲା ସ୍ଥୂଳ ଶରୀର । ତାହା ମଧ୍ୟରେ ଅବସ୍ଥାନ କରେ ସୂକ୍ଷ୍ମ ଶରୀର । ତାହା ମଧ୍ୟରେ ମନ, ବୁଦ୍ଧି ଦ୍ୱାରା ଗଠିତ ଅନ୍ତଃକରଣ । ଏହି ଅନ୍ତଃକରଣ ମଧ୍ୟରେ ''ଜୀବାତ୍ମାଙ୍କ'' ନିବାସ । ଏହି ଜୀବାତ୍ମାଙ୍କର ସୃଷ୍ଟି କିପରି ହେଲା ? ବେଦାନ୍ତ ମତରେ ଯେପରି ବହୁ ଜଳାଧାରରେ ସୂର୍ଯ୍ୟଙ୍କର ବହୁ ପ୍ରତିବିମ୍ବ ପଡେ; ସେହିପରି ବହୁ ଜୀବଙ୍କର ଅନ୍ତଃକରଣରେ ବ୍ରହ୍ମଙ୍କର ପ୍ରତିବିମ୍ବପଡେ । ଏହି ପ୍ରତିବିମ୍ବରୁ ସୃଷ୍ଟି ହୁଏ ଜୀବାତ୍ମା । ବିଭିନ୍ନ ଘଟମାନଙ୍କରେ ଯେପରି ମହାକାଶର ଅଂଶ ବିଶେଷର ଅସ୍ତିତ୍ୱ ରହିଥାଏ; ଏବଂ ଯେତେବେଳେ ଘଟ ଭାଙ୍ଗିଯାଏ ସେତେବେଳେ ଘଟ ମଧ୍ୟସ୍ଥିତ ଆକାଶ, ମହାକାଶରେ ମିଶିଯାଇ ଅନ୍ତର୍ହିତ ହୋଇଥାଏ; ଠିକ୍ ସେହିପରି ବ୍ରହ୍ମର ଯେଉଁଅଂଶ ଜୀବର ଅନ୍ତଃକରଣରେ ଥାଇ ଜୀବାତ୍ମାର ସୃଷ୍ଟିକରେ, ଅନ୍ତକରଣ ଭାଙ୍ଗିଗଲେ, ଜୀବାତ୍ମାର ପରମଗତି ଲାଭ ହୁଏ । ଏହା ମଧ୍ୟରେ କେତେକସ୍ତର

ଦେଇ ଜୀବାତ୍ମା ଗତିଲାଭ କରେ । ସେଗୁଡ଼ିକର ବିଷୟ ବିଜ୍ଞାନ-ସମ୍ଭୂତ ତଥ୍ୟ ସହିତ ସାମଞ୍ଜସ୍ୟ ବା ତୁଳନାତ୍ମକ ବିଚାର ନିରର୍ଥକ । ସେଗୁଡ଼ିକ ମନୁଷ୍ୟର ବିଶ୍ୱାସ କିମ୍ବା ଅପରାନୁଭୂତି ତତ୍ତ୍ୱ ଉପରେ ନିର୍ଭର କରେ । ତାହା ସାଧାରଣ-ପ୍ରମାଣ-ସାପେକ୍ଷ ନୁହେଁ ।

ପୂର୍ବଲିଖିତ ବିଜ୍ଞାନର ନାନା ଧ୍ୟାନ ଧାରଣା ସହିତ ପ୍ରାଚୀନ ଭାରତବର୍ଷର ଉପଲବ୍ଧଜ୍ଞାନର ବହୁ ସାମଞ୍ଜସ୍ୟ ରହିଛି । ସେହି ଧାରଣା ଅନୁସାରେ ସୃଷ୍ଟିତତ୍ତ୍ୱରେ ଜଗତର ବହୁଳ ଉଲ୍ଲେଖ ଅଛି । ଜଗତର ଅର୍ଥ ହେଲା ଯାହା ଚଳମାନ ବା ଗତିଶୀଳ । ''ଗଚ୍ଛତି ଇତି ଜଗତ୍ ।'' ଯାହାକିଛି ଜଗତରେ ଅଛି ତାହା ଗତି କରୁଛି । କୌଣସି ପଦାର୍ଥ ସ୍ଥିର ହୋଇ ନାହିଁ । ସଂସାରର ପ୍ରକୃତ ଅର୍ଥ ହେଲା ଏଥିରେ ଥିବା ସମସ୍ତ ପଦାର୍ଥ, ଜୀବ ପ୍ରଭୃତି ଅପର ସହିତ ସାମଞ୍ଜସ୍ୟ ରଖି ଗତି କରୁଛନ୍ତି । ଏହି ସମାନତାର ଭାବ ଋକ୍ ବେଦରେ ମିଳେ । (ଦଶମ ମଣ୍ଡଳ ୧୯୧-୪) ''ସମାନୋ ମନ୍ତ୍ର ସ୍ୱମିତି ସ୍ୱମାନୀ ସମାନଂ ମନସ୍ୱହ ଚିତ୍ତମେଷାମ୍ ସମାନୀ ବ ଆକୁତି ସ୍ୱମାନା ହୃଦୟାନିବଃ ସମାନୋମସ୍ତୁ ବୋ ମନୋ ଯଥା ବସ୍ତୁ ସହାସତି ।'' ଅର୍ଥ ହେଲା :- ତୁମର ପ୍ରାର୍ଥନା ସମାନ ହେଉ, ତୁମର ଲକ୍ଷ୍ୟ ସମାନ ହେଉ, ଉଦ୍ଦେଶ୍ୟ ସମାନ ହେଉ, ଚିନ୍ତା-ଭାବନା ସମାନ ହେଉ, ତୁମର ଇଚ୍ଛା ସମାନ ହେଉ, ତୁମର ହୃଦୟ ଏକିଭୂତ ହେଉ, ତୁମର ମନ ଏକ ହେଉ, ତୁମ୍ଭମାନଙ୍କ ମଧ୍ୟରେ ଏକତା ପୂର୍ଣ୍ଣତା ପ୍ରାପ୍ତ ହେଉ ।

ବିଶ୍ୱରେ ପ୍ରତିଭାତ ଆଲୋକମଣ୍ଡଳମାନେ ପରସ୍ପର ସହିତ ସମାନତା ରକ୍ଷା କରି ସର୍ବଦା ଧାବିତ । ସଂସାରର ପରିକଳ୍ପନା ବିଜ୍ଞାନୀ ମାନଙ୍କର ସୃଷ୍ଟିତତ୍ତ୍ୱ ବା Cosmos ସହିତ ପ୍ରାୟ ଏକ ଭାବରେ ଦ୍ୟୋତକ । ଯଥା ବିଶୃଙ୍ଖଳାର ବିପରୀତ ହେଲା ଶୃଙ୍ଖଳା ଅର୍ଥାତ Cosmos । ଏହା ଛଡା ବର୍ତ୍ତମାନ ବିଜ୍ଞାନର ଆବିଷ୍କାର, ବହୁପୂର୍ବେ ଆର୍ଯ୍ୟ ଋଷି ମାନଙ୍କର ଜ୍ଞାନ ସହିତ ଗଭୀର ଭାବରେ ସାମଞ୍ଜସ୍ୟପୂର୍ଣ୍ଣ ବୋଲି ଲକ୍ଷିତ ହୁଏ । ମହାବିକ୍ଷୋଭରୁ ସୃଷ୍ଟି ଧାରଣା ମୁଣ୍ଡକ ଉପନିଷଦରେ ବର୍ଣ୍ଣିତ ଅଛି । ଏକ ମହା କମ୍ପନ ଫଳରେ ବିସ୍ଫୋରଣ ଶକ୍ତି ଯୋଗୁ ପ୍ରାଣ ମଧ୍ୟରେ ପ୍ରବଳ ସ୍ପନ୍ଦନର ସୃଷ୍ଟି ହେଲା । ଏହି ସ୍ପନ୍ଦନ ଫଳରେ ଅତ୍ୟଧିକ ତାପର ସୃଷ୍ଟି ହେଲା । ପୁଣି ଏ ବିଷୟ ଋଗ୍ ବେଦର ଦଶମ ମଣ୍ଡଳ (୧୨୯/୩) ସୁକ୍ତରେ ବର୍ଣ୍ଣିତ ଅଛି । ଏହିପରି ଉତ୍ତପ୍ତ ଅବସ୍ଥାରେ ପ୍ରାଣରୁ ଆକାଶ ବା ଅଦିତି (Space) ର ସୃଷ୍ଟି ହେଲା । ଏପରି ବର୍ଣ୍ଣନା ''ପ୍ରଶ୍ନ ଉପନିଷଦ'', ''ତୈତ୍ତେରୀୟ ଉପନିଷଦ''ରୁ ମଧ୍ୟ ମିଳେ । ଆକାଶରୁ ବସ୍ତୁ ଓ ଶକ୍ତିକଣା ଦୁଇଟା କରି ସୃଷ୍ଟ ହେଲା - ଏକଥା ''ବୃହଦାରଣ୍ୟକ'' ଓ ''ପ୍ରଶ୍ନୋପନିଷଦ''ରେ ବର୍ଣ୍ଣିତ ଅଛି । ଆପଃ, ପ୍ରାଣ, ଆକାଶ ଉପାଦାନ ଦୃଷ୍ଟିରୁ ଅଲଗା ଅଲଗା ନୁହେଁ ଏ କଥା ''ଛନ୍ଦୋଗ୍ୟ ଉପନିଷଦ''ରେ ବର୍ଣ୍ଣିତ । ବିଜ୍ଞାନରେ ଯାହାକୁ Field

ବା ''ଦେଶ'' କୁହାଯାଏ ତାହାର ବିଭିନ୍ନ ଅବସ୍ଥାର ବର୍ଣ୍ଣନା ରହିଛି । ସେହି ଉତ୍ତପ୍ତ ଅବସ୍ଥାରେ ଆକାଶରୁ ୨ଟା କରି କଣା ଉତ୍ପନ୍ନ ହୋଇ ପୁଣି ଆକାଶରେ ମିଳାଇ ଯାଉଥିଲେ । ଏହି କଣାକୁ ''ଦକ୍ଷ'' ବୋଲି କୁହାଯାଇଅଛି । ଏହି କଣାମାନେ ବିଶୃଙ୍ଖଳ ଭାବରେ ନୃତ୍ୟ କରିବା କଥା ଋଗ୍‌ବେଦର ଦଶମ ମଣ୍ଡଳ ୧୨ ସୁକ୍ତରେ ଲିଖିତ । ଏହି ବିଶୃଙ୍ଖଳା ଯୋଗୁ ବହୁ ସଂଘାତ, ଧ୍ୱଂସ, ପରିଶେଷରେ ରୂପାନ୍ତର ମଧ୍ୟ ଘଟିଥିଲା । ଏହାଛଡା ଆକାଶରେ ବାୟବୀୟ ପଦାର୍ଥ ବା ଗ୍ୟାସ ସୃଷ୍ଟି; ଧୂଳିକଣା ଓ ଗ୍ୟାସ୍‌ରୁ ତାରାର ସୃଷ୍ଟି କଥାର ଉଲ୍ଲେଖ ରହିଛି ''ଜର୍କୁବେଦ'', ''ତୈତ୍ତେରୀୟ ବ୍ରାହ୍ମଣ'' ଇତ୍ୟାଦିରେ । ଆଦିସୃଷ୍ଟିର ବୈଜ୍ଞାନିକ ଧାରଣା ସେହି ଅତି ପୁରାତନ ଗ୍ରନ୍ଥ ଲିଖିତ ଭାରତୀୟ ଜ୍ଞାନ ସହିତ ବହୁଳାଂଶରେ ଏକ ବୋଲି ଉଲ୍ଲିଖିତ ବିଶ୍ଳେଷଣରୁ ସୁସ୍ପଷ୍ଟ ।

ପୂର୍ବରୁ ବର୍ଣ୍ଣିତ ହୋଇଛି ଯୁଗାନ୍ତକାରୀ ବିଜ୍ଞାନୀ ଫ୍ରାନ୍କଟିପ୍‌ଲଗ୍‌ଙ୍କ ମତାବଳି । ସେଗୁଡିକର ଯଥାର୍ଥତା ଆମ ଶାସ୍ତ୍ରରେ ମଧ୍ୟ ପ୍ରତିପାଦିତ । ସେ ଲେଖିଥିଲେ ଏହି ମହାବିଶ୍ୱ ଯେପରି ଏକ ମହାବିକ୍ଷୋଭରୁ ସୃଷ୍ଟି ହୋଇଥିଲା, ସେହିପରି ମହାସଂକୋଚନ ତତ୍ତ୍ୱ ଅନୁସାରେ ଏକ କ୍ଷୁଦ୍ର ବିନ୍ଦୁରେ ସୀମିତ ହୋଇ ଏହାର ଶେଷହେବ । ତାହାର ନାମକରଣ କରିଛନ୍ତି Omega Point (ଶେଷବିନ୍ଦୁ) ବୋଲି । ଜୀବନ ଯେପରି ଗୋଟିଏ କ୍ଷୁଦ୍ର ବିନ୍ଦୁରୁ (Cell) ଆରମ୍ଭ ହୋଇଥିଲା, ସେହିପରି ଶେଷ ବେଳକୁ ଏହା ସର୍ବଶକ୍ତିମାନ, ସର୍ବଜ୍ଞାନବାନ, ସର୍ବଗତିମାନ ହୋଇ ପ୍ରତିଭାତ ହେବ । ଶେଷବେଳକୁ ସୀମାହୀନ ଜ୍ଞାନର ଅଧିକାରୀ ହେବେ ଜୀବମାନେ । ସେହି ସର୍ବ-ଶେଷ ବିନ୍ଦୁ ବା Omega Point ରୁ ପୁଣି ନୂଆ ବିଶ୍ୱର ପଦକ୍ଷେପ ଆରମ୍ଭ ହେବ ।

ଏହି ପରିପ୍ରେକ୍ଷୀରେ ଶ୍ରୀମଦ୍ ଭଗବତ୍ ଗୀତାର ଅଷ୍ଟମ ଅଧ୍ୟାୟର କେତେକ ଶ୍ଳୋକ ଦ୍ରଷ୍ଟବ୍ୟ । ଏ ଗୁଡିକରେ ନିହିତ ଗୁଢ଼ ଅର୍ଥ ପ୍ରକୃତ ବିଶ୍ୱ-ବ୍ୟାପ୍ତିର ପ୍ରକାଶକ; ବିଶ୍ୱର ସୃଷ୍ଟି-ରହସ୍ୟର ଉଦ୍‌ଘାଟକ ମଧ୍ୟ । ଜଣେ ବୈଜ୍ଞାନିକ ଯେ ତାଙ୍କର, ଚିନ୍ତା ଶକ୍ତି ସାହାଯ୍ୟରେ ଏହି ସତ୍ୟରେ ଉପନୀତ ହୋଇ ଅଛନ୍ତି, ତାହା ଚମକପ୍ରଦ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଷୋଡଶ ଶ୍ଳୋକରେ କହୁଛନ୍ତି ଯେ ''ଆବ୍ରହ୍ମ ଭୁବନାଲ୍ଲୋକାଃ ପୁନରାବର୍ତ୍ତିନୋର୍ଜୁନ''। ସମସ୍ତ ବ୍ରହ୍ମାଣ୍ଡ ବ୍ରହ୍ମାଙ୍କ ସହିତ ପୁଣି ଫେରି ଆସିବେ । ବ୍ରହ୍ମାଙ୍କର ଦିନ ହେଉଛି ସହସ୍ର ଯୁଗ ବ୍ୟାପି ଏବଂ ତାଙ୍କର ରାତ୍ରି ମଧ୍ୟ ସହସ୍ର ଯୁଗ ବ୍ୟାପି । ଯେଉଁମାନେ ଏହା ଜାଣନ୍ତି ସେମାନେହିଁ କେବଳ ପ୍ରକୃତରେ ଦିନ ଓ ରାତିକୁ ଚିହ୍ନିଛନ୍ତି । ଭଗବତଗୀତା ଅଷ୍ଟମ ଅଧ୍ୟାୟ ଶ୍ଳୋକ ୧୮ରୁ୨୧ ଉଦ୍ଧୃତ ହେଲା :- ''ଅବ୍ୟକ୍ତାତ୍ ବ୍ୟକ୍ତୟଃ ସର୍ବାଃ ପ୍ରଭବନ୍ତ୍ୟହରାଗମେ । ରାତ୍ର୍ୟାଗମେ ପ୍ରଳୀୟନ୍ତେ ତତ୍ରୈବାବ୍ୟକ୍ତ ସଂଜ୍ଞକେ ।। ଭୂତଗ୍ରାମ ସ

ଏବାୟଂ ଭୂତ୍ୱାଭୂତ୍ୱା ପ୍ରଲୀୟତେ । ରାତ୍ର୍ୟାଗମେ ବଶଃ ପାର୍ଥ ପ୍ରଭବତ୍ୟ ହରାଗମେ ।। ପରସ୍ତସ୍ମା ତ୍ତୁ ଭାବୋନ୍ୟୋ ବ୍ୟକ୍ତୋ ବ୍ୟକ୍ତୋତ୍ ସନାତନ । ଯଃ ସର୍ବଭୂତେଷୁ ନଶ୍ୟତ୍ ସୁ ନ ବିନଶ୍ୟତି ।। ଅବ୍ୟକ୍ତୋକ୍ଷର ଇତ୍ୟୁକ୍ତ ସ୍ତମାହୁ ପରମାଂ ଗତିମ୍ । ଯଃ ପ୍ରାପ୍ୟ ନ ନିବର୍ତନ୍ତେ ତଦ୍ଧାମ ପରମଂମମ ।।'' ଅର୍ଥହେଲା - ଦିନର ଉନ୍ମେଷରେ ଅବ୍ୟକ୍ତ ବ୍ରହ୍ମରୁ ବ୍ୟକ୍ତହୋଇ ପ୍ରାଣୀମାନେ ଉଭା ହୁଅନ୍ତି; ଏବଂ ରାତ୍ରିର ଆଗମନରେ ସେମାନେ ଅବ୍ୟକ୍ତ ସହିତ ପୁଣି ବିଲୀନ ହୋଇଯାଆନ୍ତି । ବ୍ରହ୍ମାଙ୍କ ସହିତ ଏହି ଅଗଣିତ ଜୀବରାଜି ସେମାନଙ୍କର ଇଚ୍ଛା ଥାଉ ବା ନଥାଉ ବାରମ୍ବାର ରାତ୍ରି ଆଗମନରେ ଏକତ୍ରିଭୂତ ହୋଇ ଅନ୍ଧକାରରେ ନିମଜ୍ଜିତ ହୋଇ ରହନ୍ତି । ପୁଣି ଦିନର ପ୍ରାରମ୍ଭରେ ନିଜକୁ ପ୍ରକାଶ କରିପାରନ୍ତି । ମାତ୍ର, ଏହି ଅବ୍ୟକ୍ତର ପରପାରରେ ମୋର ଆଉ ଗୋଟିଏ ଅକ୍ଷର, ଅବ୍ୟକ୍ତ ଓ ଚିରନ୍ତନ ସ୍ଥିତି ରହିଅଛି । ସବୁ ଜୀବ, ବସ୍ତୁ ଇତ୍ୟାଦିର ବିଲୟ ହେଲେ ମଧ, ତାହାର ବିଲୟ ହୁଏ ନାହିଁ । ଏହା ଅବ୍ୟକ୍ତ ଏବଂ ଏକାବେଳେକେ ଅକ୍ଷର । ଏହା ସର୍ବଶେଷ ଲକ୍ଷ୍ୟ ଭାବରେ କଥିତ । ଯେଉଁମାନେ ସେଥିରେ ବିଲୟ ହୁଅନ୍ତି, ସେମାନଙ୍କର ପ୍ରତ୍ୟାବର୍ତ୍ତନ ନାହିଁ । ସେହିସ୍ଥାନ ମୋର ଚିରନ୍ତନ ଆବାସ ।

ଏହି ସତ୍ୟରୁ ପ୍ରମାଣିତ ହେଲା ଯେ ପରଂବ୍ରହ୍ମ ଅବ୍ୟକ୍ତ ଅକ୍ଷର ଓ ଚିରନ୍ତନ । ମାତ୍ର ''ଅପରବ୍ରହ୍ମ''ର ଗତି ଆଲୋକ ଓ ଅନ୍ଧକାରର ମଧ୍ୟରେ, ଦିନରାତିର ଅନ୍ତରାଳରେ, ମହାଘୂର୍ଣ୍ଣନର ଚକ୍ରରେ ଅବଧାରିତ ଭାବେ ନିଶ୍ଚିତ ଓ ନିର୍ଦ୍ଧାରିତ । ଏହି ଜଗତର ସୃଷ୍ଟିହୋଇଛି ଆଲୋକ ଓ ଅନ୍ଧକାର ଚକ୍ରରେ ଆବଦ୍ଧ ହୋଇ ଯୁଗଯୁଗଧରି ଧାବମାନ କ୍ରିୟାର ପରିଣାମ ରୂପେ । ଶ୍ରୀକୃଷ୍ଣ କହିଛନ୍ତି ଯେ - ଏହି ଆଲୋକ ଅନ୍ଧକାରର ଖେଳ ଶାଶ୍ୱତ ଓ ଚିରନ୍ତନ ଭାବରେ ଜଗତପାଇଁ ଉଦ୍ଦିଷ୍ଟ । ଏହି ଖେଳରେ ବ୍ରହ୍ମାଣ୍ଡ ସହିତ ବ୍ରହ୍ମାଙ୍କର ମଧ ମୁକ୍ତି ନାହିଁ । ସେ ମଧ ଏହି ଚକ୍ରରେ ଚକ୍ରାକାର ଗତିରେ ଯୁକ୍ତ ହୋଇ ରହିଛନ୍ତି ଆବହମାନ କାଳରୁ । ଏହି ନିୟମ ହିରଣ୍ୟ ଗର୍ଭଙ୍କର । ଏହି ପ୍ରସଙ୍ଗରେ କହି ରଖିବା ଦରକାର ଯେ ହିରଣ୍ୟଗର୍ଭ ହେଉଛନ୍ତି ପ୍ରକୃତରେ ନିତ୍ୟ; କେବଳ ସନାତନ ନୁହନ୍ତି । ମାତ୍ର ତାଙ୍କର ଲୀଳା କରିବାର ଇଚ୍ଛା ଜାଗ୍ରତ ହେଲା । ନିତ୍ୟରୂପରେ ଉଦ୍ଭାସିତ ହିରଣ୍ୟଗର୍ଭଙ୍କର ଲୀଳା-ବାସନାରୁ ଉଦ୍ଭୂତ ହେଲା ସମଗ୍ର ବିଶ୍ୱ, ଯାହା ଶୁକ୍ଳ ଓ କୃଷ୍ଣ ମଧ୍ୟରେ ସଦା ଆବର୍ତ୍ତିତ । ତାଙ୍କର ସନାତନ ପଦ୍ଧତିରେ ନିବଦ୍ଧ ଓ ତାଙ୍କର ସ୍ୱକୀୟ ଇଚ୍ଛାରେ ମହିମାନ୍ୱିତ । ପୁଣି ଯେତେବେଳେ ତାଙ୍କୁ ଏହି ମହାବିଶ୍ୱର ଖେଳ ପିତା ଲାଗିବ (ଯାହାକୁ ଆଜିକାଲିକାର ଲୋକେ Boring ବୋଲି କହୁଛନ୍ତି) ସେତେବେଳେ ସେ ଏହି ଲୀଳା ସମାପନ କରିବେ । ତାପରେ ଭାସ୍ୱର ରୂପରେ ନିତ୍ୟ ଭାବରେ ବିରାଜିତ ହୋଇ ରହିବେ । ମନୁଷ୍ୟକୁ ସେ ନିଜର ସ୍ୱରୂପରେ

ସୃଷ୍ଟି କରିଛନ୍ତି ! ଯାହା ଯୀଶୁଖ୍ରୀଷ୍ଟ କହିଛନ୍ତି "Man is made in the image of God"। ମନୁଷ୍ୟ ଯେତେବେଳେ ତାଙ୍କର ସ୍ୱରୂପକୁ ଉଜ୍ଜ୍ୱଳଭାବେ ନିଜ ଜୀବନରେ ପ୍ରତିଭାତ ନକରି, ଅନ୍ଧକାରବୃତ୍ତିର ଅନୁଧାବନ କରି, ବିଶ୍ୱପ୍ରଗତି ପଥରେ ଅନ୍ତରାୟ ସୃଷ୍ଟି କରି, ବିଶ୍ୱନିୟନ୍ତାଙ୍କର ଉଦ୍ଦେଶ୍ୟ ଅସଫଳ କରି, ଜଗତର ଘୋର ଅମଙ୍ଗଳ ସୃଷ୍ଟି କରି ତାକୁ ଅଧୋଗତିର ମାର୍ଗରେ ପରିଚାଳନା କରିବ, ସେତେବେଳେ ହୁଏତ ହିରଣ୍ୟଗର୍ଭଙ୍କର ଲୀଳାଖେଳା ସାଙ୍ଗ କରିବାର ଅଭିପ୍ରାୟ ହୋଇପାରେ । ମାତ୍ର ତାଙ୍କର ଉଦ୍ଦେଶ୍ୟ ଅନୁଧାବନ କରିବାର କ୍ଷମତା ମନୁଷ୍ୟର ନାହିଁ । ପରମହଂସ ଶ୍ରୀ ରାମକୃଷ୍ଣହିଁ କହିଥିଲେ ଯେ ‘‘ପରବ୍ରହ୍ମ’’ ଅଛନ୍ତି ଏବଂ ‘‘ଅପରବ୍ରହ୍ମ’’ ମଧ ଅଛନ୍ତି । ତେବେ ସତକଥା ହେଲା ଯେ କାଲି କଣ ହେବ ଆଜି ତାହା କେହି କହିପାରିବେ ନାହିଁ । ତାଙ୍କର ଉକ୍ତିର ସାରବତ୍ତା ଗୀତା ବାଣୀରୁ ମଧ ପ୍ରମାଣିତ ହୁଏ । ତେବେ ଏହା ଅତି ଆନନ୍ଦର ବିଷୟ ଯେ ବିଜ୍ଞାନୀ, ଟିପ୍‌ଲର୍, ତାଙ୍କର କଳନା ଅନୁଯାୟୀ, ବୈଜ୍ଞାନିକ ପଦ୍ଧତିରେ ପ୍ରମାଣ କରିବାକୁ ଚେଷ୍ଟାକରି ଅଛନ୍ତି ଯେ ଧର୍ମ -ବିଜ୍ଞାନ ପ୍ରକୃତରେ ପଦାର୍ଥବିଦ୍ୟା ପ୍ରମାଣିତ ସୃଷ୍ଟି-ତତ୍ତ୍ୱ । ଅର୍ଥାତ୍ "Theology is nothing but physical cosmology". ତାଙ୍କ ପୂର୍ବରୁ ଜଣାଥିଲା ଯେ ଈଶ୍ୱରଙ୍କ ବିଷୟରେ ଧାରଣାର ଭିତ୍ତି ହେଲା ‘‘ବିଶ୍ୱାସ’’ । ମାତ୍ର ତାହା ବୈଜ୍ଞାନିକ ପ୍ରମାଣ-ସାପେକ୍ଷ ନଥିଲା । ପ୍ରଥମେ ଭଲ୍‌ଟେଆର୍‌ଙ୍କ ପରି ବୈପ୍ଳବିକ-ଚିନ୍ତାଧାରାର ମନିଷୀ କହିଥିଲେ ଯେ ମହାବିଶ୍ୱ ମହାନିୟମ ଦ୍ୱାରା ପରିଚାଳିତ । କିନ୍ତୁ ଗୋଟିଏ ପାଞ୍ଚଫୁଟ-ଉଚ୍ଚତା-ବିଶିଷ୍ଟ ପ୍ରାଣୀ ଏହି ସତ୍ୟକୁ ପ୍ରତ୍ୟାଖ୍ୟାତ କରି ଦେଉଛି । ସେ କହୁଛି ସେ ନିଜେ ମହାନୀତି ନିର୍ଦ୍ଧାରିତ କରିବ ? ନିଜର ଇଚ୍ଛା ଅନୁସାରେ ବିଧାନ ଦେବ ? ଏହା ଏକ ଅଦ୍‌ଭୂତ ଉକ୍ତି ।

ଟିପଲର୍ ଚିନ୍ତାକରି ଦେଖିଲେ ଯେ ମହାବିକ୍ଷୋଭ ପରେ ଯେଉଁ ମହାସଂକୋଚନ ଆସିବ ତାହା ଫଳରେ ଦିନେ ସମୟ ଏକ ସ୍ଥିର ବିନ୍ଦୁରେ ଉପନୀତ ହେବ । ତାହାହେବ ବିଶ୍ୱର ଶେଷ ମୁହୂର୍ତ୍ତ । ବହୁ ନିହାରିକା ରାଜି ସେମାନଙ୍କର ବିଲୟର ସମ୍ମୁଖୀନ ହେବେ; ଆଉ ସେଥିରେ ପୃଥିବୀ ଭଳି ଏକ କ୍ଷୁଦ୍ର ଗ୍ରହର ଅତି କ୍ଷୁଦ୍ର ବାସିନ୍ଦା ମଣିଷମାନଙ୍କର ଅବଲୁପ୍ତି ଏହି ଘଟଣାର ବହୁ ପୂର୍ବରୁ ଘଟି ସାରିଥିବ । ଏହି ମହା ଅବଲୁପ୍ତିର ଆଦେଶ କଳ୍କି ଅବତାର ସେତେବେଳେ ଦେଇ ସାରିଥିବେ ବୋଲି ଟିପ୍‌ଲର୍ ଲେଖିଛନ୍ତି । ବୈଜ୍ଞାନିକମାନେ ଯେଉଁ ‘‘ଏକୈକତତ୍ତ୍ୱ’’ ବା "Principle of Singularity" ର ପ୍ରତିପାଦନ କରିଛନ୍ତି ତାହା ଏପର୍ଯ୍ୟନ୍ତ ସୂତ୍ରାବଳି ଦ୍ୱାରା ପ୍ରତିଷ୍ଠିତ ହୋଇନାହିଁ । ପ୍ରକୃତରେ ଏହି ‘‘ଏକକତତ୍ତ୍ୱ’’ ଗୋଟିଏ ମାତ୍ର ସୂତ୍ର ବା ତଥ୍ୟ ନୁହେଁ । ବସ୍ତୁତଃ, ଏକ ତତ୍ତ୍ୱ ହେଉଛନ୍ତି ଈଶ୍ୱର ନିଜେ । ଏହି ଧାରଣା କେବଳ ଏକ ଶୁଷ୍କ ଧାରଣାରେ ପର୍ଯ୍ୟବସିତ ନୁହେଁ । ଏହା ଏକ ମହା-ଜୀବନ୍ତ ପୁରୁଷ । ସେହିଁ

କେବଳ ଆତ୍ମସମସ୍ତଙ୍କୁ ମୃତ୍ୟୁର ମହାନୃତ୍ୟରୁ ଉଦ୍ଧାର କରିବାକୁ ସମର୍ଥ ହୋଇପାରନ୍ତି । ମୃତ୍ୟୁର ପରପାରକୁ ନେଇ ପ୍ରାଣୀମାନଙ୍କୁ ଅମୃତ ପରିବେଷଣ କରି ଅନନ୍ତ ଜୀବନ ପ୍ରଦାନ କରିପାରନ୍ତି । କେବଳ ଜଣକୁ ନୁହେଁ । ସମସ୍ତଙ୍କୁ, ସର୍ବବିଧ ପ୍ରାଣୀଙ୍କୁ ମଧ୍ୟ । ଏହାହିଁ ତାଙ୍କର ବିଖ୍ୟାତ ଗ୍ରନ୍ଥ "Physics of Immortality" ର ବିଶେଷ ପ୍ରତିପାଦ୍ୟ ବିଷୟ । ସେ ପରମ୍ପରାଗତ ବିଶ୍ୱାସ ଏବଂ ଧର୍ମନୀତି ସହିତ ବିଜ୍ଞାନର ତଥ୍ୟ, ନୀତି, ନ୍ୟାୟ, ପରୀକ୍ଷା ନିରୀକ୍ଷା ସମ୍ବଳିତ ମହାଜ୍ଞାନର ସେତୁ-ବନ୍ଧନ କରିଅଛନ୍ତି । ତାଙ୍କର ପ୍ରତିପାଦ୍ୟ ବିଷୟ ନିକଟ ଭବିଷ୍ୟତରେ ପରୀକ୍ଷିତ ହେବାର ସମ୍ଭାବନା ଉଜ୍ଜ୍ୱଳ ନୁହେଁ, କାରଣ ସେ ନିଜେ କହିଛନ୍ତି ଯେ ''ଶେଷବିନ୍ଦୁ'' ରେ ପହଞ୍ଚିବାର ବେଳ ସମଗ୍ର ବିଶ୍ୱକୁ ହୁଏତ ଦଶଲକ୍ଷକୋଟି ବର୍ଷ ଲାଗିପାରେ । ମାତ୍ର କମ୍ପ୍ୟୁଟର ଯନ୍ତ୍ରର କ୍ଷିପ୍ର ଅଗ୍ରଗତି ସାଧିତ ହେଉଛି ଏବଂ ଏଥିରେ DNA ଯୁକ୍ତ ପ୍ରଯୁକ୍ତିରେ ଏବେ ଅଭାବନୀୟ ଫଳ ଦେଖାଗଲାଣି । ଜୀବନ୍ତମାନର ପ୍ରୟୋଗରେ ଏହା ଚମତ୍କୃତ ଫଳ ଲାଭରେ ସକ୍ଷମ ହେଲାଣି । ଏପରି ଅପରିକଳ୍ପନୀୟ ଗତି ଲାଭ କରି କମ୍ପ୍ୟୁଟର ଯେ ଦିନେ ଟିପ୍‌ଲର୍‌ଙ୍କ ଭବିଷ୍ୟବାଣୀ ପ୍ରମାଣ କରିବ ସେଥିରେ ସନ୍ଦେହ କରିବାର ଯଥାର୍ଥତା ନାହିଁ ।

ତାଙ୍କର ପୁନରୁତ୍ଥାନ ବା ପୁନର୍ଜନ୍ମ ଭାବଧାରାର ବିଶେଷ ବ୍ୟାଖ୍ୟା ଆବଶ୍ୟକ । କୌଣସି ବସ୍ତୁ ବା ପ୍ରାଣୀମାନେ ନିଜେ ବହନ କରୁଛନ୍ତି ତାଙ୍କର ଅଣୁପରମାଣୁ ଗୁଡିକ ବିଷୟରେ ସବୁ ଖବର । ଯେ କୌଣସି ପ୍ରାଣୀର ପ୍ରକୃଷ୍ଟ ଉପାଦାନ ଗୁଡିକ ବିଷୟରେ ସମ୍ୟକ ବିବରଣୀ ଜଣାଥିଲେ ସେଗୁଡିକର ପୁନର୍ନିର୍ମାଣରେ କମ୍ପ୍ୟୁଟର ପଦକ୍ଷେପ ନେବାର ସୁଯୋଗ ଆହରଣ କରିବ । ସେହି ଉପାଦାନଗୁଡିକ ସାହାଯ୍ୟରେ ସେହି ପ୍ରାଣୀକୁ ନବନିର୍ମାଣ କରିବାରେ ସଚେଷ୍ଟ ଏବଂ ସଫଳ ହେବ । ଅବଶ୍ୟ ଏପର୍ଯ୍ୟନ୍ତ ଏପରି କମ୍ପ୍ୟୁଟର ତିଆରି ହୋଇନାହିଁ । ଯେପରି ତୀବ୍ର ଗତିରେ କମ୍ପ୍ୟୁଟର ବିଦ୍ୟା ଅଗ୍ରସର ହେଉଛି, ସମୁଚିତ ବିଧିରେ ଶକ୍ତି ସଂଚୟ କରି ଏହା ଆସାମାନ୍ୟ କର୍ମ ସଂପାଦନରେ ମଧ୍ୟ ଦିନେ ବିଜୟୀ ହେବ । ଏହି ମହାନ ପଦ୍ଧତିରେ ଦୃଢିଭୂତ କ୍ଷମତାରେ ବଳୀୟାନ ହୋଇ, ସେହି ସର୍ବ-ଶେଷ-ବିନ୍ଦୁରେ ସମଗ୍ର ମାନବ, ପ୍ରାଣୀ, ଉଦ୍‌ଭିଦ, ଲତା ପ୍ରଭୃତି ପୁନର୍ଜୀବିତ ହୋଇ ଉଠିବେ । ଏହି ପରିପ୍ରେକ୍ଷୀରେ ଟିପ୍‌ଲର କହିଛନ୍ତି ଯେ ବର୍ତ୍ତମାନ ସମୟରେ ପ୍ରାଣୀ ଗୁଡିକର ଅନ୍ତର୍ନିହିତ ଅଣୁ ପରମାଣୁର ତଥ୍ୟ, ଚରିତ୍ର, ସ୍ୱଭାବ ଓ ରଚନାଗତ ରହସ୍ୟ ସମ୍ପୂର୍ଣ୍ଣଭାବରେ ଜଣାଯାଇନାହିଁ । ସେଗୁଡିକର ପ୍ରକୃଷ୍ଟ ବିଶ୍ଳେଷଣ ସାହାଯ୍ୟରେ ଏହି ପୁନର୍ନିର୍ମାଣ ସମ୍ଭବପର ହେବା ନିମନ୍ତେ ବହୁଯୁଗ ବିତିଯିବ । ଟିପ୍‌ଲର୍‌ଙ୍କ ଗଣନାରେ ''ସର୍ବଶେଷବିନ୍ଦୁ'' ର ଆଗମନକୁ ମାନବ ସମାଜର ଅପେକ୍ଷା କରିବାକୁ ପଡିପାରେ ତାହାର ପୁନର୍ଜୀବନ ଲାଭ

ନିମନ୍ତେ, ସର୍ବନାଶପରେ, ମୃତ୍ୟୁର ପରପାରରେ । ଆଗରୁ ସେ କହିଛନ୍ତି ଯେ Omega Point ଆସିବାର ମୁହୁର୍ତ୍ତର ଅନେକ ପୂର୍ବରୁ ପୃଥିବୀ ଓ ତତ୍ ସହିତ ମାନବ ସମାଜର ବିଲୟ ଘଟିବ ନିଶ୍ଚିତ ଭାବରେ । ମାତ୍ର ଯୀଶୁ କଥିତ ପୁନରୁତ୍ଥାନ (Resurrection) ମଧ ହେବ ସେହି ଅନାଦି, ଅନନ୍ତ ପୁରୁଷଙ୍କର ଆଶୀର୍ବାଦରୁ ।

ଜୀବନ୍ତ କମ୍ପ୍ୟୁଟର ସାହାଯ୍ୟରେ ହେଉ ବା ଶୁକ୍ଳକୃଷ୍ଣ ଗତି ନୀତିରେ ହେଉ, ସମଗ୍ର ସୃଷ୍ଟିର ଯେ ପୁନରାବୃତ୍ତି ହୁଏ, ତାହା ଏକ ନିଶ୍ଚିତ ବିଷୟ ବସ୍ତୁ ଆମର ଗଭୀର ଶ୍ରଦ୍ଧାବିଜଡିତ ଶ୍ରୀମଦ୍ ଭଗବତ ଗୀତାର । ଶ୍ରୀକୃଷ୍ଣଙ୍କର ମୁଖ ନିସୃତ ଗଭୀର ସତ୍ୟର ପ୍ରକାଶ; ଏକ ଶୁଭ ଶଙ୍ଖଧ୍ୱନି । ଉପର୍ଯ୍ୟୁକ୍ତ ବିଶ୍ଳେଷଣରୁ ଏହି ତଥ୍ୟ ପ୍ରତିଷ୍ଠା ଲାଭ କରେ ଯେ ବିଜ୍ଞାନ କ୍ରମେ କ୍ରମେ ଈଶ୍ୱର-ପ୍ରଦତ୍ତ ପ୍ରଜ୍ଞାଲାଭ କରି ପ୍ରକୃଷ୍ଟ ସତ୍ୟର ଅନୁମାନରେ ସିଦ୍ଧ ହେବାକୁ ଯାଉଛି । ଅମରତ୍ୱର ପ୍ରମାଣ ପଦାର୍ଥ ବିଦ୍ୟା ଓ ଗାଣିତ୍ୟିକ ହିସାବ ସାହାଯ୍ୟରେ ବୈଜ୍ଞାନିକ ମାନେ ଦେଇପାରିବା ନିମନ୍ତେ ସଂକଳ୍ପବଦ୍ଧ । ଏହି ଚିନ୍ତାଧାରା ସୁଦୂର ପ୍ରସାରୀ ହୋଇ ବିଜ୍ଞାନ ଚେତନାରେ ଏକ ନୂଆମାତ୍ରା ଯୋଗ କରିବାରେ ସକ୍ଷମ ହେବାର ସମ୍ଭାବନା ବିଶେଷ ଭାବରେ ଉଜ୍ଜ୍ୱଳ ବୋଲି ମନେହୁଏ । ଆମର ପୂଣ୍ୟଶ୍ଳୋକ ତୁରୀୟ ମନିଷୀମାନେ ନିଜର ଉପଲବ୍ଧିରୁ ଯେଉଁ ଜ୍ଞାନ ଆହରଣ କରିଥିଲେ ତାହାର ପରକାଷ୍ଠାରେ ଉପନୀତ ହେବାକୁ ଯେ ବିଜ୍ଞାନକୁ ବହୁ ଯୁଗ ଲାଗିଯିବ, ତାହା ସହଜରେ ଅନୁମେୟ । ତେବେ ସତ୍ୟ ସନ୍ଧାନର ପଥ ଗୋଟିଏ ନୁହେଁ, କୋଟିଏ । ସେଥିରୁ ଗୋଟିଏ ଦୃଢ଼ ସଂକଳ୍ପ-ପଥ ହେଲା ବିଜ୍ଞାନର ।

ତାହାର ସ୍ଥିର ପଦକ୍ଷେପପରେ ପ୍ରମାଣ ଭିତ୍ତିକ ଅନୁସନ୍ଧାନ ଦ୍ୱାରା ବିଜ୍ଞାନ ତାହାର ସୁଚିନ୍ତିତ ମାର୍ଗରେ ଧାବମାନ । ଏହି ପଥରେ ଯେ ଅନ୍ତିମ ସତ୍ୟ ଲାଭହେବ ସେଥିରେ ସନ୍ଦେହର ଅବକାଶ ନାହିଁ । ତାହା ଯେତେ ଡେରିରେ ଫଳପ୍ରସୁ ହେଲେ ମଧ, ସ୍ଥାୟୀ ଭାବରେ ଅଧିଷ୍ଠିତ ହେବ । ଏବେ ଏକ ନୂତନ ଆବିଷ୍କାର ବିଜ୍ଞାନର ସ୍ତମ୍ଭଗୁଡିକୁ ଏକାବେଳେକେ ଦୋହଲାଇ ଦେଇଛି । ଦୁଇଜଣ ବୈଜ୍ଞାନିକଙ୍କର ବିପ୍ଳବାତ୍ମକ ଆବିଷ୍କାରରେ ବିଜ୍ଞାନର ପୁରାତନ ଭିତ୍ତି ଦୋଦୁଲ୍ୟମାନ ଅବସ୍ଥାରେ ଉପନୀତ । ବୋର୍ଜ୍ ନଡ୍‌ଲ୍ୟାଣ୍ଡ ହେଉଛନ୍ତି ରୋଚେଷ୍ଟର ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଓ ଜନ୍ ର୍ୟାଲଷ୍ଟୋନ୍ କ୍ୟାନସାସ୍ ବିଶ୍ୱବିଦ୍ୟାଳୟର ଅଧ୍ୟାପକ । ସେମାନେ ୧୬୦ଟି ଅତିଦୂରରେ ଅବସ୍ଥିତ ନିହାରିକାପୁଞ୍ଜରୁ ଉଦଗତ ରେଡିଓ ତରଙ୍ଗ ଗୁଡିକର ପରୀକ୍ଷା କରୁଥିଲେ । ନିର୍ଗତ ରଶ୍ମି ମହାବିଶ୍ୱର ପ୍ରାନ୍ତରେ କିପରି ଭାବରେ ଗତିକରେ ତାହାର ପରୀକ୍ଷା କରିବାକୁ ଯାଇ ଦେଖିଲେ ଯେ ଆଲୋକର ଗତି ଅତି ଶିଥିଳ ଏବଂ ଫଳତଃ ଏହା ଅତି କ୍ଷୀଣ । ଆଲୋକ ଚୌମ୍ବକକ୍ଷେତ୍ର ମଧରେ ଗତିକଲାବେଳେ ଶହେ କୋଟି ବର୍ଷପରେ ଘୂର୍ଣ୍ଣାୟମାନ ଅବସ୍ଥା ପ୍ରାପ୍ତ ହୁଏ । "The polarisation of

light is rotated about once in a billion years. The shocking thing is that there seems to be an absolute axis, a kind of cosmological star that orients the universe. We donot really know yet what this axis represents." ଏହି ଗବେଷଣାର ଫଳ ବର୍ତ୍ତମାନ ସୁଦ୍ଧା ଅନ୍ୟ ସୌର ବିଜ୍ଞାନୀମାନଙ୍କ ଦ୍ୱାରା ଦୃଢ଼ିକୃତ ହୋଇନାହିଁ । କିନ୍ତୁ ଏହା ବହୁ ପ୍ରଶ୍ନବାଚୀ ସୃଷ୍ଟି କରିଅଛି । ଆଉ ଗୋଟିଏ ଗବେଷଣାରୁ Tanvir ନାମକ କ୍ୟାମ୍ବ୍ରିଜ ସୌର-ବିଜ୍ଞାନୀ ଲକ୍ଷ କରିଅଛନ୍ତି ଯେ ଗାମା-ରଶ୍ମି ବିକିରଣ ବହୁମାତ୍ରାରେ ନିର୍ଗତ ହେଉଅଛି ବିଶ୍ୱର ସୀମାରେ ହେଉଥିବା ଏକ ସୌର ମଣ୍ଡଳୀୟ ଦୁର୍ଘଟଣା ଯୋଗୁ । ଯଦି ଏହି ତଥ୍ୟରାଜି ପରୀକ୍ଷା ନିରୀକ୍ଷା ପରେ ସତ୍ୟବୋଲି ପ୍ରମାଣିତ ହୁଏ, ତେବେ ପୂର୍ବ-ନିର୍ଦ୍ଧାରିତ ସ୍ଥିର ବିଶ୍ୱର ପରିକଳ୍ପନା ଭୁଲ ହୋଇଯିବ । ଅଧ୍ୟାପକ ନଡ୍‌ଲ୍ୟାଣ୍ଡ ଓ ର୍‌ୟାଲଷ୍ଟୋନ୍ ବିଶ୍ୱାସ କରନ୍ତି ଯେ ମହାବିଶ୍ୱ (ସ୍ଥାନ) ସବୁ ଦିଗରେ ସମାନଭାବରେ ବିସ୍ତୃତ ନୁହେଁ । ସେମାନେ ବିଶ୍ୱାସ କରନ୍ତି ଯେ ଆଲୋକର ଗତି ଏହାର ଗତିର ଦିଗ ଉପରେ ନିର୍ଭର କରେ । ଏହାର ଗତି ସବୁବେଳେ ସବୁସ୍ଥାନରେ ଏକ ନୁହେଁ । ଏହାର ଗତି ବିଭିନ୍ନ ଧରଣର । ଏପରି ତଥ୍ୟ ଆଇନ୍‌ଷ୍ଟାଇନ୍‌ଙ୍କର ଧାରଣାକୁ ଭୁଲ ପ୍ରମାଣ କରିପାରେ । ଏସବୁ ଚିନ୍ତାଧାରାରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ବର୍ତ୍ତମାନ ସୁଦ୍ଧା ସ୍ଥିର ସିଦ୍ଧାନ୍ତ ରୂପରେ କୌଣସି ସତ୍ୟ ଦୃଢ଼ିକୃତ ହୋଇନାହିଁ । ବହୁ ସାମ୍ଭାବ୍ୟ ତଥ୍ୟର ମିଶ୍ରଣ ବିଜ୍ଞାନର ବିଭିନ୍ନ ସୋପାନ ଗୁଡ଼ିକ ରଚନା କରି ଅଛି । ଶେଷ ଗନ୍ତବ୍ୟ ସ୍ଥଳରେ ବର୍ତ୍ତମାନ ସୁଦ୍ଧା ଉପନୀତ ହୋଇନାହିଁ । ବିଭିନ୍ନ ସମୟରେ ବିଭିନ୍ନ ତଥ୍ୟ ବିଜ୍ଞାନର ଦୃଷ୍ଟିଗୋଚର ହେବା ଯୋଗୁ, ବୈଜ୍ଞାନିକ ମାନଙ୍କୁ ପୂର୍ବରୁ ସ୍ଥିରିକୃତ ତଥ୍ୟର ପୁନର୍ମୂଲ୍ୟାୟନ କରିବାକୁ ପଡୁଅଛି । ବିଜ୍ଞାନର ଏହି ପଦ୍ଧତିର ଶେଷ ହୋଇନାହିଁ । ଯେତେଦିନ ଯିବ ସେତେଦିନ ଏହି ପୂନର୍ମୂଲ୍ୟାୟନ ଚାଲିଥିବ । ଏହାହିଁ ବୈଜ୍ଞାନିକ ଧାରା । ଏହାର ପ୍ରମାଣ ହେଲା Smolin ଙ୍କ ବହି "The Life in Cosmos" । ସେ କହିଛନ୍ତି ଯେ ପଦାର୍ଥ ବିଦ୍ୟାର ନିୟମ ଗୁଡ଼ିକ ଧ୍ରୁବ ନୁହେଁ । ସେଗୁଡ଼ିକ ପରିବର୍ତ୍ତିତ ହୁଅନ୍ତି । ଯେପରିକି ଇଲେକ୍‌ଟ୍ରନର Charge ଗୋଟିଏ ଜଗତରୁ ଅନ୍ୟ ଜଗତକୁ ଗଲେ ତାହା ବଦଳିଯିବ । ଏହାକୁ ସେ ପରିବର୍ତ୍ତନଶୀଳ ବାସ୍ତବତା ବୋଲି ନାମିତ କରିଛନ୍ତି । ତାମାନେ Neuton ଙ୍କ ନିୟମ ଠିକ୍ ନୂହେଁ । ତେବେ ବିଜ୍ଞାନ ସାଧନାରେ ଯେଉଁଠି ପ୍ରଗତି ଅଟକି ଯାଉଛି, ଯୁକ୍ତି ଯୁକ୍ତ ଭାବରେ ଅଗ୍ରସର ହେଇପାରୁନାହିଁ; ସେଠାରେ ପ୍ରାଚ୍ୟଦର୍ଶନର ଭାବଧାରା ସଙ୍ଗତିପୂର୍ଣ୍ଣ ଉତ୍ତର ଦେଇ ଗବେଷକଙ୍କୁ ସଠିକ ମାର୍ଗରେ ଗତି କରାଇବା ନିମନ୍ତେ ପ୍ରେରଣା ଦେଇପାରୁଛି କି ନାହିଁ, ତାହାହିଁ ବିଚାର୍ଯ୍ୟ । ଯଦି ପ୍ରାଚ୍ୟ ଚିନ୍ତାରେ ପ୍ରକୃଷ୍ଟ ସମାଧାନ ମିଳେ, ତାକୁ ବିଜ୍ଞାନ କାହିଁକି ଉପେକ୍ଷା କରିବ ? ଏ ବିଷୟରେ ଆଲୋଚନା ପ୍ରାସଙ୍ଗିକ ମନେହୁଏ ।

ଅତି ସଂକ୍ଷେପରେ ଏ ବିଷୟରେ ଉଲ୍ଲେଖ କରିବା ଆବଶ୍ୟକ । ଋକ୍‌ବେଦର ନାସଦୀୟସୁକ୍ତ (୧୦/୧୨୯)ରେ ବର୍ଣ୍ଣନା ଅଛି ସେହି ଆଦି ଅପୌରୁଷେୟ ସ୍ଥିତିର ବର୍ଣ୍ଣନା ନିମ୍ନଲିଖିତ ଭାବରେ - ''ସେତେବେଳେ କୌଣସି ଆକାଶ ନଥିଲା; ସ୍ୱର୍ଗ ମଧ୍ୟ ନଥିଲା........ ସେତେବେଳେ ମୃତ୍ୟୁ ନଥିଲା; ଅମରତ୍ୱ ମଧ୍ୟ ନଥିଲା । ଦିନ ରାତିର ଭେଦାଭେଦ ନଥିଲା । ସେହି ଆଦି-ମୂଳ ନିଶ୍ୱାସ ନେଲେ ମଧ୍ୟ ସେ ନିଶ୍ୱାସହୀନ ଥିଲେ । ସେ ନିଜେ ଅବସ୍ଥିତ ଥିଲେ ନିଜକୁ ପ୍ରକାଶ ବା ପ୍ରତିଭାତ ନକରି । ତାଙ୍କ ଛଡା ଆଉ କିଛି ନଥିଲା ।'' ଏହି ନାସଦୀୟ ସୁକ୍ତରେ ''ଏକମେବ ଅଦ୍ୱିତୀୟ''ଙ୍କ ପରିଚୟ ମିଳେ । ଏହି ଭାବର ବିସ୍ତାର ପରବର୍ତ୍ତୀ କାଳରେ ଉପନିଷଦରେ ମଧ୍ୟ ସ୍ୱମହିମାରେ ଗୌରବାନ୍ୱିତ ।

''ଓଁ ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣଂ ଉଦଚ୍ୟତେ ।
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବ ଅବଶିଷ୍ୟତେ ।।''

ଯାହା ଦୃଶ୍ୟମାନ ନୁହେଁ ତାହା ଅନନ୍ତ ବ୍ରହ୍ମ ସ୍ୱରୂପ । ଯାହା ଦୃଶ୍ୟମାନ ତାହା ମଧ୍ୟ ଅନାଦି ଅନନ୍ତ ବ୍ରହ୍ମ । ସମସ୍ତ ବିଶ୍ୱ ସେହି ଅନନ୍ତ ବ୍ରହ୍ମରୁ ନିସୃତ ହୋଇଅଛି । ସମଗ୍ର ବିଶ୍ୱ ନିସୃତ ହେଲାପରେ ମଧ୍ୟ, ବ୍ରହ୍ମ ଅନନ୍ତ ରୂପରେ ବିଦ୍ୟମାନ । ''ବୃହଦାରଣ୍ୟକ ଉପନିଷଦର ସେହିପରି ଆଉଗୋଟିଏ ସ୍ମରଣୀୟ ଉକ୍ତି : ''ଈଶାବାସ୍ୟଂ ଇଦଂ ସର୍ବମ୍, ତେନ ତ୍ୟକ୍ତେନ ଭୁଞ୍ଜିଥା ।'' ସମଗ୍ର ଜଗତ ଈଶ୍ୱରଙ୍କ ଆବାସ, ତାଙ୍କୁ ତ୍ୟାଗଦ୍ୱାରା ଭୋଗକର ।

ଏହି ବିଷୟରେ ଟିକିଏ ବିଶ୍ଳେଷଣ କରିବାର ଅବକାଶ ଅଛି । କେତେକ ଉପନିଷଦ ନେତିବାଦର ପଥରେ ଅଗ୍ରସର ହୋଇ ବ୍ରହ୍ମଙ୍କୁ କାୟାହୀନ, ଅବ୍ରଣ, ଅଦୃଶ୍ୟ, ଅଗନ୍ଧ, ଅଗ୍ରାହ୍ୟ, ଅସ୍ପର୍ଶ ରୂପେ ବର୍ଣ୍ଣନା କରି ଅଛନ୍ତି । ଯାଜ୍ଞବଳ୍କ ଏହି ପଥର ମୁଖ୍ୟ ପଥିକ ଓ ଶ୍ରେଷ୍ଠ ପ୍ରତିଭୂ ଅଟନ୍ତି । କିନ୍ତୁ ''କଠ ଉପନିଷଦ''ରେ ବ୍ରାହ୍ମଙ୍କୁ ନିତ୍ୟ, ଶାଶ୍ୱତ, ପୁରାଣ, ସୂକ୍ଷ୍ମରୁ ସୂକ୍ଷ୍ମ ମହତ୍‌ରୁ ମହୀୟାନ୍ ରୂପେ ଚିତ୍ରଣ କରାଯାଇଅଛି । ଏହାଛଡା ବ୍ରହ୍ମଙ୍କର ସ୍ଥିତିକୁ କୁହାଯାଇଅଛି ସବୁ ଜୀବମାନଙ୍କର ହୃଦୟନିହିତ, ସର୍ବଭୂତର ଅନ୍ତରାତ୍ମା ''ସଦାଜନାନାଂ ହୃଦୟେ ସନ୍ନିବିଷ୍ଟ ।'' ସେ ଅରୂପ ହେଲେ ମଧ୍ୟ ''ରୂପଂ ରୂପଂ ପ୍ରତିରୂପେ ବହିଶ୍ଚ ।''ସେ ଏକ ବର୍ଣ୍ଣ ହେଲେ ମଧ୍ୟ ସେ ''ବର୍ଣ୍ଣାନ୍ ଅନେକାନ୍ ନିହିତାର୍ଥୋ ଦଧାତି ।'' ତାଙ୍କ ସହିତ ରୂପ, ରସ, ଗନ୍ଧ, ବର୍ଣ୍ଣ-ବିଶିଷ୍ଟ ସଂସାରର ସମ୍ପର୍କ ବିଦ୍ୟମାନ । ଏହାହିଁ ସାରାଂଶ ଆର୍ଯ୍ୟ ଋଷି ମାନଙ୍କର ଅନୁଭୂତିର ।

ଏଠାରେ ପ୍ରଶ୍ନ ଉଠେ ଯେ ତାଙ୍କ ସହିତ ଯୋଗାଯୋଗ ପ୍ରତିଷ୍ଠା କରିବାର ଉପାୟ କ'ଣ ? ସେ କ'ଣ ମନୁଷ୍ୟର ମେଧା, ବୁଦ୍ଧି, ଶୃତି ପଠନ ଦ୍ୱାରା ପ୍ରାପ୍ୟ ବସ୍ତୁ ? ମାତ୍ର ''କଠ ଉପନିଷେଦ'' କହୁଛନ୍ତି ଯେ ବ୍ରହ୍ମ ଯାହାପ୍ରତି କୃପାଳୁ ହେବେ କେବଳ ସେହି ତାଙ୍କୁ

ଲାଭ କରିବାରେ ସମର୍ଥ ହେବେ । ସେ ହେଉଛନ୍ତି ମନ, ବୁଦ୍ଧି, ମହତ୍ତ୍ୱ ଓ ମାୟାର ଅଗୋଚର । ସେହି ଅକ୍ଷର ପୁରୁଷଙ୍କୁ ଲାଭ କରିବା ନିମନ୍ତେ ନିରନ୍ତର କଠୋର ସାଧନାର ପ୍ରୟୋଜନୀୟତା ଅଛି । କଠ ଓ ମୁଣ୍ଡକ ଉପନିଷେଦରେ ବର୍ଣ୍ଣିତ ଅଛି "ପ୍ରଣବ ଧନୁ, ଆତ୍ମା ଶର ଏବଂ ବ୍ରହ୍ମ ହେଉଛନ୍ତି ଲକ୍ଷ୍ୟ ।"ତୈତ୍ତିରିୟ ଉପନିଷେଦରେ ଲିଖିତ ଅଛି ଯେ ଅନ୍ନମୟ, ପ୍ରାଣମୟ, ମନୋମୟ କୋଷ ଅତିକ୍ରମ କଲେ ଆନନ୍ଦମୟ କୋଷ ସହିତ ସାକ୍ଷାତ ହୁଏ । ତାହାହେଲେ ସର୍ବଶେଷ ଉପଲବ୍ଧି କଣ ହେବ ? ସେତେବେଳେ ମନେହେବ "ଆୟମାତ୍ମା ବ୍ରହ୍ମ", "ତତ୍ତ୍ୱମସି" "ସୋହମ୍ ଅସ୍ମି", ଶେଷରେ କଣ ଅନୁଭବ ହେବ ? "ଭିଦ୍ୟତେ ହୃଦୟଗ୍ରନ୍ଥି, ଛିଦ୍ୟତେ ସର୍ବସଂଶୟାଃ କ୍ଷୀୟନ୍ତେ ଚ ଅସ୍ୟ କର୍ମାଣି ।" ହୃଦୟର ଗ୍ରନ୍ଥି ଭେଦ ହୋଇ ସବୁ ସନ୍ଦେହର ଛେଦ ପଡିବ ଓ କର୍ମର କ୍ଷୟ ମଧ ଘଟିବ । ଏହି ବାଣୀ "ଶ୍ୱେତାଶ୍ୱତର ଉପନିଷଦର ।" ଏଥିରେ ବିଶେଷ ଆବେଗଭରା ବାଣୀର ପ୍ରକାଶ । ଏଥିରେ ଭକ୍ତି ରସର ଆଭାସ ରହିଛି । କେବଳ ମୋକ୍ଷ ବା ବ୍ରହ୍ମ ନିର୍ବାଣର ଭାବଧାରା ଠାରୁ ବେଶୀ ରସାତ୍ମକ ଭାବାବେଗ ପୂର୍ଣ୍ଣ । ନେତି ନେତି କରି ମଧ ଶେଷରେ ଯାଜ୍ଞବଳ୍କ କହିଲେ ଯେ, ଦେଶକାଳ, କାର୍ଯ୍ୟକାରଣ ସମ୍ପର୍କରେ ସେ କିଛି ନହେଲେ ମଧ, ସେ (ବ୍ରହ୍ମ) ଏହି ଜୀବ ଜଗତ ହୋଇ ରହିଛନ୍ତି । ସେ ସଂସାରରୁ ବହିର୍ଭୂତ ନୁହନ୍ତି । "ଏତସ୍ୟ ବା ଅକ୍ଷରସ୍ୟ ପ୍ରଶାସନେ ଗାର୍ଗୀ, ସୂର୍ଯ୍ୟ ଚନ୍ଦ୍ରମସୌ ବିଧୃତୌ ତିଷ୍ଠତଃ" ଗାର୍ଗୀଙ୍କୁ ବୁଝାଇ କହିଲେ ଯେ ବ୍ରହ୍ମ ସମଗ୍ର ଜଗତରେ ନିଜକୁ ପ୍ରତିଷ୍ଠା କରିଛନ୍ତି । ସୂର୍ଯ୍ୟ ଚନ୍ଦ୍ରରେ ତାଙ୍କରି ଆଭା ହିଁ ବଳବତ୍ତର ଭାବେ ପ୍ରଯୁକ୍ତ ହୋଇ ରହିଅଛି । ଆଉଗୋଟିଏ ଉକ୍ତି ଅତି ଗୁଢ଼ ଅର୍ଥବହ । ଏହା ଈଶାବାସ୍ୟ ଉପନିଷଦରୁ ସଂଗୃହିତ । (୧/୧୫) "ହିରଣ୍ମୟେନ ପ୍ରାତ୍ରେଣ ସତ୍ୟସ୍ୟାପିହିତ ମୁଖମ୍ ତତ୍ ତ୍ୱଂ ପୁଷନ୍ନପାବୃଣୁ ସତ୍ୟ ଧର୍ମାୟ ଦୃଷ୍ଟବେ ।" ଏହାର ଭାବାର୍ଥ ହେଲା - ସତ୍ୟର ମୁଖ ସ୍ୱର୍ଣ୍ଣପ୍ରଭାରେ ଆବୃତ ହୋଇ ଗୁପ୍ତଭାବରେ ରହିଅଛି । ହେ ରକ୍ଷାକର୍ତ୍ତା ! ଏହି ଆବରଣ ଉନ୍ମୋଚନ କରନ୍ତୁ । ସତ୍ୟ ଧର୍ମକୁ ଆଦରିଥିବା ମୋର ସତ୍ତା ଏହାକୁ ହୃଦୟଙ୍ଗମ କରିବାକୁ ସକ୍ଷମ ହେଉ । ଏହିପରି ବହୁ ଉଲ୍ଲେଖନୀୟ ସତ୍ୟରେ ଉଦ୍‌ଭାସିତ, ସ୍ୱକୀୟ ଜ୍ୟୋତିରେ ମହିମାମୟ ଉପନିଷଦ-ସମଗ୍ର; ପରବର୍ତ୍ତୀକାଳରେ ଚିନ୍ତାନାୟକ ମହାନ୍ ଆଚାର୍ଯ୍ୟମାନେ ବହୁ ଧାରାରେ ନିଜର ଉପଲବ୍ଧ ଜ୍ଞାନର ପ୍ରବାହ ସୃଷ୍ଟି କରି ଅନାଦି ଅନନ୍ତ ସତ୍ୟର ପ୍ରକାଶ କରିଯାଉଅଛନ୍ତି । ସେଗୁଡିକର ସଂକ୍ଷିପ୍ତ ଉଲ୍ଲେଖ କରିବା ବିଧେୟ । ରାମାନୁଜଙ୍କ ବିଶିଷ୍ଟାଦ୍ୱୈତବାଦ, ଭାସ୍କରଙ୍କର ଭେଦାଭେଦବାଦ, ନିମ୍ବାର୍କଙ୍କର ଦ୍ୱୈତାଦ୍ୱୈତ ବାଦ, ମାଧବାଚାର୍ଯ୍ୟଙ୍କ ଦ୍ୱୈତବାଦ, ବଲ୍ଲଭଙ୍କର ଶୁଦ୍ଧାଦ୍ୱୈତବାଦ ପ୍ରଭୃତି । ସତ୍ୟ କେବଳ ଏକ ଅଟେ । ଆଚାର୍ଯ୍ୟମାନେ ବହୁଧାରାରେ ବହୁ ପ୍ରକାରରେ, ବହୁ ରୂପରେ ତାହାର ବ୍ୟାଖ୍ୟା କରନ୍ତି । ମାତ୍ର ଆଦି ଶଙ୍କରଙ୍କର କେବଳ ଦ୍ୱୈତବାଦ ଓ ଚୈତନ୍ୟ ମହାପ୍ରଭୁଙ୍କର ଅଚିନ୍ତ୍ୟ

ଭେଦାଭେଦ ତତ୍ତ୍ୱ ବହୁଳ ଭାବରେ ଆଦୃତ, ଚର୍ଚ୍ଚିତ ଓ ଆଲୋଚିତ । ଶ୍ରୀଚୈତନ୍ୟ କହିଛନ୍ତି ଯେ ଅନାଦି ଅନନ୍ତ ପୁରୁଷଙ୍କ ବିଷୟରେ ପରମଜ୍ଞାନ ବ୍ୟକ୍ତିଗତ ଉପଲବ୍ଧି ଉପରେ ନିର୍ଭର କରେ । ତାହା ସମଷ୍ଟିଗତ ପ୍ରଚେଷ୍ଟାରେ ଅଭାବନୀୟ ବା ଅପରିକଳ୍ପନୀୟ ତେଣୁ ଅଚିନ୍ତ୍ୟ । ମାତ୍ର ବେଦାନ୍ତ ମତରେ ପରମଜ୍ଞାନ ପ୍ରସାରଣଶୀଳ । ଯେତେ ଜାଣିବା ପାଇଁ ପ୍ରୟାସ କରାଯାଏ, ତାହା ସେତେ ବିସ୍ତୃତ ହୁଏ । ସେଥିପାଇଁ ପରମ ପୁରୁଷଙ୍କ ନାମ ହେଲା ''ବ୍ରହ୍ମ''- ଯାହା ବର୍ଦ୍ଧିତ ହୁଏ । ଏହି ମହାବିଶ୍ୱର ସ୍ୱରୂପ ସମ୍ବନ୍ଧରେ ଭାରତୀୟ ଦର୍ଶନରେ ବହୁଳ ଚର୍ଚ୍ଚା ସ୍ଥାନପାଇ ଅଛି । ମାତ୍ର ଅଦ୍ୱୈତ ବେଦାନ୍ତର ପ୍ରଭାବ ଅବିନଶ୍ୱର । ଏହାର ଗଭୀର ଚିନ୍ତାଧାରାରେ ପ୍ରଭାବିତ ହେଲେ, ବିଜ୍ଞାନୀମାନେ Singularity Principle ର ପ୍ରକୃଷ୍ଟ ସ୍ଥିତି ଉପଲବ୍ଧି କରିପାରନ୍ତେ । ଏହି ''ଏକକ ତତ୍ତ୍ୱ'' ର ପରାକାଷ୍ଠା ହେଉଛି ଅବାଙ୍‌ମନସ ଗୋଚର ବ୍ରହ୍ମର ଅନାଦି ଅନନ୍ତ ସ୍ଥିତି ଯାହା ଆଦିର ଆଦି ଓ ମୂଳରମୂଳ ସ୍ୱରୂପ । "Origin of Origin and source of source" ।

ଏଥର ଆଉଗୋଟିଏ ଦିଗରୁ ସର୍ବଶେଷ ସତ୍ତା ବା ultimate reality ବିଷୟରେ ଆଲୋଚନାକୁ ଉପେକ୍ଷା କରାଯାଇ ପାରିବ ନାହିଁ । ରହସ୍ୟବାଦୀମାନେ ବାସ୍ତବତାର ଶେଷରୂପ ଅନ୍ୟ ଦୃଷ୍ଟିରୁ ଅନୁଧାବନ କରି ଅଛନ୍ତି । ଏମାନଙ୍କର ପ୍ରଜ୍ଞା ବାସ୍ତବବାଦୀଙ୍କ ଅପେକ୍ଷା ଅନେକବେଶୀ ହୃଦୟଗ୍ରାହୀ, ଅତଳ ସମୁଦ୍ରର ସନ୍ଧାନ ଲିପ୍ତ ଓ ମହାବ୍ୟାପ୍ତିର ପରିସର-ସମୃଦ୍ଧ । ଏ ବିଷୟରେ ଲେଖିବାକୁ ଯାଇ ବିଖ୍ୟାତ ଲେଖକ ହ୍ୟାପୋଲ୍ଡଙ୍କ ଉକ୍ତି ପ୍ରଣିଧାନ ଯୋଗ୍ୟ । ସେ ଲେଖିଛନ୍ତି ଯେ ରହସ୍ୟବାଦୀ ମାନଙ୍କର ପ୍ରଜ୍ଞା ଯୁକ୍ତି-ପ୍ରଯୁକ୍ତି-ବିଶିଷ୍ଟ ସାଧାରଣ ଚେତନାର ବିକାଶ ହେଲେହେଁ, ଏହା ବୃହତ୍ତର-ସତ୍ତା-ସମ୍ପନ୍ନ ଅନୁଭୂତିର ଓ ଅଭିଜ୍ଞତା ମାଧ୍ୟମରେ କ୍ରମ ବର୍ଦ୍ଧିଷ୍ଣୁ ଏକ ସତ୍ତା, ଯାହାମଧ୍ୟରେ କବିତ୍ୱର ସ୍ଫୁରଣ ଲକ୍ଷଣୀୟ । ତେଣୁ ଏହି ପ୍ରଜ୍ଞାର ମାଧ୍ୟମରେ ବାସ୍ତବତାର ଜ୍ଞାନ ଆହରଣ କରିବାର ପ୍ରୟାସରେ ରହସ୍ୟବାଦୀ ମାନେ ଅନେକ ବେଶୀ ମାତ୍ରାରେ ସଫଳ, ଯାହା ସାଧାରଣ ଚେତନା ଦ୍ୱାରା ସମ୍ଭବପର ନୁହେଁ । ଏହା ଯୁକ୍ତିବାଦୀ ଚୈତନ୍ୟର ପ୍ରସାରଣ ଏବଂ ସତ୍ୟର ବୃହତ୍ତର ଉପଲବ୍ଧି ନିମନ୍ତେ ଏକ ବିଶାଳ-ବିସ୍ତୃତି ସେହି ରହସ୍ୟ ଚୈତନ୍ୟର । ଅନ୍ୟ ଏକ ମତରେ (ଆର.ସି.ଜେନର) ଆୟତ୍ତ ବା ଲବ୍ଧ ଆତ୍ମାଠାରୁ ବହୁଗୁଣରେ ବଡ, ଏପରିକି ଅନନ୍ତଭାବରେ ବଡ ଯେଉଁ ସତ୍ତା ବିଦ୍ୟମାନ, ତାହା ସହିତ ଏକାତ୍ମବୋଧହିଁ ରହସ୍ୟ ବାଦର (mysticsm) ଲକ୍ଷ୍ୟ ।

ଏହି ପଦ୍ଧତିରେ ଜ୍ଞାନ ଲାଭର ମୂଳମନ୍ତ୍ର ହେଲା ବିଶ୍ୱାସ । ଏପରିକି ଆଧୁନିକ ବିଜ୍ଞାନରେ ମଧ୍ୟ ବିଶ୍ୱାସର ଭିତ୍ତି ସୁପ୍ରତିଷ୍ଠିତ । ଯେପରି ପୃଥିବୀର ସବୁକ୍ଷେତ୍ରରେ କାର୍ଯ୍ୟ-

କାରଣ ସମ୍ପର୍କ ପ୍ରକାଶିତ । ଏହା ବିଜ୍ଞାନୀମାନଙ୍କର ଦୃଢ଼ ବିଶ୍ୱାସର ଭିତ୍ତିଭୂମି । ଏବର ବିଜ୍ଞାନୀମାନେ ବୁଝିଲେଣି ଯେ ବାସ୍ତବ ବୋଲି କହିଲେ ମାତ୍ର ଗୋଟିଏ ଜିନିଷ ନୁହେଁ । ତାହାର ନାନା ସ୍ତର ଓ ଶ୍ରେଣୀ ମଧ୍ୟ ଅଛି । ଉନବିଂଶ ଶତାବ୍ଦିରେ ପଦାର୍ଥର ସ୍ଥୂଳ ସ୍ତର ହିସାବରେ ଦୃଶ୍ୟ, ଗ୍ରାହ୍ୟ, ସ୍ପର୍ଶ ଇତ୍ୟାଦିକୁ ବୁଝାଯାଉଥିଲା । ବର୍ତ୍ତମାନ ବାସ୍ତବତାର ରୂପ ''ଶକ୍ତି'' (energy) ରେ ଉଦ୍‌ଭାସିତ । ଏହାକୁ ସ୍ୱତଃ ବୁଝାଯାଇପାରେ ନାହିଁ । ଏହି ଶକ୍ତିର ଫଳଦ୍ୱାରା ଏହା ବୋଧଗମ୍ୟ ହୁଏ । ଏହି ପଦ୍ଧତିରେ ଯେଉଁ ବିଜ୍ଞାନୀ ପରୀକ୍ଷା ନିରୀକ୍ଷା କରୁଛନ୍ତି ତାଙ୍କୁ ମଧ୍ୟ ବାଦଦେବା ଉଚିତ୍ ନୁହେଁ । ମହାବିଜ୍ଞାନୀ ବୋହ୍‌ରଙ୍କ ମତରେ "In part at least, the source of scientific knowledge is within the scientist itself". ଆଇନ୍‌ଷ୍ଟାଇନ୍ କହିଛନ୍ତି, ''ସତ୍ୟ ଯେ ମନୁଷ୍ୟର ଅପେକ୍ଷାନରଖି ସତ୍ୟ, ଏହା ମୁଁ ବିଜ୍ଞାନ ସମ୍ମତ ଉପାୟରେ ପ୍ରମାଣ କରି ପାରିବି ନାହିଁ । ତଥାପି, ତାହା ମୁଁ ଦୃଢ଼ ଭାବରେ ବିଶ୍ୱାସ କରେ ।'' ବିଜ୍ଞାନ ମାନସିକ ଶକ୍ତିକୁ ପ୍ରସାରିତ କରି ଉନ୍ନତ ଯନ୍ତ୍ର ସାହାଯ୍ୟରେ ସତ୍ତାର ରହସ୍ୟ ଉଦ୍‌ଘାଟନ କରିବାରେ ପ୍ରୟାସୀ ହୋଇଅଛି । ଆଉ ରହସ୍ୟବାଦୀ ମାନେ ଚାହାନ୍ତି ମନୁଷ୍ୟର ଅନ୍ତରରେ ଶକ୍ତିର ପ୍ରସାରଣ, ଉନ୍ନତର ଚୈତନ୍ୟର ବିକାଶ ଓ ମହାବିବର୍ତ୍ତନର ପ୍ରଭାବରେ ଉଚ୍ଚସ୍ଥିତି-ପ୍ରାପ୍ତି । ସେମାନଙ୍କ ମତରେ ପ୍ରକାଶ ଅନିତ୍ୟ, ଭ୍ରମାତ୍ମକ ଓ ମାୟା ସଦୃଶ । ସେମାନେ ବ୍ରହ୍ମକୁ ଲକ୍ଷ୍ୟରଖି ସାଧନା କରନ୍ତି ସେଥିରେ ଐକ୍ୟ ଲାଭ ନିମନ୍ତେ । ଏହି ସାଧକମାନଙ୍କ ମଧ୍ୟରେ ଜଣକର ନାମ ଅତି ବିଶିଷ୍ଟ ଭାବରେ ମାନବ ସମାଜର ଦୃଷ୍ଟି ଆକର୍ଷଣ କରିଛି ତାଙ୍କର ଗଭୀର ଈଶ୍ୱର ଅନୁଭୂତି, ପ୍ରଜ୍ଞା, ଦୃଷ୍ଟି ଓ ଉପଦେଶାବଳି ଯୋଗୁ । ଏ ବିଷୟରେ ପୃଥିବୀର ଜଣେ ପ୍ରସିଦ୍ଧ ଲେଖକ ନୋବେଲ ପୁରସ୍କାର ବିଜୟୀ ରୋମାଁ ରୋଲାଁଙ୍କର ଉକ୍ତି ଉଲ୍ଲେଖ ଯୋଗ୍ୟ ।

"Ramakrishna, more fully than any other man, not only conceived but realised in himself the total unity of the river of God" ରୋଲାଁ ଲେଖିଥିଲେ ଯେ ସେ ଥିଲେ ଦୁଇ ହଜାର ବର୍ଷର ଆଧ୍ୟାତ୍ମିକ ସାଧନାର ପୂର୍ଣ୍ଣତା । ଶ୍ରୀରାମକୃଷ୍ଣଙ୍କର ବିଶ୍ୱ ନିୟନ୍ତାଙ୍କ ବିଷୟରେ ମତାବଳି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଓ ଆଲୋଚ୍ୟ ବିଷୟ ନିମନ୍ତେ ଏକାନ୍ତ ଉପଯୋଗୀ । ସେଗୁଡିକ ଗଭୀର ମନୋନିବେଶ-ଯୋଗ୍ୟ । ସେ କହିଲେ ବ୍ରହ୍ମ ସୃଷ୍ଟିଭାବରେ ନିଜକୁ ପ୍ରକାଶ କରିଛନ୍ତି ବୁଢିଆଣି ଜାଲ ଯେପରି ସୃଷ୍ଟିକରି ପୁଣି ଗୋଟାଇ ନିଏ, ସେହିପରି ସେ ନିଜେ ସୃଷ୍ଟି ମଧ୍ୟରେ ପ୍ରବେଶ କରିଅଛନ୍ତି । ସୃଷ୍ଟିକୁ ବ୍ୟାପ୍ତ କରି ରଖିଛନ୍ତି, ପୁଣି ଏହାର ଉର୍ଦ୍ଧରେ ମଧ୍ୟ ବିରାଜ କରୁଅଛନ୍ତି । ଏହି ଐକ୍ୟ ଓ ବିଶାଳତ୍ୱ ସହିତ ଆଉ ଗୋଟିଏ ମାତ୍ରା ସେ ଯୋଗକଲେ । ବ୍ରହ୍ମର ଦାହିକା ଶକ୍ତି ହେଉଛନି କାଳୀ । ଅଗ୍ନି ଓ ତାର ଦାହିକା ଶକ୍ତି ଯେପରି ଅଭେଦ, ସେହିପରି ବ୍ରହ୍ମ ଓ ଶକ୍ତି ମଧ୍ୟ

ଅଭେଦ । ସେ ଯେତେବେଳେ ନିଷ୍କ୍ରିୟ ସେତେବେଳେ ନିତ୍ୟ । ଯେତେବେଳେ ସେ ସୃଷ୍ଟି କରୁଛନ୍ତି, ସେତେବେଳେ ସେ ଲୀଳା । ତାଙ୍କ ମତରେ ମାୟା ସ୍ଥିର ନିଶ୍ଚଳ ବ୍ରହ୍ମଙ୍କର କ୍ରୀୟାଶୀଳ ପ୍ରକାଶ; ଚଳମାନ ସ୍ୱରୂପ । ସାକାର ଓ ନିରାକାର ଭାବନାର ଅପୂର୍ବ ଉପମା ଦେଇଛନ୍ତି ଦୁଇ-ଭାବର ପାର୍ଥକ୍ୟ ହୃଦୟଙ୍ଗମ କରିବା ନିମନ୍ତେ । ଅଖଣ୍ଡ-ସଚ୍ଚିଦାନନ୍ଦ-ସଲିଳ ଭକ୍ତିର ହିମ ସ୍ପର୍ଶରେ ବରଫର ଆକାର ଧାରଣ କରେ । ଜ୍ଞାନ ସୂର୍ଯ୍ୟର ଉତ୍ତାପରେ ତରଳ ହୋଇଯାଏ । ବ୍ରହ୍ମ ସାକାର ଓ ନିରାକର ହେଲେ ମଧ ତାହାର ଉର୍ଦ୍ଧ୍ୱରେ ଅବସ୍ଥିତ । ତାଙ୍କର ଶେଷ ନାହିଁ । ବିଶ୍ୱକୁ ଆନନ୍ଦର ସହିତ ଗ୍ରହଣ କର । ଶିବରୂପେ ଜୀବସେବା କର । ସବୁ ଜୀବମଧରେ ବିରାଜମାନ ସାର-ସତ୍ତା ସେହି ''ସର୍ବଭୂତାନ୍ତରାତ୍ମା ସର୍ବ ଭୂତେଷୁ ଗୁଢ଼ ।'' ତାଙ୍କୁ ଉପଲବ୍ଧ କରି ଆଧାତ୍ମିକ ପଥ ଅନୁସରଣ କର । ଜୀବନକୁ ମାନବ-ସେବାରେ ଉତ୍ସର୍ଗ କର । ନିଜକୁ କେବେହେଲେ ପାପୀ ବୋଲି ଭାବନାହିଁ । ଈଶ୍ୱରଙ୍କପୁତ୍ର ଈଶ୍ୱର ଗୁଣ ସମ୍ପନ୍ନ ହେବାହିଁ ସ୍ୱାଭାବିକ । ଈଶ୍ୱରହିଁ ବସ୍ତୁ । ଆଉସବୁ କିଛି ଅବସ୍ତୁ । ଆମେ ସବୁ ସତ୍, ଚିତ୍, ଆନନ୍ଦଙ୍କର ଅଂଶ ବିଶେଷ । ଆମର ନିରାନନ୍ଦ କେଉଁଠୁ ଆସିବ ? ଯଦିବା ଦୁଃଖ ଆସେ ତାହା ଶରୀର ଭୋଗକରୁ । ମନ ସବୁବେଳେ ଆନନ୍ଦରେ ରହୁ । ବିଶ୍ୱବାସୀଙ୍କ ପ୍ରତି ଏହାହିଁ ତାଙ୍କର ଅମରବାଣୀ । ମହାବିଶ୍ୱ ବିଷୟରେ ସେ କହିଛନ୍ତି ଯେ ଜୀବ ଜଗତଛାଡି ପ୍ରଥମେ ''ସଚ୍ଚିଦାନନ୍ଦ''ରେ ପହଞ୍ଚିବାକୁ ହୁଏ । ସେଠାରେ ପହଞ୍ଚିବାପରେ ଉପଲବ୍ଧି ହୁଏ ଯେ ସେ ନିଜେ ହିଁ ଏହି ମହା-ବିଶ୍ୱରେ ଜୀବ ଜଗତ୍ ସବୁକିଛି ହୋଇ ରହିଛନ୍ତି । ଅର୍ଥାତ୍ ଆନୁଲୋମ ଓ ବିଲୋମ । ଈଶ୍ୱରଙ୍କ ଭକ୍ତ ଈଶ୍ୱରଙ୍କ ସବୁ ପ୍ରକାଶକୁ ଚିତ୍ତରେ ଗ୍ରହଣ କରେ । ଏ ବିଷୟରେ ବ୍ୟାଖ୍ୟା କରିବାକୁ ଯାଇ ପ୍ରସିଦ୍ଧ ଲେଖକ ଓ ଜୀବନୀକାର ରୋମାଁ ରୋଲାଁ ଲେଖିଛନ୍ତି :- "Realise that cosmic ego where in are born the infinite modes of the universe, is within thee, at every moment of the life, see and do good in the world."

ମହାବିଶ୍ୱର ବହୁ ଉର୍ଦ୍ଧ୍ୱରୁ ଦେଖିଲେ ଜଣାଯିବ ଯେ ସବୁ ମତ ଓ ସବୁ ପଥ ଏକ ଦିଗକୁ ଧାବମାନ । ସେତେବେଳେ ଜଣାଯିବ କୌଣସି ଜିନିଷ, ପଦାର୍ଥ, ବସ୍ତୁ ବା କଣା ମିଥ୍ୟାନୁହେଁ । ସତ୍ୟରୁ ଉଚ୍ଚତର ସତ୍ୟର ସ୍ତରକୁ ଉଠିବା ଆମ ଜୀବନର ପ୍ରୟାସ ଓ ଲକ୍ଷ୍ୟ । ସେହି ସୀମାହୀନ ଅନ୍ତହୀନ ସତ୍ୟର ଉପଲବ୍ଧିହିଁ ଆମର ସିଦ୍ଧି । ଏହି ବିଷୟରେ ସମ୍ୟକ ବିବେଚନାରେ ଭାରତବର୍ଷର ଋଷି, ମୁନି, ଆଚାର୍ଯ୍ୟ, ଚିନ୍ତା ନାୟକ ମାନଙ୍କର ଧାରଣା ଓ ସିଦ୍ଧାନ୍ତ ବେଶୀ ଭାବରେ ଆଲୋଚିତ ହୋଇଛି । ବିଜ୍ଞାନର ସୋପାନ ଗତି-ପ୍ରଗତି ସହିତ ତାହାର ଆଲୋକବର୍ତ୍ତିକା କେତେଦୂର ପର୍ଯ୍ୟନ୍ତ ଅଲୋକ ବିସ୍ତାର କରିପାରୁଛି, ତାର ବିଶଦ ଆଲୋଚନା କରିବା ସଙ୍ଗେ ସଙ୍ଗେ, ଭାରତବର୍ଷର ମହାଜ୍ଞାନ-ଲବ୍ଧ

ବିଷୟବସ୍ତୁର ମଧ୍ୟ ଆଲୋଚନା କରାଯାଇ ଅଛି । ଏହା ପକ୍ଷପାତଦୁଷ୍ଟ ନୁହେଁ । ଏହା ଏକ ଦେଶଦର୍ଶୀ ନୁହେଁ । ଏହା ଯଥାର୍ଥ ଏହି ଅର୍ଥରେ ଯେ ମହାସାଗରରେ ବହୁ ରତ୍ନାବଳି ଲୁକ୍କାୟିତ ଅଛି; ତାହା ଅନ୍ୟ ଜଳାଶୟମାନଙ୍କରୁ ମିଳିବ ନାହିଁ । ତେଣୁ ରତ୍ନ ସଂଗ୍ରହର ପ୍ରୟାସ ମହାସାଗର ଆଡକୁ ନିଶ୍ଚିତଭାବରେ ପ୍ରସାରିତ ହେବହିଁ ହେବ । ଏହି ପ୍ରରିପ୍ରେକ୍ଷୀରେ ଭାରତୀୟ ମହାନ ସଭ୍ୟତା ବିଷୟରେ ପାଶ୍ଚାତ୍ୟର ବିଖ୍ୟାତ ମନିଷୀମାନଙ୍କର ଉଲ୍ଲେଖନୀୟ ଉକ୍ତିର ଉଦ୍ଧୃତ ପ୍ରାସଙ୍ଗିକ ହେବ ।

ପ୍ରଖ୍ୟାତ ଐତିହାସିକ Dr. Sunderland ତାଙ୍କ ପୁସ୍ତକ "India in Bondage" ରେ ଲେଖିଛନ୍ତି ଯେ ପୂର୍ବକାଳରେ ଭାରତବର୍ଷ ଏକ ବିଶାଳ ଶିଳ୍ପ ସମୃଦ୍ଧ ଦେଶ ଥିଲା । ୟୁରୋପରେ ବା ଏସିଆରେ ଏପରି ସମୃଦ୍ଧ ଦେଶଠାରୁ ଭାରତ ବହୁପରିମାଣରେ ଅଗ୍ରଣୀ ଥିଲା । ଏଥିରୁ ଜଣାଯାଏ ଯେ ଭୌତିକ କ୍ଷେତ୍ରରେ ମଧ୍ୟ ଭାରତ ଧନଶାଳି ଓ ଶକ୍ତିଶାଳି ଥିଲା । Will Durant ତାଙ୍କର ପ୍ରସିଦ୍ଧ ପୁସ୍ତକ "Case for India" ରେ ଲେଖିଛନ୍ତି - ଭାରତବର୍ଷ ସବୁ ଜାତିର ମାତୃଭୂମି । ସଂସ୍କୃତଭାଷା ୟୁରୋପର ସବୁଭାଷାର ମାତା ସଦୃଶ । ଭାରତବର୍ଷ ଅନ୍ୟ ଦେଶର ଦର୍ଶନ ଶାସ୍ତ୍ରର ମାତା; ଆରବମାନଙ୍କ ମାଧ୍ୟମରେ ଆମଦେଶର ଗଣିତ ଶାସ୍ତ୍ରର ଜନନୀ । ଖ୍ରୀଷ୍ଟ ଧର୍ମରେ ନିହିତ ଆଦର୍ଶର ମଧ୍ୟ ମାତା ସଦୃଶ । ଭାରତବର୍ଷ ତାହାର ଗ୍ରାମବାସୀ-ଗଣ-ଚେତନା ମାଧ୍ୟମରେ ପୃଥିବୀର ଅନ୍ୟସ୍ଥାନ ମାନଙ୍କରେ ପ୍ରଚଳିତ ସ୍ୱାୟତ୍ତ ଶାସନ ଓ ଗଣତନ୍ତ୍ରର ଜନନୀ । ଭାରତ ବହୁଭାବରେ ଓ ବହୁ ଅର୍ଥରେ ଆମ୍ଭ ସମସ୍ତଙ୍କର ମାତା ।'' ଐତିହାସିକ Huston Smith ଲେଖିଛନ୍ତି ଯେ ପଚାଶ ଦଶକରେ ପୃଥିବୀର ଜଣେ ଶ୍ରେଷ୍ଠ ଐତିହାସିକ ସାର ଆରନୋଲ୍ଡ ଟୟାନବି ଭବିଷ୍ୟତବାଣୀ କରିଥିଲେ ଯେ ଏକବିଂଶ ଶତାବ୍ଦିରେ ବିଜିତ ଭାରତବର୍ଷ ତାହାର ଦେଶକୁ ଜୟକରିଥିବା ସବୁ ଦେଶମାନଙ୍କୁ ମଧ୍ୟ ଜୟକରିବାରେ ସମର୍ଥ ହେବ । ଉପର୍ଯ୍ୟୁକ୍ତ ତଥ୍ୟ ଦୃଷ୍ଟିରୁ ଭାରତର ପ୍ରାଚୀନରୁ ପ୍ରାଚୀନତମ ଶାସ୍ତ୍ରର ଅବତାରଣା । ସେଗୁଡିକରେ ନିହିତ ଦିଗଦର୍ଶନର ଆଲୋଚନା । ବିଶେଷଭାବରେ ଦିବ୍ୟଦୃଷ୍ଟି, ଅନୁଭବ, ଅଭିଜ୍ଞତା ମୂଳକ ସତ୍ୟର ପରିପ୍ରକାଶ । ତାହାଛଡା ବହୁ ତୁଳନାତ୍ମକ ବିବରଣୀ ଓ ସମୀକ୍ଷା ମଧ୍ୟ ଏକାନ୍ତ ଭାବରେ ପ୍ରାସଙ୍ଗିକ ମନେହୁଏ । କାରଣ ମହାବିଶ୍ୱ ଓ ତାର ଆଦି କାରଣ ବିଷୟରେ ଗଭୀର ଚିନ୍ତା ପ୍ରାଚୀନ ଭାରତବର୍ଷର ଏକ ଗୌରବମୟ ଅଧ୍ୟାୟ । ଏହାର ଅବତାରଣା ଅବଶ୍ୟାମ୍ଭାବି ।

''ମହାଭାରତ'' ପୃଥିବୀର ସର୍ବଶ୍ରେଷ୍ଠ ଗ୍ରନ୍ଥରୂପରେ ସୁବିଦିତ । ମାନବର ପ୍ରକୃତ ସ୍ୱରୂପ, ତାର ଆଶା, ଆକାଙ୍କ୍ଷା, କର୍ମାବଳି, ଉଚ୍ଚଭାବନା ଚିନ୍ତା, ପ୍ରେରଣା, ଉତ୍ସାହ ଓ ହୃଦୟର ସାରବତ୍ତା, ଶୌର୍ଯ୍ୟ ବୀର୍ଯ୍ୟର କାହାଣି ଏଥିରେ ବହୁଧା ବିସ୍ତୃତ ହୋଇ ଏକାଳର

ଜନମାନସକୁ ଏକ ସ୍ୱପ୍ନିଳ ଜଗତକୁ ନେଇଯାଏ । ଏକ ବିଚିତ୍ର ଅଭିଜ୍ଞତା ଉପହାର ଦିଏ ଯାହା ସମଗ୍ର ବିଶ୍ୱ-ଗ୍ରନ୍ଥାଗାରରେ ବିରଳ । ଏଥିରେ ଏହି ମହାବିଶ୍ୱ ବିଷୟରେ ମଧ୍ୟ ଅତି ଉଚ୍ଚକୋଟିର ବର୍ଣ୍ଣନା, ଗୁଢ-ନିହିତ ଅର୍ଥ ମନୁଷ୍ୟ ଜୀବନର ପରମ ଉଦ୍ଦେଶ୍ୟ ଓ ସେଥିପାଇଁ ସିଦ୍ଧିର ପନ୍ଥା ଇନ୍ଦ୍ରଧନୁର ବର୍ଣ୍ଣାବଳିରେ ଚିତ୍ରିତ । ଏହି ଗ୍ରନ୍ଥର ମହୀୟାନ ଧାରା, ଶିକ୍ଷାର ଅପାର ସମ୍ଭାର ବିଶ୍ୱବାସୀଙ୍କୁ ସ୍ତମ୍ଭିତ କରିଦିଏ । ଏ ବିଷୟରେ ଗୋଟିଏ ତଥ୍ୟ ଏଠାରେ ବିଶେଷଭାବରେ ଉଲ୍ଲେଖନୀୟ । ୧୭୮୪ସାଲ ଅକ୍ଟୋବର ମାସ ୪ତାରିଖରେ ଭାରତର ପ୍ରଥମ ଗଭର୍ଣ୍ଣର ଜେନେରାଲ, ଉଆରେନ୍ ହେଷ୍ଟିଂସ୍, ଗୋଟିଏ ପତ୍ର ଲେଖିଥିଲେ ସେକାଳର ଇଷ୍ଟଇଣ୍ଡିଆ କମ୍ପାନୀର ଡାଇରେକ୍ଟର ନାଥେନିଆଲ୍ ସ୍ମିଥ୍‌ଙ୍କୁ । ବିଷୟ ବସ୍ତୁ ହେଲା ‘‘ମହାଭାରତ’’ । ସେ ଲେଖିଥିଲେ ଏହି ଗ୍ରନ୍ଥର ଆକାର ବିଶାଳ, ବିଷୟବସ୍ତୁ ପୌରାଣିକ ଓ ସମୟପ୍ରାୟ ୪୦୦୦ ବର୍ଷପୂର୍ବ । ଏହା କୃଷ୍ଣଦ୍ୱୈପାୟନ ବ୍ୟାସଙ୍କଦ୍ୱାରା ଲିଖିତ । ବ୍ୟାସ ଚାରିବେଦର ମଧ୍ୟ ସଂକଳନ କରିଥିଲେ । ବ୍ରହ୍ମାଙ୍କ ପ୍ରବର୍ତ୍ତିତ ଧର୍ମର ଅତି ପ୍ରାଚୀନ ଆଦି-ଗ୍ରନ୍ଥ ହେଉଛି ବେଦ । ଅନ୍ୟ ପୁରାଣମାନଙ୍କ ମଧ୍ୟରେ ‘‘ମହାଭାରତ’’ ସର୍ବଶ୍ରେଷ୍ଠ ବୋଲି ବିବେଚିତ ଏବଂ ଈଶ୍ୱରଙ୍କ ପ୍ରେରଣାରେ ରଚିତ ବୋଲି କଥିତ ଅଛି । ମହାଭାରତର ଗଭୀର ତତ୍ତ୍ୱାବଳି ବିଷୟରେ କହିବାକୁ ଯାଇ ଶ୍ରୀମଦ୍ ଭଗବତ୍‌ଗୀତା ବିଷୟରେ ଲେଖିଥିଲେ - "I hesitate not to pronounce the Geeta a performance of great originality; of a sublimity of conception, reasoning and diction, almost unequalled and a single exception amongst all the known religions of mankind........" ସେ ପୁଣି କହିଥିଲେ ଏହିସବୁ ଗ୍ରନ୍ଥପାଠରେ ରାଜକର୍ମଚାରୀ ମାନଙ୍କର ପ୍ରଜ୍ଞା ପ୍ରସାରିତ ହେବ ଏବଂ ନୀଚ ପ୍ରବୃତ୍ତି ଗୁଡ଼ିକରୁ ନିବୃତ୍ତ ହୋଇ କର୍ମନିଷ୍ଠାରେ ପର୍ଯ୍ୟବସିତ ହେବ । କେବଳ ସେମାନଙ୍କର ଦରମା ବଢ଼େଇଲେ ଲାଭହେବ ନାହିଁ । କାରଣ ସେମାନେ ବ୍ୟଭିଚାରରେ ଲିପ୍ତହୋଇ ସମାଜକୁ କଳୁଷିତ କରିବେ । କର୍ମଚାରୀମାନଙ୍କର ସଦ୍‌ଗୁଣ ଗୁଡିକ ଉପରେ କମ୍ପାନିର ଭବିଷ୍ୟତ ନିର୍ଭର କରେ । ଭାରତୀୟମାନଙ୍କର କୃତିତ୍ୱ ବିଷୟରେ ସେ ଲେଖିଥିଲେ ଯେ ସେମାନଙ୍କର ଅସଲ ପରିଚୟ ବିଶ୍ୱବାସୀ ସେମାନଙ୍କର ଲେଖାରେ ପାଇପାରିବେ । ସେଗୁଡିକର ଉଜ୍ଜ୍ୱଳ ଦୃଷ୍ଟାନ୍ତ ଶାଶ୍ୱତ ଭାବରେ ପ୍ରତିଭାତ ହୋଇ ରହିଥିବ । ଯେତେବେଳେ ଭାରତବର୍ଷରୁ ବ୍ରିଟିଶ ଶାସନ ଲୋପ ପାଇଯାଇଥିବ; ଭାରତବର୍ଷରୁ-ପ୍ରାପ୍ତ ଧନ ସମ୍ପତ୍ତି ଓ କ୍ଷମତା ଆମର ସ୍ମୃତିରୁ ଲିଭିଯାଇଥିବ, ତାର ବହୁ ଦିନ ପରେ ମଧ୍ୟ, ସେମାନଙ୍କର ଅମର ଗ୍ରନ୍ଥାବଳି ବିକଶିତ ହୋଇ ରହିଥିବେ । ତେଣୁ ସେ ମହାଭାରତର ଅନୁବାଦ ପଣ୍ଡିତମାନଙ୍କ ସାହାଯ୍ୟରେ ଓ ଜଣେ ପ୍ରସିଦ୍ଧ ଇଂରେଜ ମନିଷୀ ଉଇଲ୍‌କିନସ୍‌ଙ୍କ ଦ୍ୱାରା କରାଇଥିଲେ । ସଂସ୍କୃତ ଭାଷାର ଶିକ୍ଷା, ପ୍ରଚାର ଓ ପ୍ରସାର ନିମନ୍ତେ ସମ୍ୟକ୍ ଅନୁଦାନ

ଭିକ୍ଷା କରିଥିଲେ ଇଷ୍ଟଇଣ୍ଡିଆ କମ୍ପାନିଠାରୁ ଉଆରେନ୍ ହେଷ୍ଟିଂସ୍ । ସ୍ୱାଧିନ ଭାରତର ଏପରି ଦୃଷ୍ଟାନ୍ତ ନାହିଁ । ଏହା ଦୁଃଖର ବିଷୟ ।

ମହାଭାରତ ସାମାଜିକ, ରାଜନୀତିକ, ଶିକ୍ଷାଗତ, ବ୍ୟବହାରଗତ, ଧର୍ମତତ୍ତ୍ୱ ପୂର୍ଣ୍ଣ ଜ୍ଞାନର ଏକ ବିଶାଳ ଭଣ୍ଡାର କହିଲେ ଅତ୍ୟୁକ୍ତି ହେବନାହିଁ । ସେଥିରେ ମହାବିଶ୍ୱ ବିଷୟରେ ବହୁତଥ୍ୟ ନିହିତ ଅଛି । ଗୋଟିଏ ଦୃଷ୍ଟାନ୍ତ ଏଠାରେ ବିଶେଷଭାବରେ ଉଲ୍ଲେଖଯୋଗ୍ୟ । ବକରୂପୀ ଧର୍ମଦେବ ଯେତେବେଳେ ଯୁଧିଷ୍ଠିରଙ୍କୁ ପଚାରିଲେ ଯେ ପୃଥିବୀର ଖବର କ'ଣ ? (କାଚ ବାର୍ତ୍ତା, କିମ୍ ଆଶ୍ଚର୍ଯ୍ୟମ୍ ?) ସେତେବେଳେ ଯୁଧିଷ୍ଠିର ଉତ୍ତର ଦେଲେ ଯେ ଦେଶ ବା ସ୍ଥାନ (Space) ହେଉଛି କଡେଇ; ଆଉ ସମୟ ହେଲା କରଚୁଲି ବା ହତା । ସେମାନେ ଯାହା ରାନ୍ଧନ୍ତି ତାହାହିଁ ପୃଥିବୀର ବାର୍ତ୍ତା ହୋଇ ପ୍ରକାଶିତ ହୁଏ । ଏଥିରୁ ପ୍ରତିପନ୍ନ ହେଲା ଯେ Space-time ତତ୍ତ୍ୱ ଯୁଧିଷ୍ଠିରଙ୍କୁ ମଧ୍ୟ ଜଣାଥିଲା । ଏହା ଅତି ପ୍ରାଚୀନ ତଥ୍ୟ । ବିଜ୍ଞାନଦ୍ୱାରା ବର୍ତ୍ତମାନ ସୁପ୍ରତିଷ୍ଠିତ, ମହାବିଜ୍ଞାନୀ ଆଇନ୍‌ଷ୍ଟାଇନ୍‌ଙ୍କ କୃପାରୁ । ଆଉ ପୃଥିବୀରେ ଆଶ୍ଚର୍ଯ୍ୟ କଥା କ'ଣ? ଯୁଧିଷ୍ଠିର ଉତ୍ତର ଦେଲେ - ''ଅହନି ଅହନି ଭୂତାନି ଗଚ୍ଛନ୍ତି ଯମ ମନ୍ଦିରମ୍ , ଅନ୍ୟେ ଜୀବତ ମିଚ୍ଛନ୍ତି, କିମାଶ୍ଚର୍ଯ୍ୟମ ତଃପରମ ।'' ପ୍ରତି ଦିନ ପ୍ରତିକ୍ଷଣରେ ଜୀବମାନେ ଯମାଳୟ ଯାଉଛନ୍ତି । ମାତ୍ର ତାହା ଦେଖି ମଧ୍ୟ ଅନ୍ୟମାନେ ଚିରଦିନ ବଞ୍ଚିରହିବାକୁ ଇଚ୍ଛା କରୁଛନ୍ତି । ଏହାଠାରୁ ଆଉ ଆଶ୍ଚର୍ଯ୍ୟ କଥା କ'ଣ ହୋଇପାରେ । ଅର୍ଥାତ୍ ଅନିତ୍ୟ ସଂସାରରେ ଭ୍ରମାତ୍ମକ ନିତ୍ୟତାର ଚିନ୍ତା ଏକାନ୍ତ ଅମୂଳକ । ଜୀବନ ଦର୍ଶନରେ ଏହାଏକ ବଡ ମାଇଲଖୁଣ୍ଟ ବୋଲି ନିଶ୍ଚିତ ଭାବରେ କୁହାଯାଇପାରେ । ଏହି ସତ୍ୟ-ଦର୍ଶନରେ ଜୀବନର କର୍ମପଚ୍ଛା ଅଳିକବସ୍ତୁକୁ ତ୍ୟାଗ କରି ପ୍ରକୃଷ୍ଟ ପଥରେ ଧାବିତ ହୁଏ । ସେଥିରେ ମାନବ ସମାଜର ବହୁ ଉନ୍ନତି ସାଧିତ ହୁଏ । ମଣିଷ ମଣିଷ ମଧ୍ୟରେ ସଦ୍‌ଭାବ ବଢେ, ସହଯୋଗ ସ୍ଥାପିତ ହୁଏ । ପରସ୍ପର ମଧ୍ୟରେ ଦ୍ୱେଷ କମିଯାଏ ଓ ସମଷ୍ଟିଗତ ଜୀବନରେ ଏକ ନୂତନ ଭାବଧାରାର ପ୍ରସାରହୁଏ । ପାଶ୍ଚାତ୍ୟ ଭାବଧାରାର ପ୍ରତିଦ୍ୱନ୍ଦିତା, ଅର୍ଥଲୋଲୁପତା ସ୍ୱାର୍ଥର ଅଭିବୃଦ୍ଧି ଓ ଅନିତ୍ୟ ବସ୍ତୁ ପ୍ରତି ଅନ୍ଧ ପ୍ରବଣତା ନାଶହୁଏ । ପରମ ଭାଗବତ ଜୀବନର ପ୍ରତିଷ୍ଠା ହେବାର ସମ୍ଭାବନା ବଢ଼େ । ବିଶ୍ୱରେ ଶାନ୍ତିର ବାରି ବର୍ଷିତ ହୁଏ ।

ଋକ୍ବେଦରେ (୧୩/୨୬-୨୯) ଶାନ୍ତିର ବାଣୀ ଧ୍ୱନିତ ''ଓଁ ଦ୍ୟୌଃ ଶାନ୍ତିରନ୍ତରୀକ୍ଷଶାନ୍ତିଃ, ପୃଥିବୀ ଶାନ୍ତିରାପ ଶାନ୍ତିରୋଷଧୟ ଶାନ୍ତିଃ । ବନସ୍ପତୟଃ ଶାନ୍ତି ର୍ବିଶ୍ୱେଦେବା ଶାନ୍ତିଃ । ବ୍ରହ୍ମ ଶାନ୍ତିଃ ସର୍ବେ ଶାନ୍ତିଃ, ଶାନ୍ତିରେବ ଶାନ୍ତିଃ ।।'' ଆଜିର ବିଶ୍ୱର ଘନାୟମାନ ଅନ୍ଧକାର ମଧ୍ୟରେ ଶାନ୍ତିର ବାଣୀ ଏକ ମଧୁମୟ ପ୍ରଲେପ ସଦୃଶ । ମନୁଷ୍ୟ ମନରେ ଆଶାର ଆଲୋକ ସୃଷ୍ଟି କରେ । ଏହି ଦୃଷ୍ଟିରୁ ଭାରତର ପ୍ରାଚୀନତମ ଗ୍ରନ୍ଥ ''ବେଦ''

ଓ ପୁରାତନ ମହାସୃଷ୍ଟି, ''ମହାଭାରତ''ର ଜନମାନସ ପ୍ରତି ଏକ ବିଶେଷ ଆବେଦନ ରହିଛି । ମହାବିଶ୍ୱରେ ନିହିତ ସୃଷ୍ଟିକର୍ତ୍ତାଙ୍କର ଦିବ୍ୟ ଉଦ୍ଦେଶ୍ୟ ଓ ସନ୍ଦେଶ ଏହି ଗ୍ରନ୍ଥମାନେ ମନୁଷ୍ୟ ସମାଜକୁ ଉପହାର ଦିଅନ୍ତି । ସେହି ସଂପଦରେ ବଳୀୟାନ ହୋଇ ମାନବ ନିରାଶା ପରିହାର କରି ସାହସ ସହିତ ଜୀବନର କଠୋର, କ୍ଷଣଭଙ୍ଗୁର ପଥରେ ଆଶାବାଡି ଧରି ଅଗ୍ରସର ହୁଏ । ସେହି ଅଜ୍ଞାତ ଏବଂ ଦୁର୍ଜ୍ଞେୟ ଶକ୍ତିର ଅନୁସନ୍ଧାନରେ ବାହାରିପଡେ ମହା ଉତ୍ସାହରେ; ସେଇ ଶକ୍ତିର ପ୍ରେରଣା ବଳରେ । ଆଗେଇଯାଏ ଅନାଦି ଅନନ୍ତ ଆଡକୁ ନିର୍ଭୟରେ । ପ୍ରଗତି ପଥର ଅନ୍ତନାହିଁ । ''ଚରୈବେତି, ଚରୈବେତି ଚରୈବେତି ''।

ବିଜ୍ଞାନ ଚର୍ଚ୍ଚାରୁ ଉଦ୍‌ଭୂତ ତଥ୍ୟର ଅଙ୍ଗୁଳି ନିର୍ଦ୍ଦେଶ କେଉଁଆଡେ ? ବିଜ୍ଞାନ ତାର ଗୌରବମୟ ଐତିହ୍ୟର ବ୍ୟାଖ୍ୟାନ କରେ ଓ କହେ ଯେ.ସେ ଆଇଜାକ୍ ନିଉଟନ୍‌ଙ୍କ ମହାକର୍ଷ ତତ୍ତ୍ୱ ପାର ହୋଇ କ୍ୱାଂଟଂତତ୍ତ୍ୱ ଓ ସାଧାରଣ ଆପେକ୍ଷିକତା ବାଦର ଉଜ୍ଜ୍ୱଳ ଜଗତରେ ପ୍ରବେଶ କରିଅଛି । ଅଣୁପରମାଣୁ ଆବିଷ୍କାର ପରେ ଗଭୀରସୂତ୍ର ପର୍ଯ୍ୟବେକ୍ଷଣରେ ବର୍ତ୍ତମାନ ବିଜ୍ଞାନ ମହାବ୍ୟସ୍ତ; ସେଥିରୁ ''ସୂତ୍ରତତ୍ତ୍ୱ'' ମଧ୍ୟ ବାଦଯାଇନାହିଁ । ଅର୍ଥାତ୍ କୌଣସି କଥାକୁ ତୁଚ୍ଛମନେ ନକରି ସବୁବସ୍ତୁର ଅନ୍ୱେଷଣ, ପରୀକ୍ଷା ଓ ବିଶ୍ଳେଷଣରେ ବିଜ୍ଞାନ ତାହାର ଅନୁସନ୍ଧାନକୁ ଚଳମାନ ପ୍ରକ୍ରିୟାରେ ପରିଣତ କରିଛି । ମନୁଷ୍ୟମନରେ ଆବହମାନ କାଳରୁ ଜମିଥିବା କୁସଂସ୍କାର, ଅନ୍ଧବିଶ୍ୱାସ, ଅନ୍ଧକାରକୁ ଦୂର କରିବାରେ ସମର୍ଥ ହୋଇଛି । ଈଶ୍ୱରଙ୍କ ପ୍ରବର୍ତ୍ତିତ ନିୟମକୁ କେବଳ ଯେ ଚିହ୍ନି ପାରିଛି ତାହାନୁହେଁ, ସେ ଈଶ୍ୱରଙ୍କ ଅନ୍ତର୍ନିହିତ ଉଦ୍ଦେଶ୍ୟ, ଇଚ୍ଛା ଓ ତାଙ୍କର ଆପାତ ଦୁର୍ଜ୍ଞେୟ ମନକୁ ଜାଣିବାପାଇଁ ସବୁବେଳେ ବଦ୍ଧ ପରିକର । ବିଜ୍ଞାନ ତାର ପ୍ରଗତି ପଥରେ ମାତ୍ର ତିନିଶହ ବର୍ଷ ଅଗ୍ରସର ହୋଇଛି । ସମସ୍ତ ଅନ୍ଧକାରକୁ ଦୂର କରିବା ପାଇଁ ବହୁବାଟ ଚାଲିବାକୁ ପଡିବ । ବିଜ୍ଞାନକୁ ପାରହେବାକୁ ହେବ, ଅଗମ୍ୟପଥ, ଅଦୃଶ୍ୟ ଜଗତ୍, ଅନ୍ତହୀନ ପ୍ରହେଳିକା । କେତେ ଯେ ରହସ୍ୟ ବିଶ୍ୱରେ ଲୁଚି ରହିଛି ତାହାର ସୀମାନାହିଁ । ଯଥା, ଆଲୋକିତ ମଣ୍ଡଳ ସମଗ୍ର ବିଶ୍ୱର ଏକ ଦଶମାଂଶ । ଆଉ ନବେ ପ୍ରତିଶତ ଅଂଶ ଘୋର ତମସାବୃତ, ଅନ୍ଧକାରର ଘେରରେ; ତାହା ବିଷୟରେ କିଛି ହେଲେ ଜଣାନାହିଁ । ଏପରିକି ଆଲୋକ ମଣ୍ଡଳ ମଧ୍ୟ ସୁଦୂର ପ୍ରସାରିତ କୋଟି କୋଟି ଆଲୋକ ବର୍ଷ ଦୂରରେ ଅବସ୍ଥିତ । ତାହା ଏକ ବିଶାଳ ପ୍ରଶ୍ନବାଚୀ ସୃଷ୍ଟି କରିଛି ।

ମହାବିଶ୍ୱରେ କେତେକ ମହା ମନିଷୀ ଓ ପଦାର୍ଥ ବିଜ୍ଞାନୀମାନେ ପୁଣି ସୂଚନା ଦେଲେଣି ଯେ ଏହି ବ୍ରହ୍ମାଣ୍ଡ ଜନ୍ମ ହୋଇଥିଲା ଆଉ ଏକ ବିଶ୍ୱରେ । ସେଠାରେ ଦୁଇ କଣାର ଘୋର ସଂଘର୍ଷରେ ଏହି ବିଶ୍ୱ ବିନ୍ଦୁରୂପେ ପ୍ରତିଭାତ ହେଲା । ସେଥିରୁ ମହାସିନ୍ଧୁ ରୂପେ କ୍ରମବର୍ଦ୍ଧିତ, କ୍ରମ ପ୍ରସାରିତ, କ୍ରମ ବିସ୍ଫୋରିତ ହୋଇ ବର୍ତ୍ତମାନ ଆକାର ଧାରଣ କରିଛି ।

ଏହାର ଏକ ସ୍ୱତନ୍ତ୍ର ସ୍ଥିତି ଥିଲେ ମଧ, ଏହାକୁ ଆଉ ଏକ ଶକ୍ତି, ବ୍ରହ୍ମାଣ୍ଡ ବା ବିଶ୍ୱ ନିଜଆଡକୁ ଟାଣି ନେଉଛି ପ୍ରତି ସେକେଣ୍ଡରେ ୪୨୫ମାଇଲ ବେଗରେ । ଏହି ରହସ୍ୟର କୌଣସି ସମାଧାନ ଏପର୍ଯ୍ୟନ୍ତ ହୋଇନାହିଁ । ରହସ୍ୟପରେ ରହସ୍ୟ ବିଜ୍ଞାନୀମାନଙ୍କୁ ଅସ୍ଥିର କରିଦେଉଛି । ଅନନ୍ତ ସମ୍ଭାବନା ଥିଲେ ମଧ, ସେମାନେ ନିଜ ପ୍ରୟାସରୁ ବିଚଳିତ ନହୋଇ ନିରଳସ ପରିଶ୍ରମ କରି ନୂତନ ତଥ୍ୟ ପରିବେଶଣରେ ସଦା ନିଯୁକ୍ତ । ସେମାନଙ୍କର କ୍ଲାନ୍ତି ନାହିଁ, ବିଶ୍ରାମ ନାହିଁ, ଅବସାଦ ନାହିଁ, ବିରାମ ନାହିଁ । ନୂଆ ନୂଆ ଆବିଷ୍କାରରେ ସବୁବେଳେ ନିଜକୁ ଉତ୍ସର୍ଗ କରି ଦେଇଛନ୍ତି ସେମାନେ । ଏ ଯୁଗର ମହାବିଜ୍ଞାନୀମାନେ ଋଷିପ୍ରତିମ, ସତ୍ୟର ଉପାସକ ।

''ଯଦ୍‌ଯଦା ଚରତି ଶ୍ରେଷ୍ଠଃ ତତ୍ ତଦ୍ ଏବେ ତରୋଜନା ।

ସଃ ଯତ୍ ପ୍ରମାଣଂ କୁରୁତେ ଲୋକୋସ୍ତଦନୁବର୍ତ୍ତିତେ ।।'' ଅର୍ଥହେଲା, ମନୁଷ୍ୟ ମଧରେ ଯେଉଁମାନେ ଶ୍ରେଷ୍ଠ ସେମାନଙ୍କର ଚରିତ୍ର ଅନ୍ୟମାନେ ଅନୁସରଣ କରିଥାଆନ୍ତି । ସେମାନେ ଯାହା ପ୍ରମାଣ କରନ୍ତି, ଲୋକେ ତାହାହିଁ ଗ୍ରହଣ କରନ୍ତି । ଏହାହିଁ ଗୀତାର ବାଣୀ । ଏଥିରୁ ଜଣାପଡୁଛିଯେ ଭଗବାନ ଶ୍ରୀକୃଷ୍ଣ ସେଇସବୁ ତତ୍ତ୍ୱ ନାନା ଭାବରେ ବିଭିନ୍ନ ଲୋକଙ୍କ ମାଧମରେ ଭିନ୍ନ ଭିନ୍ନ ରୂପରେ ପ୍ରକାଶ କରୁଅଛନ୍ତି । ''କରି କରାଉ ଥାଏ ମୁହିଁ । ମୋ ବିନୁ ଅନ୍ୟ ଗତି ନାହିଁ ।'' ଭାଗବତର ଉକ୍ତି ସାରବସ୍ତୁ ବୋଲି ମନେହୁଏ ।

ଏପରିକି ମହାବିଜ୍ଞାନୀମାନେ ମଧ ଜଡବାଦୀ ନୁହଁନ୍ତି । ମାନବିକ ଓ ମାନସିକସତ୍ତାର ସ୍ଥିତି ସୁଦୃଢ଼ ଭାବରେ ପ୍ରଭାବିତ କରିଅଛି ବହୁ ଚିନ୍ତାନାୟକ ବିଜ୍ଞାନୀମାନଙ୍କୁ । ତାଙ୍କ ଭିତରୁ ଜଣେ ଶ୍ରେଷ୍ଠ ବୈଜ୍ଞାନିକ ହେଉଛନ୍ତି Sir James Jeans । ତାଙ୍କର ପ୍ରସିଦ୍ଧ ପୁସ୍ତକ "The mysterious Universe" ରେ ସେ ଲେଖିଛନ୍ତି ଯେ ଆଜି ପଦାର୍ଥ ବିଜ୍ଞାନୀମାନଙ୍କ ମଧରେ ବହୁଳ ଭାବରେ ମତର ଐକ୍ୟ ପ୍ରତିଷ୍ଠିତ ହୋଇଛି, ପ୍ରାୟ ସମ୍ପୂର୍ଣ୍ଣ ଏକମତ ବୋଲି କହିଲେ ଚଳିବ । ଜ୍ଞାନର ପ୍ରବାହ ଏକ ବାସ୍ତବତା ପ୍ରତି ଧାବମାନ ଯାହା ଜଡନୁହେଁ ବା ଯନ୍ତ୍ରନୁହେଁ । ମହାବିଶ୍ୱ ଗୋଟିଏ ମହାନ ଚିନ୍ତାଧାରାବୋଲି ଦୃଷ୍ଟହୁଏ; ଏକ ମହାଯନ୍ତ୍ରରୂପେ ନୁହେଁ । ଆଉ ଜଣେ ବିଶିଷ୍ଟ ମନିଷୀ Heisenberg ଙ୍କ ଭାଷାରେ ''ଅଣୁ ଗୁଡିକ ବସ୍ତୁ ନୁହେଁ, ଯେତେବେଳେ ଆମେ ଅଣୁସ୍ତରକୁ ଓହ୍ଲାଇଯାଉ, ସେତେବେଳେ ବାହ୍ୟ ଜଗତ ଯାହା ଦେଶ-କାଳରେ ଅବସ୍ଥିତ ତାହା ଆଉ ସ୍ଥିତିବାନ ମନେ ହୁଏ ନାହିଁ । ପଦାର୍ଥ ବିଦ୍ୟାର ଗାଣିତ୍ୟିକ ପରିସଂଖ୍ୟାନ ଓ ପ୍ରତୀକଗୁଡିକ କେବଳ ସମ୍ଭାବନା ଆଡକୁ ଦୃଷ୍ଟି ନିକ୍ଷେପକରେ । ପ୍ରକୃତ ପକ୍ଷେ ବାସ୍ତବତା, ସତ୍ୟତା, ବା ବିଷୟବସ୍ତୁ ପ୍ରତି ନୁହେଁ ।'' (ଆତ୍ମଜୀବନୀ) ସାର ଆର୍ଥର ଏଡିଂଟନ ତାଙ୍କର ବିଖ୍ୟାତ ପୁସ୍ତକ "Nature of the

Physical World" ରେ ଲେଖିଛନ୍ତି ‘‘ପଦାର୍ଥ ବିଜ୍ଞାନ ଜଗତରେ ଆମ୍ଭେମାନେ ଆମର ଦୈନନ୍ଦିନ ଜୀବନର ଛାୟା-ନାଟକର ପ୍ରତିଫଳନ ଦେଖୁଁ ।’’ ଏହି ବିଷୟର ପୁଙ୍ଖାନୁପୁଙ୍ଖ ଚିତ୍ରଣ କଲେ ନିମ୍ନଲିଖିତ ଛବି ଭାସିଉଠେ । ତାହାର ବିଶେଷ ଉଲ୍ଲେଖ ବିଧେୟ । ଆଇନଷ୍ଟାଇନଙ୍କ ଆବିଷ୍କାର $E = Mc^2$ ସିଦ୍ଧାନ୍ତ ଦ୍ୱାରା ଏହା ପ୍ରତିପାଦିତ ହେଲା ସମଗ୍ର ଜଗତରେ ଶକ୍ତିର ପ୍ରାଧାନ୍ୟ । ସମସ୍ତ ବସ୍ତୁ, ଶକ୍ତି ଜଗତରେ ରୂପାନ୍ତରିତ ହୋଇଅଛି । କ୍ୱାଂଟଂ ପଦାର୍ଥ ବିଦ୍ୟାରେ ଓ ଆଇନ୍‌ଷ୍ଟାଇନ୍‌ଙ୍କ ମହାକର୍ଷଯୋଗୁ, ମହାବିଶ୍ୱରେ ଅ-ପଦାର୍ଥର ଅତିପ୍ରଧାନ୍ୟ ପରିଲକ୍ଷିତ ହୁଏ । ଏହି ଉଭୟକ୍ଷେତ୍ରରେ ବସ୍ତୁ ଓ ଶକ୍ତିର ରୂପାନ୍ତର ଘଟୁଅଛି । ପୁଣି ଶକ୍ତିର ଅନୁପ୍ରବେଶ ଘଟୁଛି ଏକ ଅଜ୍ଞାତ-ବସ୍ତୁ ବା ଅନ୍ୟ କିଛି ଅଜଣାର ପ୍ରାଙ୍ଗଣରେ । ଏହି ଅଜ୍ଞାତ ବସ୍ତୁ Sri James Jens ଙ୍କ କଥିତ ‘‘ମହାନ ଚିନ୍ତା’’ ହୋଇପାରେ । ଯାଁର ଅର୍ଥାର ଏଡିଂଟନଙ୍କ ଭାଷାରେ "Stuff of the world is mind stuff" ବା ଜାଗତିକ ବସ୍ତୁ ପ୍ରକୃତରେ ମାନସିକ ବସ୍ତୁ ମଧ ହୋଇପାରେ । ବିଖ୍ୟାତ ଜ୍ୟୋତିପଦାର୍ଥବିଦ୍ Firsoff ତାଙ୍କର ପୁସ୍ତକ "Life, mind and galaxies" ରେ ଲେଖିଛନ୍ତି ଯେ ମନ ଏକ ବିଶ୍ୱ-ପ୍ରସ୍ତୁତ-ବସ୍ତୁ ବା ମହାକର୍ଷ ଓ ବିଜୁଳିଶକ୍ତି ଭଳି ଶକ୍ତି ସଂଘର୍ଷରୁ ସୃଷ୍ଟ । ସେଥିରେ ଯେଉଁ ସୂତ୍ର ପ୍ରୟୋଗହୁଏ ତାହା ଆଇନଷ୍ଟାଇନଙ୍କ ‘‘ଶକ୍ତି ସୂତ୍ର’’ ଭଳି ଏକ ତଥ୍ୟ । ଏହି ମାନସ-ବସ୍ତୁ ପଦାର୍ଥ-ବିଶ୍ୱର ବସ୍ତୁ ସହିତ ସମାନତା ମଧ ଲାଭକରିପାରେ । ସେ ଏହି ମାନସ ବସ୍ତୁର ନାମିକରଣ କରିଛନ୍ତି "mindous" ବୋଲି ।

ଏଥିରୁ ପ୍ରମାଣିତ ହେଉଛି ଯେ ଆଧୁନିକ ପଦାର୍ଥ ବିଦ୍ୟାର ଜଡସତ୍ତା ହେଉ ବା ବିଶ୍ୱସତ୍ତା ହେଉ, ତାହା ଶେଷରେ ମାନସ-ସତ୍ତାରେ ପରିଣତ ହେଉଛି । ଶେଷରେ ସବୁବସ୍ତୁ ମନ ଉପରେ ନିର୍ଭରଶୀଳ ହେବ ବୋଲି ଇଙ୍ଗିତ ମିଳୁଛି । ଏହି ତଥ୍ୟର ଆଲୋକରେ ବସ୍ତୁ ସତ୍ତାର ପ୍ରଥମ ପ୍ରବେଶ ନା ମାନସ ସତ୍ତାର, ତାହା ନିର୍ଦ୍ଧାରଣ କରିବା ଅସମ୍ଭବ । ଯେପରି ବୃତ୍ତର (Circle) ପ୍ରାରମ୍ଭ କେଉଁଠି ତାହା ନିର୍ଣ୍ଣୟ କରିବା ଦୁଷ୍କର । ମାତ୍ର ରେଖା ଏକିଭୂତ ହୋଇ ବୃତ୍ତ ମଧରେ ବୃତ୍ତାୟିତ । ଏହାହିଁ କୁହାଯାଇ ପାରେ । ପ୍ରତ୍ୟକ୍ଷ ଜଡସତ୍ତା ଏକ ଛାୟା-ବାଣ । ଆମେ ବାଣ ଦେଖିବାରେ ବ୍ୟସ୍ତ । ଯେଉଁ ଐନ୍ଦ୍ରିଜାଲିକ ବିଶ୍ୱ-ବାଣ ପ୍ରସ୍ତୁତ କରିଛି, ପଛକୁ ଅନାଇ ତାହାର ଅସ୍ତିତ୍ୱ ହୃଦୟଙ୍ଗମ କରିବାର କ୍ଷମତା ଆମରନାହିଁ । କେବଳ କେତେକ ଅନୁମାନ ନିର୍ଭର, ଇଙ୍ଗିତ-ନିର୍ଭର, ଆଭାସ-ନିର୍ଭର ତଥ୍ୟ ଉପରେ ଆମର ସୀମିତ ନିର୍ଣ୍ଣୟ ଆରୋପିତ ହୁଏ । ପୁଣି କେତେକାଂଶ ଏକାବେଳେକେ ଅଜଣା ରହିଯାଏ । ଏଥିରୁ ପ୍ରତୀୟମାନ ହେବ ଯେ ମହାବିଶ୍ୱ ବିଷୟରେ ସତ୍ୟ ନିର୍ଦ୍ଧାରଣ କେବଳ ଯେ ଇନ୍ଦ୍ରିୟ-ପ୍ରତ୍ୟକ୍ଷ ଅନୁଭବ ଜ୍ଞାନ ଉପରେ ନିର୍ଭରଶୀଳ, ତାହାନୁହେଁ । ଇନ୍ଦ୍ରିୟର ପରପାରରେ ଯେଉଁ

ସତ୍ୟ ଅଛି ତାକୁ ଅନୁଧାବନ କରିବାରେହିଁ ସାର୍ଥକତା ରହିଛି । କାରଣ ଇନ୍ଦ୍ରିୟ ସାହାଯ୍ୟରେ ଆମ୍ଭେମାନେ ବସ୍ତୁ ଜଗତର ଅତି ସାମାନ୍ୟ ଅଂଶ ଜାଣିବାରେ ସକ୍ଷମ ହେଉ । ଏହାର ସୀମା ଅତି ସଂକୀର୍ଣ୍ଣ । ଶବ୍ଦ-ଆଲୋକର ତରଙ୍ଗର ଅତି କ୍ଷୁଦ୍ର ଅଂଶ ଆମର ଅନୁଭବ, ଉପଲବ୍ଧି ବା ଜ୍ଞାନର ପରିସରଭୁକ୍ତ ହୁଏ । ବହିର୍ବିଶ୍ୱରେ ଯେଉଁ ଅସାମାନ୍ୟ ଅମାପ, ଅସୀମ, ଅଜ୍ଞାତ ଜଗତ ରହିଛି ସ୍ପନ୍ଦନର, ତାହା କେବଳ ଅନୁମେୟ । ଇନ୍ଦ୍ରିୟଦ୍ୱାରା ପ୍ରମାଣିତ ନୁହେଁ । କେତେକ ବିଜ୍ଞାନୀ ବାସ୍ତବବାଦୀ । ସେମାନେ ତାଙ୍କର ବିଷୟ ବୁଦ୍ଧିରୁ ଉତ୍ପନ୍ନ ପଦ୍ଧତିରେ ପରମ ବାସ୍ତବତାର ରୂପରେଖ ନିର୍ଣ୍ଣୟରେ ତତ୍ପର । ମାତ୍ର ବିଶ୍ୱର ସବୁକିଛି ପ୍ରତ୍ୟକ୍ଷ ଉପାଦାନ ଉପରେ ନିର୍ଭରଶୀଳ ନୁହେଁ । ତେଣୁ ଏହି ସୀମିତ ଆଧାର ଉପରେ ଗଠିତ ଜଗତ୍-ଧାରଣା ସମ୍ପୂର୍ଣ୍ଣ ସତ୍ୟକୁ ଉଦ୍‌ଘାଟନ କରିବାରେ ଅସଫଳ ଓ ଅସମର୍ଥ । ଏହି ପରିସ୍ଥିତିରେ ପରୋକ୍ଷଜ୍ଞାନର ପ୍ରୟୋଗ ଅବଶ୍ୟମ୍ଭାବୀ ହୋଇପଡେ । ଭାରତୀୟ ଚିନ୍ତାଧାରାରେ ପରୋକ୍ଷଜ୍ଞାନର ପ୍ରଭାବ ଅପ୍ରତିରୋଧ । ଆର୍ଯ୍ୟଋଷି, ଆଚାର୍ଯ୍ୟ, ମହାମନୀଷିମାନେ ଅତିନ୍ଦ୍ରିୟ ଆଧାତ୍ମିକ ଜ୍ଞାନର ପ୍ରୟୋଗ କରି ସତ୍ୟ ସାଧନରେ ବ୍ରତୀ ହୋଇଅଛନ୍ତି । ସେହି ଅପରୋକ୍ଷ ଅନୁଭୂତିର ମାଧ୍ୟମରେ ସେମାନେ ସତ୍ୟରେ ଉପନୀତ ହୋଇଅଛନ୍ତି । ବେଦ, ବେଦାଙ୍ଗ, ସୂତ୍ର, ଦର୍ଶନ, ଅନ୍ୟଶାସ୍ତ୍ରରୁ ଜ୍ଞାନଲାଭ କରି ସେମାନେ ଜୀବନରେ ସତ୍ୟସାଧନରେ ଅଗ୍ରସର ହୋଇ ସିଦ୍ଧିଲାଭ ମଧ୍ୟ କରିଛନ୍ତି । ମହାବିଶ୍ୱର ରହସ୍ୟ ସେମାନେ ପୂର୍ଣ୍ଣପ୍ରାଣରେ ଉପଲବ୍ଧି କରି ''ଦ୍ରଷ୍ଟା''ର ଆସନକୁ ଉନ୍ନିତ ହୋଇଅଛନ୍ତି ।

ଭାରତର ଜ୍ଞାନ ଭଣ୍ଡାରରେ ଯେତେ ରତ୍ନ ଅଛି ତାହାମଧ୍ୟରେ ଶ୍ରୀମଦ୍ ଭଗବତ ଗୀତା ସର୍ବୋତ୍କୃଷ୍ଟ ବୋଲି ଦ୍ୱିଧାହୀନ ଭାବରେ କୁହାଯାଇପାରେ । ସେଥିରେ ଶ୍ରୀକୃଷ୍ଣ ଗୁହ୍ୟତଥ୍ୟ ଗୁଡିକ ପ୍ରାଞ୍ଜଳ ଭାବରେ ବୁଝାଇ କହିଛନ୍ତି । ଗୀତାର ନବମ ଅଧ୍ୟାୟରେ ସେ ନିଜତ୍ୱ ପ୍ରକାଶ କରି କହିଛନ୍ତି ଯେ ଅବ୍ୟକ୍ତ ମୂର୍ତ୍ତିରେ ସେ ସମସ୍ତ ବିଶ୍ୱରେ ପରିବ୍ୟାପ୍ତ ହୋଇ ରହିଛନ୍ତି । ପ୍ରାଣୀସମଗ୍ର ତାଙ୍କ ମଧ୍ୟରେ ଅବସ୍ଥାନ କରନ୍ତି । ''ଯେପରି ବାୟୁ ମହାଗତିରେ ଆକାଶମଧ୍ୟରେ ଗତିକରେ, ସେହିପରି ସବୁପ୍ରାଣୀ ମୋର ବ୍ୟାପ୍ତିରେ ଅବସ୍ଥାନ କରନ୍ତି । ଯେତେବେଳେ 'କଳ୍ପ' ଶେଷହୁଏ ସେତେବେଳେ.ସେମାନେ ମୋର ସୃଷ୍ଟ ପ୍ରକୃତି ମଧ୍ୟରେ ପ୍ରବେଶ କରନ୍ତି । ମୁଁ ପରବର୍ତ୍ତୀ କଳ୍ପ-ପ୍ରାରମ୍ଭରେ ସେମାନଙ୍କୁ ପୁଣି ଉଜ୍ଜୀବିତ କରେ । ''ପ୍ରକୃତି''କୁ ପ୍ରେରଣା ପ୍ରଦାନ କରି ଏହି ମହାବିଶ୍ୱର ଅଧିବାସୀମାନଙ୍କୁ ବାରମ୍ବାର ପ୍ରେରଣ କରେ । ଏହି ପ୍ରାଣୀମାନେ ପ୍ରକୃତିର ଅଧୀନରେ ଏକାବେଳେକେ ଅବଶହୋଇ ରହନ୍ତି । ସେମାନଙ୍କର କୌଣସି ନିଜତ୍ୱ ନାହିଁ । ମୋର ନିକଟସ୍ଥ ଅବସ୍ଥିତି ହେତୁ କ୍ଷମତାଶୀଳ ହୋଇ, ସବୁ ସ୍ଥାବର ଓ ଜଙ୍ଗମ ବସ୍ତୁମାନଙ୍କୁ, ପ୍ରକୃତି ଉତ୍ପାଦନ କରିପାରେ । ଏହି କାରଣରୁ

ସମଗ୍ର ବିଶ୍ୱ ଚଳମାନ ହୋଇ ଗତି କରିଥାଏ । ମହାମୂର୍ଖମାନେ ମୋତେ ମାନବରୂପୀ ବୋଲି ଚିନ୍ତା କରି ଅବଜ୍ଞା ଦେଖାନ୍ତି । ସେମାନେ ମୋର ମହେଶ୍ୱର ରୂପରେ କ୍ଷମତାପନ୍ନ-ପ୍ରକୃତି ବିଷୟରେ ଅଜ୍ଞ ।'' ପୁଣି, ଗୀତାର ଚତୁର୍ଦ୍ଦଶ ଅଧ୍ୟାୟରେ ଶ୍ରୀକୃଷ୍ଣ କହିଛନ୍ତି, ''ମୋର ଯୋନି ମହତ୍‌ବ୍ରହ୍ମ ରୂପରେ ପ୍ରକାଶିତ । ଏହି ମହତବ୍ରହ୍ମହିଁ ପ୍ରକୃତି । ମୁଁ ସେଥିରେ ବୀଜ ସଂଚାର କରେ । ସେଥିରୁ ସବୁ ପ୍ରାଣୀମାନଙ୍କର ଜନ୍ମ ହୁଏ । ଯେଉଁଠାରେ ଯେତେ ଯୋନିରେ ପ୍ରାଣୀମାନେ ଜାତ ହୁଅନ୍ତି ସେଗୁଡିକର ଗର୍ଭ ହେଲା ପ୍ରକୃତି; ସେହିଁ ମହତ୍ ଜୋନି । ମୁଁ ବୀଜପ୍ରଦ ପିତା ।'' ବିଶ୍ୱ ସୃଷ୍ଟି ରହସ୍ୟ ପୂର୍ବ ବର୍ଣ୍ଣିତ ପଦ୍ଧତିରେ ସୁସ୍ପଷ୍ଟ ଭାବରେ ପରିସ୍ଫୁଟ ଶ୍ରୀକୃଷ୍ଣଙ୍କର ଅନବଦ୍ୟ ଭାଷାରେ । ପ୍ରକୃତି ହେଉଛି ସର୍ବ ପରିବ୍ୟାପ୍ତ ମହା-ମାଧମ । ପ୍ରକୃତିଦ୍ୱାରା ବିଶ୍ୱ ଉତ୍‌ପନ୍ନ ହୋଇଛି । ପ୍ରକୃତି ହେଉଛି ମହତ୍-ଯୋନି । ସେଥିରେ ବୀଜ-ପ୍ରଦାନ କରନ୍ତି ସୃଷ୍ଟିକର୍ତ୍ତା । ସେଥିରୁ ସୃଷ୍ଟହୁଏ ଏହି ମହାବିଶ୍ୱ । ଏହା କେବଳ ଦୃଶ୍ୟମାନ ଜଗତ ନୁହେଁ । ଯେତେ ଅଦୃଶ୍ୟ ଜଗତ ରହିଛି ତାହା ସୃଷ୍ଟିକର୍ତ୍ତାଙ୍କର ବୀଜରୁ ସୃଷ୍ଟ ହୋଇଛି । ଏହି ବିଶ୍ୱବ୍ରହ୍ମାଣ୍ଡର ପରିକଳ୍ପନା କରିବା ଅସମ୍ଭବ । ଅତିବଡି ଜଗନ୍ନାଥ ଦାଶ ଏ ବିଷୟରେ ତାଙ୍କର ପ୍ରଣିତ ଭାଗବତରେ ଲେଖିଛନ୍ତି ଯେ ବ୍ରହ୍ମାଣ୍ଡ ମାଳମାଳ ହୋଇ ଶ୍ରୀକୃଷ୍ଣଙ୍କର ଲୋମକୁପରେ ବିରାଜମାନ କରୁଛନ୍ତି । ନାରାୟଣ ସୁକ୍ତରେ ମଧ ଅନନ୍ତ ପ୍ରସାରୀ ଈଶ୍ୱରଙ୍କର ବୈଚିତ୍ର୍ୟମୟ ବର୍ଣ୍ଣନା କରାଯାଇଅଛି । ବିଜ୍ଞାନର "Singularity principle ବା ଏକକତତ୍ତ୍ୱକୁ ଶେଷସୀମା ପର୍ଯ୍ୟନ୍ତ ପ୍ରସାରିତ କଲେ ସୃଷ୍ଟିକର୍ତ୍ତାଙ୍କର ପ୍ରକୃତ ସ୍ୱରୂପ ବିକଶିତ ହୁଏ । ବୈଜ୍ଞାନିକ ମାନଙ୍କର ମତକୁ ଆମର ଶାସ୍ତ୍ରମାନଙ୍କରେ ବର୍ଣ୍ଣିତ ସର୍ବଶେଷ ବାସ୍ତବତା ବା ଚୁଡାନ୍ତ ସତ୍ୟ ସହିତ ତୁଳନାକରି ସାମଞ୍ଜସ୍ୟ-ପୂର୍ଣ୍ଣ ତଥ୍ୟରେ ଉପନୀତ ହେବାର ସମ୍ଭାବନା ଉଜ୍ଜ୍ୱଳ । କାରଣ, ଯେପରି ଅଧିକାଂଶ ରାସ୍ତା ରାଜଧାନୀ ଆଡେ ଅଗ୍ରସର ହୁଏ, ସେହିପରି ସବୁମତ ଓ ସବୁପଥ ଈଶ୍ୱରାଭିମୁଖୀ ହେବାକୁ ବାଧ । କାରଣ ସେ ହେଉଛନ୍ତି ସର୍ବସାରତତ୍ତ୍ୱ ।

ଏଥର ପ୍ରଶ୍ନହେଲା ବିଜ୍ଞାନ ଯେପରି ତାହାର ପ୍ରୟୋଗଶାଳା ମାଧମରେ ପରୀକ୍ଷା କରି ସତ୍ୟାସତ୍ୟ ନିରୁପଣ କରେ, ସେହିପରି ଆଧ୍ୟାତ୍ମବାଦୀଙ୍କ ଶେଷତତ୍ତ୍ୱ ନିରୁପଣ କରିବାର ପଥ୍ କଣ ? ଯନ୍ତ୍ର କଣ? ପ୍ରୟୋଗଶାଳା କେଉଁଠି ? ଏବଂ ସେହିସର୍ବଶେଷ ବାସ୍ତବତାର ପ୍ରମାଣ କଣ ? ଆଗରୁ କହିଛି, ଅତ୍ରିମୁନି, (ଯେ ନ୍ୟାୟଶାସ୍ତ୍ର ପ୍ରଣୟନ କରିଥିଲେ) ଲେଖିଥିଲେ, ''ପ୍ରତ୍ୟକ୍ଷ, ପରୋକ୍ଷ, ଅନୁମାନ, ସିଦ୍ଧା ପ୍ରମାଣାନି ।'' ଈଶ୍ୱର ବସ୍ତୁକୁ ଉପଲବ୍ଧ କରିବାକୁ ହେଲେ ତାହାର ପ୍ରତ୍ୟକ୍ଷ ପ୍ରମାଣ କଣ ହୋଇପାରେ ? ଈଶ୍ୱରଙ୍କ ସ୍ଥିତି ବ୍ୟାପକତା କେବଳ ଅନୁଭୂତି-ନିର୍ଭର; ତାଙ୍କର ସ୍ପର୍ଶ ଅନ୍ତଃ କରଣରେ ଜ୍ଞାତହୁଏ । ପ୍ରୟୋଗଶାଳାରେ

ଯେପରି ନାନାବିଧ ଯନ୍ତ୍ର ଓ ନାନା ଧରଣର ବସ୍ତୁ ସଂମିଶ୍ରଣର ପ୍ରୟୋଗରେ ପରୀକ୍ଷା ସାଧିତ ହୁଏ; ସେହିପରି ପରମ-ତତ୍ତ୍ୱ ଜାଣିବା ନିମନ୍ତେ କେତେକ ଆଧାତ୍ମିକ ସୋପାନ ଆରୋହଣ କରିବାକୁ ପଡେ । ମହାଜନମାନେ ଏହି ପଦ୍ଧତିରେ ଈଶ୍ୱରଙ୍କୁ ହୃଦୟଙ୍ଗମ କରିଅଛନ୍ତି । ଏହି ପଦ୍ଧତି ''କ୍ରିୟାଯୋଗ'' ନାମରେ ଅଭିହିତ । ଗୀତାରେ ଶ୍ରୀକୃଷ୍ଣ କହିଛନ୍ତି ଯେ ସେ ଏହି ଯୋଗ ପଦ୍ଧତି ପ୍ରଥମେ ବିବସ୍ୱାନଙ୍କୁ ଜଣାଇଥିଲେ ମନୁ ତାଙ୍କଠାରୁ ଶିକ୍ଷାକଲେ । ମନୁଙ୍କଠାରୁ ଇକ୍ଷ୍ୱାକୁ ଶିଖିଲେ । ଶେଷରେ, କାଳକ୍ରମର ଆବର୍ତ୍ତନରେ, ଏହି ଯୋଗ ନଷ୍ଟ ହୋଇଯାଇଅଛି । ଶ୍ରୀକୃଷ୍ଣ ଏହି ଯୋଗ ଅର୍ଜୁନଙ୍କୁ କହିଲେ । ଯୋଗର ପ୍ରକାଶ ବହୁଳ । ଏହା ଗୋଟିଏ ପଦ୍ଧତିରେ ସମ୍ପୂର୍ଣ୍ଣରୂପେ ଆବଦ୍ଧ ନୁହେଁ । ତାହାର ଭିନ୍ନ ଭିନ୍ନ ସ୍ୱରୂପ ବର୍ଣ୍ଣନା କରି ଶ୍ରୀକୃଷ୍ଣ ଗୀତାର ଚତୁର୍ଥ ଅଧାୟରେ ସବିଶେଷ ବର୍ଣ୍ଣନା କରିଛନ୍ତି । ''ଯଜ୍ଞ'' ଏକ ଈଶ୍ୱର ପ୍ରାପ୍ତିର ପ୍ରଣାଳି ।

ଶ୍ରୀମଦ୍ ଭାଗବତ ଗୀତାର ୪ର୍ଥ ଅଧାୟର ୨୪ ଶ୍ଳୋକରୁ ୩୪ଶ୍ଳୋକ ନିମ୍ନଲିଖିତ ଭାବେ ଉଦ୍ଧୃତ ହେଲା । ଏହାର ଭାବାର୍ଥ ମଧ ଉଦ୍ଧୃତିପରେ ବର୍ଣ୍ଣିତ ହୋଇଅଛି । ଏହି ଶ୍ଳୋକ ଗୁଡିକର୍ ବିଶେଷ ତାତ୍ପର୍ଯ୍ୟ ରହିଛି । କାରଣ ସାଧାରଣତଃ ଲୋକେ ''ଯଜ୍ଞ'' କହିଲେ ବିଧିବ୍ୟବସ୍ଥା ଅନୁସାରେ ପ୍ରଚଳିତ ପ୍ରଣାଳିରେ ମନ୍ତ୍ର ପାଠ ସହକାରେ ଘିଅର ଆହୁତି ପ୍ରଦାନ କରି ହୋମ ପ୍ରକ୍ରିୟା ପରି ଏକ ନିର୍ଦ୍ଧାରିତ ଧାର୍ମିକ ପ୍ରକ୍ରିୟାକୁ ବୁଝିଥାଆନ୍ତି । ମାତ୍ର ଯଜ୍ଞର ପ୍ରକୃତ ଅର୍ଥ କେବଳ ଏହି ଘୃତାହୁତିରେ ଆବଦ୍ଧ ନୁହେଁ । ଏହାର ଅର୍ଥ ସୁଦୁର ପ୍ରସାରୀ । ଏହାର ବୃତ୍ତ ବିଶାଳ । ଏହା ମନୁଷ୍ୟର ବିଭିନ୍ନ ପ୍ରଚେଷ୍ଟା, ପ୍ରକଳ୍ପ, ଉତ୍ସର୍ଗୀକୃତ ପ୍ରୟାସ, (enterprise) ଇତ୍ୟାଦିକୁ ମଧ ବ୍ୟାପୃତ । ଏହାର ପ୍ରଶସ୍ତି ସୀମାହୀନ । ଏହାର କେତେକ ଉଦାହରଣ ନିମ୍ନଲିଖିତ ଶ୍ଳୋକ ଗୁଡିକରେ ଶ୍ରୀକୃଷ୍ଣ ବଖାଣିଛନ୍ତି ।

''ବ୍ରହ୍ମାର୍ପଣଂ ବ୍ରହ୍ମହବି ବ୍ରହ୍ମାଗ୍ନୌ ବ୍ରହ୍ମଣା ହୁତମ୍
ବ୍ରହ୍ମୈବ ତେନ ଗନ୍ତବ୍ୟଂ ବ୍ରହ୍ମକର୍ମ ସମାଧିନା ।।
ଦେବ ମେବାପରେ ଯଜ୍ଞଂ ଯୋଗିନଃ ପର୍ଯ୍ୟୁପାସତେ
ବ୍ରହ୍ମାଗ୍ନାବପରେ ଯଜ୍ଞଂ ଯଜ୍ଞେନୈବବା ପଜୁହ୍ୱତି ।।
ଶ୍ରୋତ୍ରାଦିନୀନ୍ଦ୍ରିୟାଣ୍ୟନ୍ୟେ ସଂଯମାଗ୍ନିଷୁ ଜୁହ୍ୱତି ।
ଶବ୍ଦାଦୀନ୍ୱିସୟାନନ୍ୟ ଇନ୍ଦ୍ରିୟାଗ୍ନିଷୁ ଜୁହ୍ୱତି ।।
ସର୍ବାଣୀନ୍ଦ୍ରିୟ କର୍ମାଣି ପ୍ରାଣକର୍ମାଣି ଚାପରେ
ଆତ୍ମ ସଂୟମ ଯୋଗାଗ୍ନୌ ଜୁହ୍ୱତି ଜ୍ଞାନ ଦୀକ୍ଷିତେ ।।
ଦ୍ରବ୍ୟଯଜ୍ଞାସ୍ତପୋଯଜ୍ଞ ଯୋଗଯଜ୍ଞା ତଥାପରେ
ସ୍ୱାଧାୟ ଜ୍ଞାନ ଯଜ୍ଞାଶ୍ଚ ଯତୟଃ ସଂଶ୍ରିତବ୍ରତାଃ ।।

ଅପାନେ ଜୁହ୍ୱତି ପ୍ରାଣଂ ପ୍ରାଣେପାନଂ ତଥାପରେ ।
ପ୍ରାଣାପାନ ଗତିରୁଦ୍ଧ୍ୱା ପ୍ରାଣାୟାମ ପରାୟଣାଃ ।।
ଅପରେ ନିୟତାହାରାଃ ପ୍ରାଣାନ୍ ପ୍ରାଣେଷୁ ଜୁହ୍ୱତି
ସର୍ବେପ୍ୟେତେ ଯଜ୍ଞବିଦ୍ୟୋ ଯଜ୍ଞକ୍ଷପିତ କଲ୍ମଷାଃ ।।
ଯଜ୍ଞାଶିଷ୍ଟାମୃତ ଭୁଜୋ ଯାନ୍ତି ବ୍ରହ୍ମ ସନାତନମ୍
ନାୟଂ ଲୋକସ୍ୟ ଯଜ୍ଞସ୍ୟ କୁତୋନ୍ୟଃ କୁରୁସତ୍ତମ ।
ଏବଂ ବହୁବିଧା ଯଜ୍ଞା ବିତତା ବ୍ରହ୍ମଣୋ ମୁଖେ ।
କର୍ମଜାନ୍ ବିଦ୍ଧି ତାନ୍ ସର୍ବାନନେବଂ ଜ୍ଞାତ୍ୱା ବିମୋକ୍ଷସେ ।
ଶ୍ରେୟାନ ଦ୍ରବ୍ୟ ମୟାଦ୍ୟଜ୍ଞାଜ୍ ଜ୍ଞାନଯଜ୍ଞଃ ପରଂତପ ।
ସର୍ବଂ କର୍ମାଖିଳଂ ପାର୍ଥ ଜ୍ଞାନେ ପରିସମାପ୍ୟତେ ।।
ତଦ୍‌ବିଦ୍ଧି ପ୍ରଣିପାତେନ ପରିପ୍ରଶ୍ନେନ ସେବୟା ।
ଉପଦେକ୍ଷନ୍ତି ତେ ଜ୍ଞାନଂ ଜ୍ଞାନିନସ୍ତତ୍ତ୍ୱଦର୍ଶୀନଃ ।। (୪/୨୪-୩୪)
ଉପର୍ଯ୍ୟୁକ୍ତ ଶ୍ଳୋକଗୁଡିକର ଭାବାର୍ଥ ନିମ୍ନରେ ଦିଆଗଲା ।

କେତେକ ଯୋଗୀ ଦେବତା ମାନଙ୍କ ପାଇଁ କେବଳ ଯଜ୍ଞ କରି ଥାଆନ୍ତି । ଆଉ କେତେକ ଯୋଗୀ ନିଜର ସତ୍ତାକୁ ବ୍ରହ୍ମ ଅଗ୍ନିରେ ନିକ୍ଷେପ କରନ୍ତି । ଆଉ କେତେକ ଶ୍ରବଣ ଆଦି ଇନ୍ଦ୍ରିୟ ଭୋଗସୁଖ ତ୍ୟାଗ କରନ୍ତି । ଆଉ କେତେକ ଯୋଗୀ କର୍ମ ଓ ପ୍ରାଣ ସ୍ପନ୍ଦନକୁ ଆତ୍ମ ସଂଯମ ରୂପ ଜ୍ଞାନ ଅଗ୍ନିରେ ତ୍ୟାଗ କରନ୍ତି । ଆଉକେତେକ ଯୋଗୀ ଧନ, ଦ୍ରବ୍ୟ, ନିଷ୍ଠା, ସ୍ୱାଧ୍ୟାୟ, ନିବୃତ୍ତି, କଠୋର ଶପଥ ଇତ୍ୟାଦି ତ୍ୟାଗ-ଅଗ୍ନିରେ ନିକ୍ଷେପ କରନ୍ତି । ଅନ୍ୟ ଯୋଗୀମାନେ ପ୍ରାଣାୟାମ ଅବଲମ୍ବନ କରି, ଜୀବନୀଶକ୍ତିକୁ ସଂଯମକରି ଆୟତ୍ତ କରନ୍ତି । ଆଉକେତେକ ଯୋଗୀ ଆହାର ସଂଯମ କରି ପ୍ରାଣ-ଯଜ୍ଞରେ ଆହୁତି ଦିଅନ୍ତି । ଏହି ଯୋଗୀମାନେ ଯଜ୍ଞ କଣ ତାହା ଜାଣି, ନିଜର ପାପକୁ ସେମାନଙ୍କର ତ୍ୟାଗଦ୍ୱାରା ବିଦୂରୀତ କରି ବ୍ରହ୍ମଲାଭ କରନ୍ତି । ଯେଉଁମାନେ ଏହି ବିଶାଳ ଯଜ୍ଞରୁ ଅତି ସାମାନ୍ୟ ଭକ୍ଷଣ କରି ଜୀବନଧାରଣ କରନ୍ତି, ସେମାନେହିଁ ଅମୃତ ଭକ୍ଷଣ କରନ୍ତି । ସେମାନେହିଁ ପରମବ୍ରହ୍ମଙ୍କ ଗତିକୁ ପ୍ରାପ୍ତ ହୁଅନ୍ତି । ଏହି ବିଶ୍ୱ ତ୍ୟାଗବୀର ମାନଙ୍କ ପାଇଁ ଉଦ୍ଦିଷ୍ଟ । ଭୋଗୀମାନଙ୍କ ପାଇଁ ନୁହେଁ । ଈଶ୍ୱରଙ୍କ ଅସ୍ତିତ୍ୱ ଓ ପ୍ରାପ୍ତି ବିଷୟରେ ଅଧିକ ଜ୍ଞାନ ଲାଭ କରିବାକୁ ହେଲେ, ମୁନି, ଋଷି ଓ ସିଦ୍ଧ ମାନଙ୍କ ପାଖରେ ଅବନତ ହୋଇ, ପ୍ରଶ୍ନକରି, ସେମାନଙ୍କୁ ସେବାକରି ତାଙ୍କୁ ଜ୍ଞାନ ଭିକ୍ଷା ମାଗିଲେ, ସେମାନେ ଉପଯୁକ୍ତ ଭାବରେ ତତ୍ତ୍ୱ ଦର୍ଶନ କରାଇବେ । ଏଥିପାଇଁ ଅସଲରେ ''ଶ୍ରଦ୍ଧା'' ଆବଶ୍ୟକ । ଶ୍ରଦ୍ଧାଦ୍ୱାରା ଜ୍ଞାନ ଲାଭହୁଏ । ଜ୍ଞାନଯଜ୍ଞ ସବୁଯଜ୍ଞ ଅପେକ୍ଷା

ଶ୍ରେୟସ୍କର । ସବୁ କର୍ମ ଜ୍ଞାନରେ ଶେଷହୁଏ । ଯେଉଁମାନେ କିଛିଦାନ ନକରି ନିଜଘରେ ନିଜପାଇଁ କେବଳ ରାନ୍ଧି ତାହା ଖାଇଥାନ୍ତି ସେମାନେ ପାପ ଭକ୍ଷଣ କରନ୍ତି । ଏହି ବିଶ୍ୱ-ଯଜ୍ଞରେ ''ପ୍ରକୃତି'' ବିପୁଳ ସମ୍ଭାର ସୃଷ୍ଟି କରିଛନ୍ତି ମନୁଷ୍ୟ ନିମନ୍ତେ; ଯଥା ପାଣି, ପବନ, ଆଲୋକ, ବୃକ୍ଷଲତା, ଫଳମୂଳ, ଶସ୍ୟ ଆଦି । ଆଉ ଭୂମିରେ ଫସଲ କରିବାପାଇଁ ପ୍ରକୃତି ବର୍ଷାମଧ ଦେଇଛନ୍ତି । ଏହିପରି ମଣିଷର ଜୀବନଧାରଣ ନିମନ୍ତେ ସବୁକିଛି ବ୍ୟବସ୍ଥା ପ୍ରକୃତି ମାଧ୍ୟମରେ ଈଶ୍ୱର କରାଇଛନ୍ତି । କିନ୍ତୁ ମନୁଷ୍ୟ ବଡ ସ୍ୱାର୍ଥପର । ସେ ପ୍ରକୃତିରୁ ଆବଶ୍ୟକ ଶିକ୍ଷା ଗ୍ରହଣ ନକରି ନିଜର ଆୟ ନିଜର ସ୍ୱାର୍ଥରେ କେବଳ ବ୍ୟୟ କରୁଅଛି । ଅନ୍ୟ ଶ୍ଳୋକରେ ଶ୍ରୀକୃଷ୍ଣ କହିଛନ୍ତି ଯେ ଯଦି ମନୁଷ୍ୟ କିଛି ନଦେଇ କେବଳ ପ୍ରକୃତିରୁ ସବୁକିଛି ସଂଗ୍ରହ କରିନିଜେ ଖାଏ ତେବେ ସେ ଗୋଟିଏ ଚୋର । ସେ ପାପ ଭକ୍ଷଣ କରେ ।

ଏଠାରେ ବିଶଦ ଆଲୋଚନା ଆବଶ୍ୟକ । ପୂରାକାଳରେ ମନୁଷ୍ୟର ଅଳ୍ପ ପ୍ରୟାସରେ ବହୁ ଖାଦ୍ୟଦ୍ରବ୍ୟ ଉତ୍ପନ୍ନ ହେଉଥିଲା । ସୁଫଳା ବନାନୀର ପ୍ରାଚୁର୍ଯ୍ୟର ସଂଭାରରେ ମଣିଷର ନିଜର ପରିଶ୍ରମ କରି ଫସଲ କରିବାର ଆବଶ୍ୟକତା ଅପେକ୍ଷାକୃତ କମ୍ ଥିଲା । ଜନସଂଖ୍ୟା ଅଳ୍ପଥିବାରୁ ପ୍ରତିଯୋଗୀତା ମଧ ନଥିଲା କହିଲେ ଚଳେ । ଅଳ୍ପ ଆୟାସରେ ବହୁଳ ଶସ୍ୟ ଉର୍ବର ଜମିରେ ଉତ୍ପନ୍ନ ହେଉଥିବାରୁ ମଣିଷକୁ ବେଶୀ ବିଶ୍ରାମ ମିଳୁଥିଲା । ମାତ୍ର କାଳର ବିବର୍ତ୍ତନରେ ମଣିଷର ସଂଖ୍ୟା ବଢ଼ିବଢ଼ି ବର୍ତ୍ତମାନ ୫୫୫ କୋଟିରେ ପହଞ୍ଚିଛି । ସେଥିରେ ଶିଳ୍ପ, ବାଣିଜ୍ୟ, ପ୍ରଯୁକ୍ତି ବିଦ୍ୟା, ଯନ୍ତ୍ର ସାହାଯ୍ୟରେ କୃଷିର ଉନ୍ନତି ଅଭାବନୀୟ ଭାବରେ ବଢ଼ିଛି । ତେଣୁ ଘୃତ ଅର୍ପଣଦ୍ୱାରା ଯଜ୍ଞ କରିବାର ସମୟ ବହୁକାଂଶରେ କମିଛି । ଏ ଯୁଗରେ ଜୀବନ ଧାରଣ କରିବାକୁ ହେଲେ କଠିନ ପରିଶ୍ରମ କରି ପ୍ରଚଣ୍ଡ ପ୍ରତିଯୋଗିତା ମଧ୍ୟରେ ମଣିଷ ନିଜର ଗୁଜୁରାଣ ମେଣ୍ଟାଇପାରୁଛି । ଏତେଲୋକଙ୍କର ଅନ୍ନସଂସ୍ଥାନ ନିମନ୍ତେ କ୍ଷୁଦ୍ର, ମଧ୍ୟମ, ବୃହତ୍ ଶିଳ୍ପରାଜିର ବିବିଧ ବିନ୍ୟାସ ସସାଗରା ଧରାରେ ସୁବିନ୍ୟସ୍ତଭାବରେ ସଂଯୋଜିତ । ଶିଳ୍ପରେ ବିକାଶ ସୁବିସ୍ତୃତ । ମାତ୍ର ସେହି ଶିଳ୍ପରେ ଲବ୍ଧଧନ ବହୁଲୋକଙ୍କର ଭରଣପୋଷଣ କରୁଅଛି । କୋଟି କୋଟି ଲୋକ ଶିଳ୍ପରେ ନିଯୁକ୍ତ ହୋଇ ଉପକୃତ ହେଉଅଛନ୍ତି । ଏହି ଶିଳ୍ପ, ବାଣିଜ୍ୟ, କୃଷି ଅତି ଉନ୍ନତ ଧରଣର । ଏହା ପୃଥିବୀବ୍ୟାପ୍ତ ହୋଇ ଲୋକ-ଉପକାରରେ ପ୍ରଯୁକ୍ତ । ଏ ଯୁଗରେ ଏହାହିଁ ହେଉଛି ମହାନ୍ ଯଜ୍ଞ । ଏହି ଯଜ୍ଞରୁ ଉଦ୍‌ଭୂତ ଅର୍ଥରେ ଅଧିକାଂଶ ଲୋକ ପ୍ରତିପାଳିତ । ଏପରି ବିଶାଳ ବିରାଟ କର୍ମଯଜ୍ଞ ଅଚିନ୍ତନୀୟ । ଏଥିରେ ଯେଉଁମାନେ ଅର୍ଥ ନିୟୋଗ କରୁଛନ୍ତି ସେମାନେ ସେଥିରୁ ଅଧିକାଂଶ ଟଙ୍କା କର୍ମଚାରୀ, ଅନ୍ୟମାନଙ୍କୁ ଦେଇ, ଆୟକର ଦେବାପରେ ଯାହା ବଳକା ରହିଲା ତାହାହିଁ ନିଅନ୍ତି । ଏହି ଉଦ୍ୟୋଗୀ, ଶିଳ୍ପପତିଙ୍କୁ ଯେତେ ଗାଳି ଦେଲେ ମଧ, ଏହା ଚୁଡାନ୍ତ

ସତ୍ୟଯେ ବିପୁଳ ଉଦ୍ୟୋଗରୁହିଁ ଆମେ ସମସ୍ତେ ପ୍ରତିପାଳିତ । ଏହି ମହାନ୍ ଯଜ୍ଞରୁ ଉଦ୍‌ବୃତ୍ତ ଅର୍ଥରୁ ଅଳ୍ପ ଭୋଗକରି ସେମାନେ ଅମୃତ ଭକ୍ଷଣ କରୁଛନ୍ତି । ବ୍ୟବସାୟ କ୍ଷେତ୍ରରେ ମଧ ଏହି ଯଜ୍ଞର ଅବତାରଣା । ଶ୍ରୀକୃଷ୍ଣ କହୁଛନ୍ତି - "ଜୟୋସ୍ମି ବ୍ୟବସାୟୋସ୍ମି, ତେଜଃତେଜସ୍ୱୀନାମହଂ ।" (ଦଶମ ଅଧ୍ୟାୟ-ବିଭୁତି ଯୋଗ)

ଏଥର ଅନ୍ୟମାନଙ୍କ କଥା ବିଚାର କରାଯାଉ । ବହୁବହୁ ଲୋକ କର୍ମଚାରୀ ଭାବରେ, ବ୍ୟବସାୟର ସାହାଯ୍ୟକାରୀ ଭାବରେ, ଅନ୍ୟଅନେକ କାରଣରେ ସେଥିରେ ଯୁକ୍ତ ହୋଇ ନିଜର ଭରଣ ପୋଷଣ କରନ୍ତି । ମାତ୍ର ଅଧିକାଂଶ ଲୋକ ସେଥିରୁ ଅନ୍ୟକୁ କିଛି ଦିଅନ୍ତି ନାହିଁ । ଅନ୍ୟକୁ ପୋଷଣ କରନ୍ତି ନାହିଁ । ଜୀବଜନ୍ତୁଙ୍କୁ ମଧ କିଛି ଦିଅନ୍ତି ନାହିଁ । ବୃକ୍ଷକଥା ନ କହିଲେ ଭଲ । ସେଗୁଡିକୁ ହାଣି ସଫା କରି ଦିଅନ୍ତି । ମାତ୍ର ବୃକ୍ଷ ତାର ଫଳ, ଫୁଲ, କାଠ ଇତ୍ୟାଦି ଦେଇଥାଏ ବିନା ଦ୍ୱିଧାରେ ବା ବିନା ପ୍ରତ୍ୟାଶାରେ, ଅବିରତଭାବରେ ।

ମହାବିଶ୍ୱ ଆଡକୁ ଦୃଷ୍ଟିଦେଲେ ଅନ୍ତର୍ନିହିତ ଉଦ୍ଦେଶ୍ୟ ସ୍ପଷ୍ଟ ହେବ । ସୂର୍ଯ୍ୟ ଏକ ଅତି ବୃହତ୍ ଜ୍ୱଳନ୍ତ ପିଣ୍ଡ । ଏହା ବିଭିନ୍ନ ବାଷ୍ପରେ ଭରପୁର । ଏହା ଆଲୋକ ଦେଉଛି ପୁରା ସୌର-ମଣ୍ଡଳରେ । ଏହାର ବିରାମ ନାହିଁ, ବିଶ୍ରାମ ନାହିଁ, ଆଳସ୍ୟ ନାହିଁ, ନିଦ୍ରା ନାହିଁ । ଏହା ସୌର ମଣ୍ଡଳର ଜାଗ୍ରତ ପ୍ରହରୀ । ନିଜକୁ ପ୍ରଚଣ୍ଡ ଉତ୍ତାପରେ ପୋଡି ସବୁ ଗ୍ରହଉପଗ୍ରହକୁ ଆଲୋକଦାନ କରୁଅଛି । କାହିଁକି ? ତାର ଏତେ ତ୍ୟାଗର ଆବଶ୍ୟକତା କଣ ? ଗ୍ରହ ଉପଗ୍ରହ ଧ୍ୱଂସ ପ୍ରାପ୍ତ ହେଲେ ତାହାର ତ କିଛି ଆସେଯାଏ ନାହିଁ ? ନା, ସେ ସ୍ୱାର୍ଥପର ନୁହେଁ । ଅନନ୍ତ କାଳ ଧରି ନିଜର ସ୍ୱାର୍ଥତ୍ୟାଗ କରି ତାହାର ରଶ୍ମିଦାନ କରି ପୃଥିବୀର ମଣିଷ, ବୃକ୍ଷଲତା, କୀଟପତଙ୍ଗ, ନଦନଦୀ, ଶସ୍ୟ-ପ୍ରାନ୍ତର ସମସ୍ତଙ୍କୁ ସଜୀବ କରି ରଖିଅଛି । ଏହି ସୂର୍ଯ୍ୟର ବହ୍ନିରେ ଜୀବନ ପୁଷ୍ଟିପ୍ରାପ୍ତ ହୋଇ ନାନା ବିଭାବରେ ବିକଶିତ । ସୂର୍ଯ୍ୟର ଆମ୍ବଳିରେ ପୃଥିବୀ ସଂବୃଦ୍ଧ ହୋଇ ରହିଅଛି ଏବଂ ରହିଥିବ । ଏପରି ସ୍ୱାର୍ଥତ୍ୟାଗର ଉଜ୍ଜ୍ୱଳ ଦୃଷ୍ଟାନ୍ତ ଆଉ ମଣିଷକୁ ଜଣାନାହିଁ । ସେହିପରି ସର୍ବଂସହା ପୃଥିବୀ ସବୁଭାର, ଅତ୍ୟାଚାର ସହ୍ୟକରି ମଣିଷକୁ ତାର ଭୂମି, ଶସ୍ୟ, ନଦନଦୀର ପାଣି ଓ ଅନନ୍ତ ଜୀବନ ପ୍ରଦାନ କରୁଅଛି । ମହାବିଶ୍ୱରେ ତ୍ୟାଗର ଅଗଣିତ ଉଦାହରଣ ରହିଅଛି । ମାତ୍ର ମଣିଷ ତାର କ୍ଷୁଦ୍ର ଦୃଷ୍ଟିରେ କେବଳ ନିଜର ସ୍ୱାର୍ଥ ଚରିତାର୍ଥ କରିବାରେ ବ୍ୟସ୍ତ । ସ୍ୱାର୍ଥରୁ ସଂଘାତ ନିଜ ନିଜ ମଧରେ, ଗୋଷ୍ଠୀ ଗୋଷ୍ଠୀ ମଧରେ, ଜାତି ଜାତି ମଧ୍ୟରେ, ପ୍ରାଣୀ ପ୍ରାଣୀ ମଧରେ । ଫଳ ହେଲା ଅଶାନ୍ତି, ଯୁଦ୍ଧ ଓ ଧ୍ୱଂସ । ଏହି ପରିପ୍ରେକ୍ଷୀରେ ବେଦରେ ଶାନ୍ତିବାଣୀର ଉଲ୍ଲେଖ । ଏହି ଶାନ୍ତି ପ୍ରତିଷ୍ଠା ପାଇଁ ପବନ ତାରତମ୍ୟ ନକରି ସବୁ ଜୀବଜନ୍ତୁଙ୍କୁ ସେବା କରୁଅଛି । ମେଘ ସବୁସ୍ଥାନରେ ବର୍ଷା କରୁଅଛି । ଆଲୋକ ଭଲମନ୍ଦ ବିଚାର ନକରି ସବୁଠି ତାହାର

ପ୍ରକାଶ ଦେଇ ଅନ୍ଧକାରକୁ ଦୂର କରୁଅଛି । ଏଥିରୁ ପ୍ରତୀୟମାନ ହେବ ଯେ ପ୍ରକୃତି ପକ୍ଷପାତ ପୂର୍ଣ୍ଣ ନୁହେଁ । ସମସ୍ତଙ୍କୁ ସମାନ ଭାବରେ ଦେଖେ । ସମସ୍ତଙ୍କର ଅସୁବିଧା ଅଭାବ ଦୂର କରିବା ନିମନ୍ତେ ପ୍ରସ୍ତୁତ । ସେଥିପାଇଁ ଶ୍ରୀକୃଷ୍ଣ ଉପର୍ଯ୍ୟୁକ୍ତ ଶ୍ଳୋକରେ କହିଛନ୍ତି ଯେ ପୃଥିବୀ ତ୍ୟାଗବୀର ମାନଙ୍କ ନିମନ୍ତେ ଉଦ୍ଦିଷ୍ଟ, ଭୋଗୀମାନଙ୍କ ପାଇଁ ନୁହେଁ । ଆପାତଃ ଦୃଷ୍ଟିରେ ଭୋଗୀ ନିଜକୁ ସୁଖୀ ଭାବିଲେମଧ, ଶେଷଫଳ ବିଷମ ।

ଏଥର, ବିଜ୍ଞାନର ମହାବିଶ୍ୱ ବିଷୟରେ ଉପସଂହାର କଣ ତାହା ଅନୁଧ୍ୟାନଯୋଗ୍ୟ । ଷ୍ଟିଫେନ ହକିଂ ଲେଖିଛନ୍ତି ଯେ ଆମେ ସମସ୍ତେ ଏକ ବିଭ୍ରାନ୍ତିକର ଜଗତରେ ବାସ କରୁଅଛୁ । ଏହି ମହାବିଶ୍ୱର ପ୍ରକୃତି ବା ଧର୍ମ କଣ ? ଏଥିରେ ମଣିଷର ସ୍ଥାନ କେଉଁଠି ? ଏହା କେଉଁଠାରୁ ଆସିଲା ? ଆମ୍ଭେମାନେ କେଉଁଠାରୁ ଆସିଲୁ ? ଆଉ ପୃଥିବିଟା ଏପରି ହେଲା କିପରି ?

କଣାବାଦୀ ବଳ ବିଦ୍ୟା ଏହାର ସମାଧାନର ଚେଷ୍ଟା କରିଛି ଏକ ଶ୍ରେଣୀର କଣାବାଦୀ ତତ୍ତ୍ୱର ମାଧ୍ୟମରେ । ଏହି ତତ୍ତ୍ୱରେ ନିର୍ଦ୍ଧାରିତ ହୋଇଛି ଯେ ଏହି କଣାଗୁଡିକର ଯଥା ଯଥ ଭାବେ ନିର୍ଦ୍ଧାରିତ ଅବସ୍ଥାନ ଓ ଗତିବେଗ ନଥାଏ । ଏହାର ପ୍ରତିନିଧିତ୍ୱ କରେ ଗୋଟିଏ ତରଙ୍ଗ । ଏହି କଣାବାଦ ନିମିତ୍ତବାଦୀ ବା (deterministic). କାଳ ସହିତ ତରଙ୍ଗର ବିବର୍ତ୍ତନର ବିଧି ପ୍ରଦାନକରେ । ଅର୍ଥାତ୍ ଯଦି କୌଣସି ସମୟରେ ତରଙ୍ଗଟି ଜଣାପଡେ ପରବର୍ତ୍ତୀ କାଳରେ ତାହାର ଗଣନା ସମ୍ଭବପର । ବୋଧହୁଏ କଣାର ଅବସ୍ଥାନ ଓ ଗତିବେଗ ବୋଲି କିଛି ନାହିଁ । ଅଛି କେବଳ ତରଙ୍ଗ । ଆମେ ଏହି ତରଙ୍ଗକୁ ପୂର୍ବକଳ୍ପିତ ଅବସ୍ଥାନ ଓ ଗତିବେଗ ଧାରଣା ସହିତ ମିଳେଇବାପାଇଁ ଚେଷ୍ଟା କରୁ । ହକିଂ କହନ୍ତି ଚାରିଜାତୀୟ ଶକ୍ତିକ୍ଷେତ୍ର ମଧ୍ୟରେ ମାଧ୍ୟାକର୍ଷଣ ଶକ୍ତି ଅତି ଦୁର୍ବଳ; ମାତ୍ର ଏହି ଶକ୍ତିଦ୍ୱାରା ହିଁ ମହାବିଶ୍ୱର ଗଠନ ବୃହତ୍ ରୂପରେ ପ୍ରତିଭାତ ହୋଇଅଛି । ମହାକର୍ଷଣ ସବୁବେଳେ ଆକର୍ଷଣ କରି ଚାଲିଛି । ବିଶ୍ୱର ପରିବର୍ତ୍ତନ ହେଉନାହିଁ, ଏହା ପ୍ରାୟ ସ୍ଥିର ଅଛି, - ଏପରି ଚିନ୍ତା ସହିତ ମାଧ୍ୟାକର୍ଷଣ ଶକ୍ତି ଖାପ ଖାଏ ନାହିଁ । ମହାବିଶ୍ୱ ସଂପ୍ରସାରିତ ହେଉଛି ଏବଂ ସଂକୁଚିତ ମଧ ହେଉଅଛି । କଣାବାଦୀ ବଳବିଦ୍ୟା ସହିତ ବ୍ୟାପକ ଅପେକ୍ଷାବାଦ ଯୁକ୍ତ କଲେ ମନେହୁଏ ସ୍ଥାନକାଳ ଏକତ୍ରଭାବେ ଅନନ୍ୟତା ବିହୀନ ଓ ସୀମାହୀନ ଅଥଚ ଚାରିମାତ୍ରାରସ୍ଥାନ ଗଠନ କରିପାରେ । ମାତ୍ର ତାହାର ମାତ୍ରା ହେବ ଅଧିକତର । ମହାବିଶ୍ୱରେ ଯେଉଁ ସବୁ ଅବୟବ ପର୍ଯ୍ୟବେକ୍ଷଣ କରାଯାଏ ସେଗୁଡିକ ଏହି ତତ୍ତ୍ୱ-ମାଧ୍ୟମରେ ବ୍ୟାଖ୍ୟା କରାଯାଇପାରେ । ଯେପରି ବୃହତ୍ ଆକାରର ନିହାରିକା ଓ ତାରକା ଓ ସ୍ୱଳ୍ପମାତ୍ରାର ପ୍ରଭାବରେ ଛୋଟମାତ୍ରାର

ଜୀବ, ଯେପରି ମଣିଷ । ମାତ୍ର ପ୍ରଶ୍ନର ସମ୍ପୂର୍ଣ୍ଣ ସମାଧାନ ହୋଇପାରିନାହିଁ । ଯଦି ମହାବିଶ୍ୱ ସ୍ୱୟଂସମ୍ପୂର୍ଣ୍ଣ ହୁଏ, ଯଦି ଅନନ୍ୟତା ବା ସୀମା ନଥାଏ, ତେବେ ସୃଷ୍ଟିକର୍ତ୍ତାଙ୍କ କ୍ଷମତା ବିଷୟରେ ପ୍ରଶ୍ନଉଠେ । ତାଙ୍କର କେତେଟିକିଏ ସ୍ୱାଧୀନତା ଥିଲା ବିଶ୍ୱଗଠନରେ ? ପ୍ରଶ୍ନ କରିଛନ୍ତି ଆଇନ୍‌ଷ୍ଟାଇନ୍ । ବୈଜ୍ଞାନିକମାନେ ବିଶ୍ୱ ପ୍ରକୃତିର ତତ୍ତ୍ୱଗଠନରେ ବ୍ୟସ୍ତଥିଲେ । ଏହି ବିଶ୍ୱ କାହିଁକି ସୃଷ୍ଟି ହୋଇଛି ଏପ୍ରଶ୍ନ ସେମାନଙ୍କ ମନରେ ଉଠିନାହିଁ । ବୈଜ୍ଞାନିକ ମାନଙ୍କ ସହିତ ଦାର୍ଶନିକମାନେ ପାଦମିଳାଇ ଚାଲିପାରୁନାହାନ୍ତି । ଏତେ ରକମ ଆବିଷ୍କାରପରେ ଦାର୍ଶନିକ ପଛରେ ପଡିଯାଇଛି । ସେ କେବଳ ଭାଷା ବିଶ୍ଳେଷଣରେ ବ୍ୟସ୍ତ ବିଂଶଶତାବ୍ଦିରେ । ଏକଥା କହିଛନ୍ତି ଉଇଟ୍‌ଗେନଷ୍ଟାଇନ୍ ଏହି ଶତାବ୍ଦିର ଶ୍ରେଷ୍ଠ ଦାର୍ଶନିକ । ଏଥିରୁ ଦେଖାଯାଏ ଭିକ୍ଟର ଇମାନୁଏଲ କ୍ୟାଣ୍ଟଙ୍କଠାରୁ କିପରି ଅଧପତନ ହୋଇଛି ଦାର୍ଶନିକମାନଙ୍କର । ଶେଷରେ ହକିଂ ଲେଖିଛନ୍ତି, "ଆମେ ଯଦି ଗୋଟିଏ ତତ୍ତ୍ୱ ଆବିଷ୍କାର କରୁ ଯାହା ସାହାଯ୍ୟରେ ସମସ୍ତଙ୍କର ବୋଧଗମ୍ୟ ହେବ ଯେ ଏହି ମହାବିଶ୍ୱର ଅସ୍ତିତ୍ୱର କାରଣ କଣ; ତେବେ ତାହା ମନୁଷ୍ୟର ସର୍ବଶ୍ରେଷ୍ଠ ବିଜୟ ହେବ । କାରଣ ଈଶ୍ୱରଙ୍କ ମନର ଆଭାସ ମଣିଷକୁ ମିଳିଯିବ ।"

ଦୁଃଖର ବିଷୟ ଯେ ମଣିଷ ଏପର୍ଯ୍ୟନ୍ତ ସେହି ଉଦ୍ଦେଶ୍ୟ ଜାଣିପାରିନାହିଁ । ଏକକ-ଅନନ୍ୟ-ତତ୍ତ୍ୱ ତାହାର ଜ୍ଞାନପରିଧିର ବାହାରେ ରହିଯାଇଅଛି । ବିଜ୍ଞାନ ଜଡ ଜଗତର ପରୀକ୍ଷା ନୀରିକ୍ଷା ମାଧମରେ ଗବେଷଣାଗାରର ଯନ୍ତ୍ର ସାହାଯ୍ୟରେ ପ୍ରମାଣିତ ସତ୍ୟରେ ବିଶ୍ୱାସ କରେ । ଅନ୍ତଃକରଣର ସ୍ପନ୍ଦନରେ ବିଜ୍ଞାନର କୌଣସି ବିଶ୍ୱାସ ନାହିଁ ।

ଏ ପ୍ରସଙ୍ଗରେ ଡଂ ନୃସିଂହ ଚରଣ ପଣ୍ଡାଙ୍କର ବିଶ୍ଳେଷଣ ଅତ୍ୟନ୍ତ ତାତ୍‌ପର୍ଯ୍ୟପୂର୍ଣ୍ଣ । ଗର୍ଭାଶୟରେ ଜନ୍ମ ପଦ୍ଧତି ଜନନୀକା ମାନଙ୍କ ଦ୍ୱାରା ସୃଷ୍ଟ । ସେମାନଙ୍କ ବିଷୟରେ ପୁରୁଷ ବା ସ୍ତ୍ରୀ ଅଜ୍ଞ । ମାତ୍ର ପ୍ରଜନନ ପଦ୍ଧତି ଏକ ଅତି ଆଶ୍ଚର୍ଯ୍ୟଜନକ ପ୍ରକ୍ରିୟା । ଉଭୟ ଜନନୀକାର ପ୍ରକୃଷ୍ଟ ସଂମିଶ୍ରଣକୁ କିଏ ନିର୍ଦ୍ଦେଶ ଦେଇ ଜୀବର ଦ୍ୱିତ୍ୱ ସାଧନ କରେ ତାହା ଅଜ୍ଞାତ । ବିଜ୍ଞାନ କେବଳ ଆବିଷ୍କାର କରେ କିପରି ପ୍ରଜନନ ହୋଇଥାଏ । ମାତ୍ର କାହିଁକି ଏପରି ହୁଏ ଏପ୍ରଶ୍ନର ଉତ୍ତର ବିଜ୍ଞାନ ଦେଇପାରେ ନାହିଁ । ଗର୍ଭାଶୟର କ୍ରିୟା ବିସ୍ମୟକର । ଜୀବର ଜନ୍ମଦେବା ମୁହୂର୍ତ୍ତରେ ମଧ ଜରାୟୁର କର୍ମ ଅତି ସୂକ୍ଷ୍ମତାର ପରିଚାୟକ । ସେହିପରି ଶରୀରରେ ଅନେକ ସୂକ୍ଷ୍ମ ଅଙ୍ଗପ୍ରତ୍ୟଙ୍ଗ ରହିଛି ଯେପରି ମେରୁଦଣ୍ଡ, ଯକୃତ, ହୃଦୟ, ଆଖି, କାନ, ବୃକ୍କ ବା କିଡ୍‌ନି ପ୍ରଭୃତି । ଏଗୁଡିକ ଅତି କ୍ଷୁଦ୍ର ଯନ୍ତ୍ରାଦି ସାହାଯ୍ୟରେ ଶରୀରକୁ ଚାଳନାକରିବାରେ ସାହାଯ୍ୟ କରିଥାଏ, ଏହାକୁ ପ୍ରକୃତିର କୃତି ବୋଲି କହି ବିଜ୍ଞାନ ତାହାର କର୍ତ୍ତବ୍ୟ ଶେଷକରେ । ସେହିପରି ଗୋଟିଏ ଫୁଲର ଫୁଟିବାରେ ଯେ କିପରିମାଣର

ସୂକ୍ଷ୍ମକାରୁକାର୍ଯ୍ୟ ନିହିତ ଅଛି, ତାହା ପରମହଂସ ଯୋଗାନନ୍ଦ ତାଙ୍କ ବହିରେ ପୁଙ୍ଖାନୁପୁଙ୍ଖରୂପେ ବର୍ଣ୍ଣନା କରି ଈଶ୍ୱରଙ୍କର ବିସ୍ମୟକର କୃତିର ପରିଚୟ ଦେଇଅଛନ୍ତି । ଗଭୀର ଚିନ୍ତାକଲେ ଜଣାଯାଏ ଯେ ବିଶ୍ୱସୃଷ୍ଟିରେ ମହାନରୁ ମହତ୍ତର ଓ ଅଣୁ ପରମାଣୁରୁ ଅତିକ୍ଷୁଦ୍ରତର ଜୀବର ଉପସ୍ଥିତି ଏପର୍ଯ୍ୟନ୍ତ ଭଲଭାବରେ ମଣିଷକୁ ଜଣାନାହିଁ । ଆଉ ବିଜ୍ଞାନ କିଛି ଦୂର ଗଲେ ମଧ, ସବୁରହସ୍ୟ ସମାଧାନ କରିପାରିନାହିଁ । ପ୍ରକୃତିର ନିୟମାବଳି ''ଜୀବନ ଅଧ୍ୟାୟ''ରେ ଚର୍ଚ୍ଚିତ ହେବ । ଏଠାରେ ଏତିକି ମାତ୍ର କହିଲେ ଚଳିବ ଯେ ''ପ୍ରକୃତି'' ପୁଣି କଣ ? ତାହାର କ୍ରିୟା କଳାପ କିଏସେ ନିର୍ଦ୍ଧାରଣ କରେ ? ଜୀବନର ପ୍ରଥମ ଉନ୍ମେଷକ୍ଷଣଠାରୁ ଏହାର ପୁଙ୍ଖାନୁପୁଙ୍ଖ ପ୍ରଗତି କେଉଁ ନୀତିରେ ଆବଦ୍ଧ ? କାହାର ନିର୍ଦ୍ଦେଶରେ ପ୍ରକୃତିର ପରିଚାଳନା ସମ୍ଭବ ହୁଏ ? ଆଗରୁ କୁହାଯାଇଅଛି ଯେ ଈଶ୍ୱର ପ୍ରକୃତିକୁ ସୃଷ୍ଟିକରି ସେଥିରେ ବୀଜ ବପନ କରିଅଛନ୍ତି । ସେ ହେଉଛନ୍ତି ବୀଜପ୍ରଦ-ପିତା । ତାଛଡା ଆଉ ଗୋଟିଏ କଥା ମଧ ଶ୍ରୀକୃଷ୍ଣ କହିଅଛନ୍ତି । ''ମୟ୍ୟାଧକ୍ଷେଣ ପ୍ରକୃତି ସୂୟତେ ସଚରାଚରମ୍ । ହେତୁନାନେନ କୌନ୍ତେୟ ଜଗଦ୍ୱି-ପରିବର୍ତ୍ତତେ (୯-୧୦)'' । ମୋ ନିକଟରେ ଥିବା ହେତୁ ପ୍ରକୃତି ସଚରାଚରକୁ ସୃଷ୍ଟି କରିଥାଏ । ଏହି ଚଳମାନ ଜଗତ ପରିବର୍ତ୍ତନର ଧୋପାନରେ ଗତିଶୀଳ ହୋଇଥାଏ ।

ଏଥିରୁ ଜଣାଯାଏ ଯେ ପ୍ରକୃତି ହିଁ ଈଶ୍ୱରଙ୍କର ସୃଷ୍ଟିର ମହାମନ୍ତ୍ର ଓ ମହାଯନ୍ତ୍ର । ତାହାରି ସାହାଯ୍ୟରେ ବିଶ୍ୱର ଗତି ଓ ସ୍ଥିତି । ଯେକୌଣସି ନାମରେ ନାମିତ ହେଲେ ମଧ, ଅନ୍ତର୍ନିହିତ ଶକ୍ତିର ପ୍ରକାଶହିଁ ଈଶ୍ୱରଙ୍କର ଅଭିପ୍ରେତ । ଏହା ସ୍ୱୀକାର କରିହେବାକୁ ହିଁ ହେବ । ତାନହେଲେ ପ୍ରକୃତିର ସ୍ରଷ୍ଟାକିଏ ? ଏହାର କଣ ଉତ୍ତର ଦେବ ବିଜ୍ଞାନ ? ଯଦି କୁହାଯାଏ ଈଶ୍ୱରହିଁ ପ୍ରକୃତି ଓ ପ୍ରକୃତିହିଁ ଈଶ୍ୱର, ଏବଂ ସେମାନେ ଦୁହେଁ ଅଭେଦ ତେବେ ବିଜ୍ଞାନର ଆପତ୍ତି କେଉଁଠାରେ ? କଣ ଈଶ୍ୱର ଶବ୍ଦ ପ୍ରତି ଘୃଣା, ବିଦ୍ୱେଷ, ଅବଜ୍ଞା ନା allergy ? ତତ୍ତ୍ୱଟି ହେଲା ମୂଳକଥା । ନାମଦେବାରେ କଣ ଆସେଯାଏ ? ସେକ୍ସପିଅର ଲେଖିଛନ୍ତି ଯେ "Give the dog an illname and hang it" କୁକୁରକୁ ଯଦି ମାରିବାର ଇଚ୍ଛା, ତାହା ହେଲେ ତାକୁ ଗୋଟିଏ ଖରାପ ନାମ ଦେଇ ଫାଶି ଦେଇ ଦିଅ । ପୃଥିବୀରେ ଅସାର ନାମକୁ ନେଇ ବିଭେଦ, ବିଦ୍ୱେଷ ଓ ଯୁଦ୍ଧ । ତଳେଇ ଦେଖିଲେ ବୁଝାଯିବ ଯେ ସର୍ବ-ଶକ୍ତିମାନ, ସର୍ବଜ୍ଞାନବାନ, ସର୍ବ-ବିଦ୍ୟମାନ ପ୍ରବାହ ଛାୟାପଥ ମାନଙ୍କୁ ବିବର୍ତ୍ତନମାଧମରେ ପରିଚାଳିତ କରି ଏକ ଅଦୃଶ୍ୟ, ଅଜ୍ଞାତ, ଅପ୍ରତିରୋଧ ପରିଣତି ଆଡକୁ ନେଇଯାଉଅଛି । ମଣିଷର ଜ୍ଞାନର ବ୍ୟାପ୍ତି ଯେତେ ହେଲେ ମଧ, ଗୋଟିଏ ଛାୟାପଥର କଳନାରେ ସ୍ତବ୍ଧ ହୋଇପଡୁଅଛି । ଆଉ ଲକ୍ଷେ ଛାୟାପଥର ଗନ୍ତବ୍ୟସ୍ଥଳ ବିଷୟରେ ସେ କଣ ବୁଝିବ ?

ଅନୁମାନ କରିବାର ଶକ୍ତି ଥିଲେ ମଧ୍ୟ ଏହି ଅନୁମାନର ମୌଳିକ ଉପାଦାନ ବିଷୟରେ ସେ ଅଜ୍ଞ । କାରଣ କେତେ ଅଶୁଭ ଓ ଶୁଭ ଶକ୍ତି ଯେ ବିଶ୍ୱକୁ ପରିଚାଳିତ କରୁଅଛି ସେ ବିଷୟରେ ବିଜ୍ଞାନର କଳନା-କ୍ଷମତା ସସୀମ । ଏହି ଶକ୍ତିର ବିଚାର ''ସ୍ପନ୍ଦନ'' ଅଧ୍ୟାୟରେ କରାଯିବ ।

ବିଜ୍ଞାନକୁ କେହି ହେୟପ୍ରତିପନ୍ନ କରିପାରିବେ ନାହିଁ । ଆଜିର ସଫଳ, ସମୃଦ୍ଧ, ଏଶ୍ୱର୍ଯ୍ୟମୟ, ଗତିଶୀଳ, ସମ୍ଭାବନାମୟ ସାମୁହିକ ଜୀବନ ବିଜ୍ଞାନର ଆଶୀର୍ବାଦ । ବିଜ୍ଞାନର ଅପୂର୍ବ ଆବିଷ୍କାର ଓ ଉଦ୍‌ଭାବନ ଯୋଗେ ଜନସାଧାରଣଙ୍କର ଜୀବନର ଧାରା ପ୍ରଶସ୍ତ, ଆରାମପ୍ରଦ ଓ ଆମୋଦ ଦାୟକ ହୋଇଅଛି, ଏଥିରେ କୌଣସି ସନ୍ଦେହ ନାହିଁ । ସତ୍ୟର ଆବରଣ ଉନ୍ମୋଚନ କରିବାରେ ଏହାର ପଦକ୍ଷେପମାନ ଦୃଢ଼, ଯୁକ୍ତି-ନିର୍ଭର, ପରୀକ୍ଷା-ପ୍ରବଣ, ବସ୍ତୁ-ନିଷ୍ଠ ଓ ପ୍ରମାଣ-ଭିତ୍ତିକ । ଏହାର ମାର୍ଗ ପ୍ରୟୋଗ-ପ୍ରସୂତ । ବିଜ୍ଞାନ ତାର ଧୀରସ୍ଥିର ଗତିରେ ଅଗ୍ରସର ହେଉଅଛି ଶେଷ ତତ୍ତ୍ୱର ଆବିଷ୍କାର ପାଇଁ । ଦିନେନା ଦିନେ ଏହି ପ୍ରୟାସ ସଫଳ ମଧ୍ୟ ହୋଇପାରେ । ବିଜ୍ଞାନକୁ କେହି ଅବଜ୍ଞା କରିପାରିବେ ନାହିଁ । ତେବେ ସତ୍ୟର ନିରୁପଣର ରାସ୍ତା ଗୋଟିଏ ନୁହେଁ । ଅନନ୍ୟ-ଏକତ୍ରିକୃତ-ତତ୍ତ୍ୱ ଅନ୍ୟ ରାସ୍ତାରେ ମଧ୍ୟ ମିଳେ । ଏ ବିଷୟରେ ଆମର ଶାସ୍ତ୍ରରେ ବହୁଳ ଆଲୋଚନା ଅଛି । ସେଗୁଡିକର କିଛି ଆଭାସ ପୂର୍ବ ପୃଷ୍ଠାଗୁଡିକରେ ଉଲ୍ଲେଖ କରାଯାଇଅଛି । ବିଶେଷତଃ ବେଦ, ଉପନିଷଦ, ଗୀତାର ଆଲୋକଦର୍ଶୀ ବାଣୀରେ ରହସ୍ୟ ଉଦ୍‌ଘାଟିତ ହୋଇଅଛି । କେବଳ ତାହା ନୁହେଁ । ଆମ ଦେଶର ମହାମନିଷୀ, ଋଷି, ଦ୍ରଷ୍ଟା, ଜ୍ଞାନୀ ଗୁଣିଲୋକେ ସେମାନଙ୍କର ନିଜର ଅଭିଜ୍ଞତା ଲୋକଲୋଚନରେ ପ୍ରକାଶ କରିଅଛନ୍ତି । ସେମାନଙ୍କର ଆଧାତ୍ମିକ କ୍ଷମତାବଳରେ କେତେକ ଶିଷ୍ୟଙ୍କୁ ଈଶ୍ୱର ଦର୍ଶନ ମଧ୍ୟ କରାଇଅଛନ୍ତି । ଏହା କେବଳ କେତେକ ମହାତ୍ମାଙ୍କର ନିଜସ୍ୱ ଉପଲବ୍ଧ ଧନ ନୁହେଁ । ଯୋଗମାର୍ଗରେ ଅଗ୍ରସର ହେଲେ ପ୍ରତ୍ୟେକେ ଏହାର ସୁଫଳ ପାଇପାରିବେ । ସେଥିପାଇଁ ପରମହଂସ ଯୋଗାନନ୍ଦ ''କ୍ରିୟାଯୋଗ''ର ପ୍ରଚାର ଓ ପ୍ରସାର କରିଯାଇଅଛନ୍ତି ।

ଶେଷରେ <u>ଶ୍ୱେତାଶ୍ୱେତର ଉପନିଷଦର ଉଲ୍ଲେଖଯୋଗ୍ୟ । ୨/୫ମନ୍ତ୍ର</u>

''ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ  
ଆଁୟେ ଧାମାନି ଦିବ୍ୟାନି ତସ୍ଥୁ ।।  
ବେଦାହଂ ଏତମ୍ ପୁରୁଷଂ ମହାନ୍ତମ୍ ।  
ଆଦିତ୍ୟ ବର୍ଣ୍ଣଂ ତମସଃ ପରସ୍ତାତ୍ ।।  
ତମେବ ବିଦିତ୍ୱାଽତି ମୃତ୍ୟୁ ଏତି ।  
ନାନ୍ୟ ପନ୍ଥା ବିଦ୍ୟତେ ଅୟନାୟ ।।''

''ହେ ଅମୃତର ପୁତ୍ରଗଣ ଓ ବହୁ ଦିବ୍ୟ-ଧାମ ମଧ୍ୟରେ ଥିବା ଆତ୍ମାମାନେ ଶୁଣନ୍ତୁ ! ମୁଁ ସେହି ମହାନ ପୁରୁଷଙ୍କୁ ଅନ୍ଧକାରର ପରପାରରେ ସୂର୍ଯ୍ୟାଲୋକ ପରି ଦେଦୀପ୍ୟମାନ ଭାବରେ ଦେଖିଅଛି । ମୃତ୍ୟୁକୁ ଅତିକ୍ରମ କରିଥିବା ସେହି ମହାନ ପୁରୁଷଙ୍କୁ ଜାଣି, ମୋର ହୃଦ୍‌ବୋଧ ହୋଇଅଛି ଯେ, ତାଙ୍କବ୍ୟତୀତ ଆଉ କୌଣସି ପନ୍ଥା ଏହି ମହାବିଶ୍ୱରେ ନାହିଁ ।'' ଉପର୍ଯ୍ୟୁକ୍ତ ତଥ୍ୟହିଁ ମହାବିଶ୍ୱର ସର୍ବଶ୍ରେଷ୍ଠ ତତ୍ତ୍ୱ ଅଟେ ।

## ମହାକାଳ

''ତ୍ୱମେକଃ ସର୍ବଭୂତାନାଂ ଦେହସ୍ୱାତ୍ମେନ୍ଦ୍ରିୟେଶ୍ୱରଃ ।
ତ୍ୱମେବ କାଲୋ ଭଗବାନ୍ ବିଷ୍ଣୁରବ୍ୟୟ ଈଶ୍ୱରଃ ।।'' — ଭାଗବତ

''ତୁମେ ସବୁ ପ୍ରାଣୀମାନଙ୍କର ଶରୀର, ଜୀବନ, ମନ ଓ ଇନ୍ଦ୍ରିୟର ଈଶ୍ୱର । ତୁମେହିଁ ମହାକାଳ । ତୁମେହିଁ ସର୍ବବ୍ୟାପି ଭଗବାନ, ବିଷ୍ଣୁ ଏବଂ ସର୍ବକ୍ଷମତାସମ୍ପନ୍ନ, ଅବ୍ୟୟ ଈଶ୍ୱର ।'' ଭାଗବତରେ ଈଶ୍ୱରଙ୍କୁ ମହାକାଳ ରୂପରେ ଚିତ୍ରିତ କରାଯାଇଅଛି । ଏହା ପୂର୍ବରୁ ପ୍ରଥମ ଅଧ୍ୟାୟରେ, ପ୍ରଶ୍ନବାଚୀ ପ୍ରସଙ୍ଗରେ ଶ୍ରୀମଦ୍ ଭଗବତ୍ ଗୀତାରେ ଶ୍ରୀକୃଷ୍ଣଙ୍କ ଉକ୍ତିର ଉଦ୍ଧୃତି ମଧ୍ୟ ଦିଆଯାଇ ଅଛି ! ସେ ନିଜକୁ ''କାଳୋସ୍ମି'' ବୋଲି ବର୍ଣ୍ଣନା କରିଛନ୍ତି । ସେ କହିଛନ୍ତି ଯେ ସର୍ବଧ୍ୱଂସକାରୀ କାଳରୂପରେ, ସେ ଅବତାର ଗ୍ରହଣ କରିଛନ୍ତି । ଧ୍ୱଂସ କରିସାରିବା ପରେ ଫେରିଯିବେ ।

କିନ୍ତୁ ମନୁଷ୍ୟ ମନରେ ପ୍ରଶ୍ନ ଉଠେ ଦୁର୍ନିବାର ଭାବରେ । ସିଦ୍ଧମାନଙ୍କର ଶେଷବାଣୀରେ ସେ ସନ୍ତୁଷ୍ଟ ନୁହେଁ । ଶ୍ରୀକୃଷ୍ଣଙ୍କର ବଚନକୁ ଏକାଳର ମାନବ ସମାଜ ବିନାଦ୍ୱିଧାରେ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହେଁ । ଆର୍ଯ୍ୟଋଷି ମାନଙ୍କର ଅଭିଜ୍ଞତାକୁ ସେମାନଙ୍କର ନିଜସ୍ୱ ଧାରଣା ବୋଲି ଟାଳିଦେଇ, ପ୍ରମାଣ ସାପେକ୍ଷ ବାସ୍ତବ ରୂପରେ ଉଦ୍‌ଭାସିତ ତଥ୍ୟକୁ ଗ୍ରହଣଯୋଗ୍ୟ ମନେକରେ ବୁଦ୍ଧିଦୀପ୍ତ ମାନବ । କାହାର ଉକ୍ତିରେ ସେ ବିଶ୍ୱାସ କରେନାହିଁ । ସେ ନିଜ ଆଖିକୁ ବିଶ୍ୱାସ କରେ, ନିଜର ଦୃଷ୍ଟି ଦେଇ ଦେଖେ, ନିଜର କାନ ଦେଇ ଶୁଣେ, ନିଜର ଅଭିଜ୍ଞତାରୁ ଶିଖେ, ନିଜର ଧ୍ୟାନ ଧାରଣା ଉପରେ ନିର୍ଭର କରେ, ସ୍ୱକୀୟ ଜ୍ଞାନଲବ୍ଧ ତଥ୍ୟ ଉପରେ ବିଶ୍ୱାସ କରେ । ତେଣୁ ସେ ବିଜ୍ଞାନ ପଦ୍ଧତି ଉଦ୍‌ଭାବନ କରି ସେହି ପଦ୍ଧତିରେ ଜ୍ଞାନ ଆହରଣ କରି ତାର ସୁଦୃଢ଼ ଅଟ୍ଟାଳିକା ନିର୍ମାଣ କରି ସେଥିରେ ବାସ କରେ । ଆଧୁନିକ ମାନବର ବିଶ୍ୱାସ ବାସ୍ତବତା-ସିଦ୍ଧ, ପ୍ରୟୋଗଶାଳାରେ ପରୀକ୍ଷିତ ସତ୍ୟ-ନିର୍ଭର, ବୈଜ୍ଞାନିକ ପ୍ରଣାଳିରେ ସଂଗୃହିତ ତଥ୍ୟ-ସଂକଳିତ । ତେଣୁ ''ମହାକାଳ'' ବିଷୟରେ ଆଧୁନିକ-ଜ୍ଞାନ-ବିଶିଷ୍ଟ ଏକାଳର ମନୀଷି

ମାନଙ୍କର ସ୍ୱତନ୍ତ୍ର ଚିନ୍ତାଧାରା ଅନୁଧ୍ୟାନ-ଯୋଗ୍ୟ । ତାହାପୂର୍ବରୁ ଆଦିମ ମନୁଷ୍ୟର ଚିନ୍ତାଧାରାଠାରୁ, ଏ ଯୁଗର ମନୀଷି ମାନଙ୍କର ଧାରଣାର ଅବତାରଣା ଆବଶ୍ୟକ ।

ପାଶ୍ଚାତ୍ୟଦେଶର ମହାନ ସାଧୁ ସେଣ୍ଟ୍ ଅଗଷ୍ଟାଇନ୍ କହିଥିଲେ, ''ମତେ ଯଦି କେହି ପଚାରନ୍ତି ଯେ ସମୟ ବସ୍ତୁଟି କଣ ? ତେବେ ମୁଁ ଉତ୍ତର ଦେବି ଯେ ମୋତେ ସେ ବିଷୟରେ କିଛି ଜଣାନାହିଁ ।'' ଏହା ଥିଲା ପଞ୍ଚମ ଶତାବ୍ଦିର ଧାରଣା । ବିଂଶ ଶତାବ୍ଦିରେ କିଛି ଉନ୍ନତ ଧାରଣା ମନୁଷ୍ୟ ମନରେ ପ୍ରତିଭାତ ହୋଇଛି କି ନାହିଁ ତାହାହିଁ ଏହି ପ୍ରବନ୍ଧର ପ୍ରତିପାଦ୍ୟ ବିଷୟ; ଆଲୋଚନାର ବସ୍ତୁ ଓ ଚିନ୍ତାର ଉପାଦାନ ।

ମନୁଷ୍ୟର ବ୍ୟବହାରିକ ଜୀବନରେ ''ସମୟ'' ଶବ୍ଦର ବ୍ୟବହାର ଅତି ସାଧାରଣ ଓ ବହୁଳ ଭାବରେ ପ୍ରଚଳିତ । ଏହି ଧାରଣା କର୍ମ ଓ ଚିନ୍ତାର ବଳୟରେ ବହୁ ଭାବରେ ପ୍ରଯୁକ୍ତ ଓ ସାବଳୀଳ ଭାବରେ ବ୍ୟବହୃତ । ଯେକୌଣସି ଅନୁଷ୍ଠାନରେ ଏହାର ପ୍ରୟୋଗ ଏକାବେଳେକେ ନିଶ୍ଚିତ ବୋଲି କୁହାଯାଇପାରେ, ମାତ୍ର ଏହାର ସଂଜ୍ଞା ଦେବା ଅତ୍ୟନ୍ତ ଦୁରୁହ । ଏହାର ଉଜ୍ଜ୍ୱଳ ସହଜବୋଧ ବର୍ଣ୍ଣନା ମଧ୍ୟ ଦୁସାଧ୍ୟ । କେବଳ ସାଧାରଣ ଧାରଣା ଉପରେ ଏହାର ସ୍ଥିତି ସମାଜରେ ସ୍ୱୀକୃତ । ଜୀବନରେ ଏହି ''ସମୟ-ଧାରଣା''ର ପ୍ରଭାବ ଅନନ୍ତ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସାହିତ୍ୟରେ ସମୟ ଧାରଣାର ଅବତାରଣା ସ୍ଥାନ କାଳ ବିଶେଷରେ ଚମକପ୍ରଦ ଓ ଆନନ୍ଦ ଦାୟକ । ଇଂରେଜ କବି ମାନଙ୍କର ଭାବପ୍ରକାଶ, ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ । କବି ମାନଙ୍କର ଧ୍ୟାନ ଧାରଣାରୁ ସମୟର ରୂପରେଖ ବିଚାର କରାଯାଇପାରେ ।

ମହାମନିଷୀ ସେକ୍ସପିୟରଙ୍କ ଭାଷାରେ "Mishapen time" "tyrant time" "Life was times fool". ଅର୍ଥାତ୍ ସମୟ ଅତ୍ୟନ୍ତ ଅତ୍ୟାଚାରୀ, ବିଷମ ଭାବରେ ତିଆରି ଆଉ ''ଜୀବନ'' ହେଲା ''ସମୟ'' ଦ୍ୱାରା ପ୍ରତାରିତ ଏକ ମୁର୍ଖ ବିଶେଷ । କବି Tenysonଙ୍କ କବିତା ''ସମୟ'' ବିଷୟରେ ନିର୍ଝର ସଦୃଶ ।

" Not in vain the distance beckons,
forward, forward, let us range,
Let the great world spin forever
down the ringing groves of change"

ବହୁଦୂରରୁ ସମୟର ଆହ୍ବାନ ମନୁଷ୍ୟପ୍ରତି ଦୁର୍ନିବାର । ଏହାର ଆହ୍ବାନ ବୃଥା ନୁହେଁ । ଆମ୍ଭେମାନେ ଦୁର୍ବାର ଗତିରେ ଭବିଷ୍ୟତ ଆଡକୁ ଆଗେଇଯିବା । ଏହି ବିଶ୍ୱ

ପରିବର୍ତ୍ତନର ଚକ୍ରରେ ଆବହମାନ କାଳ ପାଇଁ ଘୂର୍ଣ୍ଣାୟମାନ ହୋଇ ଅଗ୍ରସର ହେଉଥିବ । ଜନ୍ ଡନ୍ ବୋଲି ଜଣେ ମହାନ ଇଂରେଜ କବି ଲେଖିଥିଲେ ଯେ ନୀଚ ସ୍ତରର ପ୍ରାଣୀମାନେ "ବର୍ତ୍ତମାନ" ଦ୍ୱାରା ଆବଦ୍ଧ ହୋଇ ରହନ୍ତି । କିନ୍ତୁ ମନୁଷ୍ୟ ଭବିଷ୍ୟତର ପ୍ରାଣୀ । ମନୁଷ୍ୟ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ଚକ୍ରରେ ଜୀବନକୁ ସୁ ଶୃଙ୍ଖଳିତ କରିବାର କ୍ଷମତା ହାସଲ କରିଛି ।

"ବର୍ତ୍ତମାନ"ର ଶିକୁଳିରୁ ନିଜକୁ ମୁକ୍ତ କରି ଭବିଷ୍ୟତର ସ୍ରୋତରେ ଭାସିଯିବା ମନୁଷ୍ୟ ଜୀବନରେ ଏକ ସାମୂହିକ ପ୍ରଚେଷ୍ଟାରେ ପରିଣତ ହୋଇଅଛି । ଏହି ପ୍ରୟାସ ବିଶ୍ୱଜୀବନରେ ଏକ ସାର୍ବଜନୀନ ପଦ୍ଧତି ଓ ରୀତିରେ ପର୍ଯ୍ୟବସିତ । କିନ୍ତୁ ଜନ୍ମ, ଜୀବନ ଓ ମୃତ୍ୟୁର ବିଭୀଷିକା ମନୁଷ୍ୟକୁ ବିଚଳିତ କରେ ଅହରହ । ଏହି ରହସ୍ୟର ଉଦ୍‌ଘାଟନ ନ କରିପାରି ମନୁଷ୍ୟ ଏକ ଐନ୍ଦ୍ରଜାଲିକ ଜଗତର କଳ୍ପନା କରିଥାଏ । ଏହି ଜଗତରେ ମୃତ ମାନଙ୍କର ଆତ୍ମା ... ନେ ବିଚରଣ କରନ୍ତି ବୋଲି ଏକ ଧାରଣା ମନୁଷ୍ୟ ମନରେ ସ୍ଥାନ ପାଇ ଆସୁଅଛି । ଏହି ଅଳିକ ରାଜ୍ୟ କେବଳ ଧାରଣା ଉପରେ ଅବସ୍ଥିତ । ତାହାର ରୂପରେଖ କଳ୍ପନା ପ୍ରସୁତ ଏକ ଭାବରାଜ୍ୟ । ସାଧାରଣ ମନୁଷ୍ୟ ନିଜର ଜୀବନ ଧାରଣର ସାମଗ୍ରି ଜୋଗାଡ କରିବାରେ ଏତେ ବ୍ୟସ୍ତ ଯେ, "ସମୟ" ବିଷୟରେ ଭାବନା-ବିଳାସ ନିମନ୍ତେ ତାହାର ସମୟ କାହିଁ ? ସେ ନିଜର ଖାଦ୍ୟ, ପେୟ, ବାସସ୍ଥାନ ଓ ସ୍ୱାସ୍ଥ୍ୟ ରକ୍ଷାର୍ଥେ ଅହରହ ବ୍ୟାପୃତ । ତାହାର ଅନ୍ୟ ଚିନ୍ତା କରିବାର ଅବକାଶ ନାହିଁ ? ଅବଶ୍ୟ ସେ ସମୟର ବ୍ୟବହାର କରେ ଗୋଟିଏ ଘଣ୍ଟାଦ୍ୱାରା । ସେହି ଘଣ୍ଟାଟି ତାହାର ଦୈନନ୍ଦିନ କର୍ମାବଳିର ନିୟାମକ, ତାହାକୁ ଅନୁସରଣ କରି ମଣିଷ ତାହାର ସମୟୋପଯୋଗୀ କର୍ମ କରିଥାଏ, ତାହାର କର୍ତ୍ତବ୍ୟ ସମ୍ପାଦନ କରେ । ମଣିଷ ସମୟର ବ୍ୟବହାର ନିତ୍ୟ ନୈମିତ୍ତିକ ହେଲେ ମଧ୍ୟ ତାହା ଗୋଟିଏ ଘଣ୍ଟା ବା ଘଡିରେ (Clock) ସୀମିତ । ସମୟ ବିଷୟରେ ବ୍ୟାପକ ଚିନ୍ତା ସାଧାରଣ ନାଗରିକ ପକ୍ଷରେ ନିରର୍ଥକ । କାରଣ ସମୟ ତାର ହାତ କଟଟିରେ ବନ୍ଧା ହୋଇ ରହିଛି । ଘଡିଟିକୁ ଚାହିଁଲେ ସେ ଜାଣିପାରୁଛି ସମୟ କେତେ, ବାର କଣ ବା ମାସ କଣ ? ତେଣୁ ଅନ୍ୟ ଦିଗରେ ବ୍ୟାପକ ଚିନ୍ତା କରିବାର ତାର ଆବଶ୍ୟକତା ନାହିଁ । ହଁ, ସମୟର ନିର୍ଦ୍ଧାରଣ କରିଛି ସେ । ଯଥା, ଉତ୍ସବର ପାଳନ ନିମନ୍ତେ, ଋତୁର ନାମିକରଣ ପାଇଁ, ଫସଲକଟା ପାଇଁ, ଉପବାସ କରିବା ପାଇଁ, ବଣଭୋଜୀ ଓ ଭୋଜିଭାତ କରିବା ପାଇଁ , ମଞ୍ଜିବୁଣା ପାଇଁ, ଶିକାର କରିବା ପାଇଁ, ଆଉ ଅନେକ ଅନେକ ସାମାଜିକ ଉତ୍ସବ ନିମନ୍ତେ, ଏଗୁଡ଼ିକ ପୂର୍ବ ନିର୍ଦ୍ଧାରିତ ଭାବେ ଅନୁସୃତ ସମାଜର ରୀତି ନୀତି, ବିଧି ବିଧାନ, ସୁଷ୍ଠୁ ପରମ୍ପରା ଦ୍ୱାରା । ସହଜ ସାଧାରଣ ସମୟ ମାପିବାର ଉଦାହରଣ ମଧ୍ୟ ସେ ସୃଷ୍ଟିକରିଛି । ମାପିବାର

ସହଜିଆ ଉପାୟ, ମାନଦଣ୍ଡ ଯଥା ସେ ମୋଠାରୁ ବଡ, ଅନ୍ୟଜଣକ ମୋଠାରୁ ଛୋଟ; କୌଣସି ଏକ ଘଟଣାର ଆଗରୁ ବା ପଛରେ ଇତ୍ୟାଦି । ସୂର୍ଯ୍ୟ ଓ ଚନ୍ଦ୍ରର ଗତିକୁ ନେଇ ସମୟର ଚକ୍ର ନିର୍ଦ୍ଧାରଣ କରେ ମାନବ । ଏହି ଚକ୍ରରେ ସ୍ଥିରକରେ ଜନ୍ମମୃତ୍ୟୁର ଘଟଣା, ଉନ୍ନତି ଅବନତିର ପର୍ଯ୍ୟାୟ, କ୍ଷୟବୃଦ୍ଧିର ଧାରଣା । ସେ ନିଜ ଅଭିଜ୍ଞତାର ପାରମ୍ପାରିକ ବିନ୍ୟାସରେ ସ୍ଥିର କରେ ସମୟର ମାପକାଠି । ଅର୍ଥାତ୍ ନିତ୍ୟ ବ୍ୟବହାରିକ ଜୀବନରେ ପରମ୍ପରାର ସୃଷ୍ଟିରେ ସମୟର ନିରୁପଣ କରେ ସାଧାରଣ ମନୁଷ୍ୟ । ମନୁଷ୍ୟ ଜାଣେ ସମୟ ପରିବର୍ତ୍ତନଶୀଳ । ଏହି ପରିବର୍ତ୍ତନ ପଦ୍ଧତିରେ ଅନ୍ତର୍ନିହିତ ଅଛି ଉତ୍ଥାନ ଓ ପତନ, ଅଭିବୃଦ୍ଧି ଓ ଅବକ୍ଷୟ, ସୃଷ୍ଟି ଓ ବିନାଶ । ପରିବର୍ତ୍ତନ ଏକ ଆମୋଘ ପଦ୍ଧତି, ଏକ ଅବଧାରିତ ନୀତି, ଏକ ଅପ୍ରତିରୋଧ ପ୍ରକାଶ ଓ ପ୍ରସାର, ଏକ ପ୍ରବହମାନ ଧାରା ଏହି ମହାବିଶ୍ୱରେ । ଏହି ଧାରଣାଟି ମନୁଷ୍ୟର ଜୀବନର ଏକ ଅକ୍ଷୟ ଅନୁଭୂତି, ଏକ ବହୁମୂଲ୍ୟ ଅଭିଜ୍ଞତା, ବିନାଶଶୀଳ ଜୀବନର ଏକ ଅବିନାଶୀ ପ୍ରଜ୍ଞା ।

ସନ୍ଥ ଅଗଷ୍ଟାଇନ୍ କହିଥିଲେ - ''ଈଶ୍ୱରଙ୍କ ଅସୀମ ବ୍ୟାପ୍ତି ପରିବର୍ତ୍ତନଶୀଳ ନୁହେଁ, ସେ ବିଶ୍ୱକୁ ସମୟ ମାଧମରେ ସୃଷ୍ଟି କରିଥିଲେ । ଏହି ମହାବିଶ୍ୱ ସମୟଦ୍ୱାରା ହିଁ ସୃଷ୍ଟ ହୋଇଥିଲା; ସମୟ ମଧରେ ନୁହେଁ ।'' ଏହି ଅସୀମବ୍ୟାପ୍ତି ଶେଷ ପର୍ଯ୍ୟନ୍ତ ପ୍ରହେଳିକାରେ ପର୍ଯ୍ୟବସିତ ହୋଇ ରହିଅଛି । ମାତ୍ର କାଳଚକ୍ରର ଭୟ ମନୁଷ୍ୟ ମନରୁ କାଳକ୍ରମେ ଅପସାରିତ ହୋଇଅଛି । ତେବେ ମନୁଷ୍ୟର ସମୟକୁ ଜାଣିବାର ପିପାସା ବଳବତ୍ତର ଅଛି ଏବଂ ନ ଜାଣିବା ପର୍ଯ୍ୟନ୍ତ ଆବହମାନ କାଳ ପର୍ଯ୍ୟନ୍ତ ଏହା ଉଦ୍‌ଗ୍ରୀବ ହୋଇ ରହିବ ।

ଏଥର ଦାର୍ଶନିକମାନଙ୍କର ଧାରଣା ବିଚାର କରିବା ଆବଶ୍ୟକ । ଦୁଇଟି ପ୍ରଶ୍ନ ଉପରେ ଦାର୍ଶନିକ ମାନେ ଦୃଷ୍ଟି ନିକ୍ଷେପ କରିଛନ୍ତି । ପ୍ରଥମତଃ ସମୟ ଓ ଜଡ ଜଗତ ମଧରେ ସମ୍ବନ୍ଧ; ଦ୍ୱୀତିୟତଃ, ସମୟ ଓ ଚେତନା ମଧରେ ସମ୍ବନ୍ଧ । ସାର ଆଇଜାକ୍ ନିଉଟନ୍ କହିଥିଲେ ଯେ ସମୟ ଏକ ବିଶାଳ ପାତ୍ର ବିଶେଷ; ସେଥିରେ ଜଡଜଗତ ଅବସ୍ଥିତ । ଏହି ପାତ୍ରରେ ଅବସ୍ଥାନକାଳରେ ପରିବର୍ତ୍ତନ ଘଟିଥାଏ । ସମୟର ପ୍ରବାହ ପରିବର୍ତ୍ତନର ଅଧୀନ ନୁହେଁ । ଗତିର ବୃଦ୍ଧି ବା ହ୍ରାସ ହେବା ସହିତ ପଦାର୍ଥର ସ୍ଥିତି ସ୍ୱକୀୟ ପ୍ରକୃତିରେ ସ୍ଥିର ରହେ । ତାହାର ସ୍ୱତ୍ତ୍ୱର ପରିବର୍ତ୍ତନ ହୁଏ ନାହିଁ । ଏହା ନିଉଟନଙ୍କ ନିଜସ୍ୱ ମତ । କେତେକ ଦାର୍ଶନିକଙ୍କ ମତରେ ସମୟକୁ ପରିବର୍ତ୍ତନର ସ୍ୱରୁପବୋଲି ଚିନ୍ତା କରାଯାଇପାରେ । ଜଡଜଗତର ପରିବର୍ତ୍ତନର ଉର୍ଦ୍ଧରେ ସମୟର ଆଉକିଛି ଅସ୍ତିତ୍ୱ ନାହିଁ । ସମୟ ବିଷୟରେ ଯେତେ କଳ୍ପନା

ଜନ୍ମନା କରାଯାଉନା କାହିଁକି; ସେଗୁଡିକ ଜଡ ଜଗତର ପରିବର୍ତ୍ତନ ଉପରେ ନିର୍ଭରଶୀଳ ହେବାକୁ ବାଧ ।

ଅନ୍ୟ ଦିଗରେ ଚେତନା ଓ ସମୟର ସମ୍ବନ୍ଧ ବିଷୟରେ କେତେକ ଦାର୍ଶନିକ ମନେ କରନ୍ତି ଯେ ଚେତନଶୀଳ ମଣିଷର ଅସ୍ତିତ୍ୱ ଉପରେ ଏହି ସମ୍ବନ୍ଧ ସମ୍ପୂର୍ଣ୍ଣରୂପେ ନିର୍ଭରଶୀଳ । ଘଟଣାବଳି ତ ନିରନ୍ତର ଘଟି ଚାଲିଛି ଅବିରତ ଭାବରେ, ଚେତନାଯୁକ୍ତ ମନୁଷ୍ୟ ଥାଉ ବା ନଥାଉ । ମାତ୍ର ଚୈତନ୍ୟଯୁକ୍ତ ମନୁଷ୍ୟର ଅନୁପସ୍ଥିତିରେ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ଅସ୍ତିତ୍ୱ ଅସମ୍ଭବ । କେତେକ ମନୀଷିଙ୍କ ମତରେ ବର୍ତ୍ତମାନ, ଅତୀତ ଓ ଭବିଷ୍ୟତର କଳନା ବହିର୍ବିଶ୍ୱର ଧାରଣା ଉପରେ ଆଧାରିତ । ଅନ୍ୟ କେତେକଙ୍କ ମତରେ ସମୟର ପ୍ରବାହ ଅନ୍ୟମାନଙ୍କର ଧାରଣା, ଅନୁଭୂତି ଓ ଅଭିଜ୍ଞତାର ବାହାରେ ପ୍ରବାହିତ । ବସ୍ତୁଗୁଡିକ ସ୍ଥିର ହୁଅନ୍ତୁ ବା ଚଞ୍ଚଳ ହୁଅନ୍ତୁ, ମଣିଷ ସୁପ୍ତ ରହୁ ବା ଜାଗ୍ରତ ରହୁ, ସମୟ ତାର ନିର୍ଦ୍ଧାରିତ ଗତିରେ ଚାଲିଛି ଓ ଚାଲିଥିବ । ବହିର୍ବିଶ୍ୱ ସହିତ ତାହାର କୌଣସି ସମ୍ବନ୍ଧ ନାହିଁ । ଦାର୍ଶନିକ ମାନଙ୍କ ମତରେ ସମୟର କଳନା ମନୁଷ୍ୟର ଚିତ୍ତ-ନିର୍ଭର । ମହାନ ଜର୍ମାନ ଦାର୍ଶନିକ ଭିକ୍ଟର ଇମାନୁଏଲ୍ କାଣ୍ଟଙ୍କ ମତରେ ''ସମୟ'' ମନୁଷ୍ୟ ମନର ଏକ ବିଶେଷ ବିଭାବ (Category of the mind) । ମହାକାଳ ବକ୍ଷରେ ମହାବିଶ୍ୱର କୌଣସି ଉତ୍ପତ୍ତି ହୋଇଥିଲା କି ନାହିଁ ସେ ବିଷୟରେ ଗଭୀର ଚିନ୍ତା କରି ତାଙ୍କର ବିଶ୍ୱ ପ୍ରସିଦ୍ଧ ଗ୍ରନ୍ଥ ୧୭୮୧ ସାଲରେ ଲିଖିତ "Critique of Pure Reason" ରେ ଆଲୋଚନା କରିଅଛନ୍ତି । ସେ ଲେଖିଛନ୍ତି ଯେ ଏହି ମହାବିଶ୍ୱର ଏକ ପ୍ରାରମ୍ଭ ଥିଲା ଏ ବିଷୟରେ ସପକ୍ଷରେ ଯେତେ ଯୁକ୍ତି ଅଛି ବିପକ୍ଷରେ ମଧ ସେତିକି ଅଛି । ମହାବିଶ୍ୱର ଯଦି କୌଣସି ଆରମ୍ଭ ନଥାଏ, ତେବେ ତାହାପୂର୍ବରୁ ଏକ ଅସୀମ କାଳର ଅସ୍ତିତ୍ୱ ଥିବା ଉଚିତ । ତାଙ୍କ ମତରେ ଏହା ଅସମ୍ଭବ । ବିରୋଧୀ ଯୁକ୍ତିର ଅବତାରଣା କରି ସେ ଲେଖିଛନ୍ତି ଯଦି ମହାବିଶ୍ୱର ଆରମ୍ଭ ହୋଇଥାଏ, ତାହା ଆଗରୁ ମଧ ଏକ ଅସୀମ କାଳର ଅସ୍ତିତ୍ୱ ଥିଲା । ତେବେ ଗୋଟିଏ ବିଶେଷ ମୁହୂର୍ତ୍ତରେ ବିଶ୍ୱର ଜନ୍ମ ହେବ କାହିଁକି ? ପ୍ରକୃତପକ୍ଷେ ଏହି ଯୁକ୍ତି ସମଭାବରେ ଅସ୍ତିତ୍ୱ ଓ ନାସ୍ତିତ୍ୱ ଉପରେ ସେ ପ୍ରୟୋଗ କରିଅଛନ୍ତି । ତାଙ୍କର ଅବ୍ୟକ୍ତ ଅନୁମାନ ପ୍ରକାଶ କରି ସେ କହିଛନ୍ତି ମହାବିଶ୍ୱ ଚିରକାଳ ଥାଉ ବା ନଥାଉ, ''ମହାକାଳ'' ଚିରନ୍ତନ ଭାବରେ ବ୍ୟକ୍ତ ଅବସ୍ଥାରେ ସଂପ୍ରସାରିତ ହୋଇ ରହିଅଛି ।

ପାଶ୍ଚାତ୍ୟ ଦାର୍ଶନିକ ବର୍କଲେ ଓ ହ୍ୟୁମ ଯୁକ୍ତି ବାଢ଼ିଛନ୍ତି ଯେ ସମୟ ବିଷୟରେ ଆମର ସିଧାସଳଖ ଅଭିଜ୍ଞତା ନାହିଁ; କେବଳ ଘଟଣାବଳିର ପାରମ୍ପର୍ଯ୍ୟରୁ ଆମ୍ଭେମାନେ ସମୟର ଧାରଣା କରିଥାଉ । ମନସ୍ତତ୍ତ୍ୱବିତ୍‌ମାନେ ଜାଣିପାରିଛନ୍ତି ନିଜର ଗବେଷଣାଲବ୍ଧ

ଜ୍ଞାନରୁ ଯେ ମନୁଷ୍ୟ ମନର କ୍ରିୟା ବିଭିନ୍ନ ସମୟରେ ବିଭିନ୍ନ ''ସମୟର ପର୍ଯ୍ୟାୟ ଭିତ୍ତିରେ'' (Line plane) କାର୍ଯ୍ୟ କରିଥାଏ । ଅର୍ଥାତ୍, ସମୟ ଗୋଟିଏ ମାତ୍ର ସିଧାସଳଖ ରେଖାରେ ବ୍ୟାପ୍ତ ନୁହେଁ । ଏହାର ଭିନ୍ନ ଭିନ୍ନ ସ୍ତର ମଧ୍ୟ ଅଛି । ଯଥା କେତେକ ଅତୀତର ଦୃଶ୍ୟ ବର୍ତ୍ତମାନରେ ସୁଦ୍ଧା ମନୁଷ୍ୟମନରେ ପ୍ରତିଫଳିତ ହେଉଅଛି । ଉଦାହରଣ ସ୍ୱରୂପ ବିଶିଷ୍ଟ ଐତିହାସିକ ସାର୍ ଅରନୋଲ୍ଡ ଟୟନବି ଗୋଟିଏ ପୁରାତନ ସଭ୍ୟତାର ଧ୍ୱଂସାବଶେଷ ଦେଖିବାକୁ ଯାଇ ସେଯୁଗର ମଣିଷ ଗୁଡିକର ଯୁଦ୍ଧ-ବିଗ୍ରହ ନିଜ ଆଖିରେ ଦେଖିବାକୁ ପାଇଥିଲେ । ସେ ଜଣେ ଅତି ବିଜ୍ଞ ଲୋକ । ସେ ଭ୍ରମରେ ପଡିନଥିଲେ । ପରିଷ୍କାର ଦେଖିବାକୁ ପାଇଥିଲେ ପୁରାତନ ଯୁଗର ଏକ ଜୀବନ୍ତ ଦୃଶ୍ୟ ନିଜ ଆଖିରେ ସଜ୍ଞାନଭାବରେ ।

ସେହିପରି ଦୁଇଟି ଇଂରେଜ ଲଳନା ଦୁଇଟି ସ୍ଥାନରେ ଭବିଷ୍ୟତର ଏକ ଦୃଶ୍ୟ ଦେଖିବାକୁ ପାଇଥିଲେ ଓ ତାହା ପ୍ରକାଶ କରିଥିଲେ । ସେମାନଙ୍କର ସାକ୍ଷ୍ୟ, ପରେ ଘଟଣାଦ୍ୱାରା ସତ୍ୟ ପ୍ରମାଣିତ ହୋଇଥିଲା । ଏଥିରୁ ବୁଝାଗଲା ଯେ ସମୟ ଏକସ୍ତରରେ ଆବଦ୍ଧ ନୁହେଁ । ଏହାର କ୍ରିୟା ବିଭିନ୍ନ ସ୍ତରରେ ବିଭିନ୍ନ ରୂପରେ ବିଭିନ୍ନ କ୍ଷେତ୍ରରେ ବିଭିନ୍ନ ଅଭିଜ୍ଞତା ମାଧ୍ୟମରେ ନିଜକୁ ପ୍ରକାଶ କରୁଅଛି । ମନୁଷ୍ୟତାର କ୍ଷୁଦ୍ର ବୁଦ୍ଧି ଯୋଗୁ ତାହାର ଅନୁଧାବନ ନ କରିପାରି ତାକୁ ଅଳିକ ଆଖ୍ୟାଦେଇ ନିଜକୁ ମୂର୍ଖଭଳି ସାନ୍ତ୍ୱନାଦେଇ ନୀରବ ରହୁଅଛି । ପାଶ୍ଚାତ୍ୟରେ ଏ ବିଷୟରେ ଗଭୀର ଅନୁସନ୍ଧାନ ସାହାଯ୍ୟରେ ମନସ୍ତାତ୍ତ୍ୱିକମାନେ ବହୁ ବିରଳ ଘଟଣାର ତାତ୍ତ୍ୱିକ ସତ୍ୟ ନିରୂପଣ କରିବାରେ ସମର୍ଥ ହୋଇଛନ୍ତି । ଏହିପରି ଧାରଣାରୁ ପ୍ରସିଦ୍ଧ ଲେଖକ HG Wells ଗୋଟିଏ ବୈଜ୍ଞାନିକ ଉପନ୍ୟାସ ଲେଖିଛନ୍ତି "Time Machine" ବୋଲି । ଏହି ଯନ୍ତ୍ରରେ ବସି ମନୁଷ୍ୟ ଅତୀତ ଓ ଭବିଷ୍ୟତର ଗର୍ଭକୁ ବିଚରଣକରି ଅବଲୀଳାକ୍ରମେ ବାସ୍ତବ ଚିତ୍ର ସଂଗ୍ରହ କରିବାକୁ ସମର୍ଥ ହେବ । ଲେଖିକା Virginia wolfe ଲେଖିଥିଲେ ଯେ ସମୟର ପ୍ରଭାବ ଅଭାବନୀୟ ଭାବେ ଫୁଲ, ଫଳ, ଜୀବଜନ୍ତୁଙ୍କ ଉପରେ ପରିସ୍ଫୁଟ । ଠିକ୍ ସମୟରେ ଫୁଲ ଫୁଟେ, ଫଳ ହୁଏ, ପ୍ରାଣୀମାନେ ଜଣା ଅଧିକେ ଠିକ୍ ସମୟରେ ମରନ୍ତି । ମାତ୍ର ସମୟର ମଣିଷ ଉପରେ ପ୍ରଭାବ ଏତେ ସହଜରେ ଅନୁମେୟ ନୁହେଁ । ସେମାନଙ୍କର ମାନସିକ କ୍ରିୟା ଅତି ଜଟିଳ ଓ ଦୁର୍ଜ୍ଞେୟ ।

ବୈଜ୍ଞାନିକ ଓ ଦାର୍ଶନିକ ବିଚାର ଆଲୋଚନା ସମୟର ରହସ୍ୟ ବିଷୟରେ ସମାଧାନ ପରିବର୍ତ୍ତେ ବହୁ ନୂଆନୂଆ ସମସ୍ୟା ସୃଷ୍ଟି କରି ଅଛି । ମାତ୍ର ସମୟ ବିଷୟରେ ଆଧୁନିକ ମାନବର ଚେତନା ବହୁ ଶତାବ୍ଦିର କୃଷି, ସଂସ୍କୃତି, ଚିନ୍ତାର ପ୍ରୟୋଗରେ ଦୃଢ ପରିବର୍ତ୍ତନର ପଦକ୍ଷେପ ମାନ ନେଇଅଛି । ଏବର ମଣିଷର ସମୟ ଚେତନା କେବଳ ଜୀବନ-ଧାରଣ ବୃତ୍ତରେ ସୀମିତ ନୁହେଁ । ଏବର ସମାଜ ଦୃଢ଼ ପରିବର୍ତ୍ତନ ଧାରାରେ ସମ୍ପୂର୍ଣ୍ଣ

ଭାବରେ ବଦଳିଯାଇଛି; ଏବଂ ଏହି ପରିବର୍ତ୍ତନର ପ୍ରକ୍ରିୟା ଦିନୁକୁଦିନ ବିଶାଳ ଆକାର ଧାରଣ କରି ଏ ଯୁଗର ଏକ ଜଟିଳ ଜୀବନଧାରାର ସୋପାନ ସୃଷ୍ଟି କରିଅଛି । ଏହି ପରିବର୍ତ୍ତନକୁ ସମାଜ ଉନ୍ନତି, ଅଗ୍ରଗତି ଓ ଅଭିବୃଦ୍ଧିର ଆଖ୍ୟା ଦେଇଅଛି । ସମୟ ବିଷୟରେ ଚେତନା ମନୁଷ୍ୟ ସମାଜର ସବୁସ୍ତରରେ ଅତି ସୂକ୍ଷ୍ମ ଭାବରେ ଓତପ୍ରୋତ ହୋଇ ଜଡିତ । କାରଣ ସମୟ ଏହି ପରିବର୍ତ୍ତନ ଏକ ଜାଗ୍ରତ ପ୍ରହରୀ ରୂପେ କାର୍ଯ୍ୟକରି, ଅତୀତକୁ ଦ୍ରୁତ ବଦଳାଇ ଦେଇ, ଭବିଷ୍ୟତର ସୋପାନ ଶୀଘ୍ର ତିଆରି କରିବାରେ ସାହାଯ୍ୟ କରୁଅଛି । ମାନବ ଜାତିର ସଂସ୍କୃତି ଭବିଷ୍ୟତର ଆଭିମୁଖ୍ୟରେ ପ୍ରବାହିତ । ଅତୀତକୁ ପଛରେ ପକାଇ ଆମର ସଭ୍ୟତା ନୂଆ ନୂଆ ଉଦ୍‌ଭାବନରେ ବ୍ୟସ୍ତ, ନୂତନ ଦିଗନ୍ତ ସୃଷ୍ଟି ନିମନ୍ତେ ଧାବିତ । ତେଣୁ ସମୟକୁ ଏବର ସମାଜ ମାତ୍ର କାଳଚକ୍ର ରୂପେ ବ୍ୟବହାର ନ କରି ଉନ୍ନତିମୂଳକ (developmental) ଅସ୍ତ୍ରରୂପେ ବ୍ୟବହାର କରୁଅଛି । ସମଗ୍ର ମାନବଜାତି ସମୟରୁ ଜାତ ତାହାର ପୁତ୍ର ପୌତ୍ରାଦି ହେଲେ ମଧ୍ୟ, ଅନ୍ତିମରେ ସମୟ ତାହାର ପିଲାପିଚିକା ମାନଙ୍କୁ ଗିଳିଦେଉ ଅଛି । ଆମ୍ଭେମାନେ ଶେଷରେ ସମୟର ଆହାରରେ ପରିଣତ ହେଉଅଛୁ । ହେଲେ ମଧ୍ୟ, ମାନବ ସହଜରେ ହାରିଯିବାର ପାତ୍ର ନୁହେଁ । ହଜାରେ ମଣିଷ ମଲେ, ଲକ୍ଷ ଲକ୍ଷ ସେମାନଙ୍କର ସ୍ଥାନ ପୂରଣ କରୁଅଛନ୍ତି । ମନୁଷ୍ୟ ସମାଜ ଋଦ୍ଧ ଭାବରେ ଅଗ୍ରସର ହୋଇ ବହୁ ରହସ୍ୟର ସମାଧାନରେ ଅଗ୍ରଣୀ ହୋଇଅଛି । ପୁରାତନ ଭାବଧାରାର ଆମୂଳଚୂଳ ପରିବର୍ତ୍ତନ କରି, ସମାଜରେ ନବଚେତନାର ଉନ୍ମେଷ କରାଇବାରେ ସଫଳ ହୋଇଅଛି । ଜୀବନ ଯାପନ ପଦ୍ଧତିକୁ ବହୁଳ ଭାବରେ ଋଦ୍ଧିମନ୍ତ କରି ଭୋଗବିଳାସର ନବ ଦିଗନ୍ତ ସୃଷ୍ଟି କରିବାକୁ ବିଶେଷ ଭାବରେ ସମର୍ଥ ହୋଇଅଛି । ଆଜିର ମଣିଷ ଜୀବନ ରହସ୍ୟ ଉଦ୍‌ଘାଟନ ନିମନ୍ତେ ସବୁ ବିଭାଗରେ ନିଜର ଅନୁସନ୍ଧାନ ଜାରି ରଖି ଦୃଢ଼ ଗତିରେ ବଦ୍ଧପରିକର ଭାବରେ ଅଗ୍ରସର ହେଉଅଛି । ଆଧୁନିକ ଯୁଗରେ ''ସମୟ-ଚେତନା''ର ପୁନର୍ମୂଲ୍ୟାୟନ ହୋଇଅଛି ବିଶ୍ୱବିଶ୍ରୁତ ମହାମନୀଷି ଆଇନ୍‌ଷ୍ଟାଇନଙ୍କ ଦ୍ୱାରା । ସମୟ ବିଷୟକ ତଥ୍ୟର ସମ୍ପୂର୍ଣ୍ଣ ମୂଲ୍ୟାୟନ ନିମନ୍ତେ ମନୁଷ୍ୟର ଭାବଧାରାର ଆମୂଳ ପର୍ଯ୍ୟାଲୋଚନା ଆବଶ୍ୟକ ।

ପ୍ରଥମେ ଲୋକେ ଦାର୍ଶନିକ ଆରିଷ୍ଟୋଟଲ୍‌ଙ୍କ ମତରେ ବିଶ୍ୱାସ କରୁଥିଲେ । ସେ ବିଶ୍ୱାସ କରୁଥିଲେ ଯେ ବସ୍ତୁ ପିଣ୍ଡର ସ୍ୱାଭାବିକ ଅବସ୍ଥା ଗତିଶୀଳ ହୁଏ, କେବଳ ବଳପ୍ରୟୋଗରେ ବା ଆଘାତ-ପ୍ରକ୍ରିୟାଦ୍ୱାରା (Impulse) । ସେ କହିଥିଲେ ବିଶୁଦ୍ଧ ଚିନ୍ତା ସାହାଯ୍ୟରେ ସମସ୍ତ ବିଧି ସୃଷ୍ଟି କରିବା ସମ୍ଭବପର ହୋଇପାରେ । ମାତ୍ର ଗାଲିଲିଓ ତାଙ୍କର ପିସାନଗରୀରେ ଥିବା ସ୍ତମ୍ଭରୁ ପିଣ୍ଡକ୍ଷେପଣ କରି ପ୍ରମାଣ କରିଦେଲେ ଯେ ଆରିଷ୍ଟୋଟଲଙ୍କ

ଧାରଣା ଭୁଲ । ଓଜନ ଯାହା ହେଉନା କାହିଁକି ତଳକୁ ପ୍ରକ୍ଷିପ୍ତ ପିଣ୍ଡର ଗତି (Speed) ଏକ ରକମର ବୋଲି ପ୍ରତୀୟମାନ । ଗାଲିଲିଓଙ୍କ ଧାରଣାର ଭିତ୍ତିରେ ନିଉଟନ ତାଙ୍କର ଗତିବିଧି ନିୟମର ନିରୂପଣ (Laws of motion) କରିଥିଲେ । ୧୬୮୭ ସାଲରେ ଲିଖିତ ତାଙ୍କର ବିଶ୍ୱବିଖ୍ୟାତ ଗ୍ରନ୍ଥ "Principia Mathematica" ରେ ସେ ତାଙ୍କର ଆବିଷ୍କାରର ଯଥାଯଥ ବର୍ଣ୍ଣନା ଦେଇ ଗତିନିୟମ କୁ ପ୍ରତିଷ୍ଠିତ କରିଥିଲେ ବିଜ୍ଞାନକ୍ଷେତ୍ରରେ । ତାହା ଜ୍ଞାନର ସ୍ତମ୍ଭରୂପେ ନିର୍ଣ୍ଣୀୟିତ ହୋଇ ଅଦ୍ୟାବଧି ନବ ଉନ୍ମେଷର ଭିତ୍ତି ସ୍ଥାପନ କରିଅଛି । ତାଙ୍କର ଯୁଗାନ୍ତକାରୀ ଆବିଷ୍କାର ହେଲା ମାଧ୍ୟାକର୍ଷଣ ଶକ୍ତି ।

ମାତ୍ର ବିସ୍ମୟକର ଆବିଷ୍କାର କରିବାପରେ ମଧ ନିଉଟନ ଅତ୍ୟନ୍ତ ଚିନ୍ତିତ ଥିଲେ । ପରମ ସ୍ଥାନ ବା ଚରମ ଅବସ୍ଥାନ ର ଅସ୍ତିତ୍ୱ ନେଇ ସେ ଥିଲେ ବିଶେଷ ଭାବରେ ଉଦ୍‌ବିଗ୍ନ । ତାଙ୍କର ଈଶ୍ୱରଙ୍କ ବିଷୟରେ ଧାରଣା ସହିତ ତାଙ୍କର ଆବିଷ୍କୃତ ତଥ୍ୟର ସମନ୍ୱୟ ଖୋଜି ପାଇନଥିଲେ ସାର୍ ଆଇଜାକ୍ । ସେ ପରମସ୍ଥାନର ଅସ୍ତିତ୍ୱ ସମ୍ବନ୍ଧରେ ଦୃଢ଼ ପ୍ରତ୍ୟୟ ହୋଇଥିଲେ ମଧ, ବିଜ୍ଞାନର ତଥ୍ୟ ଭିତ୍ତିରେ ତାହା ପ୍ରତିଷ୍ଠିତ କରିପାରୁନଥିଲେ । ତାଙ୍କର ଦ୍ୱର୍ଥବୋଧକ ଉକ୍ତି ଯୋଗୁ ତାଙ୍କୁ ବହୁ ସମାଲୋଚନାର ସମ୍ମୁଖୀନ ହେବାକୁ ପଡିଥିଲା । ଦାର୍ଶନିକ ବାର୍କଲେ କହିଲେ ଯେ ସମସ୍ତ ବାସ୍ତବ ପଦାର୍ଥ, ସ୍ଥାନ ଓ କାଳ ଏକାବେଳେକେ ଭ୍ରମାତ୍ମକ (Illusion) । ବାର୍କଲେଙ୍କ ଉକ୍ତିକୁ Dr. Johnson ସମ୍ପୂର୍ଣ୍ଣ ରୂପେ ଅଗ୍ରାହ୍ୟ କରିଥିଲେ । ସାଧାରଣ ବୁଦ୍ଧିଦୀପ୍ତ ମନୁଷ୍ୟର ଧାରଣା ଥିଲା ଯେ ମହାକାଳ ସ୍ଥାନ ଅପେକ୍ଷା ଏକାବେଳେକେ ପୃଥକ ଓ ସ୍ଥାନଠାରୁ ନିରପେକ୍ଷ ଓ ବିଯୁକ୍ତ । ମାତ୍ର ଏହି ଧାରଣା ଭ୍ରମାତ୍ମକ ବୋଲି ପରେ ପ୍ରମାଣିତ ହୋଇଅଛି । ମାଧ୍ୟାକର୍ଷଣ ଶକ୍ତିର ପ୍ରଭାବ ବସ୍ତୁପିଣ୍ଡ ଉପରେ କାର୍ଯ୍ୟକଲେ ମଧ ଆଲୋକର ଗତି ଉପରେ ଏହାର କୌଣସି ପ୍ରଭାବ ଲକ୍ଷ୍ୟ କରାଯାଏ ନାହିଁ । ପ୍ରଖ୍ୟାତ ବିଜ୍ଞାନୀ ଜେମସ୍ ମ୍ୟାକ୍ସଉୟେଲ ବିଜୁଳି ଓ ଚୁମ୍ବକ ସମ୍ବନ୍ଧୀୟ ତତ୍ତ୍ୱଗୁଡିକୁ ଏକତ୍ର କରି ସମୀକରଣ କରିବାକୁ ସମର୍ଥ ହୋଇଥିଲେ । ସେ ଭବିଷ୍ୟତବାଣୀ କରିଥିଲେ ଯେ ରେଡିଓ ନା ଆଲୋକ ତରଙ୍ଗ ଗୁଡିକ ବିଶେଷଭାବରେ ଚଳମାନ ହେବେ । ଯଦି ଆଲୋକ ରଶ୍ମି ଗତିଶୀଳ ହୋଇ ପ୍ରସାରିତ ହୁଏ ତେବେ ତାହାର ପରିମାପ କିପରିଭାବରେ ସମ୍ଭବ ହେବ ? ଜଣେ ବିଜ୍ଞାନୀ ଅନୁମାନ କଲେ ଯେ "ଇଥର" ବୋଲି ଏକ ପଦାର୍ଥ ଅଛି ଯାହା ସର୍ବତ୍ର ବିରାଜମାନ, ଏପରିକି ମହାଶୂନ୍ୟରେ ମଧ ଏହାର ସ୍ଥିତି ରହିଛି । ଶବ୍ଦତରଙ୍ଗ ଯେପରି ବାୟୁ ମଧଦେଇ ଗତିକରେ, ଆଲୋକ ତରଙ୍ଗ ସେହିପରି ଇଥର ମଧଦେଇ ଚଳପ୍ରଚଳ ହୋଇଥାଏ । ଏହି ବିଷୟରେ ଗଭୀର ପରୀକ୍ଷା ଅନେକ ବିଜ୍ଞାନୀ ଚଳାଉଥାନ୍ତି । ଏତିକିବେଳେ ସ୍ୱିଜରଲାଣ୍ଡର ପେଟେଣ୍ଟ ଅଫିସରେ କାମକରୁଥିବା ଜଣେ ଅଖ୍ୟାତ ବ୍ୟକ୍ତି

ଗୋଟିଏ ଗବେଷଣାର ଫଳଶ୍ରୁତିସ୍ୱରୂପ ଏକ ଯୁଗାନ୍ତକାରୀ ଲେଖାରେ ପ୍ରମାଣ କରିଦେଲେ ଯେ ଯଦି ପରମ-ମହାକାଳ ପରିକଳ୍ପନା ଏକାବେଳେକେ ତ୍ୟାଗ କରାଯାଏ, ତେବେ ଇଥର ସମ୍ବନ୍ଧୀୟ ଧାରଣା ସମ୍ପୂର୍ଣ୍ଣଭାବେ ଅପ୍ରୟୋଜନୀୟ ବୋଲି ପ୍ରତିଭାତ ହୁଏ । ଏହି ସାଧାରଣ କିରାଣୀଙ୍କ ନାମ ହେଲା - ଆଲବର୍ଟ ଆଇନଷ୍ଟାଇନ୍ ।

ତାଙ୍କର ଆବିଷ୍କୃତ ଆପେକ୍ଷିକତାବାଦ ବା Theory of relativity ଦ୍ୱାରା ମନୁଷ୍ୟର ଚିନ୍ତାରାଜ୍ୟରେ ଏକ ବିପ୍ଲବର ସୂତ୍ରପାତ ହେଲା । ଆଲବର୍ଟ ଆଇନଷ୍ଟାଇନ ପ୍ରତିପାଦନ କଲେ ଯେ ମହାକର୍ଷର ଶକ୍ତି ବା ବଳ ଅନ୍ୟାନ୍ୟ ଶକ୍ତିଠାରୁ ଭିନ୍ନ । ସ୍ଥାନ-କାଳ ସମତଳ ବା flat ନୁହେଁ । ଏହା ବକ୍ର ଓ ବଙ୍କିମ । ଯାହାକୁ ଇଂରାଜି ଭାଷାରେ Warped କୁହାଯାଏ । ଏହାର ପ୍ରଧାନ କାରଣ ହେଲା ସ୍ଥାନ-କାଳର ପ୍ରଭାବ ଓ ଶକ୍ତିର ବଣ୍ଟନ ପ୍ରକ୍ରିୟା । ଆଇନଷ୍ଟାଇନଙ୍କ ମତରେ ମହାକର୍ଷ ବା ମାଧ୍ୟାକର୍ଷଣ ଶକ୍ତି ଏହାର ଫଳଶ୍ରୁତି ସ୍ୱରୂପ । ପୃଥିବୀ ଭଳି ଓଜନଦାର ବସ୍ତୁପିଣ୍ଡ ବଙ୍କିମ କକ୍ଷ ପଥରେ ଅଗ୍ରସର ହୁଏ । ତାହାର କାରଣ ମଧ୍ୟାକର୍ଷଣ ଶକ୍ତି ନୁହେଁ । ପୃଥିବୀଭଳି ଅନ୍ୟ ଗ୍ରହମାନେ ସମସ୍ତେ ବଙ୍କିମ ସ୍ଥାନରେ ସହଜ ସରଳ ଭାବରେ ନିକଟତମ ପଥ ଅନୁସରଣ କରନ୍ତି । ବ୍ୟାପକ ଆପେକ୍ଷିକତାବାଦ ବା General Theory of Relativity ଅନୁସାରେ ବସ୍ତୁ ପିଣ୍ଡ ଗୁଡିକ ଆକାଶ ମାର୍ଗରେ ସବୁ ସମୟରେ ଚତୁର୍ମାତ୍ରିକ ସ୍ଥାନ-କାଳର (four dimansional) ସିଧା ସଳଖ ରେଖା ଅନୁସରଣ କରିଥାଆନ୍ତି । ଆମର ମନେହୁଏ ସେଗୁଡିକ ତ୍ରିମାସିକ ସ୍ଥାନରେ ବଙ୍କିମପଥରେ ଧାବମାନ । ଏହି ବ୍ୟାପକ ଆପେକ୍ଷିକତାବାଦର ଭବିଷ୍ୟତ ବାଣୀ ହେଲା ଯେ ମହାକର୍ଷୀୟ କ୍ଷେତ୍ର ଆଲୋକକୁ ବଙ୍କିମ କରିଦେବ । ଅନ୍ୟଭାବରେ ଚିନ୍ତାକରି ଦେଖାଗଲାଯେ ଦୂରବର୍ତ୍ତୀ ତାରକାମାନଙ୍କରୁ ନିର୍ଗତ ଆଲୋକ ସୂର୍ଯ୍ୟର ପାର୍ଶ୍ୱଦେଇ ଗଲାବେଳେ କିଛି ପରିମାଣରେ ବିଚ୍ୟୁତ ହେବ ହିଁ ହେବ । ୧୯୧୯ ସାଲରେ ପଶ୍ଚିମ ଆଫ୍ରିକାରେ ଗ୍ରହଣ ଲାଗିବା ସମୟରେ ବିଜ୍ଞାନୀମାନେ ପରୀକ୍ଷା କରି ଦେଖିଲେ ଯେ ଆଲୋକରଶ୍ମି ପ୍ରକୃତ ପକ୍ଷରେ ସୂର୍ଯ୍ୟଦ୍ୱାରା ବିଚ୍ୟୁତ ହେଉଅଛି । ଏଥିରୁ ପୂର୍ବ ଆଲୋଚିତ ତଥ୍ୟର ବିଶେଷ ଦୃଢିକରଣ ସମ୍ଭବପର ହୋଇଥିଲା । ଏହି ପୂର୍ବ କଥିତ ତତ୍ତ୍ୱର ଆଉ ଗୋଟିଏ ଭବିଷ୍ୟତ ବାଣୀ ହେଲା ପୃଥିବୀ ପରି ଗୁରୁଭାର ବସ୍ତୁ-ପିଣ୍ଡର ନିକଟବର୍ତ୍ତୀ ହେଲେ ସମୟର ଗତି ମଧ୍ୟ ଶ୍ଳଥ ମନେହୁଏ, ତାର କାରଣ ଆଲୋକର ତରଙ୍ଗ ସଂଖ୍ୟା ଓ ଆଲୋକର ଶକ୍ତି ମଧ୍ୟରେ ଏକ ସମ୍ପର୍କ ବିଦ୍ୟମାନ । ଶକ୍ତି ଯେତେ ବେଶୀ ହୁଏ frequency ଅର୍ଥାତ୍ ସ୍ପନ୍ଦାଙ୍କ ସେତେ ବଢ଼ିଯାଏ । ଆଲୋକ ପୃଥିବୀର ମହାକର୍ଷୀୟ କ୍ଷେତ୍ର ମଧ୍ୟ ଦେଇ ଯେତେ ଉପରେ ଯିବ, ସେତିକି ତାର ଶକ୍ତି କ୍ଷୟ ହେବ । ବହୁ ଉଚ୍ଚରେ ଅବସ୍ଥିତ କୌଣସି ଲୋକ ମନେ କରେ ଯେ ନୀଚସ୍ଥ ସ୍ଥାନର ସବୁ ଘଟଣା ଦେରୀରେ ଘଟୁଅଛି । ଏହି

ବିଷୟଟି ମଧ୍ୟ ୧୯୬୨ ସାଲରେ ପରୀକ୍ଷିତ ହୋଇଥିଲା । ଅତି ଉଚ୍ଚରେ ଓ ବହୁତଳେ ଦୁଇଟି ଘଣ୍ଟା ସ୍ଥାପନ କରି ଦେଖାଗଲା ଯେ ପୃଥିବୀର ନିକଟବର୍ତ୍ତୀ ଯେଉଁ ଘଣ୍ଟାଟି ଥିଲା ତାହାର ଗତି ଧୀର ।

ଆଇନଷ୍ଟାଇନଙ୍କ ଆପେକ୍ଷିକତାବାଦ ସ୍ଥିର ଅବସ୍ଥାନ ଧାରଣାକୁ ଓ ସ୍ଥିରକାଳ ଚିନ୍ତାକୁ ଏକାବେଳେକେ ଭୁଲ ବୋଲି ପ୍ରମାଣ କରିଦେଇଅଛି । ଏହି ତତ୍ତ୍ୱରେ ପରମକାଳର କୌଣସି ଅସ୍ତିତ୍ୱ ନାହିଁ । ତାହା ବଦଳରେ ଅଛି ବ୍ୟକ୍ତି ବିଶେଷର ନିଜର କାଳ ପରିମାପର ପଦ୍ଧତି । ଏହି କାଳର ପରିମାଣ ନିର୍ଭର କରେ ମଣିଷର ଅବସ୍ଥାନ ଉପରେ ଏବଂ ତାର ଗତି-ପ୍ରକୃତି ଉପରେ । ୧୯୧୫ ସାଲପୂର୍ବରୁ ମନୁଷ୍ୟର ଧାରଣା ଥିଲା ସ୍ଥାନ ଏବଂ କାଳ ଗୋଟିଏ ସ୍ଥିର କ୍ଷେତ୍ର ବା arena ଯେଉଁଠି ଘଟଣାବଳି ଘଟୁଅଛି । ସେହି ଘଟଣାବଳିଦ୍ୱାରା କ୍ଷେତ୍ରଟି ପ୍ରଭାବିତ ହୁଏ ନାହିଁ । ବସ୍ତୁପିଣ୍ଡ ଗୁଡିକ ଧାବମାନ । ସେମାନେ ପରସ୍ପରକୁ ଆକର୍ଷଣ ବା ବିକର୍ଷଣ କରନ୍ତି । ମାତ୍ର ସ୍ଥାନ ଓ କାଳର କୌଣସି ବିକାର ନଥାଏ । ସେମାନେ ଚିରସ୍ଥାୟୀ ଓ ଚିରନ୍ତନଭାବେ ବ୍ୟାପ୍ତ ହୋଇ ରହିଛନ୍ତି ।

ମାତ୍ର ଏପରି ଧାରଣାକୁ ଆପେକ୍ଷିକତାବାଦ ଧୂଳିସାତ୍‌କଲା । ଏହି ତତ୍ତ୍ୱ ପ୍ରମାଣ କଲା ଯେ ସ୍ଥାନ ଓ କାଳ ଦୁଇଟି ଗତିଶୀଳ ରାଶି । ଗୋଟିଏ ବସ୍ତୁପିଣ୍ଡ ଯେତେବେଳେ ଚଳମାନ ବା ଧାବମାନ ହୁଏ, ଅଥବା କୌଣସି ଶକ୍ତି ବା ବଳ ଯେତେବେଳେ କ୍ରିୟାଶୀଳ ହୁଏ, ସେତେବେଳେ ତାହା ସ୍ଥାନ-କାଳର ବକ୍ରତାକୁ ପ୍ରଭାବିତ କରେ । ପୁନଶ୍ଚ ସ୍ଥାନ-କାଳର ଗଠନ ପୁଣି ପ୍ରଭାବିତ କରେ ବସ୍ତୁ ପିଣ୍ଡ ଗୁଡିକର ଚଳମାନ-ପ୍ରକ୍ରିୟାକୁ ଏବଂ ନାନା ଧରଣର ଶକ୍ତି ବା ବଳ ପ୍ରୟୋଗର ପ୍ରକ୍ରିୟାକୁ । ମହାବିଶ୍ୱରେ ଯାହା ଘଟେ ସେଗୁଡିକ କେବଳ ସ୍ଥାନ କାଳକୁ ପ୍ରଭାବିତ କରେ ତାହାନୁହେଁ, ସ୍ଥାନ-କାଳ ନିଜେ ନିଜେ ମଧ୍ୟ ସେଗୁଡିକଦ୍ୱାରା ପ୍ରଭାବିତ ହୋଇଥାଆନ୍ତି । ଯଥା-ମହାବିଶ୍ୱରେ ଯେଉଁସବୁ ଘଟଣାବଳି ଘଟୁଅଛି ସେ ବିଷୟରେ କହିବାକୁ ଗଲେ ସ୍ଥାନ-କାଳ ବିଷୟରେ ବିଶେଷ ଧାରଣା ଅତ୍ୟନ୍ତ ଆବଶ୍ୟକ । ଏହି ନୂଆ ଧାରଣାରୁ, ପ୍ରସାରଣଶୀଳ ଜଗତର ଗତିଶୀଳତା ମନୁଷ୍ୟ ମନରେ ବିଶେଷ ଭାବରେ ଦୃଢ଼ିଭୂତ ହେଲା । ମହାବିଶ୍ୱର ଅପରିବର୍ତ୍ତନୀୟ ଧାରଣା ଦୁରୀଭୂତ ହେଲା । ଏଥିରୁ ଏହି ତଥ୍ୟ ନିସୃତ ହେଲା ଯେ ସୀମିତ କାଳପୂର୍ବେ ମହାବିଶ୍ୱର ଉତ୍‌ପତ୍ତି ଏବଂ ସୀମିତ କାଳ ପରେ ତାହାର ଅନ୍ତିମ ପର୍ଯ୍ୟାୟ ଶେଷ ହେବ । ଅର୍ଥାତ୍ ଏହି ମହାବିଶ୍ୱର ଆଦି ଓ ଅନ୍ତ ଅଛି । ମହାବିଶ୍ୱ ଏକ ସୀମିତ ରାଜ୍ୟ-ବିଶେଷ । ରଜର ପେନ୍‌ରୋଜ୍ ଓ ଷ୍ଟିଫେନ୍ ହକିଂ ଏ ବିଷୟରେ ଗବେଷଣା ଆରମ୍ଭ କରିଥିଲେ ପଦାର୍ଥ ବିଦ୍ୟାର ତତ୍ତ୍ୱାନୁସନ୍ଧାନ ନିମନ୍ତେ । ସେମାନେ ଦେଖିଲେ ଯେ ଆଇନଷ୍ଟାଇନଙ୍କର ବ୍ୟାପକ ଆପେକ୍ଷିକତାବାଦ

ମଧ୍ୟରେ ନିହିତ ଅଛି ଏକ ମହାନ୍ ସତ୍ୟ, ଅର୍ଥାତ୍ ଏହି ମହାବିଶ୍ୱର ଯେପରି ଏକ ଆରମ୍ଭ ଅଛି ସେହିପରି ଏକ ଶେଷ ମଧ ଅଛି ।

ବର୍ତ୍ତମାନ ଯୁଗର ବିସ୍ମୟକର ପ୍ରତିଭା ସମ୍ପନ୍ନ ମହାବିଜ୍ଞାନୀ ଷ୍ଟିଫେନ ହକିଂ (S.W.Hawking) । ଏ ଯୁଗର ସୃଷ୍ଟିତତ୍ତ୍ୱ ବିଜ୍ଞାନୀ ମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ । ସେ କ୍ୟାମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ସାର ଆଇଜାକ୍ ନିଉଟନ୍‌ଙ୍କ ଆସନରେ ସ୍ଥଳାଭିଷିକ୍ତ । ତାଙ୍କର ଶରୀର ବିଶେଷ ଭାବରେ ପଙ୍ଗୁ । ଏହି ବ୍ୟକ୍ତି ଏକାବେଳେକେ ଜଡତା-ବିଧ୍ୱସ୍ତ । ଶରୀରର ଅବସ୍ଥା ସଚଳ ନୁହେଁ । ଅଚଳ କହିଲେ ଅତ୍ୟୁକ୍ତି ହେବନାହିଁ । ମାତ୍ର ତାଙ୍କର ମନ, ମେଧା, ଚିନ୍ତାଶକ୍ତି ଓ ଜ୍ଞାନ ସୁଦୂର ପ୍ରସାରୀ ଓ ଦିଗ୍-ମଣ୍ଡଳ ଉଦ୍‌ଭାସିତ । ସେ ଲେଖିପାରନ୍ତି ନାହିଁ । ଭାଷାରେ କିଛି କହିପାରନ୍ତି ନାହିଁ । ଉଚ୍ଚାରଣ କରିପାରନ୍ତି ନାହିଁ । ତାଙ୍କ ସ୍ତ୍ରୀ ନିଜ ହାତରେ ଖାଦ୍ୟକୁ ଟିକି ଟିକି କରି କାଟି ଘଣ୍ଟା ଘଣ୍ଟା ଧରି ଧୈର୍ଯ୍ୟ ସହକାରେ ତାଙ୍କୁ ଖୁଆଇ ଦିଅନ୍ତି । ସେ ଗୋଟିଏ ଭ୍ରାମ୍ୟମାଣ ଚୌକିରେ ବସି ସବୁ ଆଡେ ଘୁରି ବୁଲନ୍ତି । ଏପରିକି ବହୁ ବିଦେଶ ଭ୍ରମଣରେ ମଧ ଯାଇଛନ୍ତି । କାଲିଫର୍ନିୟାର Words Plus Ine ତାଙ୍କୁ ଗୋଟିଏ ଆଧୁନିକ ଯନ୍ତ୍ର ଦାନ କରିଥିଲେ । ତାହା ସାହାଯ୍ୟରେ ସେ ବହି ଓ ଗବେଷଣା ପତ୍ର ଲେଖିପାରନ୍ତି । ତାହାଛଡା Speach Plus Synthesizer ଦ୍ୱାରା ସେ ଲୋକମାନଙ୍କ ସହିତ କଥାବାର୍ତ୍ତା କରିପାରନ୍ତି । ଗୋଟିଏ କମ୍ପ୍ୟୁଟର ତାଙ୍କ ଚୌକିରେ ଲଗାଇ ଦିଆଯାଇଛି । ତାଙ୍କ କଣ୍ଠସ୍ୱର ନଷ୍ଟ ହୋଇଯାଇଥିଲା ଏକ ଅପରେସନ ଫଳରେ । ଏହି ଯନ୍ତ୍ର ସାହାଯ୍ୟରେ ସେ ବାର୍ତ୍ତାଳାପ କରିପାରୁଛନ୍ତି । ତାଙ୍କର ଅଙ୍ଗ ପ୍ରତ୍ୟଙ୍ଗ କାମକରେ ନାହିଁ । କେହି ଜଣେ ଲୋକ ତାଙ୍କୁ ସାହାଯ୍ୟ ନ କଲେ ସେ ଅକର୍ମଣ୍ୟ ହୋଇ ରହନ୍ତି । ଏହିପରି ଅକ୍ଷମ ଅବସ୍ଥାରେ ତାଙ୍କର ଆନ୍ତରିକ ସତ୍ତା ବିଶାଳ ବିଶ୍ୱରହସ୍ୟ ଉଦ୍‌ଘାଟନରେ ଧାବମାନ । ତାଙ୍କର ଚିନ୍ତାଧାରା ଅକ୍ଷମତାକୁ ପଛରେ ପକାଇ ଦେଇ, ମହାକାଶର ବିସ୍ତାରିତ ପଟ୍ଟଭୂମିରେ ନିମଜ୍ଜିତ । ସେ ଆପେକ୍ଷିକତାବାଦ, କ୍ୱାଂଟମ ବିଦ୍ୟା, ମହା ବିକ୍ଷୋଭ ତଥ୍ୟ, ଅନ୍ୟସବୁ ତତ୍ତ୍ୱକୁ ଅତିକ୍ରମକରି ବିଶ୍ୱ ସୃଷ୍ଟିରେ ଯେଉଁ ଜ୍ୟାମିତିର ନୃତ୍ୟ ପରିବେଷ୍ଟିତ ହୋଇଥିଲା ତାହାର ଭଙ୍ଗିମାରେ ମୁଗ୍ଧ ହୋଇ ତାହାର ବର୍ଣ୍ଣନାରେ ବ୍ୟାପୃତ । ବିଂଶ ଶତାବ୍ଦିର ପଦାର୍ଥ ବିଜ୍ଞାନୀ ମାନଙ୍କ ମଧ୍ୟରେ ତାଙ୍କର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ଏହା ତାଙ୍କର ବୈଜ୍ଞାନିକ ସାଥୀ ସମୂହ ଓ ମହାମଣ୍ଡଳର ଦୃଢ଼ ଧାରଣା । ତାଙ୍କର ଧାନ ଧାରଣା ବିଷୟରେ କହିବାକୁ ଯାଇ ଅନ୍ୟମାନେ ମତବ୍ୟକ୍ତ କରିଅଛନ୍ତି ଯେ ସ୍ଥାନ-କାଳର ପ୍ରହେଳିକାମୟ ଜଗତରେ ତାଙ୍କର ଅଭାବନୀୟ ପ୍ରବେଶ, ସେଠାରେ ଥିବା ଅନ୍ଧକାରମୟ ଗହ୍ୱର, ଅତିକ୍ଷୁଦ୍ର କଣା, ବସ୍ତୁ ଓ ଅବସ୍ତୁର ଅସ୍ତିତ୍ୱ, ମହାବିକ୍ଷୋଭ ବିଷୟରେ ଅନୁସନ୍ଧାନ, ଅନିଧିଗମ୍ୟ ତତ୍ତ୍ୱର ବିଚାର,

ଈଶ୍ୱର-ଧାରଣାର ବିଶ୍ଳେଷଣ, ବୃହତ୍ତର ସମ୍ଭାବନା ଓ ବିଭିନ୍ନ ବୈଚିତ୍ର୍ୟମୟ ରୂପରେଖରେ ସୃଷ୍ଟି ରହସ୍ୟର ଉଦ୍‌ଘାଟନ ପଦ୍ଧତିରେ ସେ ମଣିଷକୁ ସେହି ରହସ୍ୟର କେନ୍ଦ୍ରବିନ୍ଦୁରେ ଉପନୀତ କରିପାରିଛନ୍ତି । ବିଶେଷତଃ ''ସମୟ''ର ସ୍ୱରୂପ ନିର୍ଦ୍ଧାରଣରେ ତାଙ୍କର ଅବଦାନ ଅତୁଳନୀୟ । ତାଙ୍କର ବିଶ୍ୱବିସ୍ତୃତ, ବିଦଗ୍ଧ ଗ୍ରନ୍ଥ, ''ସମୟର ସଂକ୍ଷିପ୍ତ ଇତିହାସ'' (Brief History of Time) ଏ ବିଷୟରେ ଏକ ଅତି ପ୍ରସିଦ୍ଧ ପୁସ୍ତକ । ଏହାର ପୁଙ୍ଖାନୁପୁଙ୍ଖ ଆଲୋଚନା ଅତ୍ୟନ୍ତ ସମୀଚିନ ଓ ପ୍ରାସଙ୍ଗିକ ।

ପ୍ରଥମେ ତାଙ୍କ ଦୃଷ୍ଟିକୁ ମାପ କରିବା ପୂର୍ବରୁ ସେ ଯେଉଁ ପାହାଚରେ ଚଢ଼ି ତାଙ୍କର ବୈଜ୍ଞାନିକ ଦୃଷ୍ଟି ରଚନା କରିଛନ୍ତି ସେହି ସୋପାନରେ ଆମ୍ଭମାନଙ୍କୁ ଚଢ଼ିବାକୁ ହେବ । ଆଉ, ''ସମୟର ତୀର'' (Arrow of time) ଯେଉଁ ଦିଗକୁ ନିକ୍ଷେପ କରାଯାଇ ଅଛି ବୋଲି ତାଙ୍କର ଧାରଣା, ସେ ଦିଗକୁ ଅଗ୍ରସର ହୋଇ ସମୟର ତୀରର ଗତି ନିର୍ଦ୍ଧାରଣ କରିବାକୁ ପଡିବ । ଅନ୍ୟ ଭାଷାରେ କହିବାକୁ ଗଲେ ହକିଂ ଯେଉଁ ଦୃଷ୍ଟି-ସ୍ତମ୍ଭ ଉପରେ ଚଢ଼ିଛନ୍ତି, ସେହି ସ୍ତମ୍ଭରେ ଚଢ଼ି ସମୟର ତୀର ଯେଉଁ ଆଗକୁ ଯାଇଛି ସେହି ଦିଗକୁ ଦୃଷ୍ଟି ଦେଇ ତାଙ୍କର ଚିନ୍ତାଧାରାର ଅନୁସରଣ କରି ତାଙ୍କର ପ୍ରତିପାଦ୍ୟ ବିଷୟରେ ସର୍ବେକ୍ଷଣ କରି ସାର ଆହରଣ କରିବାକୁ ହେବ । ତାଙ୍କର ସିଦ୍ଧାନ୍ତର ମୂଲ୍ୟାୟନ କରିବାକୁ ହେବ । ତେଣୁ ସେହି ସୋପାନ ଗୁଡିକର ବିଶ୍ଳେଷଣ ପ୍ରାଥମିକ ଅବସ୍ଥାରୁ କରଣୀୟ ବୋଲି ମନେହୁଏ । ତାନହେଲେ ବିଚାର-ପଦ୍ଧତି ଦୋଷଯୁକ୍ତ ହୋଇ, ସମ୍ୟକ୍ ଧାରଣା ସୃଷ୍ଟିରେ ବାଧା ଦେଇ, ସତ୍ୟର ଉପଲବ୍ଧିରେ ପ୍ରତିବନ୍ଧକ ସ୍ୱରୂପ ପ୍ରତୀୟମାନ ହେବ । ପ୍ରଥମରୁ ମନକୁ ଠିକ୍‌ବାଟରେ ନ ନେଲେ ପ୍ରକୃଷ୍ଟ ବାସ୍ତବତା ଆମର ହୃଦୟଙ୍ଗମ ହେବ ନାହିଁ ।

ସେ ଲେଖିଛନ୍ତି ଯେ ଆମେ ବିଶ୍ୱ ବିଷୟରେ କଣ ଜାଣୁ ? କଣ ବୁଝୁ ? ଏହି ବିଶ୍ୱ କଣ ଦିନେ ଜନ୍ମ ହୋଇଥିଲା ? ଏହାର ଆଦି ଅଛି କି ନାହିଁ ? ଏହା କେଉଁଠାରୁ ଆସିଲା ଏବଂ କେଉଁ ଦିଗକୁ ଗତି କରୁଛି ? ସମୟର ଅସଲ ପ୍ରକୃତି କଣ ? ଏହା କଣଦିନେ ଅନ୍ତହେବ ? ଅର୍ଥାତ୍ ସରିଯିବ ? ତାପରେ କିଛି ରହିବ ନାହିଁ ?

ବର୍ତ୍ତମାନ ଜଗତର ନୂଆ ପ୍ରଯୁକ୍ତି ବିଦ୍ୟାର ସାହାଯ୍ୟରେ କେତେକ ପ୍ରଶ୍ନର ସମାଧାନ ବିଜ୍ଞାନ ଏବେ କରି ପାରିଛି । ଯାହା କେବଳ କଳ୍ପନା ରାଜ୍ୟର ବସ୍ତୁଥିଲା ତାହା ଏବେ ବାସ୍ତବଧାରଣାର ଅନ୍ତର୍ଭୁକ୍ତ । ଦିନ ଆସିବ, ଯେତେବେଳେ ବର୍ତ୍ତମାନର ମହା ରହସ୍ୟ ଗୁଡିକ ଅତି ସହଜବୋଧ ସତ୍ୟ ରୂପେ ପ୍ରତିଭାତ ହେବେ । ଯେପରି ପ୍ରଥମେ ମନୁଷ୍ୟ ଭାବିଥିଲା ଯେ ପୃଥିବୀ ସିଧାସଳଖ କ୍ଷେତ୍ର । ପରେ ବୁଝାଗଲାଯେ ଏହା ଗୋଲ ଓ ସୂର୍ଯ୍ୟ

ଚାରିପଟେ ବୁଲୁଛି । ଏକଥା ବର୍ତ୍ତମାନ ସାଧାରଣ ମନୁଷ୍ୟର ଅତି ସହଜ ଧାରଣା ।

ମହାନ ଜର୍ମାନ ଦାର୍ଶନିକ ଭିକ୍ଟର ଇମାନୁଏଲ କ୍ୟାଣ୍ଟଙ୍କ ଦର୍ଶନକୁ ପରୀକ୍ଷା କରି ସେ ଲେଖିଲେ ଯେ ଏହି ସମୟ-ଧାରଣାର ମୂଲ୍ୟ ବିଶ୍ୱ-ସୃଷ୍ଟି ପୂର୍ବରୁ ଏକାବେଳେକେ ଅର୍ଥହୀନ ଓ ଶୂନ୍ୟ ଥିଲା । କାରଣ ବିଶ୍ୱସୃଷ୍ଟି ପୂର୍ବରୁ ଭଗବାନ କଣ କରୁଥିଲେ ? ଏହି ପ୍ରଶ୍ନ ସାଧୁ ଅଗଷ୍ଟାଇନଙ୍କୁ ପଚରାଯାଇଥିଲା । ସେ ନୀରବ ରହିଥିଲେ । କାରଣ ତାଙ୍କ ମତରେ ଈଶ୍ୱରସୃଷ୍ଟ ବିଶ୍ୱ-ସମ୍ପତ୍ତିର ଏକ ସାମାନ୍ୟ ଅଂଶ ହେଲା ''ସମୟ'' । ବିଶ୍ୱସୃଷ୍ଟି ପୂର୍ବରୁ ସମୟର ଅସ୍ତିତ୍ୱ ନଥିଲା । ଅବଶ୍ୟ ଦୁଷ୍ଟଲୋକେ କହନ୍ତି ଯେ, ଈଶ୍ୱର ବିଶ୍ୱ ସୃଷ୍ଟି ପୂର୍ବରୁ ନରକ ସୃଷ୍ଟିରେ ବ୍ୟସ୍ତଥିଲେ ।

ଦିନେ ଏ ସବୁ ପ୍ରଶ୍ନର ଦିକ୍‌ଦର୍ଶନ ହଠାତ୍ ବଦଳିଗଲା । ଏଡଉଇନ୍ ହବଲ୍ (ପୂର୍ବ ବର୍ଣ୍ଣିତ ତଥ୍ୟ) ୧୯୨୯ ସାଲରେ ତାଙ୍କ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଆବିଷ୍କାର କଲେ ଯେ ନିହାରିକାମାନେ ଅତ୍ୟନ୍ତ ଦ୍ରୁତଗତିରେ ପରସ୍ପରଠାରୁ ଦୂରେଇ ଯାଉ ଅଛନ୍ତି । ଏଥିରୁ ଧାରଣାହେଲା ଯେ ବିଶ୍ୱ ପ୍ରସାରଣ-ଶୀଳ । ଏହାର ଅନ୍ତର୍ନିହିତ ତଥ୍ୟ ହେଲା ସେମାନେ ପ୍ରଥମେ ଏକତ୍ରଭାବେ ଅବସ୍ଥାନ କରୁଥିଲେ । ଏଥିରୁ ବିଜ୍ଞାନୀମାନେ ଅନୁମାନକଲେ ଯେ ବିଂଶ କୋଟି ବର୍ଷ ପୂର୍ବେ ଯେତେବେଳେ ସେମାନେ ଏକତ୍ରାବସ୍ଥାନ କରୁଥିଲେ, ସେତେବେଳେ ବିଶ୍ୱର ଘନତ୍ୱ ଅସୀମ ଥିଲା । ହବଲ୍‌ଙ୍କ ଆବିଷ୍କାର ''ସମୟ-ଧାରଣା''କୁ ସାକାର କଲା । ''ମହା ବିକ୍ଷୋଭ'' ତଥ୍ୟ ସମୟର ଅସ୍ତିତ୍ୱକୁ ସୁଦୃଢ଼ କଲା ଚିନ୍ତାରାଜ୍ୟରେ । <u>ମହାବିକ୍ଷୋଭର ମୁହୂର୍ତ୍ତରେ ହେଲା ସମୟର ଜନ୍ମ</u> । ସେହି ସମୟରେ ବିଶ୍ୱଥିଲା ଅଣୁ ପରମାଣୁ ଭଳି କ୍ଷୁଦ୍ର ଏବଂ ସୀମାହୀନ ଭାବରେ ଘନ । ଏହା ପୂର୍ବରୁ ଯଦି କିଛି ବସ୍ତୁ ବା ପଦାର୍ଥର ଅସ୍ତିତ୍ୱ ଥିଲା, ତାହା ବିଶ୍ୱଜନ୍ମର ପରବର୍ତ୍ତୀ ଯୁଗର ଘଟଣାବଳିକୁ ପ୍ରଭାବିତ କରି ନପାରେ । ବର୍ତ୍ତମାନ ଘଟୁଥିବା ବିଶ୍ୱ-ସମ୍ବାଦରେ ମହାବିକ୍ଷୋଭ ପୂର୍ବବର୍ତ୍ତୀ ବସ୍ତୁର କୌଣସି ଭୂମିକା ନାହିଁ ବୋଲି କହିଲେ ଚଳେ । ସେହି ଅସ୍ତିତ୍ୱକୁ ଏକାବେଳେକେ ଚିନ୍ତା-ପରିମଣ୍ଡଳରୁ ବାଦ ଦିଆଯାଇପାରେ । କାରଣ ସେହି ଅସ୍ତିତ୍ୱ ବର୍ତ୍ତମାନ ସର୍ବେକ୍ଷଣରୁ ଏକାବେଳେକେ ବହିର୍ଭୂତ । ତାହାର କୌଣସି ମୂଲ୍ୟନାହିଁ, ଏଯୁଗର ପରୀକ୍ଷା-ନିରୀକ୍ଷାର ପରିଧି ବିଶିଷ୍ଟ ଜ୍ଞାନବୃତ୍ତରେ । ଏତିକି କୁହାଯାଇପାରେ ଯେ ''ସମୟ'' ମହାବିକ୍ଷୋଭ ବା Big Bang ସହିତ ଜନ୍ମ ନେଲା । ତାହା ପୂର୍ବରୁ ଯଦି କୌଣସି ସମୟର ଅସ୍ତିତ୍ୱ ଥିଲା ତେବେ ତାହା ନିଶ୍ଚିତ ଭାବରେ ସଂଜ୍ଞାତୀତ । ତାହାର ବିବରଣୀ ଦିଆଯାଇ ପାରିବ ନାହିଁ । ମହାବିକ୍ଷୋଭ ପରବର୍ତ୍ତୀ ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ ସମୟର ଧାରଣା ତାହା ଆଗରୁ ସମୟ-ଧାରଣାଠାରୁ ଏକାବେଳେକେ ଭିନ୍ନ ପ୍ରକାରର । ଯଦି କୌଣସି ଅପରିବର୍ତ୍ତନୀୟ ମହାବିଶ୍ୱ ପ୍ରକୃତରେ

ପ୍ରତିଷ୍ଠିତ ହୋଇଥାଏ, ତେବେ ସେ ବିଶ୍ୱରେ ସମୟର ପ୍ରକଳ୍ପ, ଭୂମିକା ଓ ପ୍ରଗତି ସେହି ବିଶ୍ୱବାହାରେ ଅବସ୍ଥିତ, କୌଣସି ଶକ୍ତିଦ୍ୱାରା ଆରୋପିତ ହେବାକୁ ବାଧ । ପ୍ରକୃତରେ, ସମୟର ଆରମ୍ଭ ନିମନ୍ତେ କୌଣସି ପଦାର୍ଥ-ଜନିତ-କାରଣର ଆବଶ୍ୟକତା ପଡ଼େନାହିଁ । ମନୁଷ୍ୟ ଚିନ୍ତାକରିପାରେ ଯେ ଦିନେ ଅତୀତରେ ଏହି ସୃଷ୍ଟି କରିଥିଲେ ଭଗବାନ ନିଜେ । କାରଣ ଏହି ବିଶ୍ୱ ଅପରିବର୍ତ୍ତନୀୟ ଭାବରେ ଜଣକଦ୍ୱାରା ସୃଷ୍ଟ ହୋଇଥିବାର ସମ୍ଭାବନା ପ୍ରବଳ ଭାବରେ ସତ୍ୟ ହୋଇପାରେ । ଅନ୍ୟ ଦିଗରୁ ଦେଖିଲେ ବୁଝାଯିବ ଯେ ଏହି ଜଗତ ପ୍ରସାରଣଶୀଳ ହୋଇଥିବାରୁ ଏହାର ଆରମ୍ଭ ନିଶ୍ଚୟ ଦିନେ ହୋଇଥିବ; ଯେଉଁ ବିନ୍ଦୁ ଅବସ୍ଥାରୁ ଏହା କ୍ରମେ କ୍ରମେ ପ୍ରସାର ଲାଭକରି ବର୍ତ୍ତମାନ ମହା-ସିନ୍ଧୁରେ ପରିଣତ ହୋଇଅଛି । ଏହି ପ୍ରସାରଣ-ଶୀଳ ଜଗତକୁ କଣ ଈଶ୍ୱର ସୃଷ୍ଟି କରି ପାରିନଥିବେ ? ଏହା କଣ ଈଶ୍ୱରଙ୍କର କ୍ଷମତାର ଅତୀତ ? ସୃଷ୍ଟିକର୍ତ୍ତା ଯେକୌଣସି ସମୟରେ ସୃଷ୍ଟି କରିପାରନ୍ତି । ସେଥିରେ କୌଣସି ବାଧାନାହିଁ । ମାତ୍ର ସେ କେଉଁ ସମୟରେ ଏହି ସୃଷ୍ଟି କରିପାରିଥିବେ ସେ ବିଷୟରେ ଅନେକ ବାଧା ଅଛି । ଏହି ସୃଷ୍ଟିକର୍ତ୍ତା କେବେ ଓ କିପରି ଭାବରେ ଏହି ସୃଷ୍ଟି କରିଥିବେ ? ସେଥିରେ ଅନେକ ଆବଦ୍ଧତା ଓ ସୀମିତ ପରିସ୍ଥିତି ପ୍ରତିବନ୍ଧକ ସୃଷ୍ଟି କରିଥିବ ।

କେଉଁ ସମୟରେ କିଏ ଏହି ସୃଷ୍ଟି କଲା ବା କେଉଁ ନିମୟାବଳିଦ୍ୱାରା ଏହି ଜଗତ ସୃଷ୍ଟ ହେଲା, ଏହା ଏକ ବହୁମୂଲ୍ୟ ପ୍ରଶ୍ନ । ଏହି କୋଟି-କୋଟି ଟଙ୍କା-ମୂଲ୍ୟର ପ୍ରଶ୍ନର ଉତ୍ତର ଖୋଜିବାକୁ ହେଲେ ଏପରି ଏକ ବିଶ୍ୱ-ନିୟମ ଖୋଜି ବାହାର କରିବାକୁ ହେବ ଯାହା ସବୁ ପ୍ରଶ୍ନର ଉତ୍ତର ଦେଇପାରିବ । ଯାହା ସବୁ ତତ୍ତ୍ୱର ମୂଳ ତତ୍ତ୍ୱ; ସବୁ ତଥ୍ୟର ମୂଳ ତଥ୍ୟ । ଏହି ମୂଳ ତତ୍ତ୍ୱ ଆମର ଦୈନନ୍ଦିନ ଜୀବନକୁ ଉନ୍ନତ ନକରି ପାରେ, ମନୁଷ୍ୟର ଅସ୍ତିତ୍ୱକୁ ଦୃଢ଼ିଭୂତ କରିବାରେ ସାହାଯ୍ୟ ନ କରିପାରେ; ଆମର ଜୀବନଯାପନ ପଦ୍ଧତିକୁ ପ୍ରଭାବିତ ନକରିପାରେ; ତଥାପି ମନୁଷ୍ୟ ତାହାର ଅନୁସନ୍ଧାନରେ ବ୍ରତୀ । ସୃଷ୍ଟିର ପ୍ରଥମ ପ୍ରଭାତରୁ ତାହାର ଚିନ୍ତା ରାଜ୍ୟରେ ଏକ ବିଶାଳ ଆଲୋଡ଼ନ । କ୍ଷୁଦ୍ର କ୍ଷୁଦ୍ର ଘଟଣାବଳିର ବିଭିନ୍ନତା, ସ୍ୱତନ୍ତ୍ରତା, ବିଚ୍ଛିନ୍ନତା ମଧ୍ୟରେ ସେ ଖୋଜିବୁଲୁଛି ଏକ ମହାନ ସୂତ୍ର ଯାହାର ଶକ୍ତି ଏହି ଆପାତ ବିଶୃଙ୍ଖଳା ମଧ୍ୟରେ ଏକ ଅନ୍ତର୍ନିହିତ ଶୃଙ୍ଖଳା ପରିବେଷଣ କରୁଅଛି । ମନୁଷ୍ୟ ନିତ୍ୟ ଚିନ୍ତାରେ ଅଭିଭୂତ । କାହିଁକି ସେ ପୃଥିବୀକୁ ଆସିଲା ଏବଂ କେଉଁଠାରୁ ଆସିଲା ? ଏହି ପ୍ରଶ୍ନର ଉତ୍ତର ଖୋଜିବାକୁ ଯାଇ ମନୁଷ୍ୟର ଜ୍ଞାନର ପରିଧି ବିସ୍ତାର ଲାଭ କରୁଅଛି ପ୍ରତିକ୍ଷଣରେ, ପ୍ରତିଦିନରେ । ମନୁଷ୍ୟର ଅନୁସନ୍ଧାନ ସଚଳ ଅଛି ଏବଂ ରହିବ । କାରଣ ସେ ଯେଉଁ ବିଶ୍ୱରେ ବାସକରେ ତାହାର ସମ୍ପୂର୍ଣ୍ଣ ବିବରଣୀ, ଜ୍ଞାନ, ପରିସର ଏପର୍ଯ୍ୟନ୍ତ ତାହାର ଦୃଷ୍ଟିଗୋଚର ହୋଇନାହିଁ । ଯେତେଦୂର ପର୍ଯ୍ୟନ୍ତ ଏହା ନହୋଇଛି,

ମନୁଷ୍ୟ ସ୍ଥିର ହୋଇରହି ପାରିବ ନାହିଁ । ତାହାର ଜିଜ୍ଞାସାର ଶେଷ ନହେବା ପର୍ଯ୍ୟନ୍ତ ସେ ତାହାର ବିଶ୍ଳେଷଣ, ସର୍ବେକ୍ଷଣ, ସନ୍ଧାନ, ସମୀକ୍ଷା-ପଦ୍ଧତିକୁ ଜାଗ୍ରତ ରଖିବ । ଜ୍ଞାନର ବାରିଧିରେ ସନ୍ତରଣ କରି ରତ୍ନ ସଂଗ୍ରହ କରିବାରେ ସକ୍ଷମ ହେବ । ତାହାର ପ୍ରଚେଷ୍ଟାର ମଧ ଆଦି ଅନ୍ତନାହିଁ । ଏହି ମହାବିଶ୍ୱ ଭଳି । କାରଣ ସେ ତ ଏହି ମହାବିଶ୍ୱର ଗୋଟିଏ ଜୀବନ୍ତ ସୃଷ୍ଟି । ସେମାନଙ୍କ ମଧରେ ହକିଂ ଜଣେ ଅତିମାତ୍ରାରେ ଉଦ୍‌ବୁଦ୍ଧ, ଜୀବନ୍ତ ଓ ସନ୍ଧାନୀ-ସତ୍ତା । ଷ୍ଟିଫେନ୍ ହକିଂ ପୂର୍ବରୁ ଆଲୋଚିତ ବିଷୟ ଗୁଡିକକୁ ପୁଙ୍ଖାନୁପୁଙ୍ଖଭାବେ ପରୀକ୍ଷା କରି ଆଇନଷ୍ଟାଇନଙ୍କର ଆବିଷ୍କୃତ ଆପେକ୍ଷିକତାବାଦ ତତ୍ତ୍ୱକୁ ସମୀଚିନ ବୋଲି ଗ୍ରହଣ କରିଥିଲେ । ସେଥିରୁ ନିର୍ଗତସୂତ୍ର ରାଜିକୁ ପ୍ରୟୋଗକରି ପ୍ରମାଣ କରିଥିଲେ ଯେ ଏହି ତତ୍ତ୍ୱ ସର୍ବାଦୌ ସତ୍ୟ ଓ ନିର୍ଭର ଯୋଗ୍ୟ ସୂତ୍ର ମହାବିଶ୍ୱକୁ କଳନା କରିବା ନିମନ୍ତେ ।

ଏହି ତଥ୍ୟର ବ୍ୟାପକତା ପ୍ରମାଣ କରିବା ପାଇଁ ସେ ପ୍ରସାରଣଶୀଳ ମହାବିଶ୍ୱର ଚିନ୍ତା ମଧ ପ୍ରକଟ କରିଛନ୍ତି ତାଙ୍କର "କାଳର ସଂକ୍ଷିପ୍ତ ଇତିହାସ"ଗ୍ରନ୍ଥରେ । ଯେଉଁ ତାରାଗୁଡିକ ରାତ୍ରିର ଆକାଶରେ ଦେଖାଯାଏ ସେଗୁଡିକ ଗୋଟିଏ ବନ୍ଧନୀରେ କେନ୍ଦ୍ରିଭୂତ । ତାହାର ନାମ ହେଲା ଛାୟାପଥ (Milky way) । ଜ୍ୟୋତିର୍ବିଜ୍ଞାନୀ ହରଶେଲ୍ ବିରାଟ ସଂଖ୍ୟାକ ତାରକାରାଜିର ଅବସ୍ଥାନ ଓ ଦୂରତ୍ୱ ଖୁବ୍ ପରିଶ୍ରମର ସହିତ ତାଲିକାଭୁକ୍ତ କରି ଛାୟାପଥର ସତତା ପ୍ରମାଣ କରିଥିଲେ । ମାତ୍ର ୧୯୨୪ ସାଲରେ ଏଡଉଇନ୍ ହବଲ୍ ପ୍ରମାଣ କଲେଯେ ଆମର-ଦୃଶ୍ୟହେଉଥିବା ଛାୟାପଥ ଏକମାତ୍ର ଛାୟାପଥ ନୁହେଁ । ବହୁ ବହୁ ଛାୟାପଥ ଅଛନ୍ତି । ସେମାନଙ୍କ ମଧବର୍ତ୍ତୀ ସ୍ଥାନରେ ଶୂନ୍ୟ ବିରାଟ ଭାବରେ ବିଦ୍ୟମାନ ହୋଇ ରହିଅଛି । ସେ ଛାୟାପଥ ମାନଙ୍କର ଦୂରତ୍ୱ ଜ୍ୟୋତି ମାଧମରେ ନିର୍ଣ୍ଣୟ କରିବାକୁ ଚେଷ୍ଟା-କରିଥିଲେ । ବର୍ତ୍ତମାନ ଆଧୁନିକ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଦେଖାଯାଉଅଛି ଯେ ୧ଲକ୍ଷ ମିଲିଅନ୍ ଛାୟାପଥ ମାନଙ୍କ ମଧରେ ଆମର ଛାୟାପଥ ଗୋଟିଏ ମାତ୍ର । ପ୍ରତି ଛାୟାପଥରେ ଏକ ଲକ୍ଷ ମିଲିଅନ୍ ତାରକାର ଅବସ୍ଥିତି । ଆମର ଛାୟାପଥଟି ଧୀରଗତିରେ ଘୂର୍ଣ୍ଣାୟମାନ ହେଉଅଛି । ଆମର ସୂର୍ଯ୍ୟ ଗୋଟିଏ ଅତି ସାଧାରଣ ହଳଦିଆରଙ୍ଗର ତାରା, ଏହାର ଆକାର ପ୍ରାୟ ଅନ୍ୟତାରକା ଗୁଡିକର ସହିତ ସମାନ ।

ତାରକା ଗୁଡିକର ଆଲୋକର ରଙ୍ଗରୁ ସେମାନଙ୍କର ଗଠନ ବୈଶିଷ୍ଟ୍ୟ ପର୍ଯ୍ୟବେକ୍ଷଣ କରାଯାଇପାରେ । ଦୂରବୀକ୍ଷଣ ଯନ୍ତ୍ରରେ ବିଭିନ୍ନ ତାରକାର ବିଭିନ୍ନ ବର୍ଣ୍ଣାବଳି ଦୃଷ୍ଟିଗୋଚର ହୁଏ । ଏହି ବର୍ଣ୍ଣାବଳିରୁ ତାହାର ଉତ୍ତାପ କଳନା କରାଯାଇଥାଏ । ଏହି ବର୍ଣ୍ଣରାଜିର ଉପସ୍ଥିତି ଓ ଅନୁପସ୍ଥିତିରୁ ଅନୁସୃତ ହୁଏ ତାରକାରେ ଥିବା ମୌଳିକ ଉପାଦାନ ନିର୍ଭୁଲ ଭାବରେ । ହବଲ୍ ଏହି ଆଲୋକ ବିଚ୍ୟୁତିର ମାଧମରେ ଜାଣିପାରିଲେ ଯେ ମହାବିଶ୍ୱ

ସ୍ଥିତାବସ୍ଥାରେ ନାହିଁ । ଯେଉଁ ଛାୟାପଥ ଯେତେଦୂରରେ, ତାହାର ଅପସରଣର ଗତି ସେତିକି ବେଶୀ । ମହାବିଶ୍ୱ ଅତି ବେଗରେ ପ୍ରସାରିତ ହେଉଅଛି । ମାତ୍ର ନିହାରିକା ଗୁଡ଼ିକର ଦୂରତ୍ୱ ବିଶେଷଭାବରେ ଜଣାଯାଇନାହିଁ । ତାର କାରଣ ପରୋକ୍ଷଭାବରେ ଦୂରତ୍ୱର ମାପ-ଶୈଳୀ । ସାଧାରଣ ଧାରଣା ଅନୁସାରେ ଏହି ମହାବିଶ୍ୱ ପ୍ରତି ହଜାରେ ମିଲିୟନ ବର୍ଷରେ ୫ରୁ ୧୦ଭାଗ ହାରରେ ପ୍ରସାରିତ ହେଉଅଛି । ମାତ୍ର ବିଶ୍ୱର ଘନତ୍ୱ ସମ୍ପର୍କରେ ଅନିଶ୍ଚୟତା ଆହୁରି ଅଧିକ । ଆମ ନିହାରିକା ଓ ଅନ୍ୟାନ୍ୟ ନିହାରିକାବୃନ୍ଦରେ କେତେକ ଅନ୍ଧକାରମୟ ପଦାର୍ଥ ନିଶ୍ଚିତ ଭାବରେ ରହିଅଛି । ଏ ଗୁଡ଼ିକ ପ୍ରତ୍ୟକ୍ଷଭାବରେ ଗୋଚରୀଭୂତ ନ ହେଲେ ମଧ୍ୟ ମହାକର୍ଷୀୟ ଆକର୍ଷଣ ପ୍ରଭାବରୁ ଏଗୁଡ଼ିକର ଅସ୍ତିତ୍ୱ ଅନୁମେୟ । ପ୍ରସାରଣ ବିଷୟରେ ପୂର୍ବ ଅଧ୍ୟାୟରେ ଆଲୋଚନା ହୋଇଅଛି । ତାର ବିପରୀତ ଭାବଧାରା ହେଲା ସଂକୋଚନ ସେ ବିଷୟରେ ମଧ୍ୟ ଉଲ୍ଲେଖ କରିଛି । ମାତ୍ର ଗୋଟିଏ ବୈଜ୍ଞାନିକ ଚିନ୍ତାଧାରାର ଅବତାରଣା ଏଠାରେ ପ୍ରୟୋଜନୀୟ ମନେହୁଏ । ଦୁଇଜଣ ଋଷୀୟ ବୈଜ୍ଞାନିକ ଲିଫଶିକ୍ ଓ ଖାଲାତ ନିକଭଙ୍କ ଧାରଣା ଅନୁସାରେ ବର୍ତ୍ତମାନ ମହାବିଶ୍ୱ କୌଣସି ମହାବିକ୍ଷୋଭର ଫଳଶ୍ରୁତି ନ ହୋଇ; ପୂର୍ବତନ ସଂକୋଚନର ଫଳଶ୍ରୁତି ମଧ୍ୟ ହୋଇପାରେ । ଏପରି ଏକ ଚିନ୍ତା ପୂର୍ବବର୍ଣ୍ଣିତ ଗୀତାରୁ ଉଦ୍ଧୃତ ଶ୍ଳୋକରେ ପରିସ୍ଫୁଟ ହୋଇଅଛି ।

ରୋଜର ପେନ୍‌ରୋଜ ନାମକ ବିଖ୍ୟାତ ବୈଜ୍ଞାନିକ ଅନ୍ୟ ଗୋଟିଏ ବିଷୟ ଏହି ପରିପ୍ରେକ୍ଷୀରେ ବ୍ୟକ୍ତ କରି ଅଛନ୍ତି । କୌଣସି ତାରକା ସଂକୋଚନ ପଦ୍ଧତିରେ କ୍ଷୁଦ୍ରାୟତନ ହେବା ଅବସ୍ଥାରେ ଯଦି ବନ୍ଦୀ ହୋଇପଡେ (trapped) ଏବଂ ଏହାର ପୃଷ୍ଠ ବିଶେଷଭାବରେ ସଂକୁଚିତ ହୋଇ ଶୂନ୍ୟରେ ପରିଣତ ହୁଏ ତାହାର ଘନତ୍ୱ ଏବଂ ସ୍ଥାନ-କାଳର ବକ୍ରତା ହେବ ଅସୀମ । ଏହା କୃଷ୍ଣ-ଗହ୍ୱର (Black-Hole) ରୂପରେ ପ୍ରତିଭାତ ହେବ । ଏହି ଭାବଧାରାକୁ ନେଇ ଗଭୀର ଗବେଷଣା କଲେ ଷ୍ଟିଫେନ୍ ହକିଂ । ୧୯୭୦ ସାଲରେ ପେନ୍‌ରୋଜ ଓ ହକିଂଙ୍କର ଯୁଗ୍ମ ଗବେଷଣାପତ୍ରର ପ୍ରତିପାଦ୍ୟ ବିଷୟରୁ ନିର୍ଗତ ହେଲା ଏହି ସୂତ୍ର ଯେ ମହାବିସ୍ଫୋରଣ ଅତି ଅବଶ୍ୟ ଘଟିଥିଲା । ଏହି ତଥ୍ୟ ସାଧାରଣଭାବେ ଗୃହିତ ହୋଇଥିଲା । ଏବେ ଏହା ସର୍ବତ୍ର ସ୍ୱୀକୃତ ।

ପଲ୍‌ଡିରାକ୍, ହାଇଜେନବାର୍ଗ ଓ ଶ୍ରେୟାରଡିଙ୍ଗାର କଣାବାଦି ବଳବିଦ୍ୟା ବା Quantum mechanics ନାମକ ତତ୍ତ୍ୱ ୧୯୨୦ ଦଶକରେ ପ୍ରତିଷ୍ଠା କରିଥିଲେ । ଏହି ତତ୍ତ୍ୱର ଭିତ୍ତିହେଲା ଅନିଶ୍ଚୟତାବାଦ । ସେହି ତତ୍ତ୍ୱ ଅନୁସାରେ, କଣିକାଗୁଡ଼ିକର ପୃଥକ, ସୁସଂଜ୍ଞା ଭିହିତ, (welldefined) ଗତିବେଗ ରହିଲା ନାହିଁ । ସେଗୁଡ଼ିକର ଏକମାତ୍ର ଅବସ୍ଥା ହେଲା Quantum ଅବସ୍ଥା । ଏହି ଅବସ୍ଥାର ଅର୍ଥହେଲା ଗତିବେଗ ଓ ଅବସ୍ଥାନର ସମନ୍ୱୟ ।

ଏହି ବିଦ୍ୟାର ଫଳଶ୍ରୁତି ଏକକ ନ ହୋଇ ପୃଥକ୍ ପୃଥକ୍ ହୋଇଥାଏ । ତେଣୁ ଏହି ତତ୍ତ୍ୱ ବିଜ୍ଞାନରେ ଏକ ବିଷମ ଅନିଶ୍ଚୟତା ବା ଅସମ୍ଭବ୍ୟତା ସୃଷ୍ଟି କରିଅଛି । ଏହା ଫଳରେ ବିଶ୍ୱର ସୂତ୍ରାବଳି ଆପାତନରେ ସିଦ୍ଧହୁଏ ବୋଲି ଏକ ତତ୍ତ୍ୱ ନିସୃତ ହେଉଅଛି । ଏପରି ମିଶ୍ରିତ ତତ୍ତ୍ୱ ବା randomness ଆଇନ୍‌ଷ୍ଟାଇନ୍‌ଙ୍କର ପସନ୍ଦ ନଥିଲା । ସେ ଏଥିରେ ବିବ୍ରତ ହୋଇ କହିଥିଲେ ଯେ "ଈଶ୍ୱର ପଶା ଖେଳନ୍ତି ନାହିଁ"। ମାତ୍ର ସାଧାରଣ ବୈଜ୍ଞାନିକ ଏହି ବଳ-ବିଦ୍ୟା (force) କୁ ଗ୍ରହଣ କରିବାକୁ ଇଚ୍ଛୁକ ଥିଲେ । କାରଣ ଆଧୁନିକ ପ୍ରଯୁକ୍ତିବିଦ୍ୟାର (Technology) ସାଫଲ୍ୟର ଅମୋଘ ଭିତ୍ତି ହେଉଛି ଏହି ତତ୍ତ୍ୱ । Transister ଓ integrated circuit ନିୟନ୍ତ୍ରିତ ହୁଏ ଏହି ତତ୍ତ୍ୱଦ୍ୱାରା । ଟେଲିଭିଜନ ଓ ଇଲେକ୍‌ଟ୍ରନିକ ଯନ୍ତ୍ରଗୁଡିକ ମଧ୍ୟ ଏହି ତତ୍ତ୍ୱର ଅନୁସରଣ କରେ । ରସାୟନ ଓ ଜୀବ ବିଦ୍ୟାର ଭିତ୍ତି ମଧ୍ୟ ଏହି ସୂତ୍ର । ମାତ୍ର ଏହିସୂତ୍ର ମାଧ୍ୟାକର୍ଷଣ ଶକ୍ତି ଓ ମହାବିଶ୍ୱର ମହାମାତ୍ରାରେ ଗଠନ ବା Large scale structure କୁ ଠିକ୍ ଭାବରେ ଯୋଗ କରିବାକୁ ଏକାବେଳେକେ ଅସଫଳ ହୋଇଅଛି ।

କେତେବେଳେ କେତେବେଳେ ମନେହୁଏ ବିଜ୍ଞାନୀ ମାନଙ୍କରଯେ, ଆଲୋକ ଏହି କଣିକାଦ୍ୱାରା ଗଠିତ । ଆଲୋକ ବେଳେବେଳେ କେବଳ ପାକେଟ (packet) କିମ୍ବା Quantum ରୂପରେ ନିର୍ଗତ ହୋଇପାରେ ଅଥବା ବିଶୋଧିତ ହୋଇପାରେ ମଧ୍ୟ । ହାଇଜେନବାର୍ଗଙ୍କ ଅନିଶ୍ଚୟତାବାଦର ଅର୍ଥ ହେଲା କଣିକା କୌଣସି କୌଣସି ଅବସ୍ଥାରେ ତରଙ୍ଗପରି ମଧ୍ୟ ଆଚରଣ କରେ । ସେମାନଙ୍କର କୌଣସି ନିଶ୍ଚୟ ଅବସ୍ଥାନ ନାହିଁ । ସେମାନେ ବିଶେଷ ସମ୍ଭାବନା ମାଧ୍ୟମରେ ବିତରିତ ହୋଇ ମିଶ୍ରିତରୂପ ଧାରଣ କରନ୍ତି । (ଅର୍ଥାତ୍ smeared out with a certain probability distribution) । କ୍ୱାଂଟଂ ଗଣିତର ତତ୍ତ୍ୱ ଭିତ୍ତି ସମ୍ପୂର୍ଣ୍ଣଭାବେ ଭିନ୍ନ । ଏହି ଗଣିତ ପର୍ଯ୍ୟବେକ୍ଷଣ ମାଧ୍ୟମରେ ବିଶ୍ୱର ବିବରଣ ପ୍ରକାଶ କରିଥାଏ । ଏଥିରୁ ଏହା ନିସୃତ ହେଲା ଯେ କ୍ୱାଟଂ ବଳବିଦ୍ୟା (force) ରେ ତରଙ୍ଗ ଓ କଣିକାମଧ୍ୟ ରେ ଦ୍ୱନ୍ଦ (duality) ପରିଲକ୍ଷିତ ହୁଏ । ସେ ଯାହା ହେଉ, କ୍ୱାଂଟଂ ବଳବିଦ୍ୟା ନୀତିଗତ ଭାବରେ ଆମ ଚାରିଆଡେ ଯାହା ଘଟୁଛି ବା ଯାହା ଆମେ ଦେଖୁଛୁ ସେ ସମ୍ପର୍କରେ ପୂର୍ବାଭାସ ଦେବାର ସାମର୍ଥ୍ୟ ଆମକୁ ଦାନ କରି ଅଛି । ତେଣୁ ଏହି ବିଦ୍ୟାକୁ ଅସଙ୍ଗତିପୂର୍ଣ୍ଣ ଓ ଅନିଶ୍ଚୟତା ନିର୍ଭର ସୂତ୍ର ଭାବେ ସମ୍ପୂର୍ଣ୍ଣଭାବେ ଅବହେଳା କରିବାର କ୍ଷମତା ବିଜ୍ଞାନୀମାନଙ୍କର ନାହିଁ । ଆଇନଷ୍ଟାଇନ ଈଶ୍ୱରଙ୍କର ପଶାଖେଳ କଥା ଅବଜ୍ଞା କଲେ ମଧ୍ୟ, ସାଧାରଣ ମଣିଷ ଜାଣନ୍ତି ଯେ ସେ ଲକ୍ଷ୍ମୀଙ୍କ ସହିତ ପଶା ଖେଳିଥାଆନ୍ତି । ଅବଶ୍ୟ, ଖେଳର ଫଳାଫଳ ମର୍ତ୍ତ୍ୟର ମଣିଷକୁ ବିଶଦଭାବରେ ଜଣାନାହିଁ ।

ହକିଂ କୃଷ୍ଣ ଗହ୍ୱର ବିଷୟରେ (Black Hole) ଅନେକ ଚିନ୍ତା କରି ଏହି ସତ୍ୟରେ ଉପନୀତ ହେଲେ ଯେ କୃଷ୍ଣ ଗହ୍ୱରର ସୀମାରେଖା ବା ଘଟଣା ଦିଗନ୍ତ (event herizon) ଗଠିତ ହୁଏ ସେହି ଆଲୋକ ରଶ୍ମିର ପଥରେଖାଦ୍ୱାରା ଯେ ରଶ୍ମିରାଶି କୃଷ୍ଣ ଗହ୍ୱରକୁ ନିର୍ଗତ ହୋଇପାରିନାହିଁ । ଅର୍ଥାତ୍ ସେହି ରଶ୍ମିରାଜି ଅନନ୍ତ କାଳ ଧରି ଗହ୍ୱରର ସୀମା ମଧ୍ୟରେ ବିଚରଣ କରେ । ହକିଂ ଏକ କୌତୁହଳଦୀପ୍ତ ଉଦାହରଣ ଦେଇ ଅଛନ୍ତି । ଚୋର ପୁଲିଶ୍ ହାତରୁ ପଳାଇବାକୁ ଉଦ୍ୟତ, ମାତ୍ର ଏକାବେଳେକେ ତାକୁ ଅତିକ୍ରମ କରିବାର କ୍ଷମତା ତାହାର ନାହିଁ । ସେହିପରି ଆଲୋକରଶ୍ମି ଗହ୍ୱର ମଧ୍ୟରେହିଁ ରହିଯାଏ । ହକିଂ ଏହି ଗହ୍ୱର ମାନଙ୍କର ମହାବିଶ୍ୱରେ ଅବସ୍ଥିତିକୁ, ମହାବିଶ୍ୱରେ ମହାଜାଗତିକ ପ୍ରହରୀ ପ୍ରକଳ୍ପ ବା Cosmic Censorship hypothesis ନାମରେ ନାମିତ କରିଅଛନ୍ତି । ହକିଂ ଈଶ୍ୱରଙ୍କୁ ବିଶ୍ୱାସ ନକଲେ ମଧ୍ୟ ଲେଖିଛନ୍ତି ଯେ ଈଶ୍ୱର ନିରାଭରଣ ଅନନ୍ୟତାକୁ (Singularity) ଘୃଣାର ସହିତ ପରିହାର କରନ୍ତି । ଅର୍ଥାତ୍ ମହାକର୍ଷ ଫଳରେ ପତନନ୍ମୁଖ ପିଣ୍ଡରାଜି ଅନନ୍ୟତାର ସାକ୍ଷୀସ୍ୱରୂପ ବିଦ୍ୟମାନ । ମହାବିଶ୍ୱର ପ୍ରସାରଣଶୀଳ ପ୍ରବାହରୁ ଗହ୍ୱର ଗୁଡିକୁ ସ୍ୱଚ୍ଛ ଓ ସୁନ୍ଦର ଭାବରେ ଲୁଚାଇ ରଖାଯାଇଅଛି । ଯେତେ କ୍ଷୁଦ୍ର ହେଲେହେଁ ଏଗୁଡିକ ମହାଜାଗରିତ ପ୍ରହରୀ ବ୍ୟବସ୍ଥାର ଏକ ସାମାନ୍ୟ ଉଦାହରଣ ବୋଲି ହକିଂଙ୍କର ନିଜସ୍ୱ ମତ । ଯେଉଁ ପିଣ୍ଡରାଜି ମହାବିଶ୍ୱର ପ୍ରକଳ୍ପ-ପ୍ରସାରୀ ଗତିରେ ଧାବମାନ ସେମାନଙ୍କୁ ରକ୍ଷା କରିବାର କବଚ ହେଲା କୃଷ୍ଣ ଗହ୍ୱର । ମାତ୍ର ଯେଉଁ ଦୁର୍ଭାଗ୍ୟ ଏଥିରେ ପଡିଲା, ତାକୁ ବଞ୍ଚେଇବାକୁ କେହିନାହିଁ ।

ବର୍ତ୍ତମାନ ଯୁଗର ପରିବର୍ତ୍ତିତ ଧାରଣା ଅନୁସାରେ ସ୍ଥାନ-କାଳ ଏକ ଯୁଗ୍ମମାତ୍ରା ହୋଇଥିବା ଯୋଗୁ, କାଳ ବିଷୟରେ ଭିନ୍ନ ଭାବରେ ଚିନ୍ତା କରାନଯାଇ ଏକ ଅଙ୍ଗାଙ୍ଗୀଭୂତ ଏକତ୍ରିକୃତ ପ୍ରବାହ-ଭିତ୍ତିକ ଦୃଷ୍ଟିରେ ବିଚାର କଲେ, ଏହି ମହାକାଳ ବିଷୟରେ ବିଚାର ପ୍ରକୃଷ୍ଟ ପଥରେ ପରିଚାଳିତ ହେବ ବୋଲି ହକିଂ ମତପ୍ରକାଶ କରିଛନ୍ତି । ସେଥିପାଇଁ କାଳର ଇତିହାସ ଲେଖିବାକୁ ଯାଇ ସେ ମହାବିଶ୍ୱର ସୃଷ୍ଟି, ସ୍ଥିତି ଓ ପ୍ରବହମାନ ଧାରା ବିଷୟରେ ବିଶଦ ଭାବରେ ଆଲୋଚନା କରିଛନ୍ତି । କାରଣ ମହାବିଶ୍ୱର ସ୍ଥାନ ସମ୍ପର୍କରେ ସମ୍ୟକ୍ ଧାରଣା ନହେଲେ ତତ୍ ସଂଲଗ୍ନ ଓ ସେଥିରେ ସମ୍ପୂର୍ଣ୍ଣ ଭାବରେ ମଗ୍ନ କାଳ ବିଷୟରେ ଖଣ୍ଡିତ ଧାରଣାହେବ ସିନା, ମାତ୍ର ପରିପୂର୍ଣ୍ଣ ଉଜ୍ଜ୍ୱଳ ଚିତ୍ର ମାନସ ପଟରେ ଅଙ୍କିତ ହୋଇ ପାରିବ ନାହିଁ । ତେଣୁ ସେ ବିଶ୍ୱର ଏକ ସନ୍ତୁଳିତ ଚିତ୍ର ପରିବେଷଣ କରି ସେଥିରେ ସ୍ଥାନ-କାଳର କ୍ରିୟା ଓ ଏକ ବିଶେଷମାତ୍ରା ଯୋଗକରି ସବିଶେଷ ଭାବରେ ବର୍ଣ୍ଣନା କରିଛନ୍ତି । ଏହି ପରିପ୍ରେକ୍ଷୀରେ କୃଷ୍ଣ-ଗହ୍ୱର ଓ ଅନ୍ୟାନ୍ୟ ମହାବିଶ୍ୱ-ବାସିନ୍ଦାମାନଙ୍କର ଅବତାରଣା

ସମ୍ୟକ ଭାବରେ ସମୀଚିନ ହୋଇଅଛି। ସେହିପରି ବିଶ୍ୱସୃଷ୍ଟିରେ ମୌଳିକ କଣା ଓ ପ୍ରାକୃତିକ ଶକ୍ତି ବା ବଳର ସ୍ଥାନ ବିଷୟରେ ବର୍ଣ୍ଣନା ମଧ୍ୟ ଅପରିହାର୍ଯ୍ୟ ମନେହୁଏ।

ଏହାର ପୂର୍ବ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି ଯେ ବିଶ୍ୱସୃଷ୍ଟିର ମୌଳିକ ଉପାଦାନ ଥିଲା କ୍ଷିତି, ଅପ୍, ତେଜ, ମରୁତ୍, ବ୍ୟୋମ। ଏଗୁଡିକ ଉପରେ ମହାକର୍ଷର ପ୍ରଭାବ ଅନନ୍ତ। ଆରିଷ୍ଟୋଟଲଙ୍କ ବିଶ୍ୱାସ ଥିଲା ପଦାର୍ଥ ବା ବସ୍ତୁ ବିଚ୍ଛିନ୍ନ ବା ବିଭାଜ୍ୟ। ଏହି ପଦାର୍ଥକୁ ଭାଗ କରାଯାଇପାରେ। ମାତ୍ର ଗ୍ରୀକ୍ ଭାଷାରେ ପରମାଣୁ ବା Atom ର ଅର୍ଥ ଥିଲା "ଅବିଭାଜ୍ୟ"। ଡାଲଟନ୍ ପ୍ରମାଣ କଲେ ୧୮୦୩ ସାଲରେ ଯେ ରାସାୟନିକ ମିଶ୍ରଣ-ପଦାର୍ଥ ଗୁଡିକ ଏକତ୍ରିକୃତ ପଦାର୍ଥ ମିଶ୍ରଣରେ ତିଆରି, ମାତ୍ର ଟମସନ୍ ପ୍ରମାଣ କରିଥିଲେ କ୍ଷୁଦ୍ରପଦାର୍ଥ କଣାର ଅସ୍ତିତ୍ୱ। ନାମଦେଲେ ଇଲେକଟ୍ରନ ବୋଲି। ରଥରଫୋର୍ଡ ୧୯୧୧ ସାଲରେ ପ୍ରମାଣ କରିଥିଲେ ପରମାଣୁର ଆଭ୍ୟନ୍ତରିଣ ଗଠନ। ସେ ଏହି କଣାର ପରାଆଧାନ ବା positive ପ୍ରକୃତି ଓ ତାର କେନ୍ଦ୍ର (nucleas) ର ସନ୍ଧାନପାଇ ସେଗୁଡିକର ଚତୁଃପାର୍ଶ୍ୱରେ ଭ୍ରାମ୍ୟମାଣ ଇଲୋଟ୍ରନର ଅସ୍ତିତ୍ୱ ଦେଖାଇ ସେଥିରୁ ବିକୀରିତ ତେଜସ୍କ୍ରିୟତା ପ୍ରମାଣ କରିଥିଲେ। ତାପରେ Chadwick "ନିଉଟ୍ରନ୍" ଆବିଷ୍କାର କଲେ। ସେ ନୋବେଲ ପୁରସ୍କାର ଲାଭକଲେ। ପୂର୍ବପରିଚ୍ଛେଦରେ ବର୍ଣ୍ଣିତ ହୋଇଛି କ୍ୱାର୍କର ଆବିଷ୍କାର ବିଷୟରେ ୧୯୬୯ରେ ଜେଲ୍‌ମାନ ଏଥିନିମନ୍ତେ ନୋବେଲପ୍ରାଇଜ ପାଇଥିଲେ। ଏହା ଥିଲା ପଦାର୍ଥ ବିଜ୍ଞାନୀମାନଙ୍କର ବିଶେଷ ଆବିଷ୍କାର-କ୍ଷେତ୍ର।

ଏଥର କଣାତତ୍ତ୍ୱକୁ ଏହା ସହିତ ବିଚାରକଲେ ମୌଳିକ ବିଷୟର କେତେକାଂଶ ବୋଧ ହୋଇପାରେ। କ୍ୱାଂଟଂ ବଳବିଦ୍ୟା ମତରେ ସମସ୍ତ କଣାହେଉଛି ପ୍ରକୃତରେ "ତରଙ୍ଗ"; ଶକ୍ତି ଯେତେବେଶୀ ତାହାର ତରଙ୍ଗ ସେତିକି ଛୋଟ। କେତେଗୁଡିଏ କଣିକା ଶକ୍ତି ବା partile energy ଆମର ଜ୍ଞାତବ୍ୟ; ସେଥିରୁ ଧାରଣା ହେବ କେତେ କ୍ଷୁଦ୍ର ମାନର ଦୈର୍ଘ୍ୟ (ତରଙ୍ଗର) ଆମ୍ଭମାନଙ୍କୁ ଦେଖିବାକୁ ମିଳିବ। ପରୀକ୍ଷାରୁ ଦେଖାଯାଇଛି ଯେ କଣା ଗୁଡିକ ମଧ୍ୟ ଅତିକ୍ଷୁଦ୍ର କଣା ଦ୍ୱାରା ଗଠିତ। ଶେଷ କଣିକାର ସନ୍ଧାନ ବର୍ତ୍ତମାନ ସୁଦ୍ଧା ମିଳିନାହିଁ। ସେ ବିଷୟରେ ପ୍ରକୃଷ୍ଟ ତଥ୍ୟ ମଣିଷର ଜାଣିବାକୁ ବାକି ଅଛି। ଏହି କଣିକା ଗୁଡିକ ଘୂର୍ଣ୍ଣନ ବା ଚକ୍ରଣ ପ୍ରକ୍ରିୟା (Spin) ରେ ଚାଳିତ। ମାତ୍ର ସେଗୁଡିକର ଘୂର୍ଣ୍ଣନର ନିଶ୍ଚିତ ବା ସୁସଂଗଠିତ କକ୍ଷ ନାହିଁ। ସେଗୁଡିକର ଘୂର୍ଣ୍ଣନର ଦିଗମଧ୍ୟ ଏକ ନୁହେଁ। ସେଥିରେ ବିଶେଷ ବୈଚିତ୍ର୍ୟ ରହିଛି। ନୋବଲ ପ୍ରାଇଜପ୍ରାପ୍ତ ବୈଜ୍ଞାନିକ ପାଉଲି (Pauli) ଆବିଷ୍କାର କଲେ ଯେ ଦୁଇଟି ସମରୁପ କଣା ଏକ ଅବସ୍ଥାରେ ରହିପାରେ ନାହିଁ। ଅନିଶ୍ଚୟତାବାଦ ଅନୁମୋଦିତ ସୀମା ମଧ୍ୟରେ ଦୁଇଟି କଣାର ଏକ ଭାବରେ ଅବସ୍ଥିତି ଏବଂ ଏକ ଗତିବେଗ ପରିଲକ୍ଷିତ ହୁଏ ନାହିଁ। ଏକ ଅବସ୍ଥାରେ କଣା ଗୁଡିକ ବେଶୀ ସମୟ ରହିପାରେ ନାହିଁ।

୧୯୨୮ ସାଲରେ ପଲ୍ ଡିରାକ୍ ପ୍ରଥମ ବିଜ୍ଞାନୀ ଯିଏ କ୍ୱାଟଂବଳବିଦ୍ୟା ଓ ବିଶେଷ ଆପେକ୍ଷିକତା ବାଦର ସମନ୍ୱୟ କରିବାକୁ ଚେଷ୍ଟା କରିଛନ୍ତି । ତାଙ୍କ ମତରେ ଇଲେକ୍ଟ୍ରନ୍‌ର ଏକ ଯୁଗ୍ମମାତ୍ରା ନିଶ୍ଚୟ ଅଛି । ଏହାକୁ ବିପରୀତ ଇଲେକ୍ଟ୍ରନ କିମ୍ବା ପଜିଟ୍ରନ ବୋଲି ଅଭିହିତ କରାଯାଇପାରେ । ଏହାପରେ ୧୯୩୨ରେ ପଜିଟ୍ରନ୍ ଆବିଷ୍କୃତ ହୋଇଥିଲା । ଏବେ ବିଜ୍ଞାନୀମାନେ ଅବଗତ ହେଲେଣି ଯେ ପ୍ରତି କଣିକାର ଏକ ବିପରୀତ କଣିକା ଅଛି । ଏହି କଣିକାଟି ବିନାଶପ୍ରାପ୍ତ ହୋଇପାରେ । ଏହି ବିପରୀତ କଣିକାଦ୍ୱାରା ଗଠିତ ବିପରୀତ ପୃଥିବୀ ଓ ବିପରୀତ ମଣିଷ ମଧ ଥାଇପାରେ । ମାତ୍ର ଏହି ଦୁଇଟି ସତ୍ତା ଅର୍ଥାତ୍ ମୁଖ୍ୟ ଓ ବିପରୀତ କଣିକା ଏକତ୍ରିତ ହେଲେ ଆଲୋକର ଉଜ୍ଜ୍ୱଳ ଆଭାର ସୃଷ୍ଟିପରେ ଦୁଇଟି ଶୂନ୍ୟରେ ମିଳାଇଯାଇପାରନ୍ତି ।

ଶକ୍ତିଶାଳୀ ନିଉକ୍ଲିଆର ବଳ ନିଜ କ୍ଷମତା ବଳରେ ନିଉଟ୍ରନ, ପ୍ରୋଟନ, କ୍ୱାର୍କ ପ୍ରଭୃତି କଣା ଗୁଡିକୁ ଏକତ୍ର କରି ଧରି ରଖେ । ଗ୍ଲୁୟନ ବୋଲି ଏକ ଘୂର୍ଣ୍ଣନ ବିଶିଷ୍ଟ କଣିକା ଏହି ଶକ୍ତିକୁ ବହନ କରିଥାଏ । ଏହି କଣିକାର ପାରସ୍ପାରିକ ପ୍ରତିକ୍ରିୟା ହୁଏ କେବଳ କ୍ୱାର୍କ ଓ ନିଜ ସହିତ । ନିଉକ୍ଲିୟାର ଶକ୍ତି ଏହି କଣିକା ଗୁଡିକୁ ସବୁ ସମୟରେ ବନ୍ଧନ କରି ରଖେ । ଏହି ସଂଯୋଗରେ କୌଣସି ବର୍ଣ୍ଣ ଦେଖାଯାଏନାହିଁ । ଏହି ଗ୍ଲୁୟନ ବା କାର୍କ ଅବରୋଧୀ-ଧର୍ମୀ । ତାହା ଫଳରେ ପର୍ଯ୍ୟବେକ୍ଷଣ ବାଧାପ୍ରାପ୍ତ ହୁଏ । ବିଦ୍ୟୁତ୍-ଚୁମ୍ବକୀୟ ବଳ electromagnetic force ଓ ଦୁର୍ବଳ ନିଉକ୍ଲିୟାର ଶକ୍ତିର ଐକ୍ୟ ସାଧନ କରି ବିଜ୍ଞାନୀମାନେ ଏକ ମହାପ୍ରତ୍ୟୟପୂର୍ଣ୍ଣ ଐକ୍ୟବଦ୍ଧ ତତ୍ତ୍ୱ ଗଠନ କରିବା ପାଇଁ ପ୍ରଚେଷ୍ଟା କରୁଛନ୍ତି । ଆଗରୁ ଲେଖିଛି ଯେ ଏହାକୁ Grand Unified Theory ବୋଲି ଅଭିହିତ କରାଯାଇଅଛି । ମାତ୍ର ଯେଉଁ ତତ୍ତ୍ୱ ଗୁଡିକ ଏହି ପ୍ରଚେଷ୍ଟା ଫଳରେ ସୃଷ୍ଟ ହୋଇଅଛନ୍ତି ସେଗୁଡିକ ମୋଟେ ମହା ଜାତୀୟ ତତ୍ତ୍ୱ ନୁହନ୍ତି । କାରଣ ସେଗୁଡିକ ମହାକର୍ଷୀୟ ତତ୍ତ୍ୱକୁ ଏକତ୍ରୀଭୂତ କରି ବ୍ୟାଖ୍ୟା କରିବାକୁ ଅସମର୍ଥ । ତେବେ ଅନେକ କ୍ଷୁଦ୍ର କ୍ଷୁଦ୍ର ତତ୍ତ୍ୱ ନିଜ ନିଜ କ୍ଷେତ୍ରରେ ପ୍ରଚଳିତ ହୋଇ ବଳବିଦ୍ୟାର ପ୍ରସାର କରୁଛନ୍ତି ନିଶ୍ଚିତଭାବରେ । ମାତ୍ର ଅନେକ ଅନିଶ୍ଚୟତା ବର୍ତ୍ତମାନ ସୁଦ୍ଧା ବିଦ୍ୟମାନ । ମହାକର୍ଷୀୟ ଶକ୍ତି ଦୁର୍ବଳ ହେଲେ ମଧ, ଏହାର ବିସ୍ତାର ଅତ୍ୟନ୍ତ ଦୀର୍ଘ ଏବଂ ଏହାର କ୍ରିୟା ଗୁଡିକ ଏକତ୍ରଯୁକ୍ତ ହୋଇ ବିଶାଳତ୍ୱ ଲାଭ କରେ । ତାହା ଅନ୍ୟାନ୍ୟ ସମସ୍ତ ଶକ୍ତି ଅପେକ୍ଷା ଅତ୍ୟଧିକ ହୋଇ ସେମାନଙ୍କ ଉପରେ ପ୍ରାଧାନ୍ୟ ଲାଭ କରିଥାଏ । ଏହି ବିଶେଷ କାରଣରୁ ମାଧ୍ୟାକର୍ଷଣ ଶକ୍ତି ମହାବିଶ୍ୱର ବିବର୍ତ୍ତନର ନିୟନ୍ତ୍ରଣ କରିଥାଏ । ଏହି ଭାବଧାରା ପ୍ରକାଶ କରି ମହାମନୀଷି ହକିଂ ସମୟ ବିଷୟରେ ବିଶେଷ ଧାରଣା ନିମ୍ନଲିଖିତଭାବେ ପ୍ରକାଶ କରିଅଛନ୍ତି ।

ବିଂଶଶତାବ୍ଦି ପ୍ରାରମ୍ଭପର୍ଯ୍ୟନ୍ତ ମନୁଷ୍ୟର ଧାରଣା ଥିଲା ଯେ ''ସମୟ'' ସ୍ଥିରନିଶ୍ଚିତ; ତାହାର ହ୍ରାସବୃଦ୍ଧି ନାହିଁ, ତାହାର ମୂଳଦୂଆ ଅପରିବର୍ତ୍ତନୀୟ । ଅର୍ଥାତ୍ ଯେ କୌଣସି ଘଟଣାର ସଂଖ୍ୟା ସମୟଦ୍ୱାରା ଚିହ୍ନିତ । ଦୁଇଟି ଘଟଣା ମଧ୍ୟରେ ସମୟର ବ୍ୟବଧାନ ବିଷୟରେ ଦୁଇଟି ଭଲ ଘଣ୍ଟା ନିଶ୍ଚିତ ଭାବରେ ସମାନ ସାକ୍ଷ୍ୟ ଦେବେ । ସେମାନଙ୍କ ମଧ୍ୟରେ ମତଭେଦ ହେବନାହିଁ । ଏହି ଧାରଣା ମଣିଷ ମନରେ ଏକାବେଳେକେ ବଦ୍ଧମୂଳ ଥିଲା । ମାତ୍ର ଆଲୋକର ଗତି ବିଷୟରେ ଆବିଷ୍କାର ଏହି ଧାରଣା ମୂଳରେ କୁଠାରାଘାତ କଲା । ପର୍ଯ୍ୟବେକ୍ଷକମାନେ ଦେଖିଲେ ଯେ ସେମାନେ ଯେପରି ଭାବରେ ଯେଉଁଆଡ଼େ ଗତିକଲେ ମଧ୍ୟ ଆଲୋକର ଗତି ସେମାନଙ୍କୁ ସମାନ ଭାବରେ ପ୍ରତିଭାତ ହେଲା । ଏହି ପିରସ୍ଥିତି ଲକ୍ଷ୍ୟ କରିବାରେ ବିଶ୍ଳେଷଣ ପଦ୍ଧତିରୁ ଜଣା ପଡିଲା ଯେ ସମୟ ଏକ ଆପେକ୍ଷିକ ଧାରଣା; ଏହା ଏକ ବିଶିଷ୍ଟ, ବଦ୍ଧମୂଳ, ସ୍ଥିର ନିଶ୍ଚିତ ଧାରଣା ନୁହେଁ । ଅନ୍ୟ ପକ୍ଷରେ ପ୍ରତ୍ୟେକ ପର୍ଯ୍ୟବେକ୍ଷକ ନିଜର ଘଣ୍ଟାରେ ସମୟର ପରିମାପ ବହନ କରେ । ବିଭିନ୍ନ ପର୍ଯ୍ୟବେକ୍ଷକ ଭିନ୍ନ ଭିନ୍ନ ଘଣ୍ଟା ବ୍ୟବହାର କଲେ ମଧ୍ୟ ସେହି ଘଣ୍ଟା ଗୁଡିକ ଯେ ସମାନ ସମୟ ପ୍ରଦର୍ଶନ କରିବେ ସେ ବିଷୟରେ ନିଶ୍ଚିତ ଭାବରେ କହିହେବ ନାହିଁ । ଏହି ବିଶ୍ଳେଷଣରୁ ଏହା ଜଣାଗଲା ଯେ ସମୟ ଏକ ବ୍ୟକ୍ତିଗତ ଧାରଣା; ପର୍ଯ୍ୟବେକ୍ଷକ ସଂପୃକ୍ତ, ତେଣୁ ଆପେକ୍ଷିକ ବୋଲି ନିସନ୍ଦେହ ଭାବରେ କୁହାଯାଇପାରେ ।

ଏହି ବିଷୟରେ ଗୋଟିଏ ତାତ୍ପର୍ଯ୍ୟପୂର୍ଣ୍ଣ ପ୍ରଶ୍ନ ହେଲା, ଅତୀତ ଓ ଭବିଷ୍ୟତ ମଧ୍ୟରେ ପ୍ରଭେଦ କେଉଁଠାରେ ଉତ୍ପତ୍ତି ହେଉଛି ? ଆମ୍ଭେମାନେ ସମସ୍ତେ କେବଳ ଅତୀତକୁ ମନେରଖୁ, ଭବିଷ୍ୟତକୁ କାହିଁକି ମନେ କରିପାରୁନାହିଁ ? ଏ ବିଷୟରେ ଲେଖିବାକୁ ଯାଇ ହକିଂ ଏକ ଉଦାହରଣ ଦେଇଛନ୍ତି । ଧରନ୍ତୁ ଗୋଟିଏ କପ୍ ଟେବୁଲ ଉପରୁ ତଳକୁ ପଡି ଭାଙ୍ଗିଗଲା ଖଣ୍ଡ ଖଣ୍ଡ ହୋଇ । ସେହି ଘଟଣାର ଯଦି ଫିଲ୍ମଚିତ୍ର ନିଆଯାଏ ତେବେ ତାହା ଆଗକୁ ଯାଉଛି ବା ପଛକୁ ଯାଉଛି ତାହା ପିଲ୍ମ ଦେଖି ସହଜରେ କହିହେବ । ଯଦି ଏହି ଛବି ପଛଆଡରୁ ଆଗକୁ ପ୍ରସାରଣ କରାଯାଏ, ତେବେ ଦେଖାଯିବ ଯେ ଭଙ୍ଗା ଟୁକୁରା ଗୁଡିକ ଆସ୍ତେ ଆସ୍ତେ ଜୋଡି ହୋଇ କପ୍‌କୁ ନୂଆ ରୂପ ଦେଇ ଟେବୁଲ ଉପରେ ଥୋଇ ଦେଉଛନ୍ତି । ଦର୍ଶକମାନେ କହିବେ ଯେ ଏହି ଛବି ପଛଆଡୁ ଆଗ ଆଡକୁ ଚାଲିଛି । ଏହାର କାରଣ ଦୈନନ୍ଦିନ ସାଧାରଣ ଜୀବନରେ ଏହିପରି ଦୃଶ୍ୟ ଦେଖାଯାଏ ନାହିଁ । ଆଉ ଯଦି ପ୍ରକୃତ ଏହି ଘଟଣା ଘଟିପାରନ୍ତା, ତେବେ କପ୍ ତିଆରି ବ୍ୟବସାୟ ଉଠି ଯାଆନ୍ତା । କାରଣ କପ୍ ଭାଙ୍ଗିବା ଯୋଗୁ ନୂଆ କପ୍‌ର ଚାହିଦା ପ୍ରଚଣ୍ଡ ।

ମାତ୍ର ବିଜ୍ଞାନର ନିୟମ ଏବିଷୟରେ ଅନ୍ୟ ରକମ । ଭଙ୍ଗାକପ୍ ନିଜେ ନିଜେ ଯୋଡି ହୋଇ ପୂର୍ବାବସ୍ଥାକୁ ଫେରିବା ଏକାବେଳେକେ ଅସମ୍ଭବ । କାରଣ ତାପଗତି ବିଦ୍ୟା (thermodynamics) ର ନିୟମ ଅନୁସାରେ ସମୟର ପ୍ରଗତି ସଙ୍ଗେ ସଙ୍ଗେ ବିଶୃଙ୍ଖଳା, ବସ୍ତୁର କ୍ଷୟ କ୍ଷତି ବଢ଼ିଚାଲେ । ଅନ୍ୟ ଭାଷାରେ କହିବାକୁ ଗଲେ, ବସ୍ତୁ ଗୁଡିକର ଭୁଲବାଟରେ ଗତି କରିବାର ଏକ ପ୍ରବଣତା ଅନ୍ତର୍ନିହିତ । କପ୍ ଯେତେବେଳେ ଅତୁଟ ଅବସ୍ଥାରେ ଟେବୁଲ ଉପରେ ଅଛି, ସେତେବେଳେ ମନେ କରିବାକୁ ହେବ ଯେ ଏହା ଶୃଙ୍ଖଳାର ଚରମସ୍ତରରେ ଅବସ୍ଥିତ । କିନ୍ତୁ ଏହାଭାଙ୍ଗି ଯେତେବେଳେ ତଳେ ପଡିଯାଏ, ସେତେବେଳେ ଏହା ଏକ ବିଶେଷ ବିଶୃଙ୍ଖଳତାର ନିଦର୍ଶନ । କପ୍‌ର ଟେବୁଲ ଉପରେ ଅବସ୍ଥାନରୁ ତାହାର ନିମ୍ନପତନ ଓ ଭଙ୍ଗୁର ଅବସ୍ଥା ସହଜରେ ଦର୍ଶନୀୟ । କିନ୍ତୁ ତଳୁ ଭଙ୍ଗା ଅବସ୍ଥାରୁ କପ୍‌ର ଜୋଡା ଲାଗିବା ଅବସ୍ଥାକୁ ଫେରି ଆସିବା ଆମଦ୍ୱାରା ଦୃଶ୍ୟ ହୁଏ ନାହିଁ । ଏହି ଦୃଷ୍ଟାନ୍ତରୁ ଏହା ସହଜରେ ଅନୁମେୟ ଯେ ସମୟର ଗତି କେଉଁ ଆଡେ; ସମୟର ତୀର କେଉଁ ଦିଗକୁ ଅଗ୍ରସର ହୁଏ । ଉପର୍ଯ୍ୟୁକ୍ତ ବିଶୃଙ୍ଖଳା ବା କ୍ଷୟକ୍ଷତି ପରିଷ୍କାର ଭାବରେ ବୁଝାଇଦେଉଛି ଯେ ପୂର୍ବରୁ ଯେଉଁ ଅବସ୍ଥାଥିଲା ତାହା ଆଉ ବର୍ତ୍ତମାନ ନାହିଁ । ଏହାର ବିଶ୍ଳେଷଣ କଲେ ବୁଝାଯିବ ଯେ ଅତୀତରେ କପଟି ନୂଆ ଥିଲା । ତଳେ ପଡି ଭାଙ୍ଗିଯିବା ପରେ ତାହାର ପୂର୍ବଦଶାରେ ସମ୍ପୂର୍ଣ୍ଣ ପରିବର୍ତ୍ତନ ହେଲା । ଅର୍ଥାତ୍ ଅତୀତରୁ ତାହା ବର୍ତ୍ତମାନ ଆଡକୁ ଜୋର୍ କଦମରେ ଗତି କରୁଛି । ସମୟର ତୀରର ଅନୁଧାବନ କଲେ ଜଣାଯିବ ସମୟର ପ୍ରକୃତି, ପ୍ରଗତି ଓ କର୍ମପନ୍ଥା ।

ଏ ବିଷୟରେ ଅନୁସନ୍ଧାନ କରି ମହାମନୀଷି ହକିଂ ସମୟର ତିନି ରକମର ସ୍ୱରୂପ ଉଦ୍‌ଘାଟନ କରି ଅଛନ୍ତି । ପ୍ରଥମହେଲା, ତାପଗତି ବିଦ୍ୟା ଜନିତ ସମୟର ତୀର । ଏହି ତଥ୍ୟ ଅନୁସାରେ ଓ ପଦ୍ଧତିରେ, ବିଶୃଙ୍ଖଳା ବଢ଼ିଚାଲେ । କ୍ଷୟକ୍ଷତିର ମଧ ବୃଦ୍ଧି ହୁଏ । ଯେତେ ଦିନଯାଏ ସେତେବେଶୀ ବିଶୃଙ୍ଖଳାର ଗତି ଦୃଢ଼ହୁଏ । ଅର୍ଥାତ୍ ସମୟର ପ୍ରଗତି ସହ ପୂର୍ବାବସ୍ଥାର ଶୀଘ୍ର ପରିବର୍ତ୍ତନ ହୋଇ ପରିସ୍ଥିତି ମଧ ବିଶେଷ ଭାବରେ ବଦଳିଯାଏ ।

ଦ୍ୱିତୀୟ ହେଲା, ମନୋବିଜ୍ଞାନଗତ ତତ୍ତ୍ୱ, ସମୟ ବିଷୟରେ । ଏହି ତତ୍ତ୍ୱ ଅନୁସାରେ ସମୟର ଗତି ମନୁଷ୍ୟ ନିଜ ମନରେ ଅନୁଭବ କରିଥାଏ । ନିଜେ ନିଜେ ହୃଦୟଙ୍ଗମ କରେ ସମୟର ପ୍ରଗତି ବା ଗତିକୁ । ମଣିଷ ଭାବେ ସମୟ ବେଶ ଦୃତ ଗତିରେ ଚାଲିଛି । ତାହାର ବିରାମ ନାହିଁ କି ବିଶ୍ରାମ ନାହିଁ । ଏହି ଗତି ମନରେ ସ୍ଥାନ ପାଇବାରୁ ମଣିଷ ଅତୀତର କଥା ମନେରଖେ । ଭବିଷ୍ୟତର କଥା ମନେ ରଖିପାରେ ନାହିଁ । ତାହାର ମନରେ ବଦ୍ଧମୂଳ ଧାରଣା ହେଲା ସମୟର ଗତି ଅତୀତରୁ ଭବିଷ୍ୟତ ଆଡକୁ ଧାବିତ ।

ଏହି ନୀତି ଅନୁସାରେ ସମୟର ଗତି ମଣିଷର ମନଦ୍ୱାରା ନିର୍ଦ୍ଧାରିତ ଓ ସ୍ଥିରିକୃତ - ଏହାର ଅତୀତରୁ ଭବିଷ୍ୟତକୁ ଗତି କରିବାର ତଥ୍ୟ ଅବିସମ୍ବାଦିତ ।

ତୃତୀୟ ତଥ୍ୟ ହେଲା :- ବିଶ୍ୱସୃଷ୍ଟିଗତ ତଥ୍ୟ ସମ୍ବଳିତ (Cosmological arrow of time) ସମୟର ତୀର ବିଶ୍ୱର ସମ୍ପ୍ରସାରଣ ଦିଗରେ ଧାବିତ । ଏହି ସମୟର ତୀର ମହାସଂକୋଚନ ଦିଗରେ ଧାବମାନ ନୁହେଁ । ଏହାର ବିଶେଷ କାରଣ ହେଲା ଅତି କ୍ଷୁଦ୍ର ବିନ୍ଦୁରୁ ଏହି ମହାବିଶ୍ୱ ସମୟର ପ୍ରଗତି ମଧଦେଇ ଏହାର ମହା ସଂପ୍ରସାରଣ ସ୍ଥିତିରେ ଆସି ପହଞ୍ଚିଛି - ଏକ ବିଶାଳ, ବିରାଟ, ମହାମହିମ ପ୍ରକାଶରେ ଉଦ୍‌ଭାସିତ ହୋଇଅଛି । ଏଥିରୁ ଏହା ପରିଷ୍କାର ଭାବରେ ଉପଲବ୍ଧ ହୋଇପାରିବ ଯେ ସମୟର ପ୍ରସାରଣ ମାଧମରେ ବିନ୍ଦୁରୁ ସିନ୍ଧୁସ୍ତରକୁ ଉନ୍ନୀତ ହୋଇଛି ଏହି ବିଶ୍ୱ । ଏହି ପ୍ରଗତି, ଦୃତ ସମ୍ପ୍ରସାରଣ ପଦ୍ଧତିର ଫଳଶୃତି । ତେଣୁ ଏହା ଦୃଢ଼ ଭାବରେ ପ୍ରତୀୟମାନ ହୁଏ ଯେ ସମୟ ସମ୍ପ୍ରସାରଣ ଦିଗରେ ଧାଇଁଛି । ଏହି ସଂପ୍ରସାରଣ ଅତୀତରୁ ବର୍ତ୍ତମାନ ଆଡକୁ ଧାବମାନ । ତେଣୁ ସମୟର ଗତି ଅତୀତରୁ ଭବିଷ୍ୟତ ଆଡକୁ ପ୍ରବହମାନ ।

ଏ ବିଷୟରେ ଗଭୀର ଚିନ୍ତାକରି ମହାମନୀଷି ହକିଂ ଲେଖିଛନ୍ତି ଯେ, ଯେତେବେଳେ ଶକ୍ତି ବ୍ୟବହୃତ ହୋଇ ତାପରେ ପରିଣତ ହୁଏ, ସେତେବେଳେ ଏହି ତାପ ବିଚ୍ଛୁରୀତ ହୁଏ । ଏହି ତାପର ବିକିରଣ ଫଳରେ ବିଶୃଙ୍ଖଳା ବଢ଼େ ସମଗ୍ର ବିଶ୍ୱରେ । ସୃତିଶକ୍ତି ଯେଉଁ ଦିଗରେ ପ୍ରସାରଣଶୀଳ ହୁଏ ସେହି ଦିଗରେ ବିଶୃଙ୍ଖଳତାର ପ୍ରସାର ହୁଏ, ଏହା ଲକ୍ଷ୍ୟଣୀୟ । ଏହି କାରଣରୁ ଅତୀତରୁ ଭବିଷ୍ୟତ ଆଡକୁ ପ୍ରସାରଣଶୀଳ ସୃତି ଶକ୍ତି ସମୟର ପ୍ରଗତିକୁ ପ୍ରସାରଣଶୀଳ ଜଗତ ସହିତ ସମତା ରକ୍ଷା କରିବା ପାଇଁ ଚେଷ୍ଟିତ ହୁଏ । ହକିଂ ଏହି ତଥ୍ୟକୁ ଅପୂର୍ବ ଭାବରେ ପ୍ରକାଶ କରିଅଛନ୍ତି ନିମ୍ନ ଲିଖିତ ରୂପେ ।

ସମୟର ଗତି ସହିତ ବିଶୃଙ୍ଖଳା ବଢ଼ିଚାଲେ । କାରଣ ଆମେ ସମସ୍ତେ ସମୟର କଳନା ସେହି ଦିଗରେ ହିଁ କରିଥାଉଁ, ଯେଉଁ ଦିଗରେ ବିଶୃଙ୍ଖଳା ବର୍ଦ୍ଧିଷ୍ଣୁ ଭାବରେ ଗତି କରେ; ଅର୍ଥାତ୍ ଅତୀତରୁ ଭବିଷ୍ୟତ ଆଡକୁ, ଅତୀତରୁ ପ୍ରବହମାନ ସମୟ ଭବିଷ୍ୟତ ଆଡକୁ ଗତି କରିଥିବାରୁ ଏହାର ସଂପ୍ରସାରଣ-ଜନିତ ବିଶୃଙ୍ଖଳା ଅବଧାରିତ ଗତିରେ ବୃଦ୍ଧିପାଉଥିବାରୁ, ଆମ୍ଭେମାନେ ସମୟ ସହିତ ବିଶୃଙ୍ଖଳାର କ୍ରମବର୍ଦ୍ଧମାନ ନିୟମ ବିଷୟରେ ଅବହିତ ହୋଇଥାଉଁ ।

ବର୍ତ୍ତମାନ ପ୍ରଶ୍ନ ହେଲା, ବିଶୃଙ୍ଖଳା ବଢ଼ିବାର ଦିଗ କ୍ରମବର୍ଦ୍ଧିଷ୍ଣୁ ବିଶ୍ୱର ଦିଗ ସହିତ ଏକିଭୂତ ହେବାର କାରଣ କଣ ? ବିଶ୍ୱସୃଷ୍ଟି ସମୟରେ ବିଜ୍ଞାନର ନୀତି ନିୟମ କଣ ଥିଲା ତାହା ଜାଣିବା ଅତ୍ୟନ୍ତ ଦୁରୁହ । କାରଣ ମହା ବିସ୍ଫୋରଣ ବା Big Bang ତତ୍ତ୍ୱ ଅନୁସାରେ

ସବୁ ନିୟମ ନିଶ୍ଚିତ ଭାବରେ ଭାଙ୍ଗି ପଡିଥିବ ଏହି ମହାବିକ୍ଷୋଭ ଯୋଗୁ । ତେଣୁ କିପରି ଭାବରେ ବିଶ୍ୱ ସୃଷ୍ଟିହେଲା ତାହା ନିଧାର୍ଯ୍ୟ ଭାବରେ ସ୍ଥିରିକୃତ ହେବା ପ୍ରାୟ ଅସମ୍ଭବ । ମାତ୍ର କେତେକ ବିଷୟ ଅନୁମାନ ସାପେକ୍ଷ୍ୟ । ଯଦି ସେସମୟରେ ବିଶ୍ୱ ଏକ ଶୃଙ୍ଖଳିତ ନିୟମର ଅନ୍ତର୍ଭୁକ୍ତ ହୋଇ ଆରମ୍ଭ ହୋଇଥାଏ, ତେବେ ସମୟର ନିୟମାବଳି ମଧ ସୁଚିନ୍ତିତ ପଥରେ ଅଗ୍ରସର ହୋଇଥାଆନ୍ତା । ଅନ୍ୟଥା ଯଦି ବିଶ୍ୱ ଏକ ବିଶୃଙ୍ଖଳିତ ବସ୍ତୁରୂପେ ଆରମ୍ଭ ହୋଇଥାଏ, ତେବେ ସର୍ବତ୍ର ବିଶୃଙ୍ଖଳା ବିରାଜମାନ କରିଥିବ । ସମୟ ସହିତ ବିଶୃଙ୍ଖଳା ବଢ଼ିଲା ବୋଲି ଯେଉଁ ଧାରଣାର କଥା ଉପରେ ଲେଖାହେଉଛି ତାହାର ମୂଳଦୂଆ ଭ୍ରମାତ୍ମକ ବୋଲି କୁହାଯାଇପାରେ । ଏଥିରୁ ଅନୁମାନ-ଯୋଗ୍ୟ ଯେ ଉପର୍ଯ୍ୟୁକ୍ତ ତତ୍ତ୍ୱଟି ପ୍ରକୃତ ଅବସ୍ଥା ସହିତ ଠିକ୍ ଭାବରେ ଖାପଖାଇ ପାରୁନାହିଁ । ଏପରି ଅନୁମାନ ଗ୍ରହଣ ଯୋଗ୍ୟ ନୁହେଁ ବୋଲି ପ୍ରତୀୟମାନ ହେଉଅଛି । ତେବେ ପ୍ରକୃତ ତଥ୍ୟ କଣ ? କିପରି ତାହା ଜଣାଯିବ ?

ଏ ବିଷୟରେ କ୍ୱାଂଟଂ ତଥ୍ୟ ଅନୁସରଣ ଯୋଗ୍ୟ । ଏହି ତତ୍ତ୍ୱ ଅନୁସାରେ ବିଶ୍ୱ କ୍ରମବର୍ଦ୍ଧମାନ ହୋଇ ଏହାର ପରିମିତି ବୃଦ୍ଧିପାଇ ବିଶାଳ ଆକାର ଧାରଣ କରିବ । ଏହି ବର୍ଦ୍ଧିଷ୍ଣୁ ଅବସ୍ଥାରେ ନାନା ପରିବର୍ତ୍ତନ ମଧ ଦେଇ ବିଶ୍ୱ ଗତି କରିଥିବ । ଏହି ପରିବର୍ତ୍ତନର ମାନ ପ୍ରଥମେ କମ୍ ହେଲେହେଁ, ସମୟର ଗତି ସହିତ ବହୁଳ ପରିମାଣରେ ବର୍ଦ୍ଧିତ ହୋଇ, ବହୁ ଜାଗତିକ ଆକର୍ଷଣ-ବିକର୍ଷଣ ପଦ୍ଧତି ମାଧମରେ ଉତ୍ଥାନ ପତନର ଅବସ୍ଥା ମଧଦେଇ ଗତି କରିଥିବ । ଏହି ପ୍ରଣାଳୀରେ ଏହି ବିଶ୍ୱର ବହୁଳ ପରିବର୍ତ୍ତନ ଘଟିଥିବାର ସମ୍ଭାବନା ପ୍ରବଳ । ବିଶେଷ ଭାବରେ ମାଧାକର୍ଷଣ ଶକ୍ତିର ପ୍ରଚଣ୍ଡ କ୍ଷମତାବଳରେ ପ୍ରସାରଣ ସୀମିତ ହୋଇ ଆସିଥିବ କେତେକାଂଶରେ । ଫଳରେ ଏହି ମହାଜ୍ୟୋତିପୁଞ୍ଜର କେତେକ ଅଂଶ ଅବନମିତ ହୋଇ ନିହାରିକା ପୁଞ୍ଜ ତାରକାରାଜି ଓ ଅନ୍ୟ ସବୁ ସୃଷ୍ଟ ପଦାର୍ଥରେ ପରିଣତ ହୋଇଥିବେ । ଯଦି ବା ଏହି ବିଶ୍ୱ ପ୍ରଥମେ ସୁଶୃଙ୍ଖଳ ଅବସ୍ଥାରେ ଏହାର ମହାଜାଗତିକ ଯାତ୍ରା ଆରମ୍ଭ କରିଥିବ, ପରେ ସମୟର ଅଗ୍ରଗତି ସହ ଏହା ବିଶୃଙ୍ଖଳିତ ହୋଇ ପଡିବାର ସମ୍ଭାବନା ଉଜ୍ଜ୍ୱଳ ହେବା ଅନୁମାନ ସିଦ୍ଧ । ଏହି ପ୍ରକ୍ରିୟା ପୂର୍ବଲିଖିତ ତାପଗତି ବିଦ୍ୟା ବିଷୟକ ସମୟର ତୀରର ଦିଗ୍‌ଦର୍ଶନ ଦିଏ ।

ଆଉ ଗୋଟିଏ ପ୍ରଶ୍ନ ଏହି ପ୍ରସଙ୍ଗରେ ମନୁଷ୍ୟ ମନକୁ ଉଦ୍‌ବେଳ କରେ । ଯଦି ଏହି ସମ୍ପ୍ରସାରଣଶୀଳ ବିଶ୍ୱ ଏହାର ପ୍ରଗତି ସ୍ତିମିତ କରି ମହାସଂକୋଚ ଆଡକୁ ଗତି କରେ, ତେବେ କଣ ହେବ ? ତାହାହେଲେ କଣ ବିଶୃଙ୍ଖଳା କମି ଆସିବ ? ତାହା ବିପରୀତ ଦିଗରେ ଅର୍ଥାତ୍ ଶୃଙ୍ଖଳା ଆଗକୁ ଧାବମାନ ହେବ ? ଏ ବିଷୟରେ ହକିଂ ନିଜେ ଭୁଲ ଧାରଣାର ବଶବର୍ତ୍ତୀ ହୋଇ ଭାବିଥିଲେ ଯେ ବିପରୀତ ଗତିରେ ଶୃଙ୍ଖଳାର ପୁନରାଗମନ ସୁନିଶ୍ଚିତ ।

ମାତ୍ର ତାଙ୍କର ସହଯୋଗୀ ବିଜ୍ଞାନୀ, ରୋମଣ୍ଡ ଲାଫ୍ଲେମ୍ ପ୍ରମାଣ କରିଦେଲେ ଯେ ଏପରି ଧାରଣା ଏକାବେଳେକେ ଅମୂଳକ । ବିଶ୍ୱର ଛନ୍ଦପତନ ଏକ ଭିନ୍ନରୂପକ ପରିକଳ୍ପନା । ଏହାର ପ୍ରସାରଣଶୀଳ ଜଗତର ବ୍ୟବହାର-ବିଜ୍ଞାନ ସହିତ କୌଣସି ସାମଞ୍ଜସ୍ୟ ବା ବୈପରୀତ୍ୟ ନାହିଁ । ଡନ୍‌ପେଜ୍ ବୋଲି ଆଉଜଣେ ବୈଜ୍ଞାନିକ ପ୍ରମାଣ କଲେ ଯେ ବିଶ୍ୱର-ସୀମାହୀନ ସ୍ଥିତିରୁ (No boundary condition) ଏହା ଅନୁମାନ ଯୋଗ୍ୟ ନୁହେଁ ଯେ ''ମହାସଂକୋଚ'' ମହାବିକ୍ଷୋଭର ସମୟ-ବୈପରୀତ୍ୟ ଅଟେ (Time-Reverse) । ଅଥବା ମହାସଂକୋଚ ଅବସ୍ଥାରେ ଯେ ମହାବିକ୍ଷୋଭ ପରିସ୍ଥିତିର ସମ୍ପୂର୍ଣ୍ଣ ଓଲଟା ଫଳ ହେବ ଏହା କହିବା ଠିକ୍ ନୁହେଁ । ଦୁଇ ପଦ୍ଧତି ଦୁଇ ରକମର । ଗୋଟିଏ ଅନ୍ୟର ବିପରୀତ ନୁହେଁ । ପରେ, ହକିଂ ନିଜର ଭୁଲ ବୁଝିପାରି ମାନିନେଲେ । ମାତ୍ର ତାଙ୍କର ଜିଜ୍ଞାସାରୁ ନିବୃତ ହେଲେ ନାହିଁ । ତାଙ୍କ ମନରେ ପୁଣି ସନ୍ଦେହ ଆସିଲା । ସୃଷ୍ଟିଗତଭାବନାରେ ସମୟର ତୀର ଓ ତାପଗତି ବିଦ୍ୟା ଲବ୍ଧ ସମୟର ତୀର କାହିଁକି ଏକଦିଗକୁ ଧାଇଁବ ? ଯେଉଁ ଦିଗରେ ଏହି ମହାବିଶ୍ୱ ପ୍ରସାରିତ ହେଉଛି ସେହି ଦିଗରେ ବିଶୃଙ୍ଖଳାର ଗତି ବର୍ଦ୍ଧିତ ହେବ କାହିଁକି ? ଯଦି ସଂପ୍ରସାରଣ ଓ ସଂକୋଚନ ପଦ୍ଧତି ପରସ୍ପରକୁ ଅନୁଧାବନ କରୁଥାଆନ୍ତି, ତେବେ ଏହି ବିଶ୍ୱର ବସ୍ତୁ, ସ୍ଥାବର ଜଙ୍ଗମାଦି କେବଳ ସଂପ୍ରସାରଣ କ୍ଷେତ୍ରରେ କାହିଁକି ଦୃଶ୍ୟମାନ ଓ ବିଦ୍ୟମାନ ହେବେ, ସଂକୋଚନ କ୍ଷେତ୍ରରେ କାହିଁକି ସେମାନଙ୍କୁ ଦେଖାଯିବ ନାହିଁ ? ଏହାର କେତେକ ସାମ୍ଭାବ୍ୟ ଉତ୍ତର ହକିଂ ନିଜେ ଦେଇଛନ୍ତି; ନିଜର କଳ୍ପନାସମ୍ଭୂତ ନ୍ୟାୟନୀତିକୁ ଅନୁସରଣ କରି । ସେ ଲେଖିଛନ୍ତି ସଂକୋଚନ କ୍ଷେତ୍ରରେ ଯେଉଁ ପରିସ୍ଥିତିର ଉଦ୍‌ଭବ ହୁଏ, ସେଗୁଡିକ ବୁଦ୍ଧିମାନ ଜୀବମାନଙ୍କର ଜୀବନ ପକ୍ଷରେ ସହାୟକ ନ ହୋଇପାରେ, ସେମାନେ ରହିଲେ ସିନା ଏପ୍ରଶ୍ନ ପଚାରିବେ ? ସେମାନଙ୍କର ଅନୁପସ୍ଥିତିରେ ଏ ପ୍ରଶ୍ନ ଉଠାଇବ କିଏ ? ସେହି ପୁରୁଣା ପ୍ରଶ୍ନଟି ପୁଣି ସ୍ୱତଃ ମନୁଷ୍ୟ ମନରେ ଉଦିତ ହୁଏ । ସଂପ୍ରସାରଣ ଦିଗରେ ବିଶ୍ୱ ଧାବିତ ହେବାବେଳେ ବିଶୃଙ୍ଖଳା କ୍ରମବର୍ଦ୍ଧିତ ହୁଏ କାହିଁକି ?

ଏହି ବିଶ୍ୱର ସଂପ୍ରସାରଣ ଏପରିଭାବରେ ଚାଲେ ଯେ ବହୁ କୋଟିବର୍ଷ ପର୍ଯ୍ୟନ୍ତ ଏହାର ସଂକୋଚନ ଜନିତ ଛନ୍ଦପତନର ସମ୍ଭାବନା ନଥାଏ । ଏହି ଅବଶ୍ୟମ୍ଭାବି ପତନକୁ ସଂପ୍ରସାରଣର ଗତି ଆଡେଇ ଆଡେଇ ଯାଏ । ତାପରେ ଯେତେବେଳେ ସମଗ୍ର ବିଶ୍ୱର ମହାଜାଗତିକ ବସ୍ତୁ ରାଜିମାନଙ୍କର ପତନ ହୁଏ, ସେତେବେଳେ ନିହାରିକାପୁଞ୍ଜ, ତାରକାରାଜି କ୍ରମେ କ୍ରମେ ଭସ୍ମୀଭୂତ ହୋଇ ସେଥିରେ ଥିବା ଅଣୁ ପରମାଣୁ ସମସ୍ତ ପରିବର୍ତ୍ତିତ ହୋଇ, ଅତିକ୍ଷୁଦ୍ର ଆଲୋକ କଣାରେ ପରିଣତ ହୋଇ, ବିଚ୍ଛୁରୀତ ହୋଇଯାଆନ୍ତି । ସେତେବେଳେ ସମଗ୍ର ବିଶ୍ୱ ଏକ ଭୟାବହ ବିଶୃଙ୍ଖଳାରେ ପରିଣତ ହୁଏ ।

ଏପରି ଅବସ୍ଥାରେ ତାପ-ଗତି-ବିଦ୍ୟା ଜନିତ ସମୟର ତୀରର ଅବସ୍ଥିତି ଅପରିକଳ୍ପନୀୟ । ଯେତେବେଳେ ବିଶୃଙ୍ଖଳାର ଚରମ ସୀମାରେ ଏହି ମହାବିଶ୍ୱ ଉପନୀତ ହୁଏ, ସେତେବେଳେ ଆଉ ଅଧିକ ବିଶୃଙ୍ଖଳାର ଅବସ୍ଥା ଅଚିନ୍ତନୀୟ ହୋଇପଡେ । ସେ ଯାହାହେଉ, ତାପଗତି ବିଦ୍ୟା ଜନିତ ସମୟର ତୀରର ବ୍ୟବହାର କେବଳ ଗୋଟିଏ ବୁଦ୍ଧିବିଶିଷ୍ଟ ଜୀବ ବ୍ୟବହାର କରିପାରେ । ଏହି ବୁଦ୍ଧିମାନ ଜୀବ, ମନୁଷ୍ୟର, ବଞ୍ଚିବା ପାଇଁ ଦରକାର ସୁଷମ ଖାଦ୍ୟ, ଏହି ଖାଦ୍ୟରୁ ମିଳେ ଶକ୍ତିର ଉତ୍ସ । ଏଥିରୁ ସୃଷ୍ଟିହୁଏ ତାପ (Heat) । ଏହି ତାପ ଏକ ବିଶୃଙ୍ଖଳା ଜାତ ଶକ୍ତି । ତେଣୁ ସଂକୋଚନଶୀଳ ବିଶ୍ୱରେ ବୁଦ୍ଧି ସଂଜୀବିତ ଜୀବନ ର ଅସ୍ତିତ୍ୱ ସମ୍ଭବପର ନୁହେଁ । ସଂପ୍ରସାରଣଶୀଳ ଜଗତରେ ଜୀବନର ବିସ୍ତାର ସମ୍ଭବପର । ଏହି ବୁଦ୍ଧିମତ୍ତା-ପୂର୍ଣ୍ଣ ଜୀବନ ସଂପ୍ରସାରଣ କ୍ଷେତ୍ରରେହିଁ ଅସ୍ତିତ୍ୱ ଲାଭ କରି ପ୍ରସାରିତ ହୋଇଥାଏ । ଏହି ବୁଦ୍ଧିମାନ ପ୍ରାଣୀ ସମୟର ତୀର ବିଷୟରେ ଜ୍ଞାତ ହୋଇ ଚିନ୍ତା-ବିକ୍ଷେପ କରିବାକୁ ସକ୍ଷମ ହୋଇଥାଏ । ଜୀବନ ନ ଥିଲେ ଏହି ସମୟର ଚିନ୍ତା ମଧ୍ୟ ନିରର୍ଥକ ହୋଇପଡେ । କାରଣ ଜୀବନ ସହିତ ସମୟର ଗତି, ଅର୍ଥପୂର୍ଣ୍ଣ । ଜୀବନ ବାହାରେ ସମୟର ଅସ୍ତିତ୍ୱ ଅଛି କି ନାହିଁ ତାହା ଜୀବିତ ପ୍ରାଣୀ ପକ୍ଷରେ ବିଶେଷ ମୂଲ୍ୟ ବହନ କରେ ନାହିଁ । ତାହାର ଚିନ୍ତା ରାଜ୍ୟର ବାହାରକୁ ଚାଲିଯାଇ ମୂଲ୍ୟହୀନ ହୋଇପଡେ । ତେଣୁ ତାହା ବିଚାରର ବହିର୍ଭୂତ । ହକିଂ ଶେଷରେ ଦେଖିଲେ ଯେ, ବିଜ୍ଞାନର ନିୟମାବଳି ସମୟର ସମ୍ମୁଖ ବା ପଶ୍ଚାତ୍ ଗତିର ପୁଙ୍ଖାନୁପୁଙ୍ଖ ବିଚାର ଦ୍ୱାରା ଏହି ଗତି ଗୁଡିକର ଭିନ୍ନତା ପ୍ରତିପାଦନରେ ଅସମର୍ଥ । ସେମାନେ କେବଳ ସମୟର ତୀର ବିଷୟରେ ସାମ୍ଭାବ୍ୟ ତିନୋଟି ଧାରଣାର ଅବତାରଣା କରି ଅଛନ୍ତି । ସେଥିରୁ ସେ ତାପଗତିବିଦ୍ୟା ସମ୍ଭୁତ ସମୟର ତୀରକୁ ବିଶେଷ ପ୍ରାଧାନ୍ୟ ଦେଇ ଅଛନ୍ତି । କ୍ରମପ୍ରସାରଣଶୀଳ ଜଗତରେହିଁ ବୁଦ୍ଧିମାନ ଜୀବମାନଙ୍କର ଉତ୍ପତ୍ତି, ଅବସ୍ଥିତି ଓ ପ୍ରଗତି ସମ୍ଭବପର ହୋଇପାରେ । ତେଣୁ ସେମାନଙ୍କ ମାନସଉଦ୍‌ଭୂତ ସମୟର ତୀର ପୂର୍ବକଥିତ ତାପଗତିବିଦ୍ୟାର ନିୟମ-ସମ୍ଭୁତ ''ସମୟର ତୀର'' ସହିତ ଅଙ୍ଗାଙ୍ଗିଭୂତ ହେବା ଏକାବେଳେକେ ସ୍ୱାଭାବିକ ହେବ, ଏଥିରେ ସନ୍ଦେହ ନାହିଁ । ଆଉ ଯେତେବେଳେ ''ମହାସଂକୋଚ'' ଆରମ୍ଭହେବ, ସେତେବେଳେ ପ୍ରାଣୀ ଜଗତର ଅବସାନ ଘଟିବ । ସେତେବେଳେ ତାପଗତିବିଦ୍ୟା ବିଷୟକ ନିୟମର ପ୍ରସାର କମିଯିବ; କ୍ରମେ କ୍ରମେ ତାହା ମଧ୍ୟ ଅବଲୁପ୍ତ ହେବ । ''ମହାସଂକୋଚ'' ସମୟରେ, ସମୟର ବ୍ୟାପ୍ତି ବିଷୟରେ ଧାରଣା କରିବାକୁ ନଥିବେ ବିଜ୍ଞାନୀ, ଦାର୍ଶନିକ, ଚିନ୍ତାଶୀଳ ବ୍ୟକ୍ତି ବିଶେଷ । ତେଣୁ ସେ ବିଷୟରେ ଗବେଷଣା ହେବାର ସମ୍ଭାବନା ମଧ୍ୟ କ୍ଷୀଣ । କେବଳ କଳ୍ପନାର ପ୍ରୟୋଗଶାଳାରେ ବିଜ୍ଞାନ ପ୍ରବେଶ କରିବାକୁ ଅନିଚ୍ଛୁକ । ତେଣୁ ବିଶିଷ୍ଟ ବୈଜ୍ଞାନିକ ହକିଂ ସେ ବିଷୟରେ କୌଣସି ଚିନ୍ତା କରିବାକୁ ଶ୍ରେୟସ୍କର ମଣି ନାହାନ୍ତି । କିନ୍ତୁ ସେ ବିଶୃଙ୍ଖଳାର ପରିବେଷ୍ଟନିରେ ଏକମାତ୍ର

ଶୃଙ୍ଖଳାର ପଦଧ୍ୱନି ପାଇଛନ୍ତି ମନୁଷ୍ୟର ଚିନ୍ତାର ପ୍ରଗତିପଥରେ, ତାହାର ବୋଧଶକ୍ତିର ପ୍ରସାରଣରେ, ବିଶ୍ୱକୁ ବୁଝିବାର ପ୍ରଚେଷ୍ଟାରେ, ତାହାର ଅକ୍ଳାନ୍ତ ଉଦ୍ୟମରେ । ବିଶୃଙ୍ଖଳତାର ମହାସମୁଦ୍ରରେ ମନୁଷ୍ୟର ଦୁର୍ଦ୍ଦମନୀୟ ପ୍ରୟାସ ଅତିକ୍ଷୁଦ୍ର ହେଲେହେଁ, ଏହାହିଁ ଏକ ଶୃଙ୍ଖଳାର ଆବାସକ୍ଷେତ୍ର ।

ସମୟକୁ ସଂମ୍ପୂର୍ଣ୍ଣଭାବରେ ବୁଝିବାକୁ ହେଲେ ଅନୁସନ୍ଧାନ କରିବାକୁ ହେବ ସେହି ତଥ୍ୟର, ଯାହା ଜଗତର ସବୁକିଛି ବସ୍ତୁ-ଅବସ୍ଥା, ନିୟମ-ବେନିୟମ, ଆଲୋକ-ଅନ୍ଧକାର, ଅବସ୍ଥିତି-ବିଲୁପ୍ତି, ପରିପୂର୍ଣ୍ଣତା-ଶୂନ୍ୟତା ଓ ଅନ୍ୟ ଜ୍ଞାତ-ଅଜ୍ଞାତ ତଥ୍ୟକୁ ସମ୍ପୂର୍ଣ୍ଣଭାବେ ବୁଝାଇ ଦେଇ ପାରିବ; ପ୍ରାଞ୍ଜଳଭାବେ ପ୍ରକାଶ କରିପାରିବ; ଯାହା ସବୁ ପଦାର୍ଥ ଓ ନିୟମାବଳିର ଆଦିର ଆଦି ଓ ମୂଳର ମୂଳ ରୂପରେ ପ୍ରତିଭାତ ହେବ । ସେହି ପରମ, ଓ ଅକୃତିମ ଶେଷ ତତ୍ତ୍ୱର ସନ୍ଧାନରେ ସବୁ ବିଜ୍ଞାନୀ ସଦାସଚେଷ୍ଟ, ସଦା ଜାଗ୍ରତ, ସଦା ସନ୍ନିବିଷ୍ଟ ଚିତ୍ତରେ ନିରଳସ ଭାବରେ ପ୍ରଯୁକ୍ତ ହୋଇ ରହିଛନ୍ତି । ଏହି ବିଷୟରେ ବ୍ୟାପକ ଆଲୋଚନା ଏକାନ୍ତ ଆବଶ୍ୟକ । ତାହା ନିମ୍ନଲିଖିତ ରୂପେ ପ୍ରକାଶ୍ୟ : -

ମାତ୍ର, ଏପରି ଏକ ମହାତତ୍ତ୍ୱର ଆବିଷ୍କାର ଗୋଟିଏ ମାତ୍ର ପ୍ରଚେଷ୍ଟାରେ ସମ୍ଭବପର ନୁହେଁ । ତେଣୁ ବିଜ୍ଞାନ ଆଂଶିକ-ସଫଳ-ତତ୍ତ୍ୱ ରାଜିର ସନ୍ଧାନ ମଧ୍ୟ ଚଳାଇଛି । ଏଗୁଡିକୁ ଏକତ୍ରିଭୂତ କରି ଶେଷରେ ଏକ ଅଙ୍ଗାଙ୍ଗୀଭୂତ ପୂର୍ଣ୍ଣତତ୍ତ୍ୱର ଆବିର୍ଭାବ ହେବାର ସମ୍ଭାବନା ଉଜ୍ଜ୍ୱଳ ବୋଲି ହକିଂ ଭାବନ୍ତି । ଏହି ତତ୍ତ୍ୱର ଅନୁସନ୍ଧାନକୁ ସେ ଆଖ୍ୟା ଦେଇଛନ୍ତି ''ପଦାର୍ଥବିଦ୍ୟାର ଏକତ୍ରିକରଣ'' ରୂପେ । ଆଇନଷ୍ଟାଇନ୍ ତାଙ୍କର ଶେଷ ଜୀବନ ଏହି ମହାତତ୍ତ୍ୱର ଅନୁସନ୍ଧାନରେ କଟାଇଦେଇଯାଇଥିଲେ । ମାତ୍ର ଏହି ଏକକ-ତତ୍ତ୍ୱର ଆବିଷ୍କାରରେ ଏକାବେଳେକେ ବିଫଳ ହୋଇଥିଲେ । ସେ କ୍ୱାଂଟଂ ତତ୍ତ୍ୱରେ ବିଶେଷ ଭାବରେ ନିର୍ଭରଶୀଳ ନଥିଲେ । ତାଙ୍କର ଅକୃତକାର୍ଯ୍ୟତାର କାରଣ ହେଲା ''ଅନିଶ୍ଚୟତା ତଥ୍ୟ'' ର ପ୍ରଭାବ । ଏହି ମହାବିଶ୍ୱରେ ଅନିଶ୍ଚୟତା ମଧ୍ୟ ସର୍ବବ୍ୟାପୀ ବୋଲି ଅନୁଭୂତ ହୁଏ । ଏହି ଅନିଶ୍ଚୟତା ଏକ ଅବଧାରିତ ସତ୍ୟ । ଏହି ତଥ୍ୟକୁ ବିଚାରକୁ ନେଇ ''ଆଦିତତ୍ତ୍ୱ'' ର ଅନ୍ୱେଷଣ ଏକାନ୍ତ ଜରୁରୀ ହୋଇପଡିଛି ବୋଲି ହକିଂ ତାଙ୍କର ମତ ବ୍ୟକ୍ତ କରି ଅଛନ୍ତି ।

ଏହି ପରିପ୍ରେକ୍ଷୀରେ ହକିଂ ''ସୂତ୍ର ତତ୍ତ୍ୱର'' ବା ''ତନ୍ତୁ ତତ୍ତ୍ୱ'' (String Theory) ଅବତାରଣା କରିଛନ୍ତି । ଏହାପୂର୍ବରୁ ଏହିତତ୍ତ୍ୱ ବିଷୟରେ ସଂକ୍ଷିପ୍ତ ବିବରଣୀ ପୂର୍ବଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି । ଏହି ତତ୍ତ୍ୱର ଟିକିଏ ବିଶଦ ଆଲୋଚନା ବିଧେୟ । ୧୯୮୪ ସାଲରେ ବିଜ୍ଞାନ ଜଗତରେ ସୂତ୍ରତତ୍ତ୍ୱ ପକ୍ଷରେ ପ୍ରବଳ ଆଲୋଡନ ସୃଷ୍ଟି ହୋଇଥିଲା । ଏହି ତତ୍ତ୍ୱ ଅନୁସାରେ, ମୂଳ ପଦାର୍ଥ ଅଣୁ ପରମାଣୁ ନୁହେଁ । ଅଣୁପରମାଣୁ

ବିଶ୍ୱରେ ଏକ ନିର୍ଦ୍ଦିଷ୍ଟସ୍ଥାନ ଅଧିକାର କରି ରହନ୍ତି । ମାତ୍ର String ବା ତାର ବା ତନ୍ତୁ ବା ''ସୂତ୍ର'' ର କେବଳ ଦୈର୍ଘ୍ୟ ଅଛି ; ଅନ୍ୟ କିଛି ପରିମାପ ନାହିଁ । ଏହା ଅତୀବ ସୂକ୍ଷ୍ମ ଓ କଳ୍ପନାତୀତ ଭାବରେ ସରୁ । ଏହା ସମୟର ପ୍ରତ୍ୟେକ ମୁହୂର୍ତ୍ତରେ ସ୍ଥାନ ବା space ରେ ଗୋଟିଏ ରେଖା ସଦୃଶ ପ୍ରତୀୟମାନ ହୁଏ । ତେଣୁ ଏହାର ସ୍ଥାନ-କାଳରେ ଅବସ୍ଥିତି ଦୁଇମାତ୍ରା ବିଶିଷ୍ଟ ଭୂମି । ଯାହାକୁ "World Sheet" ଭାବରେ ଅଭିହିତ କରାଯାଇଅଛି । ଯାହାକୁ ପୂର୍ବେ ଅଂଶୁଭାବରେ କଳ୍ପନା ଯାଉଥିଲା, ତାହା ଏହି ତତ୍ତ୍ୱ ଅନୁସାରେ ଲହରୀ (waves) ଭାବରେ ଚିତ୍ରିତ । ଏହି ଲହରୀ ଗୁଡିକ ସ୍ପନ୍ଦନ-ଶୀଳ । ଏହି ସୂତ୍ର ତତ୍ତ୍ୱର ସମସ୍ୟା ହେଲା ଯେ ସ୍ଥାନ-କାଳ ର ମାତ୍ରା ଯଦି ଦଶ ବା ୨୬ ହୋଇଥାଆନ୍ତା ତାହାହେଲେ ଏହି ତତ୍ତ୍ୱର ସାରବତ୍ତା ପ୍ରମାଣିତ ହୁଅନ୍ତା । ମାତ୍ର ସ୍ଥାନକାଳର ମାତ୍ରା ''ଚାରି'' (୪) ରେ ପର୍ଯ୍ୟବସିତ ହୋଇଥିବା ଯୋଗୁ ଏହା ପ୍ରମାଣ-ସାପେକ୍ଷ ନୁହେଁ । ଯଦି ଏହି ''ବହୁଳ ମାତ୍ରା'' ବା Extra Dimension ପ୍ରକୃତରେ ଥାଆନ୍ତା, ତାହାହେଲେ ସେଗୁଡିକ ପରିଦୃଶ୍ୟ ହେଉନାହିଁ କାହିଁକି ? ଆମେ କେବଳ ସ୍ଥାନର ତିନିମାତ୍ରା ଓ କାଳର ଏକମାତ୍ରା କାହିଁକି ଦେଖିବାକୁ ପାଉ ? କେହି କେହି କହନ୍ତି ଯେ ଅନ୍ୟମାତ୍ରା ଗୁଡିକ ଗଭୀର ସଂମିଶ୍ରଣ ହେତୁ ପରିଦୃଶ୍ୟ ନୁହେଁ; ସେଗୁଡିକ ''ସ୍ଥାନ'' ମଧ୍ୟରେ ଅବଲୁପ୍ତ ହୋଇ ରହିଅଛି । ସେଗୁଡିକ ପରିମାଣରେ ଏତେ କ୍ଷୁଦ୍ର ଯେ ସାଧାରଣ ଭାବରେ ତାହା ଦୃଶ୍ୟମାନ ନୁହେଁ । ସେଗୁଡିକ ଅର୍ନ୍ତଲୀନ ଭାବରେ ଅବସ୍ଥିତ । ତାହାହେଲେ ମଧ୍ୟ ଏହି ତତ୍ତ୍ୱରୁ ସ୍ପନ୍ଦନ ସହିତ ଦୃଶ୍ୟମାନ ଅଣୁ ପରମାଣୁର ସାମଞ୍ଜସ୍ୟ ବିଧାନ କରିବା କଷ୍ଟକର । ଆଉ, ଅଣୁପରମାଣୁ ପରୀକ୍ଷିତ ସତ୍ୟ ଓ କ୍ରିୟାଶୀଳ ବସ୍ତୁ ହୋଇଥିବାରୁ ଏଗୁଡିକୁ ବାସ୍ତବତାରୁ ବାଦ ଦିଆଯାଇ ନପାରେ । ଅର୍ଥାତ୍ ସେଗୁଡିକ ନିରାଟ ସତ୍ୟରୂପରେ ପ୍ରତିଭାତ । ଏହି ସୂତ୍ରତତ୍ତ୍ୱରେ ବହୁବିଧ ସମସ୍ୟା ରହିଛି । ସେଗୁଡିକ ବିଶେଷ ଭାବରେ ସମାଧାନ ନକଲେ ତାହାକୁ ''ସର୍ବଶେଷ ତତ୍ତ୍ୱ'' ବା ଏକକତତ୍ତ୍ୱ ହିସାବରେ ଗ୍ରହଣ କରାଯାଇନପାରେ ।

ଏ ବିଷୟରେ ଗଭୀର ଭାବରେ ଚିନ୍ତାକରି ମହାମନୀଷି ହକିଂ କେତେକ ସମ୍ଭାବନାର ଉଲ୍ଲେଖ କରି ଅଛନ୍ତି । (୧) ଦିନେ ହୁଏ ତ ମଣିଷ ''ସର୍ବଶେଷ ଏକତ୍ରିଭୂତ'' ତତ୍ତ୍ୱ ଆବିଷ୍କାର କରିପାରେ । (୨) ଅଥବା ଏପରି କୌଣସି ଏକକତତ୍ତ୍ୱ ନାହିଁ । ବହୁ ତତ୍ତ୍ୱର ସଂମିଶ୍ରଣରେ ବା ପରିଣାମ ବୋଧରେ ହିଁ ବିଶ୍ୱର ଧାରଣା ପରିସ୍ଫୁଟ ହୋଇଥାଏ । (୩) ମହାବିଶ୍ୱ ବିଷୟରେ କୌଣସି ନିଶ୍ଚିତ ତତ୍ତ୍ୱ ନାହିଁ । ଘଟଣାବଳୀ ସାର୍ଥକତାର ସହିତ ପୂର୍ବରୁ ସ୍ଥିରଭାବରେ ଅନୁମାନ କରାଯାଇ ନପାରେ । କେତେକାଂଶରେ ସେଗୁଡିକ ଠିକ୍ ହୋଇପାରେ; ମାତ୍ର ଘଟଣା ଗୁଡିକ ଲକ୍ଷ୍ୟହୀନ ଓ ନିୟମବିହୀନ ଭାବରେ ଘଟିଥାଏ ।

ହକିଂ ଏ ବିଷୟରେ ବିଶ୍ଳେଷଣ କରି କହି ଅଛନ୍ତି ଯେ କ୍ୱାଂଟଂ ତତ୍ତ୍ୱ ଅନୁସାରେ ଅନିଶ୍ଚୟତାର ମାତ୍ରା ଅପ୍ରତିରୋଧ । ଯଦି କେହି ଏହି ଅନିଶ୍ଚୟତାକୁ ଈଶ୍ୱରଙ୍କ ହସ୍ତକ୍ଷେପ ବୋଲି କହେ, ତେବେ ସେଥିରେ ବାଧାଦେବାର କିଛି ଉପାୟ ନାହିଁ ବୋଲି କୁହାଯାଇପାରେ । ଏହି ହସ୍ତକ୍ଷେପର ଉଦ୍ଦେଶ୍ୟ କଣ ? ଏହାର ଗତିବିଧି କୌଣସି ଲକ୍ଷ୍ୟ ସାଧନରେ ବ୍ରତୀ ହୋଇଥିବାର ପ୍ରମାଣ ପରିଦୃଷ୍ଟ ହୁଏନାହିଁ । ଯଦି କୌଣସି ଇଚ୍ଛା ଭଗବାନଙ୍କର ପ୍ରକୃତରେ ଥାଏ, ତାହା କେବେହେଲେ ଉଦ୍ଦେଶ୍ୟ ବିହୀନ ହୋଇପାରେ ନାହିଁ । ବର୍ତ୍ତମାନ ଯୁଗର ବିଜ୍ଞାନର ବିଶିଷ୍ଟ ଧାରାହେଲା କେତେଗୁଡିଏ ପ୍ରାକୃତିକ ନିୟମର ଆବିଷ୍କାର ଯାହା ଫଳରେ ଘଟଣାରାଜିର ପ୍ରକୃଷ୍ଟ ପୂର୍ବାନୁମାନ ସମ୍ଭବପର ହୋଇପାରେ । ଏହି ନିୟମଗୁଡିକ 'ଅନିଶ୍ଚୟତା ତତ୍ତ୍ୱ' ର ସୀମାରେ ହିଁ ଆବଦ୍ଧ । ତାହାର ବହିର୍ଭୂତ ନୁହେଁ । ଏହାହିଁ ବିଜ୍ଞାନର ପରମ ଲକ୍ଷ୍ୟ । ପୂର୍ବୋକ୍ତ ଦ୍ୱିତୀୟ ସମ୍ଭାବନା ବିଷୟରେ କହିବାକୁ ଯାଇ ହକିଂ ଲେଖିଛନ୍ତି ଯେ କ୍ରମାଗତ ଭାବରେ ବହୁ ତତ୍ତ୍ୱ ଆବିଷ୍କୃତ ହେଉଅଛି । ଯେତେଦିନ ଯାଉଛି, ସେତେ ସୂକ୍ଷ୍ମ ତତ୍ତ୍ୱର ଦର୍ଶନ ମିଳୁଛି, ଏହି ଆବିଷ୍କୃତ ତତ୍ତ୍ୱର ଆଲୋକରେ ସତ୍ୟର ଅଧିକ ସ୍ୱରୂପ କ୍ରମେ କ୍ରମେ ଉଦ୍‌ଘାଟିତ ହେଉଅଛି । ତେଣୁ ମନେହୁଏ ଏହିପରି ସୂକ୍ଷ୍ମ ତତ୍ତ୍ୱର ଆବିଷ୍କାର ବଢ଼ି ଚାଲିଥିବ । କେବଳ ଗୋଟିଏ ତତ୍ତ୍ୱ ଯେ ସମଗ୍ର ତତ୍ତ୍ୱକୁ ଆତ୍ମସାତ୍ କରିଦେବ ତାହା ନୁହେଁ । ଆବିଷ୍କାର ଓ ଉଦ୍‌ଭାବନ ମାଧମରେ ଜ୍ଞାନର ପରିଧି ବଢ଼ି ଚାଲିଥିବ । ଆମେ ଭାବିଛୁ ଅଣୁ ପରମାଣୁହିଁ ଶେଷବସ୍ତୁ । ତାହା ନହୋଇ ଆହୁରି ଅନେକ ସ୍ତରରେ ସୁକ୍ଷ୍ମାତିସୁକ୍ଷ୍ମ ବସ୍ତୁ କ୍ରମେ କ୍ରମେ ଦୃଶ୍ୟପଟରେ ଆବିର୍ଭୂତ ହେବେ । ଏଗୁଡିକ ଅଣୁପରମାଣୁ ଠାରୁ ଅଧିକ ମୌଳିକ, ଅଧିକ ପ୍ରାଧାନ୍ୟ ବିଶିଷ୍ଟ ବସ୍ତୁ ସ୍ତର ବୋଲି ନିଜକୁ ପ୍ରକାଶ କରିବେ । ଏହିପରି ଭାବରେ ବିଜ୍ଞାନର ପରିସର କ୍ରମବର୍ଦ୍ଧିତ ଓ କ୍ରମ ପ୍ରସାରିତ ହୋଇ, ବାସ୍ତବତାର ଅବଗୁଣ୍ଠନ ଖୋଲି ଚାଲିଥିବ ସମୟର ଦୃତ ପଦକ୍ଷେପ ସହିତ ପାଦ ମିଳାଇ, ଅତି ଦୃଢ଼ ଭାବରେ । ଏହାହିଁ ପ୍ରକୃତରେ ସତ ହୋଇପାରେ । ସର୍ବଶେଷରେ ହକିଂ ଆଶାପୋଷଣ କରିଛନ୍ତି ଯେ ଆମ ଜୀବଦଶାରେ ଏହି ସର୍ବଶେଷ, ସ୍ୱୟଂ ସମ୍ପୂର୍ଣ୍ଣ, ମହା-ଏକକ ତତ୍ତ୍ୱ ଆବିଷ୍କାର ହେବାର ଉଜ୍ଜ୍ୱଳ ସମ୍ଭାବନା ଅଛି । ମାତ୍ର ଯଦି ତାହା ଆବିଷ୍କୃତ ହୁଏ ତାହାର ସ୍ୱତସିଦ୍ଧ ପ୍ରମାଣିକତା ପ୍ରତିଷ୍ଠା ନିମନ୍ତେ ଆହୁରି ବହୁତ ଦିନ ଲାଗିବ । କେବଳ ତତ୍ତ୍ୱର ପରିପ୍ରକାଶ ତାହାର ସତ୍ୟତାର ନିୟାମକ ନୁହେଁ । ତାହାକୁ ପ୍ରମାଣ କରିବା ଅତ୍ୟନ୍ତ ଦୁରୁହ । ଏହି ତତ୍ତ୍ୱ ଭବିଷ୍ୟତରେ ସବୁ କ୍ଷେତ୍ରରେ ପ୍ରଯୁଜ୍ୟ ହୋଇ ସଠିକ ଭାବରେ ପ୍ରତିଷ୍ଠିତ ହେବା ପର୍ଯ୍ୟନ୍ତ ଏହି ତଥ୍ୟର ପ୍ରୟୋଗଶୀଳତାର କ୍ଷେତ୍ର ସମ୍ପ୍ରସାରିତ ହେବ "ସମୟ"ର ଭବିଷ୍ୟତର ଗର୍ଭକୁ । ହକିଂ ଏ ବିଷୟରେ ଉଦାହରଣ ଦେଇ ବୁଝେଇଛନ୍ତି । ଯେତେବେଳେ ନିଉଟନ୍‌ଙ୍କ ନିୟମାବଳି ବିଜ୍ଞାନ

ମାଧ୍ୟମରେ ପ୍ରକାଶିତ ହେଲା, ସେତେବେଳେ ଲୋକେ ନିଜର ବୁଦ୍ଧି ବଳରେ ତାହାର କଳନା କରିପାରୁନଥିଲେ । କାରଣ ସେତେବେଳେ ବିଜ୍ଞାନର ପରିସର ସୀମିତ ଥିଲା । ଜନସାଧାରଣ ଅନ୍ତତଃ କିଛି ଧାରଣା କରିପାରୁଥିଲେ ନିଉଟନ୍‌ଙ୍କ ଆବିଷ୍କାରରେ । ମାତ୍ର ବର୍ତ୍ତମାନ ସମାଜରେ ବିଜ୍ଞାନର ପରିସର ବିଶେଷଭାବରେ ସମୃଦ୍ଧି ଲାଭ କରି ବିଶାଳ ଆକାର ଧାରଣ କରିଅଛି । ବହୁ ନୂଆ ନୂଆ ତତ୍ତ୍ୱ ଆବିଷ୍କୃତ ହେଇ ମଣିଷର ଜ୍ଞାନମଣ୍ଡଳକୁ ବିସ୍ତୃତ କରିଅଛି । ସବୁ ତତ୍ତ୍ୱକୁ ଜାଣି, ପରୀକ୍ଷାକରି ଆୟତ୍ତ କରିବା ସାଧାରଣ ମଣିଷର ଶକ୍ତିର ବାହାରେ । ସେଥିପାଇଁ ଜଣେ ଲୋକର ଗଭୀର ଜ୍ଞାନ, ଧୀଶକ୍ତି, ବିଦ୍ୟାରେ ପାରଙ୍ଗମ ଥିବା ଅତ୍ୟନ୍ତ ଆବଶ୍ୟକ । ଅର୍ଥାତ୍ ଜଣକୁ ବିଶେଷଜ୍ଞ ହେବାକୁ ପଡିବ ଏଯୁଗର ବିଜ୍ଞାନ ସମ୍ଭୁତ ସବୁ ତଥ୍ୟ ସାବଲୀଳ ଭାବରେ ଆୟତ୍ତ କରି ନିଜର ଜ୍ଞାନର ପରିଧିରେ ଅନ୍ତର୍ଭୁକ୍ତି ନିମନ୍ତେ, କାରଣ ତତ୍ତ୍ୱଗୁଡିକ ଅହରହ ପରୀକ୍ଷିତ ହୋଇ ପରିବର୍ତ୍ତିତ ହେଉଅଛି । ଗୋଟିଏ ପରେ ଗୋଟିଏ ଆବିଷ୍କାର ପଦ୍ଧତିରେ ପୁରୁଣାତଥ୍ୟର କାର୍ଯ୍ୟକାରିତା ଅନେକ କ୍ଷେତ୍ରରେ ବିସମ୍ବାଦିତ ହୋଇପଡୁଛି । ତାଛଡା, ନାନା ମୁନିର ନାନାମତ ନିଜର ପରିସରଭୁକ୍ତ ଜ୍ଞାନର ପ୍ରୟୋଗରେ, ଘଟଣାବଳିର ପରିବର୍ତ୍ତନରେ, ନୂଆ ପରିସ୍ଥିତିରେ ନୂତନ ତଥ୍ୟର ପରୀକ୍ଷା ଯୋଗୁ, ଅତି ଅଳ୍ପ ସଂଖ୍ୟକ ଲୋକେ କେବଳ ସବୁ ବିଷୟରେ ଅବହିତ ହୋଇ ବୈଜ୍ଞାନିକ ତଥ୍ୟ ବିଷୟରେ ସମ୍ୟକ୍ ଜ୍ଞାନ ଆହରଣ କରିପାରନ୍ତି । ଆଇନ୍‌ଷ୍ଟାଇନ୍‌ଙ୍କ ଆପେକ୍ଷିକ ତତ୍ତ୍ୱ ବିଷୟରେ ପ୍ରଥମେ ବହୁ କମ୍ ଲୋକ ଜାଣିଥିଲେ । ଏହି ତତ୍ତ୍ୱର ସମ୍ପୂର୍ଣ୍ଣ ଅବଗତି ନିମନ୍ତେ ବହୁବର୍ଷ ବିତିଯାଇଥିଲା । ଏବେ ଅଳ୍ପ ବହୁତ ଲୋକେ ତାଙ୍କର ତତ୍ତ୍ୱ ବୁଝିଗଲେଣି, କେବଳଯେ ସେବିଷୟରେ ଅବଗତ ଅଛନ୍ତି ତାହାନୁହେଁ, ବହୁସଂଖ୍ୟାରେ ବୈଜ୍ଞାନିକ ଓ ଗବେଷକ ମାନେ ସେ ବିଷୟରେ ପରୀକ୍ଷା ନିରୀକ୍ଷା ଚଳାଇଛନ୍ତି । ସେମାନଙ୍କର ପ୍ରୟାସ ଯଦି ସଫଳ ହୁଏ, ତେବେ ଏହି ବହୁପ୍ରତୀକ୍ଷିତ ସର୍ବଶେଷ ଏକତା-ସନ୍ନିବିଷ୍ଟ ମୂଳତତ୍ତ୍ୱର ଆବିଷ୍କାର ହୋଇପାରେ । ଏହି ତତ୍ତ୍ୱକୁ ଜାଣିବାପରେ ମନୁଷ୍ୟଜାତି ବୁଝିବ କେଉଁ ନିୟମାବଳି ଦ୍ୱାରା ସମଗ୍ର ବିଶ୍ୱ ପରିଚାଳିତ, ନିର୍ଦ୍ଦେଶିତ, ଦିକ୍‌ଦୃଷ୍ଟ ହୋଇ ମହାଜାଗତିକ କ୍ଷେତ୍ରରେ ଧାବମାନ ହେଉଅଛି । ଏହି ତତ୍ତ୍ୱକୁ ସର୍ବାନ୍ତକରଣରେ ବୁଝିବାପରେ ମାନବ ଜାଣିପାରିବ ତାର ଅସ୍ତିତ୍ୱର, ଉତ୍‌ପତ୍ତିର କାରଣ ଓ ତାର ପ୍ରଗତିର ଦିଗ୍‌ଦର୍ଶନ ଓ ଅନ୍ତିମ ଉଦ୍ଦେଶ୍ୟ ।

ମାତ୍ର ଏହି ତତ୍ତ୍ୱରୁ ଉଦ୍‌ଭୂତ ତଥ୍ୟ ରାଜିରେ ମଧ୍ୟ କେତେକ ବାଧା ରହିବ । ଏଥିରୁ ଭବିଷ୍ୟତର ଘଟଣାବଳିକୁ ନିର୍ଭୁଲ ଭାବରେ ଗଣନା କରିବା ସମ୍ଭବପର ହେବନାହିଁ । କାରଣ ହେଲା ''ଅନିଶ୍ଚୟତାର ତତ୍ତ୍ୱ'' କ୍ୱାଂଟଂ ତଥ୍ୟର ଏହି ପଦ୍ଧତି ମାନବ ଚିନ୍ତାର ସଫଳ ପୂର୍ବାନୁମାନ ଉପରେ ଏକ ବିରାଟ ପ୍ରତିବନ୍ଧକ ସୃଷ୍ଟି କରେ । ଯଦିବା କେତେକ ରାସାୟନିକ ଓ ଜୀବଗତ ବିଦ୍ୟାର ପ୍ରକୃଷ୍ଟ ତଥ୍ୟ ମନୁଷ୍ୟଦ୍ୱାରା ଅବଗତିର ପରିଧିରେ ଆୟତ୍ତ ହୋଇଅଛି;

ମାତ୍ର ଗଣିତ ଶାସ୍ତ୍ରର ତଥ୍ୟରୁ ମନୁଷ୍ୟର ବ୍ୟବହାର ପଦ୍ଧତିର ପୂର୍ବାନୁମାନ ଏପର୍ଯ୍ୟନ୍ତ ସମ୍ଭବପର ହୋଇନାହିଁ । ଏ ବିଷୟରେ ସବୁ ତତ୍ତ୍ୱ ଜାଣିବାପରେ ମଧ ଏହାର ସମ୍ପୂର୍ଣ୍ଣ ପ୍ରୟୋଗପାଇଁ ଆହୁରି ବହୁବର୍ଷ ବିତିଯିବ । କାରଣ ବିଶ୍ୱର ଅନନ୍ତ ବାରିଧିରୁ ଉତ୍ଥିତ ଲହରୀମାଳାର ଅଗଣିତ ରୂପର ପ୍ରକାଶକୁ ଏହି ତଥ୍ୟଦ୍ୱାରା ବିଶ୍ଳେଷଣକରି ସର୍ବଶେଷ ସତ୍ୟ ଉପଲବ୍ଧି କରିବା ସହଜସାଧ ବିଷୟ ନୁହେଁ । ଯେତିକି ଘଟଣା ମାନବର ଜ୍ଞାତବ୍ୟ ପରିସର ମଧରେ ଘଟୁଛି ତାହାକୁ କୌଣସି ନା କୌଣସି ତଥ୍ୟ ମାଧମରେ ବୋଧଗମ୍ୟ କରିବାର ପ୍ରୟାସ ମନୁଷ୍ୟ ପକ୍ଷରେ ସଫଳ ହୋଇପାରେ, ମାତ୍ର ଆହୁରି ଅନେକ ଅଜଣା, ଅଶୁଣା, ଅନାହତ, ଅନବଜ୍ଞାତ ଭବିଷ୍ୟତର ଘଟଣାବଳିକୁ ଯେ ଏହି ତଥ୍ୟ ପ୍ରତ୍ୟକ୍ଷଭାବରେ ଆହ୍ୱାନକରି ତାହାର ନିର୍ଣ୍ଣୟରେ ଫଳବତୀ ହେବ, ତାହା ବର୍ତ୍ତମାନ କୁହାଯାଇ ନପାରେ । ତେବେ ଅନେକାଂଶରେ ମନୁଷ୍ୟର ଜ୍ଞାନର ଦିଗ୍‌ବଳୟ ପ୍ରସାରିତ ହୋଇ ଅଜ୍ଞତାର ଅମାନିଷାର ଅନ୍ଧକାର କଟିଯିବ । ଆଲୋକରଶ୍ମିର ଛଟାରେ ସେ ସୃଷ୍ଟି ରହସ୍ୟକୁ କିୟତ୍‌ପରିମାଣରେ ବୁଝିବାକୁ ସକ୍ଷମ ହେବ, ଏଥିରେ ସନ୍ଦେହ ନାହିଁ । ଏହି ତଥ୍ୟର ଆବିଷ୍କାର ମନୁଷ୍ୟ ପକ୍ଷରେ ଏକ ବଳିଷ୍ଠ ପଦକ୍ଷେପ ବିଶ୍ୱର ବୈଜ୍ଞାନିକ ତଥ୍ୟ ଉଦ୍‌ଘାଟନ ପକ୍ଷରେ । ମାତ୍ର ମହାବିଶ୍ୱର ସମ୍ପୂର୍ଣ୍ଣ ଅବସ୍ଥିତି, ସୃଷ୍ଟି, ସ୍ଥିତି, ବିଲୟକୁ ହୃଦୟଙ୍ଗମ କରିବାକୁ ଆହୁରି କେତେ ବର୍ଷ ଲାଗିବ ତାହାର ଇୟତ୍ତା ନାହିଁ ବୋଲି ମହାବିଜ୍ଞାନୀ ହକିଂ ତାଙ୍କର ସ୍ପଷ୍ଟମତ ପ୍ରକାଶ କରିଛନ୍ତି । ଏହିପରି ଆଶା ନିରାଶା ମଧରେ ଦୋଳାୟମାନ ପରିସ୍ଥିତିକୁ ବ୍ୟାଖ୍ୟା କରି ଭବିଷ୍ୟତର ସଫଳତା ଲାଭ ବିଷୟରେ ସେ ସଂପୂର୍ଣ୍ଣଭାବରେ ଆଶା ପ୍ରକାଶ କରିଛନ୍ତି । ଏପରି ଦୁର୍ଜ୍ଞେୟ ଶେଷ-ସତ୍ୟ ର ଆବେଷ୍ଟନିରେ ସମୟ ମଧ ରହସ୍ୟ-ବାରିଧିରେ ଅନ୍ତର୍ଲୀନ, କେବଳ ଅନୁମାନ-ସାପେକ୍ଷ ଏକ ଧାରଣାରେ ପର୍ଯ୍ୟବସିତ ହୋଇ ରହିଅଛି । ବିଜ୍ଞାନ ତାହାର ଶତ-ସହସ୍ର ଚେଷ୍ଟା ସତ୍ତ୍ୱେ, ଏହାର ଅବଗୁଣ୍ଠନ ଏପର୍ଯ୍ୟନ୍ତ ଖୋଲିପାରିନାହିଁ । ତେବେ, ହକିଂଙ୍କର ଦୃଢ଼ବିଶ୍ୱାସ ଯେ ଦିନେ ନା ଦିନେ ଏହାର ସ୍ୱରୂପ ଉଦ୍‌ଘାଟିତ ହେବ ନିଶ୍ଚିତ ଭାବରେ । ସେହି ମୁହୂର୍ତ୍ତକୁ ମାନବ ସମାଜ ଅଧୀର ଆଗ୍ରହରେ ଅପେକ୍ଷା କରି ରହିଅଛି । ଏହି ମହାବିଜ୍ଞାନୀଙ୍କ ତଥ୍ୟ ଆଲୋଚନା-ଯୋଗ୍ୟ । ଏହି ବିଷୟରେ ବିଜ୍ଞାନର ଅନ୍ୟ ବିଭାଗରେ କେତେକ ଗବେଷଣା ହୋଇ ସେଥିରୁ ଭିନ୍ନ ଧରଣର ତଥ୍ୟ ନିସୃତ ହୋଇଅଛି । ତାହା ଏହି ପରିପ୍ରେକ୍ଷୀରେ ଉଲ୍ଲେଖନୀୟ । ପ୍ରଥମେ ସଂକ୍ଷିପ୍ତ ଭାବରେ ହକିଂଙ୍କର ମତକୁ ନିମ୍ନଲିଖିତ ରୂପେ ପ୍ରକାଶ କରାଯାଇପାରେ ।

ସ୍ମୃତି-ସୃଷ୍ଟି ବିଷୟରେ ସମ୍ୟକ୍ ଆଲୋଚନା ଆବଶ୍ୟକ । ସେ କହିଛନ୍ତି ଯେ ଯେତେବେଳେ କୌଣସି ବିଷୟରେ ସ୍ମୃତିର ଉଦ୍ରେକ ହୁଏ ସେତେବେଳେ ଅତି ଅଳ୍ପ ଧରଣର ଶକ୍ତି ଗୋଟିଏ ସ୍ମୃତି ଉଦ୍ରେକକାରୀ ସ୍ନାୟୁକୁ ଜାଗରିତ କରେ । ତାହା ଏକ

ରାସାୟନିକ ସଂକେତ ପଠାଇଥାଏ । ଏହି ଶକ୍ତି ଶେଷରେ ତାପ ସୃଷ୍ଟି କରିଥାଏ । ଏହି ତାପର ବିକୀରଣରେ ବିଶ୍ୱରେ ବିଶୃଙ୍ଖଳାର ସୃଷ୍ଟି ହୋଇଥାଏ । ତାଙ୍କ ମତ ବିଷୟରେ ଆଗରୁ ଆଲୋଚନା କରାଯାଇ ଅଛି । ସେ କହନ୍ତି ଯେ ଏହିପରି ତାପ ବିକୀରଣରୁ ବିଶୃଙ୍ଖଳା ସୃଷ୍ଟି ହେବାଦ୍ୱାରା ବିଶ୍ୱରେ ଶୃଙ୍ଖଳା ଅପେକ୍ଷା ବିଶୃଙ୍ଖଳାର ପରିମାଣ ଉତ୍ତରୋତ୍ତର ବୃଦ୍ଧି ପାଇ ପାଇ ଏକ ବିଶାଳ ଆକାର ଧାରଣ କରେ । ତେଣୁ ସେ ଏହି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ ଅତୀତରେ ସ୍ମୃତି ଶକ୍ତିର ପ୍ରସାରଣ ଯୋଗୁ ଉନ୍ମୁକ୍ତ ଶକ୍ତିର ତାପ ବିକୀରଣ ହେତୁ ବର୍ତ୍ତମାନର ବିଶୃଙ୍ଖଳାର ପରିମାଣ ଅତ୍ୟଧିକ ହୋଇଅଛି । ଅତଏବ ସ୍ମୃତି ଅତୀତରୁ ଭବଷ୍ୟତ ଦିଗକୁ ଧାବମାନ । ପଦାର୍ଥ ବିଜ୍ଞାନୀମାନେ ଏହି ବିଶୃଙ୍ଖଳାର ମୂଳ ସ୍ରୋତ ଆବିଷ୍କାରରେ ନିବିଡଭାବରେ ଲିପ୍ତ ବର୍ତ୍ତମାନ ଯୁଗରେ । ଏହାର ଅବିସମ୍ବାଦିତ ତଥ୍ୟ ବର୍ତ୍ତମାନ ସୁଦ୍ଧା ନିଶ୍ଚିତ ଭାବରେ ନିର୍ଦ୍ଧାରିତ ହୋଇପାରି ନାହିଁ । ଏହା ପରୀକ୍ଷା ନିରୀକ୍ଷାର ଜାଲରେ ବିଶେଷ ଭାବରେ ଛନ୍ଦି ହୋଇ ରହିଅଛି । ହକିଂଙ୍କର ଧ୍ୟାନ ଧାରଣା ଗଭୀର ହେଲେହେଁ, ଆଉ ଏକ ବିଜ୍ଞାନ-ଶାସ୍ତ୍ରର ପ୍ରଗତି ଏ ଦିଗରେ ଏକ ଭିନ୍ନ ଧରଣର ସତ୍ୟର ଆଲୋକ-ରଶ୍ମି ପ୍ରକାଶ କରିଛି । ଏହା ହେଲା ସ୍ନାୟୁ-ବିଜ୍ଞାନ ବା Neurology । ଏଥିରେ ଗବେଷଣା କରାଯାଇ ଏକ ବିଚିତ୍ର ଅଭିଜ୍ଞତା ବିଜ୍ଞାନୀମାନେ ଲାଭ କରିଅଛନ୍ତି । ଏକ ଧରଣର ରାସାୟନିକ ପ୍ରକ୍ରିୟା ବିଭିନ୍ନ ସ୍ନାୟୁସ୍ଥିତି ମଧ୍ୟରେ (neurons) ଚଳପ୍ରଚଳ ହେବାଦ୍ୱାରା ସେମାନଙ୍କ ମଧ୍ୟରେ ଏକ ସୂକ୍ଷ୍ମ ଯୋଗାଯୋଗ ଜନିତ ସ୍ଥାୟିତ୍ୱ ସ୍ଥାପନ କରି ପାରୁଛି । ଏହି ପ୍ରକ୍ରିୟା ମାଧ୍ୟମରେ ଓ ଯୋଗ ସଂଯୋଗ ଦ୍ୱାରା ସ୍ମୃତି ଶକ୍ତିର ମୂଳଦୁଆ ସୁଦୃଢ଼ ଭିତ୍ତିରେ ପ୍ରତିଷ୍ଠିତ ବୋଲି ପ୍ରତୀୟମାନ ହେଉଅଛି । ଏହି ଆବିଷ୍କାର ଫଳରେ ପୂର୍ବ ନିର୍ଦ୍ଧାରିତ ସତ୍ୟ ଅନିଶ୍ଚିତ ବୋଲି ପ୍ରମାଣିତ ହୋଇଅଛି । ଆଗରୁ ବିଜ୍ଞାନୀମାନେ ଭାବିଥିଲେ ଯେ ଚେତନା ସଂଚାର କେବଳ ଏକ ଦିଗକୁ ପ୍ରବାହିତ ହୋଇଥାଏ । ମାତ୍ର ବର୍ତ୍ତମାନର ଗବେଷକ ମାନେ ଆବିଷ୍କାର କରିଅଛନ୍ତି ଯେ ଏକ ରାସାୟନିକ ପ୍ରକ୍ରିୟା ଗୋଟିଏ ସ୍ନାୟୁସ୍ଥିତିରୁ ଅନ୍ୟ ଏକ ସ୍ଥିତି ପର୍ଯ୍ୟନ୍ତ ବିକିରଣ ହେବାପରେ ପୁଣି ପୂର୍ବସ୍ଥିତିକୁ ଫେରିଆସେ । ଅର୍ଥାତ୍ ଏହି ପ୍ରକ୍ରିୟା ଏକମୁଖୀ ନୁହେଁ, ଦ୍ୱିମୁଖୀ ମଧ୍ୟ । ନାଇଟ୍ରିକ୍ ଅକ୍ସାଇଡ ନାମକ ରାସାୟନିକ ବସ୍ତୁ ଏହି ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିଥାଏ । ତେବେ ଏହି ରସାୟନିକ ବସ୍ତୁର ପ୍ରକ୍ରିୟା ବର୍ତ୍ତମାନ ସୁଦ୍ଧା ସୁସ୍ପଷ୍ଟଭାବରେ ଜଣାଯାଇନାହିଁ । ମାତ୍ର ଏହି ପ୍ରକ୍ରିୟା ମାଧ୍ୟମରେ ସ୍ମୃତିଶକ୍ତିର ରହସ୍ୟ ନିବିଡ ଭାବରେ ଜଡିତ । ଏହାର ପୂର୍ଣ୍ଣ ଗବେଷଣା ହେଲେ ସମ୍ପୂର୍ଣ୍ଣ ତଥ୍ୟର ଉଦ୍‌ଘାଟନ ସମ୍ଭବପର ହୋଇପାରେ । ସେ ଯାହାହେଉ ହକିଂଙ୍କର ତାପ ବିକିରଣ ପଦ୍ଧତିରେ ପ୍ରତିଷ୍ଠିତ ବିଶୃଙ୍ଖଳା - ତଥ୍ୟ ଛଡା ସ୍ନାୟବିକ ପଦ୍ଧତିରେ ରାସାୟନିକ ପ୍ରକ୍ରିୟାର କ୍ଷମତା ଏକ ଭିନ୍ନ

ଧରଣର ସତ୍ୟର ଦ୍ୟୋତକ ବୋଲି ପ୍ରତୀୟମାନ ହୁଏ । ଅର୍ଥାତ୍ ସ୍ମୃତିଶକ୍ତି ବିଷୟରେ ଅବିସମ୍ବାଦିତ ତଥ୍ୟ ବର୍ତ୍ତମାନ ସୁଦ୍ଧା ଜଣାଯାଇନାହିଁ । ଏଥିରୁ ଅନୁମାନ କରାଯାଇପାରେ ଯେ ବିଜ୍ଞାନ, ସମୟ ବିଷୟରେ ସମ୍ପୂର୍ଣ୍ଣ ତଥ୍ୟ ଆବିଷ୍କାରରେ, ଏପର୍ଯ୍ୟନ୍ତ ସଫଳ ହୋଇ ପାରିନାହିଁ । ହକିଂଙ୍କ ମତ ବିପକ୍ଷରେ ଅନ୍ୟ ମତ ମଧ୍ୟ ବିଦ୍ୟମାନ ଅଛି ।

ଏଠାରେ ହକିଂଙ୍କର ଅନ୍ୟଏକ ମତ ବିଶେଷଭାବରେ ଉଲ୍ଲେଖଯୋଗ୍ୟ । ସେ ପୂର୍ବସ୍ଥିରିକୃତ, ନିର୍ଦ୍ଦେଶିତ, ପରିଣାମସିଦ୍ଧ ତଥ୍ୟରେ (determinism) ବିଶ୍ୱାସ କରନ୍ତି । ତାଙ୍କ ମତରେ ''ସମୟ'' ପୂର୍ବରୁ ସବୁକିଛି ସିଦ୍ଧାନ୍ତ ନେଇ ସାରିଛି । ଏହି ପୂର୍ବ ସିଦ୍ଧାନ୍ତ ଅନୁସାରେ ଘଟଣାରାଜି ଘଟି ଚାଲିଛନ୍ତି । ଏହା ତାଙ୍କର ଦୃଢ଼ମତ । ସେ ଏ ବିଷୟରେ ସ୍ଥିରନିଶ୍ଚୟ ଯେ ଏକ ସର୍ବଶେଷ ତଥ୍ୟ ଏହି ମହାବିଶ୍ୱକୁ ନିର୍ଦ୍ଧାରିତ, ସୁସ୍ପଷ୍ଟ, ସ୍ଥିରିକୃତ ଦିଗରେ ପରିଚାଳିତ କରୁଅଛି । ତାଙ୍କର ପ୍ରସିଦ୍ଧ ଲେଖା, "Black Hole and Baby universes" ରେ ସେ ଏକ ଅତି ବିଶିଷ୍ଟ ମହାପ୍ରଶ୍ନର ଉଲ୍ଲେଖ କରି ଅଛନ୍ତି । ଏହା ଦର୍ଶନଶାସ୍ତ୍ରର ମଧ ଏକ ଅତି ଗଭୀର ପ୍ରଶ୍ନ । ମହାଜାଗତିକ ବସ୍ତୁ, ଅବସ୍ତୁ, ବିଶ୍ୱ, ଆକାଶ, ଆଲୋକ ଓ ଅନ୍ଧକାରରେ ବିଜଡିତ ସମଗ୍ର ପିଣ୍ଡରାଶି, ଯାହାକିଛି ଜଣା, ଅଜଣା, ଶୁଣା, ଅଶୁଣା, ଗ୍ରହ, ନକ୍ଷତ୍ର, ତାରକାରାଜି ଆବିଷ୍କୃତ ହୋଇଅଛି ବା ଅନାବିଷ୍କୃତ ରହିଅଛି, ସେଗୁଡିକ ସମସ୍ତ କ'ଣ ପୂର୍ବରୁ ସ୍ଥିରିକୃତ, ନିର୍ଦ୍ଧାରିତ, ନିର୍ଦ୍ଦେଶିତ କୌଣସି ଏକକ-ଶକ୍ତି ଦ୍ୱାରା ? ହକିଂ ଏ ବିଷୟରେ ନିସନ୍ଦେହ ଯେ ସେଗୁଡିକ ସବୁ ପୂର୍ବରୁ ସ୍ଥିରିକୃତ ଓ ନିର୍ଦ୍ଦିଷ୍ଟ । ତାଙ୍କର ଏ ବିଷୟରେ ବିଶେଷ ମନ୍ତବ୍ୟ ହେଲା ଯେ କଣସବୁ ପୂର୍ବ ନିର୍ଦ୍ଦିଷ୍ଟ ତାହା ଆମ୍ଭେମାନେ କେବେହେଲେ ଜାଣିପାରିବୁ ନାହିଁ । ଆହୁରି ସେ କହିଛନ୍ତି ଯେ ସ୍ୱାଧୀନବୃତ୍ତି ବିଷୟକ ଧାରଣା ବା (freewill) ଏକ ଅତ୍ୟନ୍ତ ଭ୍ରାନ୍ତ ଧାରଣା । ଏହା ଏକ ନିଛକ ମାୟା ମାତ୍ର । ଏଠାରେ ପ୍ରଶ୍ନଉଠେ ଯେ ତାହାହେଲେ ମନୁଷ୍ୟ ନିଜର ସିଦ୍ଧାନ୍ତ ନେବାରେ ଏତେ ବିଚଳିତ କାହିଁକି ? କାହିଁକି ସବୁବେଳେ ଦ୍ୱିଧାଗ୍ରସ୍ତ ? ମନୁଷ୍ୟର ବ୍ୟବହାରରେ ଏତେ ଅସାମଞ୍ଜସ୍ୟ କାହିଁକି ପରିଲକ୍ଷିତ ହୁଏ ? କାହିଁକି ଅସ୍ଥିର-ମନା ? ଆଉ ପରବର୍ତ୍ତୀ ବ୍ୟବହାର ପୂର୍ବାନୁମାନରୁ ବହିର୍ଭୂତ କାହିଁକି ? ତା ବିଷୟରେ ନିଶ୍ଚିତଭାବରେ ଭବିଷ୍ୟତର ବ୍ୟବହାର ସମ୍ପର୍କରେ କାହିଁକି କୁହାଯାଇପାରେ ନାହିଁ ? ଏହିପରି ବହୁ ବିକ୍ଷିପ୍ତ ପ୍ରଶ୍ନର ଉତ୍ତର ସେ ଦେଇଛନ୍ତି । ତାଙ୍କ ମତରେ ମନୁଷ୍ୟ ବ୍ୟବହାରର ବିକ୍ଷିପ୍ତତା ଓ ପ୍ରକ୍ଷିପ୍ତତା କୌଣସି ଅରାଜକତା ବା ବିଶୃଙ୍ଖଳାର ଲକ୍ଷଣ ନୁହେଁ । ମନୁଷ୍ୟର ବ୍ୟବହାର ପ୍ରକ୍ରିୟାକୁ ସ୍ଥିରଭାବରେ ଅନୁମାନ ନ କରିପାରିବାର କାରଣ ହେଲା ଏହା ଏକ ଅତ୍ୟନ୍ତ ଦୁରୁହ ପଦ୍ଧତି । ପ୍ରାମାଣିକ ସାଧାରଣ ଶାରୀରିକ ବିଜ୍ଞାନର ନିୟମାବଳି ଆମର ଜ୍ଞାନର ପରିସରଭୁକ୍ତ ହୋଇ ଅଛି । ଯେଉଁ ଶାରୀରିକ ନିୟମ ଆମର ମସ୍ତିଷ୍କକୁ

ପ୍ରଭାବିତ କରେ ତାହା ଆମର ଅଜଣା ନୁହେଁ । ଆମଠାରୁ ଅଛପା ମଧ୍ୟ ନୁହେଁ । ସେଗୁଡିକ ପ୍ରାୟତଃ ସରଳ ମଧ୍ୟ । ଅପେକ୍ଷାକୃତ କ୍ଷୁଦ୍ରାୟତନ ବିଶିଷ୍ଟ ସମସ୍ୟାର ସମାଧାନ ମଧ୍ୟ ସମ୍ଭବ । କିନ୍ତୁ ଯେତେବେଳେ ବହୁ-ବସ୍ତୁ-କଣା-ବିଶିଷ୍ଟ ପ୍ରଶ୍ନର ଉଦୟ ହୁଏ, ସେତେବେଳେ ସମସ୍ୟାର ସମାଧାନ ଏକାବେଳେକେ ଜଟିଳ ହୋଇପଡେ । ଏହାର ଦୃଷ୍ଟାନ୍ତ ଦେବାକୁ ଯାଇ ସେ ଦର୍ଶାଇଛନ୍ତି ଯେ ନିଉଟନଙ୍କ ତଥ୍ୟ ଅନୁସାରେ ମଧ୍ୟ ଅଳ୍ପମାତ୍ରା ବିଶିଷ୍ଟ ବସ୍ତୁକଣା ର ସମସ୍ୟା ସହଜସାଧ୍ୟ । ମାତ୍ର ବହୁ କଣାର ସଂଯୋଗ ହୋଇଗଲେ, ବିଜ୍ଞାନୀମାନେ ନିଜର ସାଧାରଣ ବୋଧର ସାହାଯ୍ୟ ନେଇ ସ୍ୱଭାବସିଦ୍ଧ ପ୍ରକ୍ରିୟାର ପ୍ରୟୋଗ କରି ନିଅନ୍ତି ସମାଧାନ କରିବା ପାଇଁ । ଏଥିରେ ସହଜବୋଧ ପଦ୍ଧତି ସମୀକରଣ ବା approaximation ପ୍ରୟାସର ସାହାଯ୍ୟ ନେବାକୁ ପଡେ । ଅର୍ଥାତ୍ ସମସ୍ୟାର ସମ୍ପୂର୍ଣ୍ଣ ସମାଧାନ Neuton ଙ୍କ ସୂତ୍ରଦ୍ୱାରା ସମ୍ଭବପର ହୁଏ ନାହିଁ । ସେଥିରେ ଅନ୍ୟ ଯୋଗସୂତ୍ର ଅବଲମ୍ବନ କରିବାକୁ ପଡିଥାଏ । ତାହାନହେଲେ ସମାଧାନ ହୋଇପାରେ ନାହିଁ । ଯେତେବେଳେ ବସ୍ତୁକଣାର ସଂଖ୍ୟା ଅତ୍ୟଧିକଭାବରେ ବଢ଼ିଯାଏ, ସେତେବେଳେ ସମାଧାନ ପ୍ରାୟ ଅସମ୍ଭବ ହୋଇପଡେ । ଏହି ବିଷୟଟିର ସମ୍ୟକ୍ ବିଶ୍ଳେଷଣ କରି, ହକିଂ କହିଛନ୍ତି ଯେ ମନୁଷ୍ୟର ମସ୍ତିଷ୍କରେ ଦଶକୁ ଦଶ ଦ୍ୱାରା ଛବିଶ ଥର ଗୁଣିଲେ ଯେତେ ହୁଏ ସେତେ କଣା ପରିପୂର୍ଣ୍ଣରୂପରେ ବିଦ୍ୟମାନ । ଏହାର କଳନା ଅଭାବନୀୟ । ଏହା ବୃନ୍ଦ, ଖର୍ବ, ନିଖର୍ବ, ପଦ୍ମ ପରିମାଣ ! ଏହାକୁ ଭଲଭାବରେ ଆୟତ୍ତ କରି ସବୁ ସମସ୍ୟାର ସୁଲଭ ସମାଧାନ କରି, ଭବିଷ୍ୟତ ନିର୍ଦ୍ଧାରଣ ପରେ ପୂର୍ବାନୁମାନ ପ୍ରକାଶ କରିବାର କ୍ଷମତା ସମ୍ଭବପର-ହେବାର ଆଶା ସୁଦୂର ପରାହତ ।

ପୂର୍ବ ନିର୍ଦ୍ଧାରିତ ପରିଣାମ ବିଷୟକ ତଥ୍ୟରେ ଆମ୍ଭମାନଙ୍କ ମଧ୍ୟରେ ବହୁ ସାଧାରଣ ମାନବ ବିଶ୍ୱାସ କରନ୍ତି । ଭାଗ୍ୟକୁ ଆଦରି ନିଅନ୍ତି । ସବୁ ବିଷୟ ଭାଗ୍ୟ ନିରୂପିତ ବୋଲି ଅନେକଙ୍କର ବିଶ୍ୱାସ ମଧ୍ୟ ଅଛି । ଏଥିରେ ସନ୍ଦେହ ନାହିଁ । କିନ୍ତୁ ବୈଜ୍ଞାନିକମାନେ ଏପରି ଅନ୍ଧ ବିଶ୍ୱାସର ବଶବର୍ତ୍ତୀ ନୁହନ୍ତି । ମାତ୍ର ମହା ପଣ୍ଡିତ ହକିଂ ଅତି ସାଧାରଣ ମାନବ ନୁହନ୍ତି । ସେ ଅତି ଦୁରୁହ ବୈଜ୍ଞାନିକ ତଥ୍ୟାବଳିର ପ୍ରୟୋଗରେ ସ୍ୱୟଂସିଦ୍ଧ ପୁରୁଷ, ଏକ ସ୍ୱପ୍ନାଳୁ ସୌର ବିଜ୍ଞାନୀ, ଏକ ମହାମନୀଷି, ସମଗ୍ର ପୃଥିବୀରେ ପୂଜିତ ତାଙ୍କର ଆବିଷ୍କୃତ ତଥ୍ୟାବଳି, ତାଙ୍କର ବୈଜ୍ଞାନିକ ବିଶ୍ଳେଷଣ ଓ ଅବିସ୍ମରଣୀୟ ପ୍ରତିଭା । ଆଗରୁ ଲେଖାହୋଇଛି କାର୍ଲ ସେଗାନ୍ଙ୍କ ପରି ସୌରବିଜ୍ଞାନୀ ତାଙ୍କର ଗୁଣମୁଗ୍ଧ । ତେବେ ସେ କାହିଁକି ''ପୂର୍ବନିରୁପିତ ତଥ୍ୟ'' ବା determinism ରେ ବିଶ୍ୱାସ କଲେ ? ସେ କଣ ବୈଜ୍ଞାନିକଭାବେ ସ୍ୱୟଂ ନିର୍ଦ୍ଧାରଣ ପଦ୍ଧତି ପଥରେ ପଥଭ୍ରଷ୍ଟ ହେଲେ ? ନା ତାଙ୍କର ଦିକ୍‌ଭ୍ରଷ୍ଟ ପ୍ରତିଭା ନିଜକୁ ସର୍ବଶେଷପରିଣାମ ତଥ୍ୟ-ଆବିଷ୍କାରରେ ଅସଫଳ ହୋଇ ପରାଜିତ-

ମନୋବୃତ୍ତିରୁ ଏପରି ଏକ ସାଧାରଣ ତଥ୍ୟକୁ ଆଦରି ନେଲା ? ଏପରି ଧାରଣା ସର୍ବାଦୌ ଅମୂଳକ । ତାଙ୍କର ବିଜ୍ଞାନରେ ଅଟଳ ଓ ଅଚଳ ବିଶ୍ୱାସ । ବିଜ୍ଞାନର ନିୟମାବଳିରେ ଅଭାବନୀୟ-ଧୈର୍ଯ୍ୟ ଓ ଅବିଚଳିତ ଧୃତି । ତେବେ ସେ କାହିଁକି ଶେଷତତ୍ତ୍ୱ ଆଡକୁ ଅଗ୍ରସର ହେବାକୁ ପ୍ରାଣପାତ ପ୍ରଚେଷ୍ଟା କଲେ ନାହିଁ ? କାରଣ ସେଥିରୁ ସବୁ ତଥ୍ୟର ଆବିଷ୍କାର ସମ୍ଭବ ହୋଇପାରି ଥାଆନ୍ତା ଓ ସବୁ ବିଷୟ ସ୍ଥିରିକୃତ ଭାବରେ ସମାଧାନ କରାଯାଇ ପାରିଥାଆନ୍ତା । ତାଙ୍କର ଶାରୀରିକ ବିକଳତା ତାଙ୍କର ବହୁମୂଲ୍ୟ ଜୀବନ ପଥରେ ଘୋର ଅନ୍ତରାୟ ହୋଇ ଦଣ୍ଡାୟମାନ । ତାଙ୍କର ସୀମିତ ଶକ୍ତିରେ ସେ ସତ୍ୟଅନୁସନ୍ଧାନରେ ବହୁଦୂର ଅତିକ୍ରାନ୍ତ ହୋଇ ଏକ ମାଇଲ ଖୁଣ୍ଟ ପାଖରେ ପହଞ୍ଚି ଦେଖିଲେ ଭବିଷ୍ୟତ ଆଡକୁ । ଅନୁମାନ କଲେ, ସର୍ବଶେଷ ସତ୍ୟ ମିଳିବାରେ ମନୁଷ୍ୟକୁ ଏବେ ମଧ ବହୁ ବହୁ ବର୍ଷ ଅପେକ୍ଷା କରିବାକୁ ପଡିବ । ତେବେ ଏହା ନିଶ୍ଚିତ ଭାବରେ ମିଳିବ ବୋଲି ତାଙ୍କର ଦୃଢ଼ ଆଶା । କିନ୍ତୁ ସେ ବିଜ୍ଞାନ କ୍ଷେତ୍ରରେ ନିଜର ସ୍ଥିତି ବଜାୟ ରଖିଛନ୍ତି । ସେଥିରୁ ଅତିକ୍ରାନ୍ତ ନୁହନ୍ତି । ତାଙ୍କର ମେଧା ବର୍ତ୍ତମାନ ସୁଦ୍ଧା ବଳବତ୍ତର ରହି ବହୁ ଆଲୋଚନା ପର୍ଯ୍ୟାଲୋଚନା, ତର୍କ ବିତର୍କରେ ଭାଗ ନେଉଅଛି ଅତି ଉନ୍ନତମାନର ପରିଚୟ ଦେଇ । ଏହିପରି ଏକ ବିଶେଷ ବିତର୍କର ଅବତାରଣା ହୋଇଛି ସମ୍ପ୍ରତି ଦୁଇ ମହାବିଜ୍ଞାନୀଙ୍କ ମଧରେ । ରଜର ପେନ୍‌ରୋଜ ଓ ଷ୍ଟିଫେନ ହକିଂ ଏକ କ୍ଷୁରଧାର ବୁଦ୍ଧିଯୁଦ୍ଧରେ ଲିପ୍ତ, ''ସ୍ଥାନ ଓ କାଳ'' ବିଷୟରେ । ଏଥିରେ ଅନ୍ୟ ଅନେକ ମନିଷୀମଧ ଇନ୍ଧନ ଯୋଗାଇବାରେ ପଶ୍ଚାତ୍‌ପଦ ନୁହନ୍ତି । ଯଥା ଦାର୍ଶନିକ ପଲ୍‌ଡେଭିସ୍ ଓ ହିଉ ପ୍ରାଇସ୍ । ''ସମୟର ଧାରଣା'' ବିଷୟରେ ଓ ସ୍ଥାନ-କାଳର ସମ୍ବନ୍ଧ ବିଷୟରେ ସେମାନଙ୍କର କିଛି ନା କିଛି ଉତ୍ତପ୍ତ ବକ୍ତବ୍ୟ ଏହି ବିତର୍କକୁ ବିସମ୍ବାଦିତ ତଥା କୌତୁହଳ-ଉଦ୍ଦୀପକ କରିବାରେ ପୂର୍ଣ୍ଣଭାବରେ ସଫଳ ହୋଇଅଛି । ଏହି ବିଚାର ବିମର୍ଷର ଆବେଷ୍ଟନିକୁ ପ୍ରସାରିତ କରି ଜନମାନସରେ ଗଭୀର ଚିନ୍ତାର ଉଦ୍ରେକ କରିଅଛି । ଏ ବଷୟରେ ତାହା ବିଶ୍ଳେଷଣ ଯୋଗ୍ୟ, ଏହା କହିବାରେ ତିଳେମାତ୍ର ଦ୍ୱିଧା ନାହିଁ ।

ଜେମସ୍ ବ୍ରେଫିଲ୍ ବୋଲି ଜଣେ ପଦାର୍ଥ ବିଜ୍ଞାନୀ ଲେଖିଛନ୍ତି ଯେ ତାଙ୍କୁ ବାହାରେ ଲୋକ ସବୁ ପଚାରନ୍ତି, ଯଦି ଏହି ମହାବିଶ୍ୱ ପ୍ରସାର ଲାଭ କରୁଥାଏ ତେବେ ଏହା ପ୍ରସାରଲାଭ କରି କେଉଁ ବସ୍ତୁ ଭିତରକୁ ପ୍ରବେଶ ଲାଭ କରୁଅଛି ? ବ୍ରେଫିଲ୍ ତାଙ୍କର ବିଶିଷ୍ଟ ଗ୍ରନ୍ଥ "Meditations at Sunset" ନାମକ ଗ୍ରନ୍ଥରେ ଏହାର ଉଲ୍ଲେଖ କରିଅଛନ୍ତି । ସେହିପରି ଆଉଜଣେ ବିଶିଷ୍ଟ ଦାର୍ଶନିକ ''ସମୟ'' ବିଷୟରେ ଚିନ୍ତା କରିବାକୁ ଯାଇ ଏହାର ଆଦି ଅନ୍ତ ନପାଇ ଏପରି ବିହ୍ୱଳ ହୋଇ ପଡିଥିଲେ ଯେ, ଗୋଟିଏ ସମ୍ପୂର୍ଣ୍ଣ ପୁସ୍ତକ ଲେଖିଲାପରେ ମଧ, ସମୟର ରହସ୍ୟ ବିଷୟରେ ତାଙ୍କର ଅଜ୍ଞତାକୁ ପ୍ରକାଶ କରିବାକୁ

ଯାଇ ସେ ଲେଖିଲେ ଯେ ତାଙ୍କର ପୁସ୍ତକ "About Time" ଲୋକେ ପଢିଲା ପରେ ସମୟ ବିଷୟରେ ସେମାନଙ୍କର ଧାରଣା ଆହୁରି ଗୋଳମାଳିଆ ହୋଇଯିବ । ଅର୍ଥାତ୍ ସମୟ-ରହସ୍ୟର ସମାଧାନ ସେଥିରୁ କେବେହେଲେ ମିଳିବ ନାହିଁ । ନିୟମିତ ବ୍ୟବହୃତ ଘଡିଟି ସତରେ କଣ ଯେ ନିରୂପଣ କରୁଛି ସେ ବିଷୟରେ ପ୍ରକୃଷ୍ଟ ଧାରଣାର ଉଦୟ ହେବନାହିଁ । ଲେଖକ ନିଜେ ସମୟର ମୌଳିକତତ୍ତ୍ୱ ବିଷୟରେ ଖୋଜି କିଛି ନପାଇ ବିଶେଷଭାବରେ ସନ୍ଦିହାନ ହୋଇ ଲେଖିଛନ୍ତି ଯେ ବହିଟି ଲେଖିଲାପରେ ତାଙ୍କର ଧାରଣା ପରିଷ୍କାର ନ ହୋଇ ଏକାବେଳେକେ ଅବୋଧ ହୋଇ ରହିଗଲା । ଏହା ପ୍ରକୃତରେ ଏକ ନିର୍ଧାର୍ଯ୍ୟ ସତ୍ୟର ଅକୁଣ୍ଠ ପ୍ରକାଶ, ଏକ ସତ୍ୟାନ୍ୱେଷୀ ପଣ୍ଡିତଙ୍କର ।

ପ୍ରକୃତିର ମହାପ୍ରକାଶ ଅତଲାନ୍ତିକ ରହସ୍ୟ-ସମୁଦ୍ର ମଧ୍ୟରେ । ଏହା ଏକ ସରଳତାର ବିନ୍ୟାସ ନୁହେଁ । କାରଣ ପ୍ରକୃତିର ବିକାଶକୁ ଆୟତ୍ତ କରିବାକୁ ଯାଇ ମନୁଷ୍ୟ ଘୋର ଦ୍ୱନ୍ଦ୍ୱ, ଦ୍ୱିଧା, ଅନ୍ଧକାର ଓ ପ୍ରାକୃତିକ ଚପଳତାର ଶିକାର ହୋଇ ପଡିଛି ବହୁକ୍ଷେତ୍ରରେ । ପ୍ରଥମେ ବିଶ୍ଳେଷଣ କରାଯାଉ ଏହି ମହାବାରିଧି ''ସ୍ଥାନ'' ବା Spaceର । ସେଥିରେ ଭାସିବୁଲୁଛି ଅତି କ୍ଷୁଦ୍ରତମ କଣା କ୍ୱାର୍କଠାରୁ, ମହାନ, ବିଶାଳ, ପ୍ରକାଣ୍ଡ ଘୂର୍ଣ୍ଣାୟମାନ ନିହାରିକାପୁଞ୍ଜ ପର୍ଯ୍ୟନ୍ତ । ଅଚିନ୍ତନୀୟ ଏହି ମହାବିଶ୍ୱର ଆଦି କେଉଁଠାରେ ଓ ଅନ୍ତ କେଉଁଠାରେ ଜାଣିବାର ଉପାୟନାହିଁ । ଏହି ପ୍ରହେଳିକାମୟ ''ସମୟ''ର ରହସ୍ୟ କିପରି ଭାବରେ ଭେଦ କରାଯାଇ ପାରିବ, ସେହି ଚିନ୍ତାରେ ସମଗ୍ର ବିଜ୍ଞାନୀ-ସମାଜ ଭୀଷଣ ଭାବରେ ବ୍ୟାକୁଳ ହୋଇ ରହିଛନ୍ତି । ଏହି ପରିପ୍ରେକ୍ଷୀରେ ପେନ୍‌ରୋଜ ଓ ହକିଂଙ୍କର ବିତର୍କ ଏଠାରେ ଉଲ୍ଲେଖ ଯୋଗ୍ୟ ।

ସେମାନଙ୍କ ପୂର୍ବରୁ ଦୁଇ ପ୍ରଖ୍ୟାତ ଚିନ୍ତାନାୟକ ଆଇନଷ୍ଟାଇନ ଓ ନିଲ୍‌ବୋର୍ କ୍ୱାଂଟଂ ତତ୍ତ୍ୱକୁ ନେଇ ଭୀଷଣ ବିତର୍କର ସୂତ୍ରପାତ କରିଥିଲେ । ଆଇନଷ୍ଟାଇନ କ୍ୱାଂଟଂ ତତ୍ତ୍ୱକୁ ସର୍ବଶେଷ ତତ୍ତ୍ୱ ଆଖ୍ୟାଦେବାକୁ ଏକାନ୍ତ ବିରୋଧ କରିଥିଲେ । ତାଙ୍କ ମତରେ କ୍ୱାଂଟଂ ବା କଣାବାଦୀ ବଳ ମୌଳିକ ଉପାଦାନ, ଶେଷତତ୍ତ୍ୱର ଆଖ୍ୟା କେବେହେଲେ ବହନ କରି ନପାରେ । କାରଣ ତଥାପି ଅନେକ ବିଷୟ, ସମସ୍ୟା, ବସ୍ତୁରାଜି ଏହି ତତ୍ତ୍ୱଦ୍ୱାରା ସମାଧାନ ଯୋଗ୍ୟ ବୋଲି ବିବେଚିତ ହୋଇପାରିବ ନାହିଁ । କଣାବାଦୀବଳବିଦ୍ୟା ବା କ୍ୱାଂଟଂ ତତ୍ତ୍ୱ ଯେତେ ଦୂରଦୃଷ୍ଟି ସମ୍ପନ୍ନ ଓ ନିର୍ଭରଯୋଗ୍ୟ ହେଲେ ମଧ୍ୟ, ଏହାର ଧାରଣା ଗ୍ରହଣ ଯୋଗ୍ୟ ନୁହେଁ । କାରଣ ଏହି ତତ୍ତ୍ୱ ଅନୁସାରେ ପ୍ରକୃତି ବିଭିନ୍ନ ସମ୍ଭାବନାର ଏକତ୍ରିକୃତ ସ୍ୱରୂପ ଓ ଉଚ୍ଚତମ ପ୍ରକାଶ । ଏହା ଭ୍ରମାତ୍ମକ ବୋଲି ଆଇନ୍‌ଷ୍ଟାଇନଙ୍କ ଦୃଢ଼ମତ । ସେ କହିଥିଲେ, ସମଗ୍ର ବିଶ୍ୱ ଏକ ସଂପୂର୍ଣ୍ଣ ନିୟମର ସୂଚାରୁ ପରିଚାଳନା । ଏହା ଏକ ସଂମ୍ଭାବନା-ସମଷ୍ଟିର ପରିପ୍ରକାଶ ମାତ୍ର ହୋଇ ନପାରେ ।

ଏହି ପୁରୁଣା ବିତର୍କର ନବ ସ୍ୱରୂପ ହେଲା ରୋଜର୍ ପେନ୍‌ରୋଜ୍ ଓ ଷ୍ଟିଫେନ ହକିଂଙ୍କ ବିରୋଧୀ ମତବାଦ । ହକିଂଙ୍କ ମତରେ କ୍ୱାଂଟଂ ତତ୍ତ୍ୱ ସ୍ଥାନ-କାଳର ରହସ୍ୟ ନିଶ୍ଚୟ ଭେଦ କରିପାରିବ । ଏହି ତତ୍ତ୍ୱ ସହିତ ଆପେକ୍ଷିକତାବାଦ ସଂମିଶ୍ରଣକଲେ ଇପ୍ସିତ ଫଳ ଲାଭ ହେବା ସୁନିଶ୍ଚିତ ବୋଲି ହକିଂ ମନେ କରନ୍ତି । ମାତ୍ର ପେନ୍‌ରୋଜ୍ କହନ୍ତି ସାଧାରଣ ଆପେକ୍ଷିକତାବାଦ ମାଧ୍ୟମରେ ଶେଷତତ୍ତ୍ୱର ପରିଚୟ ମିଳିବ । ସେଥିରୁ ସବୁ ସମସ୍ୟାର ସମାଧାନ ନିଶ୍ଚିତ ହେବ । ଏହି ତତ୍ତ୍ୱରେ ବିଶ୍ୱର ଆଦି ଅନ୍ତ ନିରୂପଣ ସମ୍ଭବପର ହେବ । ମାଧ୍ୟାକର୍ଷଣ ଶକ୍ତିଯୋଗୁ ଆମେ ଗ୍ରହଉପରେ ସ୍ଥିରଭାବରେ ରହୁ ଓ ବିଚରଣ କରୁ । କ୍ୱାଂଟଂ ତତ୍ତ୍ୱ ଅଣୁ ପରମାଣୁଠାରୁ ଅତୀବ ସୂକ୍ଷ୍ମ ମୌଳିକ ପଦାର୍ଥ ଆବିଷ୍କାରରେ ସକ୍ଷମ ହେଲେହେଁ, ଆପେକ୍ଷିକତାବାଦ ବିଷୟରେ ନୀରବ । ବୈଜ୍ଞାନିକମାନଙ୍କର ଆଶା, ଏହି ଦୁଇ ତତ୍ତ୍ୱର ସଫଳ ସଂମିଶ୍ରଣରେ ଶେଷତତ୍ତ୍ୱର ଉଦ୍‌ଭବ ହେବାର-ସମ୍ଭାବନା ପ୍ରବଳ ଭାବରେ ପ୍ରୋଥିତ । ଏହି ଦୁଇ ମହାବିଜ୍ଞାନୀ ପୂର୍ବଲିଖିତ ଦୁଇତତ୍ତ୍ୱର ହାନିକାରକ ଦିଗକୁ ପରିହାର କରି, ଦୋଷଗୁଡିକ ନିଷ୍କାସନ କରି ଏକ ଦୋଷମୁକ୍ତ ତତ୍ତ୍ୱର ଆବିଷ୍କାର କରିବାରେ ଅସଫଳ ହୋଇଛନ୍ତି । ସେହି ସର୍ବଶେଷତତ୍ତ୍ୱ ବର୍ତ୍ତମାନ ସୁଦ୍ଧା ସେମାନଙ୍କର ପ୍ରୟୋଗଶାଳାର ବାହାରେ ରହିଅଛି । କରତଳଗତ ହୋଇନାହିଁ । ସେମାନେ କେବଳ ବୃଥାତର୍କରେ ବ୍ୟାପୃତ ହୋଇ ଉଭୟ ଉଭୟଙ୍କୁ ଦୋଷାରୋପ କରିବାରେ ଲାଗିଛନ୍ତି । ପେନ୍‌ରୋଜ ଦେଖିଲେ ଯେ ବିଶ୍ୱ ଗୋଟିଏ ପଏଣ୍ଟ ବା ବିନ୍ଦୁରୁ ଆରମ୍ଭ ହୋଇଥିଲା । ସେତେବେଳେ ସ୍ଥାନ ବା କାଳ ଉଭୟ ଅନୁପସ୍ଥିତ ଥିଲେ । ସେହି ବିନ୍ଦୁ-ଅବସ୍ଥିତିରେ ପଦାର୍ଥ ବିଜ୍ଞାନର ପ୍ରୟୋଗର ସ୍ଥାନ ନାହିଁ । ଏହି ମହା ବିଶ୍ୱର ଇତିହାସ ହେଲା Singularity ବା ଅନନ୍ୟ-ଏକକ-ଅବସ୍ଥାନ । ଏହା ଯଦି ସତ୍ୟ ହୁଏ ତେବେ ସାଧାରଣ ଆପେକ୍ଷିକତାବାଦର ବିଲୟ ହେବାର ସମ୍ଭାବନା । ଏଥିରୁ ବିଶ୍ୱର ଆଦି ଅନ୍ତ ବିଷୟରେ ସମ୍ୟକ୍ ଧାରଣା ମିଳିବା ଅସମ୍ଭବ । ତେଣୁ ଏହି ତତ୍ତ୍ୱ ନିଜର ପତନ ନିଜେହିଁ ଘଟାଇଥାଏ । ମାତ୍ର ହକିଂ ଏହି ତଥ୍ୟକୁ ଗ୍ରହଣ ନକରି କ୍ୱାଂଟଂ ତଥ୍ୟର ଶରଣ ନେଇଛନ୍ତି । ତାଙ୍କ ମତରେ ବିଶ୍ୱ ଶୂନ୍ୟରୁ ଉଦ୍‌ଭୂତ ହୋଇଅଛି । ମାଧ୍ୟାକର୍ଷଣ ଶକ୍ତି ସ୍ଥାନ-କାଳକୁ ପ୍ରଭାବିତ କରି ବକ୍ର-ମାତ୍ରା ମାଧ୍ୟମରେ ତାହାକୁ ଆଦି ଓ ଅନ୍ତ ପ୍ରଦାନ କରିଅଛି । ଜଣେ ଦାର୍ଶନିକଙ୍କ ମତରେ ପଦାର୍ଥ ବିଜ୍ଞାନୀମାନେ "କାଳ" ସମ୍ବନ୍ଧରେ ଭ୍ରମଧାରଣାର ବଶବର୍ତ୍ତୀ ହୋଇ ଭୁଲରାସ୍ତାରେ ଅଗ୍ରସର ହେଉଅଛନ୍ତି । ହିଉପ୍ରାଇସ୍ କହନ୍ତି ଯେ ଅତୀତ ଓ ବର୍ତ୍ତମାନ ମଧ୍ୟରେ ପାର୍ଥକ୍ୟ କଣ ତାହା ପଦାର୍ଥବିଜ୍ଞାନୀମାନେ ଠିକ୍‌ଭାବରେ ଜାଣନ୍ତି ନାହିଁ । ଭବିଷ୍ୟତ କଣ ଅତୀତକୁ ପ୍ରଭାବିତ କରିପାରେ ? ସମୟର ପ୍ରବାହ ଏକମୁଖୀ କାହିଁକି ? କାହିଁକି ଏହା କେବଳ ଅତୀତରୁ ଭବିଷ୍ୟତ ଆଡକୁ ପ୍ରବାହିତ ? ଏହା ବିପରୀତମୁଖୀ ନୁହେଁ କାହିଁକି ? ଏହି ପ୍ରଶ୍ନର ସଦୁତ୍ତର ପଦାର୍ଥ ବିଜ୍ଞାନୀମାନେ ଦେଇ ପାରିବେ ନାହିଁ ।

ସେମାନଙ୍କୁ ଏକ ନବଦିଗନ୍ତ ଆବିଷ୍କାର କରିବାକୁ ପଡିବ । ପ୍ରାଇସ୍‌ଙ୍କ ମତରେ ପଦାର୍ଥବିଦ୍ ମାନଙ୍କ ଧାରଣା, ଯେ ଆଦିମୂଳ ଅବସ୍ଥାରେ ବିଶ୍ୱର ଜନ୍ମ ନିମନ୍ତେ କୌଣସି ବିଶେଷ ମୌଳିକ ଅବସ୍ଥାର ଆବଶ୍ୟକତା ନଥିଲା, ଏହା ଏକାବେଳେକେ ଭ୍ରମାତ୍ମକ । ହକିଂଙ୍କର ଉତ୍ତର ହେଲା ବାସ୍ତବସତ୍ତାର ସ୍ୱରୂପ ଖଣ୍ଡିଏ କାଗଜରେ ଅଙ୍କା ଯାଇନପାରେ । ଯେଉଁ ତତ୍ତ୍ୱ ସଫଳ ଭାବରେ ସବୁ ପ୍ରଶ୍ନର ଉତ୍ତର ମାପକାଠି ସାହାଯ୍ୟରେ ଅନାୟାସରେ ଦେଇପାରିବ, ତାହାହିଁ ପ୍ରକୃଷ୍ଟ ତତ୍ତ୍ୱ ଭାବରେ ବିବେଚିତ ହେବାର କ୍ଷମତା ପ୍ରକାଶ କରିପାରିବ । ବହୁଳାଂଶରେ କ୍ୱାଂଟଂ ତ୍ତ୍ୱ ଏବିଷୟରେ ନିର୍ଭର ଯୋଗ୍ୟ ବୋଲି ତାଙ୍କର ଦୃଢ଼ ମତ । ତାଙ୍କର ମତ ଯାହା ହେଉନା କାହିଁକି, ତାଙ୍କ ବହିର ଭୂମିକା ଲେଖିବାକୁ ଯାଇ ସୃଷ୍ଟିତତ୍ତ୍ୱ ବିଜ୍ଞ ପରମ ବିଜ୍ଞାନୀ କାର୍ଲ ସେଗାନ୍ ଲେଖିଛନ୍ତି ଯେ ଈଶ୍ୱରଙ୍କ ଅସ୍ତିତ୍ୱ ହକିଂ ମାନନ୍ତୁ ବା ନ ମାନନ୍ତୁ ଈଶ୍ୱରଙ୍କର ଉଲ୍ଲେଖ ରହିଛି ତାଙ୍କ ବହିରେ । ଈଶ୍ୱରଙ୍କ ବିଶ୍ୱସୃଷ୍ଟି କାଳରେ ତାଙ୍କ ପାଖରେ ଅନ୍ୟ କୌଣସି ବିକଳ୍ପ ଥିଲା କି ନାହିଁ ଏହି ପ୍ରଶ୍ନ ଉଠାଇ, ହକିଂ ଈଶ୍ୱରଙ୍କ ମନସ୍ତତ୍ତ୍ୱ ଅନୁଧାବନ କରିବାର ପ୍ରଚେଷ୍ଟା କରିଅଛନ୍ତି । ଶେଷରେ ଏକ ଅଦ୍‌ଭୂତ ପରିଣାମରେ ଉପନୀତ ହୋଇ ଅଛନ୍ତି ହକିଂ । "A universe with no edge in space, no beginning or end in time; and nothing for a creator to do."। ସେଗାନ ତାଙ୍କର ଅନନୁକରଣୀୟ ଭାଷାରେ ଅତି ସଂକ୍ଷେପରେ ହକିଂଙ୍କର ବିଜ୍ଞାନ କ୍ଷେତ୍ରରେ ମହାଯାତ୍ରାର ଅନ୍ତିମ ପର୍ଯ୍ୟାୟର ଚିନ୍ତା ନିର୍ଯ୍ୟାସକୁ ପ୍ରକାଶ କରିଛନ୍ତି । ହକିଂଙ୍କ ବିଶ୍ୱରେ ସ୍ଥାନର ବିଶେଷ ଭୂମିକା ବା ପ୍ରଭାବ ନାହିଁ; ତାଙ୍କ ଧ୍ୟାନଧାରଣାରାଜ୍ୟରେ ସମୟର ଆଦି ଅନ୍ତ ମଧନାହିଁ; ଏବଂ ଜଣେ ବିଶ୍ୱ-ସ୍ରଷ୍ଟାର କିଛି ସୃଷ୍ଟି କରିବାର ଆବଶ୍ୟକତା ନାହିଁ । ଅର୍ଥାତ୍ ସବୁକିଛି ପୂର୍ବ ନିର୍ଦ୍ଦିଷ୍ଟ, ପୂର୍ବ ନିର୍ଦ୍ଧାରିତ, ପୂର୍ବ-ସ୍ଥିରିକୃତ, କୌଣସି ସ୍ୱାଧୀନ ଚିନ୍ତା ପ୍ରସ୍ତୁତ ନୁହେଁ; ଏକ ଅଜ୍ଞାତ, ସର୍ବଶେଷ ତତ୍ତ୍ୱଦ୍ୱାରା ପରିଚାଳିତ । ମନୁଷ୍ୟର ସ୍ୱାଧୀନଚିନ୍ତା (freewill) ଏକ ଅଳିକ ଧାରଣା, ଏକ ମାୟାଜାଲ, ଏକ ଚରମ ଭ୍ରାନ୍ତିର ପ୍ରକାଶମାତ୍ର, ଆଉକିଛି ନୁହେଁ । ତାଙ୍କର ସତ୍ୟ-ସ୍ୱରୂପରୁ ଈଶ୍ୱରଙ୍କ ବିତାଡନ ତାଙ୍କର ସହଧର୍ମିଣୀ ''ଜେନ୍''ଙ୍କ ମନରେ ଗଭୀର ଆଘାତ ସୃଷ୍ଟି କରିଥିଲା କାରଣ ତାଙ୍କର ଈଶ୍ୱରଙ୍କଠାରେ ଗଭୀର ବିଶ୍ୱାସ ଥିଲା । ସେମାନଙ୍କ ମତାନ୍ତରରୁ ମନାନ୍ତର ସୃଷ୍ଟି ହୋଇ ଉଭୟଙ୍କର ବିଚ୍ଛେଦ ସାଧିତ ହୋଇଥିଲା । ଦୀର୍ଘ ୨୬ବର୍ଷ ଧରି ସ୍ୱାମୀ ସେବାରେ ଉତ୍ସର୍ଗୀକୃତ ଜୀବନରେ ଚରମ ଆଘାତ ସୃଷ୍ଟି ହୋଇଥିଲା । ମାତ୍ର ଏହି ପଙ୍ଗୁ ପଣ୍ଡିତ ଆଉଜଣେ ମହିଳାଙ୍କୁ ଆଦରି ଜେନ୍‌ଙ୍କୁ ଭୁଲିଗଲେ ! ମର୍ମାନ୍ତିକ ସତ୍ୟ ।

ହକିଂଙ୍କର ମନ ବିଶାଳ ବିରାଟ ଅନନ୍ତ ମହାବିଶ୍ୱରେ ସଦାବିଚରଣ କରୁଥିଲେ ମଧ୍ୟ ମନେହୁଏ ତାହା ଅନିଶ୍ଚୟତାବାଦର ଶିକାର ହୋଇ ପଡିଥିଲା । ଏହାହିଁ ଏହି ମତବାଦର

ଏକ ଜ୍ୱଳନ୍ତ ନିଦର୍ଶନ ଓ ଅକାଟ୍ୟ ପ୍ରମାଣ । ତାନହେଲେ ତାଙ୍କ ସ୍ତ୍ରୀଙ୍କର ଉତ୍ସର୍ଗୀକୃତ ଜୀବନକୁ ସେ କେବେହେଲେ ଅବଜ୍ଞା କରି ପାରି ନଥାନ୍ତେ । ତାଙ୍କର ଦୁଇ କନ୍ୟା ବର୍ତ୍ତମାନ ପ୍ରାପ୍ତବୟସ୍କା । ସେମାନେ ତାଙ୍କର ପିତାଙ୍କର ମନୋବୃତ୍ତିକୁ ବିଶେଷ ଧିକ୍କାର ଦେଇ ଅଛନ୍ତି । ଏଥିରୁ ପ୍ରମାଣିତ ହେଉଅଛି ଯେ ମନୁଷ୍ୟର ମନ ଏକ ଦୁର୍ଜ୍ଞେୟ ଚିତ୍ତବୃତ୍ତିଦ୍ୱାରା ପରିଚାଳିତ । ମୁନିଋଷିଙ୍କଠାରୁ ଆରମ୍ଭ କରି ସାଧାରଣ ମନୁଷ୍ୟ ମଧ୍ୟ ଏହି ଅନିଶ୍ଚୟତାର ବେଷ୍ଟନୀରୁ ବହିର୍ଭୂତ ନୁହେଁ ।

ଆଇଜାକ ନିଉଟନଙ୍କ ବଷୟରେ ଲେଖିବାକୁ ଯାଇ ହକିଂ ପ୍ରକାଶ କରିଅଛନ୍ତି ଯେ ନିଉଟନ ଶିଷ୍ଟ ସ୍ୱଭାବର ମଣିଷ ନଥିଲେ । ବିଜ୍ଞାନୀ ସଂପ୍ରଦାୟ ସହିତ ତାଙ୍କର ସଂପର୍କ ଅତ୍ୟନ୍ତ ଖରାପ ଥିଲା । ଶେଷଜୀବନରେ ତାଙ୍କର ପଣ୍ଡିତମାନଙ୍କ ସହିତ କଳହ କାହାକୁ ଅବିଦିତ ନୁହେଁ । ସେ "ନାଇଟ୍ ଉପାଧି" ପ୍ରାପ୍ତହୋଇ Royal Society ର ଅଧକ୍ଷରୂପେ ନିଯୁକ୍ତ ହୋଇଥିଲେ । ତାପରେ ତାଙ୍କର ବିରୋଧ ହେଲା John Flamsteed ଙ୍କ ସହିତ, ଫ୍ଲାମଷ୍ଟିଡ୍ ସବୁ ସଂଗୃହିତ ତତ୍ତ୍ୱ, ଗବେଷଣାଲବ୍ଧ ବିବରଣୀ ପ୍ରଥମେ ତାଙ୍କର ବିଖ୍ୟାତ ପୁସ୍ତକ Principia Mathematica ପାଇଁ ଯୋଗାଡ କରି ଦେଇଥିଲେ । ମାତ୍ର ଶେଷରେ କେତେକ ବିଶେଷ ବିବରଣୀ ଅଟକି ରଖିଥିଲେ । ନିଉଟନ ଏଥିରେ କ୍ଷୁବ୍ଧ ହୋଇ ନିଜକୁ Royal Observatory ର ପରିଚାଳକ ମଣ୍ଡଳୀରେ ନିଯୁକ୍ତ କରାଇ ସେହି ଗବେଷଣାଲବ୍ଧ ବିଷୟ ଗୁଡିକୁ ପ୍ରକାଶ କରିବାକୁ ବାଧ କରିଥିଲେ । ଶେଷ ପର୍ଯ୍ୟନ୍ତ ଫ୍ଲାମ୍ଷ୍ଟିଡଙ୍କ ଗବେଷଣା ଲବ୍ଧ ଫଳାଫଳକୁ ଅଧିଗ୍ରହଣ କରି (seize) ତାଙ୍କର ପରମଶତ୍ରୁ Halley ଙ୍କ ହାତରେ ପ୍ରତ୍ୟର୍ପଣ କରି ପ୍ରକାଶ କରିବାର ବ୍ୟବସ୍ଥା କରିଥିଲେ । ମାତ୍ର ଫ୍ଲାମ୍ଷ୍ଟିଡ୍ ଅଦାଲତର ଶରଣନେଇ ସେହି ଚୋରୀ ହୋଇଯାଇଥିବା ଗବେଷଣାପତ୍ର ଗୁଡିକର ବଣ୍ଟନ ବନ୍ଦ କରିବାକୁ ବାଧ କରିଥିଲେ ନିଉଟନ୍ଙ୍କୁ । ନିଉଟନ ରାଗିଯାଇ ପରବର୍ତ୍ତୀ ସଂସ୍କରଣରେ ତାଙ୍କର ବହିରେ ଫ୍ଲାମ୍ଷ୍ଟିଡଙ୍କ ଉଲ୍ଲେଖକୁ ବାଦ ଦେଇଥିଲେ ।

ତାଙ୍କର ଜର୍ମାନ ଦାର୍ଶନିକ ଲାଇବନିଜ୍ଙ୍କ ସହିତ ଆଉ ଏକ ଦ୍ୱନ୍ଦ୍ୱ ହୋଇଥିଲା । ଲାଇବ୍ନିଜ୍ ଓ ନିଉଟନ Calculus ନାମକ ଏକ ଗଣିତ ଶାଖା ଆବିଷ୍କାର କରିଥିଲେ । ଏହା ଆଧୁନିକ ପଦାର୍ଥ ବିଦ୍ୟାର ଭିତ୍ତି ସ୍ୱରୂପ । ଯଦିବା ନିଉଟନ ଅନେକ ଆଗରୁ ଏହା ଆବିଷ୍କାର କରିଥିଲେ ମାତ୍ର ତାହା ପ୍ରକାଶ କରିଥିଲେ ଲାଇବ୍ ନିଜଙ୍କ ପରେ । କିଏ ଏହା ପ୍ରଥମ ଆବିଷ୍କାର କଲା ଏହି କଥା ନେଇ ବିଷମ ଦ୍ୱନ୍ଦ୍ୱ ଉପସ୍ଥିତ ହେଲା ଦୁହିଁଙ୍କ ମଧ୍ୟରେ, ନିଉଟନଙ୍କ ସପକ୍ଷରେ ଯୁକ୍ତିଗୁଡିକ ନିଉଟନଙ୍କ ନିଜ ହାତରେ ଲିଖିତ ହୋଇଥିଲା । ମାତ୍ର ବିଭିନ୍ନ ବନ୍ଧୁ ମାନଙ୍କ ନାମରେ ନାମିତ ହୋଇଥିଲା । ଏହି ସବୁର ସମାଧାନ ନିମନ୍ତେ

ଲାଇବ୍‌ନିଜ Royal Society କୁ ଆପିଲ କଲେ । ନିଉଟନଙ୍କ ପ୍ରଭାବଯୋଗୁ ଲାଇବନିଜ୍‌ଙ୍କୁ ଅପରାଧୀ ସ୍ୟାବସ୍ତ କରାଗଲା । ନିଉଟନଙ୍କ ତତ୍ତ୍ୱ ଚୋରୀ (plagiarise) କରିବା ଅପରାଧରେ । ଲାଇବ୍‌ନିଜ୍ ଦୁଃଖରେ ପ୍ରାଣତ୍ୟାଗ କରିଥିଲେ । ପରେ ନିଉଟନ କହିଥିଲେ ଯେ ଲାଇବନିଜ୍‌ଙ୍କ ମନ ଭାଙ୍ଗିଦେଇ ସେ ଖୁବ୍ ଖୁସି ହୋଇଥିଲେ । ଏସବୁ ଘଟଣାରୁ ଏହି ଯୁଗାନ୍ତକାରୀ ବୈଜ୍ଞାନିକଙ୍କର ନୀଚ ମନର ସନ୍ଧାନ ମିଳେ ।

ସେହିପରି ଆଇନଷ୍ଟାଇନଙ୍କ ଚରିତ୍ର ବିଷୟରେ ଲେଖିବାକୁ ଯାଇ ହକିଂ ପ୍ରକାଶ କରିଛନ୍ତି ଯେ ପାରମାଣବିକ ବୋମାର ରାଜନୀତି ସହିତ ଆଇନଷ୍ଟାଇନଙ୍କର ସମ୍ପର୍କ ସୁବିଦିତ । ସେ ନିଜେ କହିଥିଲେ ଯେ ତାଙ୍କର ଜୀବନ ରାଜନୀତି ଓ ସମୀକରଣରେ ବିଭକ୍ତ । ବର୍ଲିନରେ ଅଧ୍ୟାପକ ଥିବା ସମୟରେ ସେ ରାଜନୀତିରେ ବ୍ୟାପୃତହୋଇ ଅସହଯୋଗ ଆନ୍ଦୋଳନ ସହିତ ଯୋଗାଦାନ ଫଳରେ ତାଙ୍କର ସହକର୍ମୀମାନଙ୍କର ଶ୍ରଦ୍ଧା କମିଯାଇଥିଲା । ବିଶ୍ୱଯୁଦ୍ଧ ପରେ ରାଜନୀତିରେ ହସ୍ତକ୍ଷେପ ଫଳରେ ଯୁକ୍ତରାଷ୍ଟ୍ର ଆମେରିକା ଯିବା ପ୍ରସ୍ତାବରେ ନାନା ବାଧା ଉପୁଜିଥିଲା । ତାଙ୍କ ଜୀବନର ଉଦ୍ଦେଶ୍ୟ ଥିଲା ଇହୁଦିମାନଙ୍କର ଜାତୀୟସ୍ୱାର୍ଥ ଓ ବାସଭୂମି ପାଇଁ ଆନ୍ଦୋଳନ । ସେ ଥିଲେ ''ଜିଅନିଜମ୍'' ର ସମ୍ପୂର୍ଣ୍ଣ ସମର୍ଥକ । ଏଥିରେ ତାଙ୍କର ବହୁଶତ୍ରୁ ଜାତ ହୋଇଥିଲେ ଓ ତାଙ୍କୁ ପ୍ରାଣରେ ମାରିଦେବାପାଇଁ ସଚେଷ୍ଟ ହୋଇଥିଲେ । ଯୁଦ୍ଧ ସମୟରେ ସେ ଥିଲେ ଆମେରିକା ଯୁକ୍ତରାଷ୍ଟ୍ରରେ । ଜର୍ମାନୀ ପରମାଣୁବୋମା ତିଆରି କରିପାରେ ବୋଲି ଆଶଙ୍କାରେ ସେ ଆମେରିକାକୁ କହିଥିଲେ ପରମାଣୁବୋମା ତିଆରି କରିବାପାଇଁ । ମାତ୍ର ପରେ ଏହାର ଆନ୍ତର୍ଜାତିକ ନିୟନ୍ତ୍ରଣ ପ୍ରସ୍ତାବ ଦେଇଥିଲେ । ତାଙ୍କୁ ଇସ୍‌ରାୟଲର ସଭାପତି ହେବାପାଇଁ ଅନୁରୋଧ କରାଯାଇଥିଲା । ମାତ୍ର ସେ ରାଜି ହେଲେ ନାହିଁ । ସେ କହିଲେ ଯେ ତାଙ୍କ ଜୀବନରେ ତାଙ୍କ ନିକଟରେ ସମୀକରଣର ଗୁରୁତ୍ୱ ଅନେକ ବେଶୀ । ରାଜନୀତି ବର୍ତ୍ତମାନ ସମୟରେ ଗୁରୁତ୍ୱ ପାଇପାରେ, ମାତ୍ର ସମୀକରଣର ଗୁରୁତ୍ୱ ଚିରକାଳ ପାଇଁ ଉଦ୍ଦିଷ୍ଟ । ଏଥିରୁ ପ୍ରମାଣିତ ହୁଏ ଯେ ଶେଷତତ୍ତ୍ୱ ସନ୍ଧାନୀ ମହାମନୀଷିମାନେ ମଧ୍ୟ ଏହି ଜଡଜଗତର ସମସ୍ୟାରେ ଆବଦ୍ଧ ରହି କ୍ଷୁଦ୍ରାତିକ୍ଷୁଦ୍ର ବିଷୟରେ ନିଜକୁ ନିମଜ୍ଜିତ କରି ରଖୁଛନ୍ତି । ସେହି ଅନାଦି ଅପରିଜ୍ଞେୟ ମହାତତ୍ତ୍ୱରେ ବିଲୀନ ନହୋଇ ଇହଜଗତର ସମସ୍ୟାବଳିରେ ଉଦ୍‌ବେଳିତ ହୋଇଯାଉଛନ୍ତି । ମନୁଷ୍ୟ ଚରିତ୍ରର ଏହି ସ୍ଖଳନ ମହାମାନବ ମାନଙ୍କ ମଧ୍ୟରେ ମଧ୍ୟ ପରିଦୃଶ୍ୟମାନ । ଅନିଶ୍ଚିୟତା ସେମାନଙ୍କର ମନକୁ ମଧ୍ୟ ପ୍ରଭାବିତ କରି ଦିଗଭ୍ରଷ୍ଟ କରିପାରୁଅଛି । ସେମାନେ ଯେତେ ଗବେଷଣା କରି ଊର୍ଦ୍ଧ୍ୱକୁ ଉଠିଲେ ମଧ୍ୟ, ସମୟ ସମୟରେ ନିମ୍ନ ସ୍ତରକୁ ଓହ୍ଲାଇ ଯାଉଛନ୍ତି । ଏହାର କାରଣ କଣ? ସେମାନଙ୍କର ଉଚ୍ଚ ଚିନ୍ତା ବା ଭାବନା ସେମାନଙ୍କୁ ସବୁ ସମୟପାଇଁ ସେହି

ମହାଜାଗତିକ ସର୍ବଶେଷ ତତ୍ତ୍ୱାନୁସନ୍ଧାନରେ ନିମଜ୍ଜିତ କରିରଖିପାରୁନାହାଁନ୍ତି । ସେମାନେ ପରମ ଚିନ୍ମୟ ତତ୍ତ୍ୱରେ ଲୀନ ହୋଇ ନପାରି ପାର୍ଥିବ କ୍ଷୁଦ୍ରାତିକ୍ଷୁଦ୍ର ବିଷୟରେ ମନୋନିବେଶ କରି ନିଜର ସ୍ଥୈର୍ଯ୍ୟ ହରାଇ ବସୁଛନ୍ତି । ତେବେ ସେ ପରମ ସତ୍ୟ କଣ ଯାହାକୁ ଅନୁଧାବନ କଲେ ସବୁ ସମୟରେ ସେଥିରେ ମଗ୍ନ ହୋଇ ମଣିଷ ରହିପାରେ ? ବିଜ୍ଞାନ ତାହାର ସାମାନ୍ୟ ରୂପରେଖ ନିର୍ଦ୍ଧାରଣରେ ସମର୍ଥ ହୋଇଅଛିକି ? ସେହି ସତ୍ୟ ''ସମୟ''ର କେଉଁ ପର୍ଯ୍ୟାୟରେ ସନ୍ନିବେଶିତ ? ଏହା ଏକ ଅତି ଦୁରୁହ ଓ ଜଟିଳ ପ୍ରଶ୍ନ । ଏହା ସମାଧାନ ସାପେକ୍ଷ କି ? ବର୍ତ୍ତମାନ ସମୟର ତୀରକୁ ସେହି ଦିଗକୁ ପ୍ରକ୍ଷେପ କରିବାର ଆବଶ୍ୟକତା ଅନୁଭୂତ ହେଉଅଛି । ସମୟ ବିଷୟରେ ପାଶ୍ଚାତ୍ୟର ଦାର୍ଶନିକ, ବୈଜ୍ଞାନିକ, ମନୀଷି, ଚିନ୍ତାନାୟକ ମାନଙ୍କ ମତାବଳି ପୂର୍ବବର୍ତ୍ତୀ ପୃଷ୍ଠା ଗୁଡିକରେ ବହୁଳଭାବରେ ଉଦ୍ଧୃତ ଓ ଆଲୋଚିତ ହୋଇ ସେଗୁଡିକର ମୂଲ୍ୟାୟନ ଦିଗରେ ପ୍ରଚେଷ୍ଟା କରାଯାଇଅଛି । ସେହି ମତାବଳିର ଗୁଣମାନ ମଧ୍ୟ ପରୀକ୍ଷିତ ହୋଇଅଛି । ଶେଷରେ ଦେଖାଯାଉଛି ଯେ ପାଶ୍ଚାତ୍ୟ ପଣ୍ଡିତମାନେ ସ୍ଥିର ନିଶ୍ଚିତ ନୁହନ୍ତି ସମୟର ଉତ୍ପତ୍ତି ଓ ସ୍ଥିତି, ଆଦି ଓ ଅନ୍ତ ବିଷୟରେ ।

''ସମୟ'' ପ୍ରସଙ୍ଗରେ ଗୋଟିଏ ମନୋମୁଗ୍ଧକର ଆଖ୍ୟାୟିକା ଉଲ୍ଲେଖନୀୟ । ଶ୍ରୀକୃଷ୍ଣ ଓ ସୁଦାମା ଉଭୟ ପରସ୍ପରଙ୍କର ଅତ୍ୟନ୍ତ ଅନ୍ତରଙ୍ଗ ବନ୍ଧୁ ଥିଲେ । ସନ୍ଦିପନୀ ମୁନିଙ୍କ ପାଠଶାଳାରେ ପଢୁଥିଲେ । ଏକାଠି ରହୁଥିଲେ, ଏକାଠି ନଦୀକୁ ଗାଧୋଇ ଯାଉଥିଲେ । ସୁଦାମାଙ୍କର ପ୍ରଖର ବୁଦ୍ଧି । ଛାତ୍ରମାନଙ୍କ ମଧ୍ୟରେ ସେ ବିଚକ୍ଷଣ ଥିଲେ । ତାଙ୍କର ବିଶ୍ଳେଷଣ କ୍ଷମତା ମଧ୍ୟ ଅସାଧାରଣ ଥିଲା । ଦିନେ ନଦୀକୁ ଗାଧୋଇଯିବାବେଳେ ସେ ଶ୍ରୀକୃଷ୍ଣଙ୍କୁ ପଚାରିଲେ - ''ଆଚ୍ଛା, ସମୟ ଜିନିଷଟା କଣ ? ମୁଁ ଅନେକ ଭାବି ଭାବି ଏହାର ଆଦି ଅନ୍ତ ପାଉନାହିଁ । କିଛି ବୁଝି ପାରୁନାହିଁ । ତୁମେ ଯଦି ଟିକିଏ ବୁଝେଇ ଦିଅନ୍ତ ତାହାହେଲେ ଭଲ ହୁଅନ୍ତା ।'' ଶ୍ରୀକୃଷ୍ଣ କେବଳ ହସିଲେ, କୌଣସି ଉତ୍ତର ଦେଲେନାହିଁ । ଦୁଇଜଣଯାକ ନଦୀରେ ବୁଡ ଦେଲେ । ସୁଦାମାଙ୍କର ମନେହେଲା ସେ ଭାସିଯାଉଛନ୍ତି । ଯେତେ ଚେଷ୍ଟା କଲେ ମଧ୍ୟ ଉପରକୁ ଉଠି ପାରୁନାହାନ୍ତି । ତାଙ୍କର ହଠାତ୍ ଚେତା ବୁଡିଗଲା । ଅନେକ ସମୟପରେ ଚେତା ଫେରିଲା । ସେ ଦେଖିଲେ ଯେ ଗୋଟିଏ ଅଜଣା ଦେଶର କୂଳରେ ତାଙ୍କର ଶରୀର ଆସି ଲାଗିଛି । ସେ ରାଜ୍ୟର ରାଜା ମରିଯାଇଥାଆନ୍ତି । ଲୋକେ ଖୋଜୁଥାଆନ୍ତି ଜଣେ ଉପଯୁକ୍ତ ଲୋକକୁ ରାଜା କରିବାକୁ । ସେମାନେ ଖୋଜି ଖୋଜି ଆସି ସେଠାରେ ପହଞ୍ଚିଲେ । ଦେଖିଲେ ଜଣେ ବ୍ୟକ୍ତିତ୍ୱ ସମ୍ପନ୍ନ ପୁରୁଷ ନଦୀ କୂଳରେ ପଡିଛନ୍ତି । ତାଙ୍କୁ ଦେଖି ସେମାନଙ୍କ ମନରେ ତାଙ୍କପ୍ରତି ଶ୍ରଦ୍ଧା ଆସିଲା । ସେମାନେ ସୁଦାମାଙ୍କୁ ସେ ରାଜ୍ୟର ରାଜା କଲେ । ପରେ ସୁଦାମାଙ୍କର ସାତ ପୁଅ ଜାତହେଲେ । ସେଠାରେ

ଚାଳିଶବର୍ଷ ରାଜତ୍ୱ କଲାପରେ ତାଙ୍କର ମୃତ୍ୟୁ ହେଲା । ତାଙ୍କୁ ସେହି ନଦୀ କୂଳରେ ଦାହ କରାଗଲା । କିନ୍ତୁ ସୁଦାମାଙ୍କର ଇଚ୍ଛା ଥିଲା ଆଉ ଅନେକବର୍ଷ ରାଜତ୍ୱ କରିବା ପାଇଁ, ମାତ୍ର ଦୁଃଖ ରହିଗଲା ଜୀବନ ଅବସାନ ହେବାରୁ । ତାପରର ଅଭିଜ୍ଞତା । ନଦୀରେ ବୁଡ ଦେଇ ସୁଦାମା ଓ ଶ୍ରୀକୃଷ୍ଣ ଦୁହେଁ ଏକାଠି ପାଣିରୁ ଉଠିଲେ, ସୁଦାମା ଶ୍ରୀକୃଷ୍ଣଙ୍କୁ ପଚାରିଲେ, "ମୋର ଦେଶର କଣ ହେବ ? ମୋର ପିଲା ମାନଙ୍କର କଣ ହେବ ?" ଶ୍ରୀକୃଷ୍ଣ ଉତ୍ତର ଦେଲେ "ତୁମେ ତ ବିବାହ କରିନାହଁ । ତୁମର ପିଲାପିଲି ଆସିଲେ କେଉଁଠୁ ?" ସୁଦାମା ଆପତ୍ତି କରି କହିଲେ "ମୁଁ ରାଜାଥିଲି । ମୋର ସାତପୁଅ ଅଛନ୍ତି ।" ଶ୍ରୀକୃଷ୍ଣ କହିଲେ - "ଆମେ ତ ଏକାଠି ପାଣିରେ ବୁଡଦେଇ ଏକାଠି ପାଣିରୁ ଉଠିଲୁ । ଇତି ମଧ୍ୟରେ ଏତେ ଘଟଣା ଘଟିଲା କିପରି ?" ସୁଦାମା ବଡ ଭାଳେଣିରେ ପଡିଲେ । ଶ୍ରୀକୃଷ୍ଣଙ୍କର ଉକ୍ତି ଏକାବେଳେକେ ସତ୍ୟ । ମାତ୍ର ତାଙ୍କର ଅନୁଭବ ଓ ଅଭିଜ୍ଞତା ମଧ୍ୟ ନିଶ୍ଚିତଭାବେ ବାସ୍ତବ । ଏହି ଦୁଇଟି ଆପାତଃ ସତ୍ୟର ମୀମାଂସା ତାଙ୍କ ପକ୍ଷରେ ଅସମ୍ଭବ ଥିଲା । ସେ ବିବ୍ରତ ହୋଇ ଚୁପ୍‌କରି ରହିଲେ । ଅନେକ ଦିନ ପର୍ଯ୍ୟନ୍ତ ତାଙ୍କର ଚିତ୍ତ ଦୋଳାୟିତ ହୋଇ ରହିଲା ପ୍ରକୃଷ୍ଟ ଉତ୍ତରର ଅଭାବରେ । ଉତ୍ତର ପାଆନ୍ତେ ବା କିପରି ? ସୁଦାମାଙ୍କର କାଳ ବିଷୟରେ ପ୍ରଶ୍ନର ଉତ୍ତର ଶ୍ରୀକୃଷ୍ଣ କିୟତ୍ ଘଟଣାଛଳରେ ସୁଦାମାଙ୍କର ଅଭିଜ୍ଞତା ମାଧ୍ୟମରେ ପ୍ରତିଫଳିତ କରି ଅତି ସଂକ୍ଷିପ୍ତରୂପରେ ପ୍ରଦାନ କରିଥିଲେ । ମହାକାଳର ଦୁର୍ଜ୍ଞେୟ ଗତି ବିଷୟରେ ବୁଝାଇବାର କ୍ଷମତା ଶ୍ରୀକୃଷ୍ଣଙ୍କର ଥିଲେ ମଧ୍ୟ, ସେହି ଅସୀମ କାଳର ଗତି, ପ୍ରକୃତି, କ୍ରମ, ପରିଣାମ ବିଷୟରେ ସମ୍ୟକ୍ ଧାରଣା କରିବାର କ୍ଷମତା ସୁଦାମାଙ୍କର ନଥିଲା । ତେଣୁ ଶ୍ରୀକୃଷ୍ଣ ସେହି ରହସ୍ୟର ସାମାନ୍ୟ ଝଲକ ସୁଦାମାଙ୍କୁ ଘଟଣା ଛଳରେ ଦେଖାଇ ଦେଇଥିଲେ । ବନ୍ଧୁ ସୁଲଭ ଥଟ୍ଟା ମଧ୍ୟ କୁହାଯାଇପାରେ ।

ମାତ୍ର ଧର୍ମକ୍ଷେତ୍ର କୁରୁକ୍ଷେତ୍ରରେ ଅର୍ଜ୍ଜୁନଙ୍କୁ ସ୍ପଷ୍ଟଭାଷାରେ ନିଜର ସ୍ୱରୂପ ବର୍ଣ୍ଣନା କରିବାକୁ ଯାଇ ସତ୍ୟର ପ୍ରକାଶ କରିଥିଲେ ନିମ୍ନଲିଖିତ ଭାଷାରେ :-

"କାଳୋସ୍ମି ଲୋକକ୍ଷୟକୃତ୍ ପ୍ରବୃଦ୍ଧୋ
ଲୋକାନ୍ ସମାହର୍ତ୍ତୁଂ ଇହ ପ୍ରବୃତ୍ତଃ
ରିତେପି ତ୍ୱାଂ ନ ଭବିଷ୍ୟନ୍ତି ସର୍ବେ
ଯେବସ୍ଥିତାଃ ପ୍ରତ୍ୟନୀକେଷୁ ଯୋଧାଃ । ଶ୍ରୀମଦ୍‌ଭାଗବତ ଗୀତା (୧୧/୩୨)

ମୁଁ ବିଶ୍ୱ ବିଧ୍ୱଂସକାରୀ ସମୟ । ବର୍ତ୍ତମାନ ଧ୍ୱଂସ କର୍ମରେ ପ୍ରବୃତ୍ତ । ତୁମେ ନ ଥିଲେ ମଧ୍ୟ, ଏହି ଯୋଦ୍ଧାଗଣ କେହି ବଞ୍ଚିରହିବେ ନାହିଁ ।

ଉପର୍ଯ୍ୟୁକ୍ତ ଗୀତାବାକ୍ୟରୁ ବୁଝାଯିବ ଯେ ବିଶ୍ୱନିୟନ୍ତା ନିଜେ ସମୟ ରୂପରେ ସୃଷ୍ଟି, ସ୍ଥିତି, ଲୟ ମାଧମରେ ସମୟ ସୀମା ମାଧମରେ କୋଟି କୋଟି ବ୍ରହ୍ମାଣ୍ଡକୁ ନେଇ ଖେଳୁଛନ୍ତି । ବହୁ ନିହାରିକାପୁଞ୍ଜ ସମୟର ସୀମା ମଧରେ ଉଦୟ ହୋଇ ଅସ୍ତ ଯାଉଅଛନ୍ତି । ଆମର କ୍ଷୁଦ୍ର ମନୁଷ୍ୟ ଜୀବନରେ ମଧ ସେହି ନୀତିର ପ୍ରତିବିମ୍ବ ପ୍ରତିଫଳିତ । ପ୍ରଥମ ଅଧ୍ୟାୟରେ ମହାମାନବ ମାହାତ୍ମା ଗାନ୍ଧୀଙ୍କ ଜୀବନର ପର୍ଯ୍ୟାଲୋଚନା କରାଯାଇ ଅଛି । ''ସମୟ'' ତାଙ୍କୁ ଜୀବନର ଉତ୍ତୁଙ୍ଗ ଶିଖରକୁ ନେଇଯାଇ, ଶେଷରେ ଅଭବନୀୟ ଭାବରେ ଯବନିକା ଟାଣି ଦେଇଥିଲା । ଶେଷ ଜୀବନରେ ମହାତ୍ମା ଗାନ୍ଧୀଙ୍କର ଉପଦେଶକୁ ତାଙ୍କର ପଟ୍ଟଶିଷ୍ୟମାନେ ମଧ ପାଳନ ନକରି କ୍ଷମତାର ପ୍ରଲୋଭନରେ ଦେଶ ବିଭାଗକୁ ମାନିନେଇଥିଲେ, ଅସଂଖ୍ୟ ସମସ୍ୟାର ବଳୟରେ ଆମଦେଶକୁ ନିକ୍ଷେପ କରିଦେଇଥିଲେ ଭବିଷ୍ୟତର ଚିନ୍ତା ନ କରି, ଯାହାର ଫଳ ବର୍ତ୍ତମାନ ଭାରତବର୍ଷକୁ ଅଙ୍ଗେ ଅଙ୍ଗେ ଲିଭାଇବାକୁ ପଡୁଛି । ସମୟର ଜଟିଳ ପ୍ରବାହରେ ଓ କୁଟିଳ ଆବର୍ତ୍ତରେ ମାନବ ସମାଜ ବହୁ ଭାବରେ ନିମଜ୍ଜିତ ହୋଇ, ଦ୍ୱନ୍ଦ୍ୱ, ଯୁଦ୍ଧ, ବିଗ୍ରହ, ବିଦ୍ୱେଷଦ୍ୱାରା ଭାରାକ୍ରାନ୍ତ । ସମାଧାନ ନିମନ୍ତେ ପ୍ରବଳ ଆଗ୍ରହ ସତ୍ତ୍ୱେ ମାନବ ଆଜି ଘୋର ନୈରାଶ୍ୟ-ଜର୍ଜରିତ ଚିତ୍ତରେ ତାହାର ସଭ୍ୟତାର ଅବକ୍ଷୟକୁ ନିଜ ଆଖିରେ ଦେଖି ଭବିଷ୍ୟତର ପରିଣାମ ଚିନ୍ତାରେ ଉଦ୍‌ବିଗ୍ନ । ମାତ୍ର ଏହାର ପରିଣତି ଧ୍ୱଂସ ନହୋଇ ପାରେ କାରଣ କାଳର କରାଳ ଗତିର ଏହା ଏକ ସାମାନ୍ୟ ମୋଡ ମାତ୍ର; ଏକାବେଳେକେ ଶେଷ-ସ୍ଥିତି ନୁହେଁ । "It is merely a bend and not an end in human affairs ." । ସମୟ ବିଷୟରେ ଏ ଯୁଗର ମଣିଷର ଧାରଣା ସହିତ ପ୍ରାଚୀନ ପ୍ରାଚ୍ୟର ''ସମୟ'' ବିଷୟରେ ତୁଳନାତ୍ମକ ବିଚାର କଲେ ସମୟ ବିଷୟରେ ସାମାନ୍ୟ ଆଲୋକ ଦୃଷ୍ଟି ଗୋଚର ହୁଏ । ଆଜିର ଜଗତରେ ସମୟକୁ ଏକ ବସ୍ତୁ ଭାବରେ ଚିନ୍ତା କରାଯାଏ । ମନୁଷ୍ୟର ଶ୍ରମଦାନକୁ ସମୟର ଘଣ୍ଟାରୂପେ ଚିନ୍ତା କରାଯାଏ, "man-hours" ଭାବେ ତାହା ପରିଗଣିତ ହୁଏ । ଏପରି କଳନାରେ ମନୁଷ୍ୟକୁ ମଧ ଏକ ବସ୍ତୁରେ ପରିଣତ କରିବାର ପ୍ରଚେଷ୍ଟା ବିଦ୍ୟମାନ । ଅର୍ଥାତ୍ ସମୟକୁ ବିଖଣ୍ଡିତ କରି ମନୁଷ୍ୟକୁ ଏକ ଅତି କ୍ଷୁଦ୍ର ବଳୟ ମଧରେ ସୀମିତ କରାଯାଇଅଛି । ଅର୍ଥନୀତି ଭିତ୍ତିକ ସମୟର ବିଭାଜନ ପ୍ରଯୁକ୍ତିବିତ୍ ମନୁଷ୍ୟକୁ ଏକ ପ୍ରଯୁକ୍ତ-ବସ୍ତୁରେ ମଧ ପରିଣତ କରି ଦେଇଛି । ଇତିହାସର ପଦକ୍ଷେପ ସହିତ ସମଗ୍ର ବିଶ୍ୱରେ ପରିବର୍ତ୍ତନର ପ୍ରବାହ ଅବ୍ୟାହତ । ଏହି ପରିବର୍ତ୍ତନର ଘୂର୍ଣ୍ଣାବର୍ତ୍ତରେ ମନୁଷ୍ୟ ତାର ସ୍ୱୀୟ ଅଭିଜ୍ଞତା ମାଧମରେ ସମୟକୁ ଇତିହାସର ପରିପ୍ରେକ୍ଷୀରେ ନିଜର ମାନସିକ କ୍ଷୁଦ୍ର ଗଣ୍ଡୀରେ ଆବଦ୍ଧ ରଖି ଏହାକୁ ନିଜ ପ୍ରଗତିର ସୋପାନ ଭାବରେ ଚିନ୍ତା କରୁଅଛି; ପ୍ରଗତି ଓ ଅଗ୍ରଗତିର କ୍ରମ ସଦୃଶ ଏହାକୁ ବ୍ୟବହାର କରି ଏହାର ଅନ୍ତର୍ନିହିତ ସତ୍ୟକୁ ଭୁଲିଯାଇ, ଏହାର ମୂଲ୍ୟାୟନକୁ ବ୍ୟାହତ କରି, ସମୟକୁ ସତ୍ୟରୁ

ବିଚ୍ୟୁତ କରିବାକୁ ପ୍ରୟାସ କରୁଅଛି । ଏହିପରି ସୀମିତ ଚିନ୍ତାଧାରା ଯୋଗୁ ସତ୍ୟର ଅର୍ଥ ମଧ୍ୟ ବଦଳାଇବାକୁ ମଣିଷ ଚେଷ୍ଟା କରୁଅଛି । ସତ୍ୟକୁ ଇତିହାସର ଶୃଙ୍ଖଳରେ ଆବଦ୍ଧ ରଖି ଏହାର ଅପଳାପ କରିବାକୁ ପଶ୍ଚାତ୍ପଦ ହେଉନାହିଁ । ପରିବର୍ତ୍ତନର ଘୋର ଘର୍ଘର ନିନାଦରେ ହତ-ଚକିତ ହୋଇ ମନୁଷ୍ୟ କ୍ଷଣଭଙ୍ଗୁରତାକୁ ସତ୍ୟରୂପେ ଧାରଣା କରି, ଅପ୍ରତିରୋଧ୍ୟ ପରିବର୍ତ୍ତନକୁ ଏକ ବିଶ୍ୱସ୍ତ-ମାନରୂପେ ଗ୍ରହଣ କରି ଇତିହାସକୁ ସର୍ବୋଚ୍ଚ ସ୍ଥାନ ଦେଇ ତାହାର ପ୍ରଗତି ମାଧ୍ୟମରେ ସମୟକୁ ଖଣ୍ଡ ବିଖଣ୍ଡକରି ସମୟ ଧାରଣାର ପ୍ରକୃତ ସ୍ୱରୂପ ଉଦ୍‌ଘାଟନରେ ଏକାନ୍ତ ଭାବରେ ବିଫଳ ହୋଇଅଛି । ପ୍ରଗତି ଓ ପରିବର୍ତ୍ତନ ବିଶ୍ୱର ଏକ ଧାରା ହେଲେହେଁ, ସମୟର ଆଦିଅନ୍ତହୀନ, ଅସୀମ, ଅପରିକଳ୍ପନୀୟ ବ୍ୟାପ୍ତିରେ ଏକ ବିନ୍ଦୁମାତ୍ର । ତେଣୁ ସମୟର ଧାରଣା ଏକ ବିନ୍ଦୁରେ ଆବଦ୍ଧ ରହି, ସେହି ମହାସିନ୍ଧୁକୁ ଅବହେଳା କରିବାହେତୁ ମନୁଷ୍ୟର ଜ୍ଞାନ ଅତିକ୍ଷୁଦ୍ର ପରିସରରେ ପ୍ରବାହିତ ହୋଇ ପ୍ରକୃତ ତଥ୍ୟରୁ ତାକୁ ଦୂରକୁ ନେଇ ଯାଉଅଛି । ଇତିହାସକୁ ବା ଏହାର ପରିବର୍ତ୍ତନ-ପ୍ରବାହକୁ ଏକମାତ୍ର ସତ୍ୟ ମଣି, ଏଯୁଗର ମାନବ ସନାତନ ସତ୍ୟ, ଧ୍ରୁବ ଧାରଣା, ଦୃଢ଼ ନିଶ୍ଚିତ ମାନଦଣ୍ଡ ଓ ସର୍ବସାରଗର୍ଭିକ ନୀତିରାଜିକୁ ପରିହାର କରି, ଅଳିକ, ଅନିତ୍ୟ, କ୍ଷଣଭଙ୍ଗୁର ପରିବର୍ତ୍ତନ ଉପରେ ନିର୍ଭର କରି, ଧ୍ୱଂସର ପଥରେ ଧାବମାନ । କାରଣ ଇତିହାସ ଅସୀମ ସମୟ-ପ୍ରବାହ ଧାରଣାକୁ (eternity) ପ୍ରତ୍ୟାଖ୍ୟାନ କରିଛି । ଚିରନ୍ତନ ସତ୍ୟକୁ ଉପେକ୍ଷା କରିଛି । ବିନ୍ଦୁକୁ ସିନ୍ଧୁ ବୋଲି ଭାବୁଛି, କ୍ଷୁଦ୍ର ଅଧ୍ୟାୟ ଗୁଡ଼ିକକୁ ପ୍ରାଧାନ୍ୟ ଦେଇ ।

ଏପରି ସୀମିତ ଚିନ୍ତାଧାରାର ଫଳଶ୍ରୁତି ହିସାବରେ ଅନନ୍ତ ମହାଜୀବନର ଦିଗ୍‌ବଳୟ ମନୁଷ୍ୟର ଦୃଷ୍ଟିରୁ ଅପସାରିତ ହୋଇ, ମନୁଷ୍ୟକୁ ପରିବର୍ତ୍ତନର ବଳୟରେ ଆବଦ୍ଧ ରଖି ତାର ଧ୍ୟାନ ଧାରଣାକୁ ଏକ କ୍ଷୁଦ୍ର ବଳୟରେ ସୀମିତ କରି, କେବଳ ଜାଗତିକ ପରିବର୍ତ୍ତନକୁ ସତ୍ୟବୋଲି ତାହା ମନରେ ଏକ ଦୃଢ଼ ଧାରଣା ତିଆରି କରି, ତାହାର ସ୍ଥୈର୍ଯ୍ୟକୁ ଏକାବେଳେକେ ବିନାଶ କରି, ପରିବର୍ତ୍ତନର ଘୂର୍ଣ୍ଣାବର୍ତ୍ତରେ ମନୁଷ୍ୟକୁ ନିକ୍ଷେପ କରୁଅଛି ଇତିହାସର ପ୍ରବଳ ପରିବର୍ତ୍ତନଶୀଳ ପ୍ରବାହ । ଏହା ଫଳରେ, ସ୍ଥିର ମୂଲ୍ୟମାନ ବିଚ୍ୟୁତ ହୋଇ, ଅସ୍ଥିର ପରିବର୍ତ୍ତନ ସତ୍ୟରୂପେ ଚିତ୍ରିତ ହେଉଅଛି ଇତିହାସଦ୍ୱାରା । ବର୍ତ୍ତମାନର ସୀମିତ ଧାରଣା ସମୟର ମହା-ସମୁଦ୍ରକୁ ଉପେକ୍ଷା କରି ମନୁଷ୍ୟଜାତିକୁ ଭୁଲ ପଥରେ ନେଇ ଯାଉଅଛି । ଏପରି ଧାରଣାର ଭିତ୍ତିହେଲା ଏ ଯୁଗର ମଣିଷ ବହୁ ଉନ୍ନତି ସାଧନକରି, ପାର୍ଥିବ ସୁଖ ଉପଭୋଗ କରି, ବହୁ ନୂଆ ନୂଆ ଆବିଷ୍କାର ଓ ଉଦ୍‌ଭାବନ କରି ବହୁ ଜାଗତିକ ସମୃଦ୍ଧି ସାଧନ କରି ତାହାର ବର୍ତ୍ତମାନ ଐତିହାସିକ ସମ୍ଭାବନା ଉପରେ ପୂର୍ଣ୍ଣ ବିଶ୍ୱାସ ସ୍ଥାପନ କରିଅଛି । ଏହି ସାମୟିକ ଜୀବନ ମାନ ଗୁଡ଼ିକର ଉନ୍ନତିରେ ଅନ୍ଧ ହୋଇ ମାନବ ପରମ ଓ

ଚରମ ସତ୍ୟ ବିଷୟରେ କ୍ରମେ କ୍ରମେ ଉଦାସୀନ ହୋଇ ପଡୁଛି । ଅନନ୍ତ ଜୀବନ କ୍ରମେ କ୍ରମେ ତାହାର ଦୃଷ୍ଟିପଥରୁ ଅପସରି ଯାଉଅଛି । ସେ ସୀମାହୀନ ସମୟର ବ୍ୟାପ୍ତି ବିଷୟରେ ଆଗ୍ରହୀ ନୁହେଁ । କାରଣ ତା ପକ୍ଷରେ ''ବର୍ତ୍ତମାନ'' ହେଉଛି ପରମ ତଥ୍ୟ, ଚରମ ବିଶ୍ୱାସ ଓ ସ୍ଥିର ନିଶ୍ଚିତ ସତ୍ୟ । ସମୟର ଅସୀମ ବ୍ୟାପ୍ତି ତାହାପ୍ରତି କୌଣସି ଆହ୍ୱାନ ସୃଷ୍ଟି କରିପାରୁନାହିଁ । ତାହା ଏ ଯୁଗର ମାନବ ପକ୍ଷରେ ଏକ ଅବାନ୍ତର ବା ଅବାସ୍ତବ ତଥ୍ୟ । ତାହାର ସେଥିରେ କୌଣସି ମାତ୍ର ଆଗ୍ରହ ନାହିଁ । ଏପରି ପୁରୁଣା ଧାରଣା ଏକ ଧାର୍ମିକ ଅବଲମ୍ବନ ହୋଇପାରେ, ମାତ୍ର ଏଯୁଗରେ ଏହାର କୌଣସି କ୍ଷମତାଶୀଳ ପ୍ରବାହ ନାହିଁ । ଏହା ଏକ ପୁରୁଣା ପଛୀ ମାନବର ଅନ୍ଧ ବିଶ୍ୱାସ ହୋଇପାରେ, ଏଯୁଗରେ ଏହାର ଯଥାର୍ଥତା ନାହିଁ । ବାସ୍ତବତା ଉପରେ ଏହା ପ୍ରତିଷ୍ଠିତ ନୁହେଁ । ତେଣୁ ପାଶ୍ଚାତ୍ୟ ମନୀଷିମାନଙ୍କ ମତରେ ''ପରିବର୍ତ୍ତନ'' ହିଁ ଏକ ମାତ୍ର ମୂଲ୍ୟ-ସ୍ତମ୍ଭ, ଜୀବନ ଓ ଏହାର ଅନ୍ତର୍ନିହିତ ସତ୍ୟକୁ ବୁଝିବା ନିମନ୍ତେ ।

ଅନନ୍ତ-ମହାକାଳ ଯଦିବା ଅବଶିଷ୍ଟ ରହିଯାଏ, ତାହାଏକ ଧାର୍ମିକ ଧାରଣାରେ କେବଳ ପର୍ଯ୍ୟବେସିତ । ଏହା କୌଣସି ଗୋଷ୍ଠୀର ବିଶ୍ୱାସ ହୋଇପାରିଥାଏ; ମାତ୍ର ସାମାଜିକ ଓ ଐତିହାସିକ ବାସ୍ତବତା କ୍ଷେତ୍ରରେ ଏହାର ପ୍ରଭାବ ଏକାବେଳେକେ ସ୍ତିମିତ ଓ କେତେଲୋକଙ୍କ ମତରେ ଅର୍ଥହୀନ ମଧ୍ୟ । କାରଣ ପାଶ୍ଚାତ୍ୟ ପଣ୍ଡିତ ମାନେ ଇତିହାସକୁ ପ୍ରମୁଖ ସ୍ଥାନ ଦେଇ, ତାହାର ପ୍ରଗତି ଦିଗରେ ନିଜର ବିଶ୍ୱାସ ଭାଜନତାକୁ ପ୍ରୟୋଗ କରିଅଛନ୍ତି । ସମସ୍ତଙ୍କର ଦୃଷ୍ଟି ଇତିହାସର ତୀର ଆଡକୁ ନିକ୍ଷେପମାଣ । ସମୟ ବିଷୟରେ ଭାରତର ପୁରାତନ ଧାରଣାର ଅବତାରଣା ଏହି ପରିପ୍ରେକ୍ଷୀରେ ଅତ୍ୟନ୍ତ ପ୍ରୟୋଜନୀୟ । ଅଥର୍ବ ବେଦରେ କାଳ ବିଷୟରେ ଉଲ୍ଲେଖ ଅଛି । ''କାଳ''କୁ ସୃଷ୍ଟିକର୍ତ୍ତା, ପାଳନକର୍ତ୍ତା, ଧ୍ୱଂସକର୍ତ୍ତାରୂପେ ବର୍ଣ୍ଣନା କରାଯାଇଅଛି । ଏହାକୁ ସର୍ବଶେଷ ପୁରୁଷରୂପେ ଚିତ୍ରଣ କରାଯାଇ ବିଶ୍ୱ-ସୃଷ୍ଟିର ଆଦି କାରଣ ଭାବେ ଚିନ୍ତା କରାଯାଇଅଛି । ଉପନିଷଦରେ ମଧ୍ୟ କାଳର ଉଲ୍ଲେଖ ରହିଛି । ''ମୈତ୍ରୀ ଉପନିଷଦ''ରେ ସମୟକୁ ଦୁଇ ଭାଗରେ ବିଭକ୍ତ କରାଯାଇଅଛି । ଅଂଶ ପୂର୍ଣ୍ଣ ସମୟ ଓ ଅଂଶହୀନ ସମୟ; ବ୍ୟାବହାରିକ ବା ଅଭିଜ୍ଞତା-ବଳୟଭୁକ୍ତ ସମୟ ଓ ବିଶ୍ୱ ବହିର୍ଭୂତ ସତ୍ତାରୂପେ ସମୟର ପରିକଳ୍ପନା କରାଯାଇଅଛି । ପୁରାଣରେ କାଳର ଧାରଣା ମଧ୍ୟ ଦୁଇ ଭାଗରେ ବିଭକ୍ତ । ପ୍ରଥମ ହେଲା ଖଣ୍ଡ ଓ ଦ୍ୱିତୀୟ ହେଲା ଅଖଣ୍ଡ । ବିଷ୍ଣୁ ପୁରାଣରେ କାଳର ଧାରଣା ସୃଷ୍ଟି, ପାଳନ ଓ ଧ୍ୱଂସରେ ପ୍ରବୃତ୍ତ ଶକ୍ତିରୂପେ ବ୍ୟକ୍ତ । ଭାଗବତ ପୁରାଣରେ କାଳକୁ ଈଶ୍ୱରଙ୍କର ଏକ ବିଶେଷ ଶକ୍ତିରୂପେ ବର୍ଣ୍ଣନା କରାଯାଇଅଛି । ଧ୍ୱଂସପରେ ଏହା ସୁପ୍ତ ଭାବରେ ରହିଥାଏ । ଯେତେବେଳେ ନୂଆ ସୃଷ୍ଟିହୁଏ, ସେତେବେଳେ ଏହା ଶକ୍ତିଦ୍ୱାରା

ସମୁଦ୍ଭୂତହୁଏ । ଏହି ପୁରାଣରେ କାଳକୁ ସ୍ଥୂଳ ଓ ସୂକ୍ଷ୍ମ ଦୁଇ ଭାଗରେ ବିଭକ୍ତ କରାଯାଇଅଛି । ଏହାକୁ ଅନାଦି ଅନନ୍ତ ରୂପେ ବର୍ଣ୍ଣନା କରାଯାଇ ଈଶ୍ୱରଙ୍କ ସହିତ ଯୁକ୍ତ କରାଯାଇଅଛି । ଅର୍ଥାତ୍ ବିଶ୍ୱର ସବୁ କିଛି କାଳର ଅଧୀନ ଏବଂ କାଳ-ଘୂର୍ଣ୍ଣିବାତ୍ୟାରୁ କାହାରି ନିସ୍ତାର ନାହିଁ । ଅନ୍ୟ ପୁରାଣମାନେ କାଳକୁ ଏକ ଅତି କ୍ଷମତାଶାଳୀ ଶକ୍ତି ରୂପେ ବର୍ଣ୍ଣନା କରି ଅଛନ୍ତି । ଦେବତା ରୂପେ ପୂଜ୍ୟବୋଲି ପ୍ରତିପାଦନ କରିଅଛନ୍ତି । ନ୍ୟାୟବୈଶେଷିକ ପଦ୍ଧତିରେ କାଳକୁ ସୃଷ୍ଟି ତରଙ୍ଗର ପଶ୍ଚାତ୍‌ପଟ ରୂପେ ବର୍ଣ୍ଣନା କରାଯାଇଅଛି । ଏହାକୁ ସର୍ବ କାରଣର କାରଣ ରୂପେ ଚିହ୍ନିତ କରାଯାଇଅଛି । ନୈୟାୟିକ ମାନେ କାଳକୁ ଏକ ବାସ୍ତବତା ବୋଲି ଗ୍ରହଣକରି ଏହାକୁ ଅନୁମାନସିଦ୍ଧ ରୂପେ ଚିହ୍ନିତ କରିଅଛନ୍ତି । କାଳକୁ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତରେ ବିଭାଜନ କରାଯାଇଅଛି ବିଭିନ୍ନ ଘଟଣାର ପରିପ୍ରେକ୍ଷୀରେ । ଏହି ଧାରଣା ଉଭୟ ବୈଶେଶିକ ଓ ନୈୟାୟିକମାନଙ୍କ ଦ୍ୱାରା ସ୍ୱିକୃତ । ମାତ୍ର ନବ୍ୟନ୍ୟାୟ, ସମୟକୁ ଈଶ୍ୱରଙ୍କର ଅଧୀନ ରୂପେ ଚିତ୍ରିତ କରିଅଛି । ବେଦାନ୍ତ ମତରେ କାଳର ନିଜସ୍ୱସ୍ଥିତି କିଛି ନାହିଁ । ଏହା ଘଟଣାବଳି ସହିତ ଯୁକ୍ତ ଓ ତାହା ଉପରେ ନିର୍ଭରଶୀଳ । ଅଦ୍ୱୈତ ବେଦାନ୍ତରେ ବ୍ରହ୍ମ, ହେଉଛନ୍ତି ଚରମ ଓ ପରମ ବାସ୍ତବତା; ସର୍ବଶେଷ ସତ୍ୟ । ସ୍ଥାନ, କାଳ, କାରଣ ଇତ୍ୟାଦି ଅଭିଜ୍ଞତାଚିତ୍ରିତ ବାସ୍ତବତା ।  କାଳ ମାୟାର ରୂପାନ୍ତର ମାତ୍ର । ଆଉକିଛି ନୁହେଁ । ବିଶିଷ୍ଟାଦ୍ୱୈତ ମତରେ ବାସ୍ତବତା ତିନିପ୍ରକାର - ଚିତ୍, ଅଚିତ୍ ଓ ଈଶ୍ୱର । ସମୟ ଅଚିତ୍‌ସ୍ତରର ଅନ୍ତର୍ଭୁକ୍ତ । ଏହା ପ୍ରକୃତିର ବ୍ୟାବହାରିକ ପରିବର୍ତ୍ତନମୁଖୀ କାରଣ ବୋଲି ଅଭିହିତ । ଏହା ଅନନ୍ତ । ଏହା ଈଶ୍ୱରଙ୍କ ଶରୀରଭୁକ୍ତ ଓ ତାଙ୍କର କର୍ମକ୍ଷେତ୍ର ବିଶେଷ । ଶୁଦ୍ଧାଦ୍ୱୈତବାଦୀଙ୍କ ମତରେ କାଳର ଈଶ୍ୱରଙ୍କଠାରୁ କୌଣସି ଭିନ୍ନତା ନାହିଁ । ଏହା ବ୍ରହ୍ମନିଜେ । ବୌଦ୍ଧମତରେ ସମସ୍ତ କିଛି କ୍ଷଣସ୍ଥାୟୀ ଓ କ୍ଷଣଭଙ୍ଗୁର ମଧ୍ୟ । ଯେ କୌଣସି ସ୍ଥିତି, ବିଷୟ, ବସ୍ତୁ ଅଳ୍ପକ୍ଷଣସ୍ଥାୟୀ । ସମୟ ଏକ ବହିଁବାସ୍ତବ ପଦାର୍ଥ ନୁହେଁ । ଏହା ମାନସିକ ସତ୍ତା ବିଶେଷ ।

ଭର୍ତ୍ତୃହରିଙ୍କ ମତରେ ପରମ ବାସ୍ତବତା ଶବ୍ଦବ୍ରହ୍ମ । ଶବ୍ଦତତ୍ତ୍ୱରୁ ସମସ୍ତ ବ୍ରହ୍ମାଣ୍ଡର ଉତ୍‌ପତ୍ତି । ମାତ୍ର କାଳ ଏକ ସ୍ୱାଧୀନ ସତ୍ତା । ଏହାର ମାଧ୍ୟମରେ ବିଶ୍ୱସୃଷ୍ଟି ହୋଇଥାଏ । ସବୁ କ୍ରମ ବିବର୍ତ୍ତନଶୀଳ ବସ୍ତୁ, ପ୍ରାଣୀ, ଇତ୍ୟାଦି ପରିବର୍ତ୍ତନର ଅଧୀନ । ''ଅଭ୍ୟାନୁଜ୍ଞା'' ଓ ''ପ୍ରତିବନ୍ଧ'' କ୍ଷମତା ବଳରେ କାଳ କ୍ରମ ପରିବର୍ତ୍ତନର ସୋପାନ ରଚନା କରିଥାଏ । ଚିର ବା ତୀବ୍ର ଗତିରୁ ଅନୁମାନ ହୁଏ ଯେ କାଳ ନିଜର କ୍ଷମତା ବଳରେ ନିଜର କର୍ମ ସମ୍ପାଦନ କରିଥାଏ । ଏହା ଏକ ଅତୀବ ଗତିଶୀଳ ଶକ୍ତି । ଚିର ଓ କ୍ଷିପ୍ରଗତିର ବାହକ ହେଲା କାଳ । ପ୍ରତ୍ୟେକ ବସ୍ତୁ ସମୟଦ୍ୱାରା ପରିଚାଳିତ; ଯଥା, ସୂର୍ଯ୍ୟର ଉଦୟଅସ୍ତର ସମୟାନୁବର୍ତ୍ତିତା, ଗ୍ରହ ନକ୍ଷତ୍ରର ଗତିଶୀଳତା, ସୁପଦ୍ଧତିର ଅନୁସରଣ, ସମଗ୍ର ବ୍ରହ୍ମାଣ୍ଡର ନିୟମାନୁବର୍ତ୍ତିତା

କାଳର ଅମୋଘ ଶକ୍ତିର ପରିଚୟ ଦିଏ । ବସ୍ତୁର ଉତ୍‌ପତ୍ତି ଓ ସ୍ଥିତି, ଆବିର୍ଭାବ ଓ ତିରୋଭାବ କେବଳ ସମୟର ପ୍ରଭାବର ପରିଚାୟକ । ତାଙ୍କ ମତରେ ସମୟହିଁ ଗତିର ଜନକ ବା କାରଣ ଯେପରି ତନ୍ତୁର ସମବାୟ ବସ୍ତ୍ର; ସେହିପରି ସମୟର ବିଭିନ୍ନ ବିଭାଗର ସମବାୟ ହେଲା ‘‘କାଳ’’ । ଏହା ଶାଶ୍ୱତ ଓ ଚିରନ୍ତନ ଶକ୍ତି । ଏହାର ବିଭିନ୍ନ ‘‘ମାତ୍ରା’’ ଯୋଗୁ ଏହା ଭିନ୍ନ ଭିନ୍ନ ରୂପରେ ପ୍ରତିବିମ୍ବିତ । ‘‘ଉନ୍‌ମିଳନ’’ ଓ ‘‘ନିମିଳନ’’ ବସ୍ତୁକୁ ପ୍ରକାଶରେ ସାହାଯ୍ୟ କରେ । ଅତୀତ ଓ ଭବିଷ୍ୟତ ନିଜ ନିଜ ଗର୍ଭରେ ଲୁଚେଇ ରଖନ୍ତି ସବୁ ବସ୍ତୁ, ଘଟଣା ଆଦିଙ୍କୁ ।

ଦିବ୍ୟ ଜୀବନ ସଂଘର ପ୍ରତିଷ୍ଠାତା ସ୍ୱାମୀ ଶିବାନନ୍ଦଜୀଙ୍କ ମତରେ ସମୟ ଏକ ପ୍ରକୃତିଗତ ଅନୁଭୂତି । ଏକ ମନସୃଷ୍ଟ ବିଷୟ. ଘଟଣାର ଆକାର ପ୍ରକାର ଉପରେ ସମୟ ନିର୍ଭର କରେ । ମନ ଯେତେବେଳେ ଅଭିନିବିଷ୍ଟ ରହେ, ସେତେବେଳେ ଅଧଘଣ୍ଟା ସମୟ ପାଞ୍ଚମିନିଟ ପରି ମନେହୁଏ । ମନ ଯେତେବେଳେ ଅସ୍ଥିର ଥାଏ ସେତେବେଳେ ଅଧ ଘଣ୍ଟା ସମୟ ପାଞ୍ଚ ମିନିଟ ପରି ମନେହୁଏ । ସ୍ୱପ୍ନରେ ୫୦ ବର୍ଷର ଘଟଣା ଦଶମିନିଟରେ ଘଟିଯାଏ । ମନର ଖେଳ ଭିତରେ କେତେବେଳେ ଗୋଟିଏ କଳ୍ପ ମୁହୂର୍ତ୍ତପରି ମନେହୁଏ । ପୁଣି କେତେବେଳେ ଗୋଟିଏ ମୁହୂର୍ତ୍ତ କଳ୍ପପରି ମନେହୁଏ । ସମୟ ହେଉଛି ମନର ଏକ ପ୍ରକୃତି । ଅନ୍ୟାନ୍ୟ ଜାଗତିକ ବସ୍ତୁ ପରି, ମନ ମଧ ମାୟିକ । ସମୟ ହେଉଛି ମନର ଏକ ଧାରଣା । ମନର ସହାୟତା ବିନା ସମୟର ଧାରଣା କରିହେବ ନାହିଁ । ମନ-ନାଶ କରିଦେଲେ, ମନୁଷ୍ୟ ସମୟର ଆଗକୁ ଚାଲିଯାଇପାରିବ । ଏହାହେଲା ଏହି ପ୍ରଜ୍ଞା-ପୁରୁଷଙ୍କର ତପସ୍ୟାଲବ୍ଧ ସତ୍ୟର ସ୍ପଷ୍ଟିକରଣ; ଶିବାନନ୍ଦଜୀଙ୍କ ଦିବ୍ୟ-ଦୃଷ୍ଟି ସମ୍ବଳିତ ତଥ୍ୟରାଜି ।

ବିଭିନ୍ନ ଋଷିମାନଙ୍କର ଭିନ୍ନ ଭିନ୍ନ ମତରୁ ଏହି ତଥ୍ୟ ନିର୍ଗତ ହେଲା ଯେ ସମୟ ବିଷୟରେ ନାନା ମୁନିଙ୍କର ନାନାମତ । ‘‘ନାନାମୁନିନାଂ ମତୟଶ୍ଚ ଭିନ୍ନା’’। ଅଧିକାଂଶ ଶାସ୍ତ୍ର ସମୟକୁ ଈଶ୍ୱରଙ୍କ ଏକ ପ୍ରକାଶ ରୂପରେ ବର୍ଣ୍ଣନା କରିଅଛନ୍ତି, ଈଶ୍ୱରଙ୍କ ଏକ ସ୍ୱରୂପ ରୂପେ ଚିତ୍ରଣ କରିଅଛନ୍ତି । କେହି କେହି ଏହାକୁ ମାୟାର ଉପକରଣରୂପେ ମଧ ବର୍ଣ୍ଣନା କରିଛନ୍ତି, ଶିବାନନ୍ଦଜୀ ଏହାକୁ ମନର ପ୍ରକୃତି ବୋଲି କହିଛନ୍ତି । ସମୟ ବିଷୟରେ ସଂଜ୍ଞାତୀତ ନିଶ୍ଚୟତା ପ୍ରତିପାଦିତ ହୋଇନାହିଁ । କେବଳ ଏହା ପରିକଳ୍ପନାର ବଳୟରେ ଆବୃତ ହୋଇ ରହିଅଛି । ଏହା ସୃଷ୍ଟିର ଆଦିକାଳରୁ ବିଷମ ରହସ୍ୟାବୃତ ଏକ ବିଷୟ ବସ୍ତୁ । ବିଜ୍ଞାନର ଶତଚେଷ୍ଟାରେ ମଧ ପ୍ରହେଳିକାର ଅନ୍ତରାଳରୁ ମୁକ୍ତ ହୋଇ ପାରିନାହିଁ । ଏହା ଏକ ଜଟିଳଗ୍ରନ୍ଥିରେ ଆବଦ୍ଧ; ସ୍ପଷ୍ଟ ହୋଇ ମଧ ଅସ୍ପଷ୍ଟ, ଜ୍ଞାତ ହୋଇ ମଧ ଅଜ୍ଞାତ, ପ୍ରସାରିତ ହୋଇ ମଧ ଅପ୍ରତିରୋଧ, ବିକଶିତ ହୋଇ ମଧ ତମସାବୃତ୍ତ; ଏକ ଅପରିଜ୍ଞେୟ ମାତ୍ରା ଏହି ମହାବିଶ୍ୱ-ସୃଷ୍ଟିର; ଏକ ଅତି ଅଦ୍ଭୁଦ ସତ୍ତା ଚିରନ୍ତନ ସତ୍ୟର । ଏହାର ପରିମାପରେ

ଅନ୍ତର୍ନିହିତ ଅଛି ଉନ୍ନତିର ସୋପାନ; ଏହାର ମାପକାଠିରେ ଜଣାପଡୁଛି ମନୁଷ୍ୟର ଭୌତିକ ପ୍ରଗତି, ଅଗ୍ରଗତି, ସାଫଲ୍ୟ ଓ ଉତ୍କର୍ଷ । ସମୟର ସହାୟତା ବିନା ଆର୍ଥିକ, ଜାଗତିକ, ବାସ୍ତବିକ ପଦକ୍ଷେପରେ ରୂପାୟନ ଅଭାବନୀୟ । ମାତ୍ର ଏହା କେଉଁଠାରୁ ବାହାରି କେଉଁ ଆଡକୁ ଯାଉଛି, କେବେ ଉଦୟ ହୋଇଛି ବା କେବେ ଅସ୍ତହେବ ବା ଏହାର ଆଦି ବା ଅନ୍ତ ନଥିଲା ବା ଭବିଷ୍ୟତରେ ମଧ ନିରୂପିତ ହୋଇପାରିବ ନାହିଁ ଏହିସବୁ ପ୍ରଶ୍ନର ଉତ୍ତର ମିଳିନାହିଁ, ସେ ବିଷୟରେ ସଦାଚେଷ୍ଟିତ ଜ୍ଞାନୀ ଗୁଣି-ମାନଙ୍କୁ ।

ବିଜ୍ଞାନୀମାନେ ଶତଚେଷ୍ଟା ସତ୍ତ୍ୱେ ଅନନ୍ୟ-ଏକକ-ତତ୍ତ୍ୱ ବର୍ତ୍ତମାନ ସୁଦ୍ଧା ଆବିଷ୍କାର କରିପାରିନାହାନ୍ତି । କିନ୍ତୁ ସେମାନଙ୍କର ଦୃଢ଼-ଧାରଣା ଯେ ସେହି ଚରମ-ସର୍ବଶେଷ ତତ୍ତ୍ୱ ଦିନେ ନା ଦିନେ ଆବିଷ୍କୃତ ହୋଇ ସେହି ସର୍ବଶ୍ରେଷ୍ଠ ସନ୍ତୁଳିତତତ୍ତ୍ୱ ସାହାଯ୍ୟରେ ସବୁ ରହସ୍ୟର ସମାଧାନ ହୋଇପାରିବ । ସବୁତତ୍ତ୍ୱର ଜନନୀ ଏହି ଏକକ ମହାତତ୍ତ୍ୱ ସବୁ ସନ୍ଦେହର ନିରସନ କରିବ । ଈଶ୍ୱର-ତତ୍ତ୍ୱରେ ଅବିଶ୍ୱାସୀ ବିଜ୍ଞାନୀମାନେ ଐତିହ୍ୟ ଓ ଭୌତିକ ତତ୍ତ୍ୱରେ ବିଶେଷ ଆସ୍ଥା ପୋଷଣ କରନ୍ତି । ଏପରି ଏକ ସର୍ବସାରତତ୍ତ୍ୱ ମଧ ଈଶ୍ୱରଙ୍କଠାରୁ ନିର୍ଗତ ହେବାର କୌଣସି ବାଧାନାହିଁ । ମାତ୍ର ଈଶ୍ୱର-ତତ୍ତ୍ୱ ବ୍ୟାବହାରିକ ଯନ୍ତ୍ର ସାହାଯ୍ୟରେ ବୈଜ୍ଞାନିକ ଉପାୟରେ ପ୍ରାମାଣିକ ସାକ୍ଷ୍ୟଦ୍ୱାରା ପ୍ରତିଷ୍ଠିତ ନହେବା ପର୍ଯ୍ୟନ୍ତ ବିଜ୍ଞାନୀମାନେ ତାହାକୁ ସର୍ବାନ୍ତକରଣରେ ଗ୍ରହଣ କରିବାର ଆଶା ଅନୁଜ୍ଜ୍ୱଳ । ଫଳରେ ଏହି ବିଷୟରେ ଉଲ୍ଲେଖ ବିଜ୍ଞାନୀ ମହଲରେ ଅପାଂକ୍ତେୟ ହୋଇ ରହିଅଛି । ''ଈଶ୍ୱର ଶବ୍ଦ'' ବହୁଳ ଭାବରେ ଚର୍ଚ୍ଚିତ ହେଲେମଧ, ତାହା ବିଶ୍ୱାସନୀୟତାର ପରିପ୍ରକାଶ ନ ହୋଇ ସନ୍ଦେହର ବଳୟରେ ସୀମିତ ହୋଇ ରହିଅଛି ।

ମାତ୍ର ଭାରତୀୟ ଚିନ୍ତାଧାରାରେ ପାଶ୍ଚାତ୍ୟର ଅମୋଘ ପ୍ରଭାବ ପଡିଥିଲେ ମଧ, ଭାରତୀୟ ମାନଙ୍କର ମାନସିକ ଦିଗ୍‌ବଳୟ ଭୂମାରୁ ସଂକୁଚିତ ହୋଇ ଏକାବେଳେ କ୍ଷୁଦ୍ର ଆବେଷ୍ଟନିରେ ଆବଦ୍ଧ ହୋଇନାହିଁ । ଭାରତୀୟ ଚିନ୍ତାମଣ୍ଡଳରେ ସନାତନତ୍ତ୍ୱର ବର୍ଣ୍ଣାଢ୍ୟ ଚିତ୍ରାବଳି ବର୍ତ୍ତମାନ ସୁଦ୍ଧା ଭାସମାନ ଅବସ୍ଥାରେ ଅଛି । ତେଣୁ ଦିକ୍‌ମଣ୍ଡଳ ଉଦ୍‌ଭାସିତ, ବିଶେଷ ଭାବରେ ସମୃଦ୍ଧ, ସ୍ଥିର-ନିଶ୍ଚିତ ମୂଲ୍ୟମାନ ଦେଦୀପ୍ୟମାନ ହୋଇ ରହିଅଛି । ମୌଳିକଦୃଷ୍ଟି ଭଙ୍ଗିର ଉଜ୍ଜ୍ୱଳ ଆଭାରେ ଅବିଚଳିତ ସୁଦୃଢ଼ ବିଶ୍ୱାସ ଏବେ ମଧ ଅବିସଂବାଦିତ ଭାବରେ ପ୍ରୋଥିତ ଅଛି । ସମୟର ''ମହାସିନ୍ଧୁ ଧାରଣାରୁ'' ଭାରତୀୟମାନେ ବିଚ୍ୟୁତ ହୋଇନାହାନ୍ତି । ଫଳରେ ଜୀବନର ସ୍ୱଳ୍ପ ଅସ୍ଥିରତା ପରିବର୍ତ୍ତେ ସ୍ଥିରତାଦ୍ୱାରା ପ୍ରତିଷ୍ଠିତ, ଖଣ୍ଡିତ ଧାରଣାରୁ ମୁକ୍ତି ଲାଭ କରି ଏହି ଧାରଣା ଅଖଣ୍ଡ ପ୍ରତି ଧାବିତ; କ୍ଷୁଦ୍ରତାରୁ ମୁକ୍ତ ହୋଇ ଅନାଦି ଅନନ୍ତର ସନ୍ଧାନରେ ଲିପ୍ତ । ଅନ୍ଧକାରରୁ ଆଲୋକ ଆଡକୁ ପ୍ରସାରିତ; ବାସ୍ତବତାର ପ୍ରମୁଖସତ୍ତା ଉନ୍ମୋଚନରେ ପ୍ରବୃତ୍ତ । ସେହି ଆଲୋକରେ ''ସମୟ''

ଈଶ୍ୱରଙ୍କର ସର୍ବଶ୍ରେଷ୍ଠ ସତ୍ତାରୂପେ ପ୍ରକଟିତ । ଭାଗବତରେ ବର୍ଣ୍ଣିତ ଈଶ୍ୱରହିଁ କାଳ । ଗୀତାରେ ଈଶ୍ୱର ନିଜକୁ କାଳରୂପେହିଁ ପ୍ରକଟ କରିଛନ୍ତି । ଏହି ସତ୍ୟର ଗଭୀରତା ବର୍ତ୍ତମାନର ମାନବଜାତି କଳନା କରିପାରିନାହିଁ । ଭବିଷ୍ୟତରେ କରିବାର ଆଶା ।

ମହାବିଶ୍ୱ ଅଧ୍ୟାୟରେ ଚର୍ଚ୍ଚିତ ଶେଷତତ୍ତ୍ୱ ''ମହାକାଳ'' ପ୍ରତି ମଧ୍ୟ ପ୍ରଯୁଜ୍ୟ । କାରଣ ସତ୍ୟ ଏକ ଏବଂ ଅଦ୍ୱିତୀୟ । ବିଜ୍ଞାନର ପ୍ରୟୋଗଶାଳାରେ କାଳର ଅନ୍ତର୍ନିହିତ ସତ୍ତା ଉଭା ନହେଲା ବୋଲି ଯେ ତାହାର ଅସ୍ତିତ୍ୱ ନାହିଁ, ଏପରି ଧାରଣା ଭ୍ରମାତ୍ମକ । କାରଣ ''ଆବାଙ୍‌-ମାନସ-ଗୋଚର ତତ୍ତ୍ୱ'' ପ୍ରୟୋଗ ଶାଳାରେ ଯନ୍ତ୍ରରେ ପ୍ରମାଣିତ ହେବାର ସମ୍ଭାବନା ଉଜ୍ଜ୍ୱଳ ନୁହେଁ । ଏହି ତତ୍ତ୍ୱର ମୌଳିକ ଉପାଦାନ ଭିନ୍ନ, ପ୍ରୟୋଗର ପ୍ରଣାଳି ସୂକ୍ଷ୍ମ; ଧାରଣାର ବସ୍ତୁ ପୃଥକ୍, ପଦ୍ଧତି ଅଭାବନୀୟ ଧରଣର; ଏବଂ ଧାରା ଅନନ୍ୟ ସାଧାରଣ ପ୍ରକ୍ରିୟାରେ ପ୍ରବାହିତ । ସେହି ପ୍ରକ୍ରିୟା ଅବଲମ୍ବନ ନ କଲେ ସିଦ୍ଧିଲାଭ ଅନିଶ୍ଚିତ । ଫଳରେ ସମୟ ବିଷୟରେ ସତ୍ୟରେ ଉପନୀତ ହେବାର ଆଶା ସୁଦୁର-ପରାହତ ।

ବୈଜ୍ଞାନିକ ଗବେଷଣାରେ ଏହାର ସ୍ୱରୂପ ଉଦ୍‌ଘାଟନ ନହେଲେ ମଧ, ଏହାର ଚିରନ୍ତନ ସତ୍ତା ନିଜେନିଜେ ଉଦ୍‌ଭାସିତ ହୋଇ ରହିଅଛି । କାଳ ବକ୍ଷରେ ଯୁଗ ଯୁଗଧରି ଘଟଣାରାଜି ଅନବରତ ଘଟି ଚାଲିଛନ୍ତି ଓ ଚାଲିଥିବେ; କୋଟି କୋଟି ଛାୟାପଥ ଘୂରି ବୁଲୁଛନ୍ତି ଏବଂ ବୁଲୁଥିବେ । ଅନନ୍ତ-ପ୍ରସାରଣ-ଶୀଳ ମହାକାଳର ଆଦି କେଉଁଠି ଏହା ବୁଝିବା ଅତ୍ୟନ୍ତ ଦୁରୁହ । କେବଳ ସେହି ସବୁ ବ୍ରହ୍ମାଣ୍ଡର ଆଦି-ମୂଳ ସେହି ଚିରନ୍ତନ ସତ୍ତାକୁ ବୋଧବୃତ୍ତର ପରିସର ମଧରେ ଅନ୍ତର୍ଭୁକ୍ତ କଲେ, ତାହାରି ''ମାତ୍ରା'' ଭାବରେ ସ୍ଥାନ, କାଳ, କାରଣ, ଆଲୋକ, ଆକାଶ ଇତ୍ୟାଦିର ଉତ୍‌ପତ୍ତି, ବିକାଶ, ସଂବୃଦ୍ଧି ଓ ପ୍ରସାରଣକୁ ବୁଝିବାର ରାସ୍ତା ପ୍ରଶସ୍ତ ହୋଇଥାଏ । ସେହି ସର୍ବଶ୍ରେଷ୍ଠ ସନ୍ତୁଳିତ ତଥ୍ୟର ମାଧମରେ କ୍ଷୁଦ୍ରାତିକ୍ଷୁଦ୍ର ମାନବ ବୁଝିପାରେ ମହତ୍ତର ତଥ୍ୟରାଜି; ହୃଦୟଙ୍ଗମ କରିପାରେ ସତ୍ୟର ସ୍ୱରୁପ । ଶେଷ ମୀମାଂସା ତର୍କରେ ନୁହେଁ; ଗବେଷଣା ଗାରରେ ନୁହେଁ, ପରୀକ୍ଷା ନିରୀକ୍ଷାରେ ନୁହେଁ । ଏହା ଆତ୍ମ ଉପଲବ୍ଧିରେ ପର୍ଯ୍ୟବସିତ । କାରଣ ଯେଉଁଠି ଇନ୍ଦ୍ରିୟାଭୁତିର ପ୍ରବେଶ ନାହିଁ, ସେଠାରେ ପ୍ରଜ୍ଞାର ପ୍ରୟୋଗ ଅବଶ୍ୟମ୍ଭାବି ହୋଇପଡେ । ଏହି ଉଚ୍ଚତର ସୋପାନର ନିର୍ମାଣ ପଥରେ ଈଶ୍ୱରଙ୍କର ନିଜର ବିଭୁତି-ବିକାଶ ସାହାଯ୍ୟ କରିଥାଏ । ଶ୍ରୀମଦ୍ ଭଗବଦ୍‌ଗୀତାର ଦଶମ ଅଧ୍ୟାୟରେ କାଳ ବିଷୟରେ ଶ୍ରୀକୃଷ୍ଣ କହିଛନ୍ତି - ''କାଳଃ କଳୟତା ମହମ୍'' ''ଗଣକମାନଙ୍କ ମଧରେ ମୁଁ କାଳ ।'' ଯେଉଁଠି ମଣିଷର ବୁଦ୍ଧି ବୃତ୍ତିର ପ୍ରୟୋଗ ସମ୍ଭବ ନୁହେଁ, ସେଠାରେ ଈଶ୍ୱରଙ୍କର ଆଲୋକ ପଥ ଦେଖାଇଥାଏ । ତାଙ୍କର ନିର୍ଦ୍ଦେଶହିଁ ସର୍ବ-ଶେଷ-ତତ୍ତ୍ୱର ନିୟାମକ ।

# ମହାଜୀବନ

"A prayer, a master act, a king idea Can link man's strength to transendent force; then miracle is made the common rule. One mighty deed can change the course of things. A lonely thought becomes ommipotent."

Sri Aurobindo in "Savitri"

ଏହି ମହାବିଶ୍ୱରେ ସର୍ବଶ୍ରେଷ୍ଠ ମହତ୍ୱପୂର୍ଣ୍ଣ ''ଘଟଣା'' ହେଲା ଜୀବନର ପରିପ୍ରକାଶ । ଜଡ ସୃଷ୍ଟିର କୋଟି କୋଟି ବର୍ଷପରେ ଚଳ-ଚଞ୍ଚଳ, ସଦାପ୍ରବହମାନ, ସଦାଦେଦୀପ୍ୟମାନ, ଅନନ୍ତ-ତରଙ୍ଗାୟିତ, ଅନବଦ୍ୟ ପ୍ରାଣପ୍ରାଚୁର୍ଯ୍ୟଭରା ଜୀବନର ଉଦୟ, ଛାଣୁତ୍ୱର ଅବସାନ କରି ଏକ ଅସୀମ-ଶକ୍ତି-ପରିପୂର୍ଣ୍ଣ ଆନନ୍ଦର ଲହରୀ ସମଗ୍ରବିଶ୍ୱରେ ଅଣୁରଣିତ କରି, ଏକ ମହନୀୟ ମାତ୍ରା ଯୋଗକରିଅଛି । ହିମବାହ ଉତ୍ତୁଙ୍ଗ ଶିଖର ପର୍ବତମାଳା, ସୁନୀଳ ବାରିଧିର ଉର୍ମିମାଳା, ସ୍ନିଗ୍ଧ ଚନ୍ଦ୍ରାଲୋକ, ଦୂର ଚକ୍ରବାଳର ସୂର୍ଯୋଦୟ ଓ ସୂର୍ଯ୍ୟାସ୍ତ ସମୟର ଅନୁପମ ଶୋଭା, ପ୍ରକୃତିର ସବୁଜ ବନାନୀ, ନଦୀର ଉଚ୍ଛଳ ତରଙ୍ଗ ଇତ୍ୟାଦିର ବିନ୍ୟାସର ମୂଲ୍ୟ ବୁଝିବ କିଏ ? ଜଡର କ୍ଷମତା କେବଳ ପ୍ରସାରର; ଉପଭୋଗ କରିବା ନିମନ୍ତେ ଚୈତନ୍ୟର ପ୍ରକାଶ ଏକାନ୍ତ ପ୍ରୟୋଜନୀୟ । ତେଣୁ କ୍ରମବିକାଶରେ ''ଜୀବନ''ର ଜନ୍ମ ଓ ତାର କ୍ରମପରିଣାମ ଏକ ଅଭାବନୀୟ ମୂଲ୍ୟ-ଭିତ୍ତିକ ଉନ୍ମେଷ ଓ ସୁଦୂର ପ୍ରସାରୀ ଏକ ବାର୍ତ୍ତାବହ ଆଖ୍ୟାନ ଏହି ପ୍ରହେଳିକା ପୂର୍ଣ୍ଣ ମହାବିଶ୍ୱର । ଜୀବନର ସୋପାନ ବିଷୟରେ ବ୍ୟାଖ୍ୟା ପ୍ରୟୋଜନୀୟ ।

ଜୀବନର ପ୍ରଥମ ସୋପାନ ହେଲା କ୍ରିୟାଶୀଳ କ୍ଷମତା, ବୃଦ୍ଧି ଓ ପ୍ରଜନନ କ୍ଷମତା, ପରିମଣ୍ଡଳ ସହିତ ଖାପଖୁଆଇ ନିଜର ସଂରକ୍ଷଣ କ୍ଷମତା, ଜଟିଳ ପରିବର୍ତ୍ତନଶୀଳ ସ୍ରୋତ ସହିତ ନିଜକୁ ନିମଜ୍ଜିତ କରି ଉନ୍ନତସ୍ତରକୁ ଉଠିବାର କ୍ଷମତା, ପରିବେଶ ସହିତ ଚିରନ୍ତନ ଓ ନିରନ୍ତର ଭାବରେ ମିଳିତହୋଇ ସମୃଦ୍ଧ କରିବାର କ୍ଷମତା ଇତ୍ୟାଦି । ସବୁଠାରୁ ମୂଲ୍ୟବାନ ପଦକ୍ଷେପ ହେଲା ପ୍ରଜନନ । ଗୋଟିଏ କୋଷରୁ କୋଟିଏ କୋଷର ନିର୍ମାଣ । କୋଷ ନିର୍ମାଣ ପଦ୍ଧତିରେ genes ବା neuclic acid ର କର୍ମବହୁଳତା ଦୃଷ୍ଟିଗୋଚର ହୁଏ । ଏହି କୋଷ ଗୁଡ଼ିକ ପରମ୍ପରା ସହିତ ମିଳିତ ହୋଇ ପରବର୍ତ୍ତୀ ବଂଶକୁ ପ୍ରବାହିତ ହୁଏ । ପରିବେଶର ପ୍ରଭାବ ଅନୁସାରେ ଏହି ଜୀବନକୋଷ ପରିବର୍ତ୍ତନ-ମାଧମରେ ନୂଆ ନୂଆ ବିଭାବରେ ପ୍ରଭାବିତ ହୋଇ ନୂଆ ନୂଆ ଗୁଣ ରାଜିର ବିକାଶ କରେ । ଜୀବନର ପ୍ରବାହ-ପଦ୍ଧତିରେ ପ୍ରଧାନତଃ ପ୍ରଭାବଶାଳି ଗୁଣରାଜି ହେଲା ପରିବେଶ ସହିତ ଯୋଗାଯୋଗ ରଖି ନିଜକୁ

ପରିବର୍ତ୍ତନ କରି ବଞ୍ଚି ରହିବା ଏବଂ ପରିମଣ୍ଡଳ ସହିତ ଅହରହ ଖାପଖୁଆଇ ନିଜର ସଂରକ୍ଷଣ କରିବା । ବହୁପ୍ରଜନ୍ମ ଧରି, ଏହିପରି ପରିବର୍ତ୍ତନଶୀଳ ପରିବେଶ ସହିତ ସଂଯୋଗ ରକ୍ଷା କରି "ଜୀବନ" ଉନ୍ନତିର ସୋପାନରେ ଅଗ୍ରସର ହୋଇ ଚାଲିଛି ଆବହମାନ କାଳରୁ ଏବଂ ଚାଲିଥିବ ମଧ୍ୟ । ବିବର୍ତ୍ତନବାଦ ନିସୃତ ମନୁଷ୍ୟର କ୍ରମବିକାଶ ବିଷୟରେ ଡାରଉଇନ୍ ଲିଖିତ Origin of Species ୧୮୫୯ରେ ପ୍ରକାଶପରେ ଚିନ୍ତାରାଜ୍ୟରେ ମହାବିକ୍ଷୋଭ ଜନ୍ମନେଲା । କାରଣ ଆଗରୁ ପଣ୍ଡିତମାନେ ଜୀବନଧାରାରେ ମନୁଷ୍ୟର ଓ ପ୍ରାଣୀମାନଙ୍କର ସ୍ଥିତି ଅପରିବର୍ତ୍ତନୀୟଭାବେ ମାନିନେଇଥିଲେ । ବାଇବେଲରେ କଥିତ "ସୃଷ୍ଟି-ଗାଥା"କୁ ସମସ୍ତେ ବିଶ୍ୱାସ କରୁଥିଲେ । ଭଗବାନ କରିଥିବା ସୃଷ୍ଟିର ବିଶ୍ୱାସ ଅତି ସୁଦୃଢ଼ ମାତ୍ରାରେ ମନୁଷ୍ୟ ମନରେ ଶତାବ୍ଦି ଶତାବ୍ଦି ଧରି ପ୍ରୋଥିତ ହୋଇଥିଲା । ଏହାର ବିରୁଦ୍ଧାଚରଣ ସମାଜରେ ଏକ ଘୂର୍ଣ୍ଣାବର୍ତ୍ତର ସୃଷ୍ଟି କଲା । ଏହା ଧର୍ମଭାବ ମୂଳରେ କୁଠାରାଘାତ କଲା ।

ଡାରଉଇନ କହିଲେ ଯେ ପ୍ରକୃତିର ପ୍ରଗତି ପଥରେ କ୍ରମବିକାଶ ବା evolution ପ୍ରାକୃତିକ ସଂଗ୍ରହ ବା ବଛେଇ (Natural Selection) ଉପରେ ସମ୍ପୂର୍ଣ୍ଣଭାବେ ନିର୍ଭରଶୀଳ । ସମୟର ସୁଦୃଢ଼ପଦକ୍ଷେପରେ ଜୀବନର ଉନ୍ନତି ନିର୍ଭର କରେ ଜୀବକୋଷର ପରିବର୍ତ୍ତନଶୀଳ ପରିମଣ୍ଡଳ ସହିତ ସମ୍ପୂର୍ଣ୍ଣ ସଂଯୋଗ ରକ୍ଷା କରି ନିଜର ପରିବର୍ତ୍ତନ ସାଧନ କରିବା ଉପରେ । ପରିବେଶର ପ୍ରଭାବ ଅତ୍ୟନ୍ତ କ୍ଷମତାଶୀଳ । ତାହା ସହିତ ଖାପନଖୁଆଇ ଚଳିବା ଅସମ୍ଭବ । ଫଳ ହେବ ମୃତ୍ୟୁ । ଜୀବକୋଷ ଏହି ପରିଣାମର କଥା ଜାଣି ନିଜକୁ ପରିବର୍ତ୍ତନ କରିବାକୁ ଚେଷ୍ଟା କରେ । କୋଟି କୋଟି ବର୍ଷ ଧରି ଏହି ପଦ୍ଧତି ସୁଚାରୁ ରୂପେ ଫଳବତୀ ହୁଏ । ଶେଷରେ ଜାତହୁଏ ଏକ ପ୍ରବାହ-ପ୍ରବଣ ଜୀବ-କୋଷ ଯାହା ଏହି ପରିବେଶ ନିମନ୍ତେ ଉପଯୋଗୀ । ତାହାହିଁ ବଞ୍ଚିରହେ । ଅନ୍ୟଧରଣର କୋଷ ବିଲୟପ୍ରାପ୍ତ ହୁଅନ୍ତି ।

"କ୍ରମବିକାଶ" କେବଳ ଗୋଟିଏ କାରଣରୁ ହୋଇଥାଏ, ଏପରି ଧାରଣା ଭ୍ରମାତ୍ମକ । ଏହା ଗୋଟିଏ ମାତ୍ର ପଦ୍ଧତିରୁ ଅନୁସୃତ ନୁହେଁ । ବର୍ତ୍ତମାନ ବିଜ୍ଞାନର ପ୍ରସାର ବିଭିନ୍ନ ବିଭାବରେ ଏତେରୂପରେ ପରିବେଶିତ ହୋଇଅଛି ଯେ ସେହି ସମସ୍ତ ବିଦ୍ୟା (ଯଥା ଜୀବ-ତତ୍ତ୍ୱ, ରସାୟନ ବିଜ୍ଞାନ, ପରିବେଶତତ୍ତ୍ୱ, ଉଦ୍ଭିଦତତ୍ତ୍ୱ, ପୁରାତତ୍ତ୍ୱ ଇତ୍ୟାଦିରୁ) ନିସୃତ ବହୁ ତଥ୍ୟ ନୂତନ କ୍ରମବିକାଶ ଧାରଣାର ପରିପୁଷ୍ଟି ସାଧନ କରି ଅଛନ୍ତି । ବିଂଶ ଶତାବ୍ଦିର ଜ୍ଞାନଭଣ୍ଡାରକୁ ଜୀବତତ୍ତ୍ୱର ଅବଦାନ ଅବିସ୍ମରଣୀୟ ।

ଏହି ପ୍ରାକୃତିକ-ସଂଗ୍ରହଶୀଳତା ବଛାବଛି ମାଧ୍ୟମରେ ଏକ ବିରାଟ ପଟ'ଭୂମି ସୃଷ୍ଟି କରି ଅଛି । ପରିବର୍ତ୍ତନଶୀଳ ଜଗତରେ ମାନବ ସମାଜ ନିଜକୁ ସଂରକ୍ଷଣ କରିବା

ନିମନ୍ତେ ନିରନ୍ତର ଚେଷ୍ଟା କରି ଚାଲିଛି । ଏହି ପ୍ରାକୃତିକ ସଂରକ୍ଷଣ ପଦ୍ଧତି ଓ ସଂଗ୍ରହଶୀଳତା ନିଜର ସ୍ଥାନକୁ ଅକ୍ଷୁର୍ଣ୍ଣ ରଖି ପରିବର୍ତ୍ତିତ ପରିବେ୍ଶ ସହିତ ଖାପଖୁଆଇ ଅଗ୍ରସର ହେଉଅଛି । ଏହାଛଡା ଜୀବକୋଷାବଳିକୁ ଆଂଶିକ ପରିବର୍ତ୍ତିତ କରି ନୂଆ ପରିବେଶ ସହିତ ମିଳିତ କରି ଏକ ନୂତନ ଧାରାର ପ୍ରଚଳନ ମଧ କରିପାରୁଛି । ଏହା ଏକ ଅତି ରହସ୍ୟମୟ ଅଧାୟ ଜୀବ-ଜଗତର, ଜୀବ-ପ୍ରଗତି-ଇତିହାସର, ଏକ ସନ୍ତୁଳିତ ପଦ୍ଧତି ମହା-ଜୀବନର । ଏହା ନିଜକୁ ଅତୁଟ ଅବସ୍ଥାରେ ରଖି ନୂଆ ରାସ୍ତାରେ ନିଜକୁ ଖାପଖୁଆଇ ଅଗ୍ରସର ହୋଇପାରେ । ଅର୍ଥାତ୍ ପୁରାତନ ଓ ନୂତନର ଏକ ଅପୂର୍ବ ସମନ୍ୱୟ ଏହି ଜୀବ-କୋଷ ପଦ୍ଧତିର । ଏହି କ୍ରମବିକାଶ ପଦ୍ଧତି ଏକ ପ୍ରସାରଣଶୀଳ ଧାରା । ଏହାର ଅନ୍ତହୋଇନାହିଁ । ଏହା କ୍ରମବର୍ଦ୍ଧମାନ ହୋଇ ରହିଛି, ବିଭିନ୍ନ ପରିବର୍ତ୍ତନଯୋଗୁ ଓ ପରିବେଶର ପ୍ରଭାବ ଅନୁସାରେ । ଜୀବକୋଷକୁ ବହୁ ବାଧାର ସମ୍ମୁଖୀନ ହେବାକୁ ପଡୁଅଛି । ଅଛି ରୋଗ, ଅଛି ଆକ୍ରମଣ, ଅଛି ଦ୍ୱନ୍ଦ-ଯୁଦ୍ଧ, ଅଛି ସ୍ଥାନ ପରିବର୍ତ୍ତନ, ଅଛି ମୃତ୍ୟୁର ବିଭିଷିକା, ଅଛି ଜଳବାୟୁର ପ୍ରଭାବ, ଗ୍ରହନକ୍ଷତ୍ର ମାନଙ୍କର ପ୍ରଭାବ, ଅଛି ସୂର୍ଯ୍ୟର ବିକିରଣ, ପ୍ରାକୃତିକ ବିପର୍ଯ୍ୟୟ, ଯଥା ଝଡ ଝଞ୍ଜା, ବନ୍ୟା, ବ୍ୟୁତ୍ପାତ, ଅଛି ତୀବ୍ର ପ୍ରତିଯୋଗୀତା, ଅଛି ପାଣି ପବନର ବିକୃତି, ମଳିନତା, ଦୂଷଣ ପ୍ରଭୃତି ବହୁବହୁ ବିପଦ ଜୀବକୋଷପ୍ରତି । ପ୍ରତିମୁହୂର୍ତ୍ତରେ ମରଣଭୀତି ଭରିରହିଛି ପରିବେଶରେ, ପରିମଣ୍ଡଳରେ, ଜଳବାୟୁରେ । କ୍ରମବିକାଶ ପଦ୍ଧତି ଏକ ଅନନ୍ତ ଧାରା । ଏହାର ବର୍ତ୍ତମାନ ସୁଦ୍ଧା ଶେଷ ହୋଇନାହିଁ । ଶେଷହେବାର କୌଣସି ଆଶା ବା ଆଶଙ୍କା ମଧନାହିଁ । ପ୍ରାକୃତିକ ସଂଗ୍ରହ ପଦ୍ଧତି ଏକ ସୀମିତ ଧାରାନୁହେଁ । ପରିବର୍ତ୍ତନ ସହିତ ଏହାର ଅଙ୍ଗାଅଙ୍ଗୀ ସମ୍ବନ୍ଧ ରହିଛି । ଏହା ଏକ କ୍ରମବର୍ଦ୍ଧମାନ ପଦ୍ଧତି । ଏହା ଅତ୍ୟନ୍ତ ଗତିଶୀଳ ଓ କ୍ରିୟାନ୍ୱେଷୀ । ବହୁ ପ୍ରତିଯୋଗୀତାର ମଧଦେଇ ଏହି ସଂଗ୍ରହର ଧାରା ଅବ୍ୟାହତ ରହିଅଛି ।

ଡାରଉଇନଙ୍କ ତଥ୍ୟ ପ୍ରସଙ୍ଗରେ ଏକ ଅତି ପ୍ରସିଦ୍ଧ ପୁସ୍ତକ ଲେଖି ରିଚାର୍ଡ ଡକିନ୍ସ (Richard Dawkin's The Blind Watchmakar) ପୃଥିବୀରେ ଅତ୍ୟନ୍ତ ଲୋକପ୍ରିୟତା ହାସଲ କରିଅଛନ୍ତି । ୧୯୮୬ ସାଲରେ oxford ରେ ପ୍ରଫେସର ହିସାବରେ ଡାରଉଇନଙ୍କ ବିଚାରର ଅତି ହୃଦୟ-ଗ୍ରାହୀ ବିଶ୍ଳେଷଣ କରି ସେ ପ୍ରତିଷ୍ଠା ଲାଭ କରି ଅଛନ୍ତି । ତାଙ୍କର ଗଭୀର ବିଶ୍ଳେଷଣର ଅତି ସଂକ୍ଷିପ୍ତ ବିବରଣୀ ଏହି ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ । ଈଶ୍ୱରଙ୍କ ପ୍ରାଣୀ ସୃଷ୍ଟି ଭବଧାରାକୁ ଅତି ଚତୁରତାର ସହିତ ଏଡାଇଦେଇ "କ୍ରମବିକାଶ" ତତ୍ତ୍ୱକୁ ସୁଦୃଢ଼ ଭିତ୍ତିରେ ଉପସ୍ଥାପନ କରିବାର ବିରଳ କ୍ଷମତା ପ୍ରଦର୍ଶନ କରିଛନ୍ତି, ଡକିନ୍ସ୍ ।

ସେ ଲେଖିଛନ୍ତି ମନୁଷ୍ୟ ଓ ଅନ୍ୟପ୍ରାଣୀ ଜୀବନର ସୃଷ୍ଟି ଏକ ଅଭୂତ ରହସ୍ୟ ରୂପେ ଉଭା ହୋଇଥିଲା । ମାତ୍ର ଡାରଉଇନ୍ ଓ ଉଆଲେସ ସେହି ରହସ୍ୟର ସମାଧାନ

କରିପାରିଛନ୍ତି । ପ୍ରଥମେ ସମସ୍ୟାଟି ହେଲା ଜଟିଳ ଚିତ୍ରର ନକ୍ସା । ଜୀବନର ଚିତ୍ର ବା ନକ୍ସା (design) ଜୀବ-ଜନ୍ତୁ ମାନଙ୍କଠାରେ, ଉଦ୍ଭିଦ ଜଗତରେ, ମଣିଷମାନଙ୍କ ମଧ୍ୟରେ ଯେପରି ଜଟିଳ ଭାବରେ ପ୍ରତିଫଳିତ ହୋଇଛି, ସେମାନଙ୍କର ଶରୀର ଗଠନରେ, ଶିରାପ୍ରଶିରା ନିର୍ମାଣରେ, ମସ୍ତିଷ୍କରେ ଓ ସବୁ ଅଙ୍ଗପ୍ରତ୍ୟଙ୍ଗରେ ତାହା ଏକ ଅକସ୍ମିକ ଘଟଣାର ଓ ଅନ୍ଧ ପ୍ରକୃତିର ପ୍ରତିଫଳନ ବୋଲି ଧାରଣା କରିବା ଗ୍ରହଣୀୟ ନୁହେଁ । ଏହା ପଛରେ ନିଶ୍ଚୟ ଏକ ଅତି ଉନ୍ନତ ମସ୍ତିଷ୍କର ସୁଚାରୁ ଚିନ୍ତାର ସନ୍ତୁଳିତ ଭାବନାର ମହନୀୟ ପରିପ୍ରକାଶ ଅନ୍ତର୍ନିହିତ ଅଛି । ଏହି ଶକ୍ତିକୁ ମନୁଷ୍ୟ ଈଶ୍ୱର ନାମଧେୟ କ୍ଷମତାଶାଳୀ ଓ ଦୁର୍ଜ୍ଞେୟ ଭାବରେ ଚିତ୍ରିତ କରି ନିଜର ଉପର୍ଯ୍ୟୁକ୍ତ ସମାଧାନରେ ସନ୍ତୁଷ୍ଟ ରହି, ନିଶ୍ଚିନ୍ତଭାବରେ କାଳାତିପାତ କରୁଅଛି । ମାତ୍ର ଏପରି ଧାରଣା ଡକିନ୍ସଙ୍କ ମତରେ ଏକାବେଳେକେ ଭ୍ରମାତ୍ମକ ।

ସାଧାରଣତଃ ଲୋକେ ଡାରଉଇନଙ୍କ ତତ୍ତ୍ୱ ମୂଳରେ ଅନ୍ଧତ୍ୱ ଓ ଆକସ୍ମିକ ଘଟଣାର ଆବିର୍ଭାବକୁ ଆରୋପକରି ଏହାର ଗ୍ରହଣଯୋଗ୍ୟତା ବିଷୟରେ ସନ୍ଦିହାନ ହୁଅନ୍ତି । ମାତ୍ର ବସ୍ତୁତଃ ବିଷୟଟି ଏକାବେଳେକେ ବିପରୀତ । ଏହି ତତ୍ତ୍ୱଟି ଏକ ସନ୍ତୁଳିତ କ୍ରମ-ବର୍ଦ୍ଧମାନ ଧାରା । ଏହି ଧାରା ଧୀରେ ଧୀରେ ନିଜକୁ ବିକଶିତ କରିବା ପାଇଁ ଲକ୍ଷ ଲକ୍ଷ ବର୍ଷ ନେଇଥାଏ । ନିଜର କ୍ଷୁଦ୍ର ଜୀବନବେଷ୍ଟନୀରେ ଏହି ଧାରାକୁ ଆବଦ୍ଧ ରଖି ସାଧାରଣତଃ ଲୋକେ ଏହି ତତ୍ତ୍ୱର ପୂର୍ଣ୍ଣବିକାଶକୁ ସୀମିତ ଭାବରେ ଚିନ୍ତାକରି ଏହାର ବିରୁଦ୍ଧାଚରଣ କରି ଥାଆନ୍ତି । ମଣିଷଭାବେ ଇଂଜିନିୟର, ଚିତ୍ରକର, ଭାସ୍କରମାନେ ଯେପରି ପୂର୍ବକଳ୍ପିତ ନକ୍ସା ଅନୁସରଣ କରି ନିଜ-ନିଜର ସୃଷ୍ଟି କରିଥାଆନ୍ତି, ସେହିପରି ଭଗବାନ ମଧ୍ୟ ନିଜର ଅସୀମ କ୍ଷମତା ବଳରେ ବିଶ୍ୱସୃଷ୍ଟି କରିଅଛନ୍ତି । ଏହି ସୁଦୃଢ଼ ଧାରଣାର ବଶବର୍ତ୍ତୀ ହୋଇ ସେମାନେ ଡାରଉଇନଙ୍କ ତଥ୍ୟକୁ ନ୍ୟୁନ ମନେକରନ୍ତି । ମାତ୍ର ଗଭୀର ଗବେଷଣା କଲେ ବୁଝାଯିବ ଯେ ଅତି ସରଳ "ନକ୍ସା" କ୍ରମ ବିକାଶ ମାଧ୍ୟମରେ ସୃଷ୍ଟିର ପ୍ରଥମ ଦିବସରୁ କ୍ରମବର୍ଦ୍ଧମାନ ହୋଇ ଏକ ଅତି ଜଟିଳ ଚିତ୍ରରେ ପରିଣତ ହୁଏ । ସୃଷ୍ଟିର ଏହି ଜଟିଳତା ଈଶ୍ୱରଙ୍କ ସାମୟିକ ହସ୍ତକ୍ଷେପଦ୍ୱାରା ସମ୍ଭବପର ହୋଇନାହିଁ ।

ଘଣ୍ଟା ତିଆରି କରୁଥିବା-ଶିଳ୍ପୀର ଦୂରଦୃଷ୍ଟି ଅଛି । ତାହା ସାହାଯ୍ୟରେ ସେ ଘଣ୍ଟାର କଳକବ୍‌ଜାକୁ ସୁଚାରୁରୂପେ ବିନ୍ୟାସ କରି ତାର ଘଣ୍ଟା ତିଆରିର ଉଦ୍ଦେଶ୍ୟକୁ ସଫଳ କରିବା ନିମନ୍ତେ ସଦାଚେଷ୍ଟିତ । ତାହାର ଦୃଷ୍ଟି ତାର ଅନ୍ତର୍ନିହିତ ଉଦ୍ଦେଶ୍ୟ ଉପରେ ନିବଦ୍ଧ । ମାତ୍ର ପ୍ରାକୃତିକ ସଂଗହ (Natural Selection) ଏକ ଅନ୍ଧ ପଦ୍ଧତି । ଏହାର ଗଭୀର ସତ୍ତାରେ କୌଣସି ଉଦ୍ଦେଶ୍ୟ ପ୍ରୋଥିତ ହୋଇନାହିଁ । ଡାରଉଇନ ଯେଉଁ ପଦ୍ଧତିକୁ ଆବିଷ୍କାର କରିଥିଲେ ତାହା ଏକ ଅଚେତନ, ଅନବଧାନ ପଦ୍ଧତି ଯାହା ପଛରେ କୌଣସି ଉଦ୍ଦେଶ୍ୟ-ପ୍ରଣୋଦିତ

ମନର ଅସ୍ତିତ୍ୱ ନାହିଁ । ଏହା ଭବିଷ୍ୟତ ପାଇଁ ଯୋଜନା କରେନାହିଁ । ବିଶେଷ ଭାବଧାରାରେ ପ୍ରଭାବିତ ହୋଇ କାମ କରେ ନାହିଁ । ଏହା ସ୍ୱଭାବସିଦ୍ଧ ଭାବରେ ବହିଚାଲେ । ଏହି ପ୍ରବାହରୁ ଉତ୍ପନ୍ନ ହୋଇଛନ୍ତି ସମଗ୍ରପ୍ରାଣୀ, ଉଦ୍ଭିଦ ଜଗତ; ଏବଂ ଅର୍ଥପୂର୍ଣ୍ଣ ଜୀବନର ବିଭିନ୍ନ ସ୍ତର ରାଜି । ଏହି ପଦ୍ଧତି ବିଷୟରେ କହିବାକୁ ଯାଇ ଡକିନ୍ସ ଏହାର ନାମକରଣ କରିଛନ୍ତି ଏକ ''ଅନ୍ଧ ଘଣ୍ଟା-ଶିଳ୍ପୀ'' ।

ପ୍ରାକୃତିକ - ସଂଗ୍ରହ - ଧାରା ଏକ ଅନ୍ଧ ଘଣ୍ଟା ପ୍ରସ୍ତୁତକାରୀ ଶିଳ୍ପୀ । ଅନ୍ଧ କହିବା ଅର୍ଥ ହେଲା ଏହା ଭବିଷ୍ୟତ ପ୍ରତି ଦୃଷ୍ଟି ରଖି କାମ କରେ ନାହିଁ । ଫଳାଫଳ ବିଚାର କରି କାର୍ଯ୍ୟ କରେ ନାହିଁ; ଉଦ୍ଦେଶ୍ୟ ବିହୀନ ଭାବରେ ଏହା ଅଗ୍ରସର ହୋଇଥାଏ । ତଥାପି ଏହାର କର୍ମକୁଶଳତା, ଫଳାଫଳ ଦେଖିଲେ ମନେହୁଏ ଯେ ଏହା ଏକ ଅତି ସୁବିନ୍ୟସ୍ତ ନକ୍ସା ଆଙ୍କି ଯୋଜନାବଦ୍ଧ ଭାବରେ ତାହାକୁ ରୂପାୟିତ କରି ଅତି ସନ୍ତର୍ପଣତାର ସହିତ ଧୀରେ ଧୀରେ ଅଗ୍ରସର ହେଉଅଛି । ଡକିନ୍ସ ତାଙ୍କ ମତର ପରିପୁଷ୍ଟି କରିବାକୁ ଯାଇ ବାଦୁଡିର ଉଦାହରଣ ଦେଇ ଅଛନ୍ତି । ଇଂଜିନିୟରମାନେ ବାଦୁଡି ଉପାଖ୍ୟାନରେ ଚମତ୍କୃତ ହେଲେ, ପ୍ରକୃତି ସଂରକ୍ଷିତ ଆଉ କୋଟି କୋଟି ନକ୍ସା ଦେଖି ବିହ୍ୱଳ ହୋଇ ପଡିବେ, ଏଥିରେ ସନ୍ଦେହ ନାହିଁ ।

ରାଡାର ଯନ୍ତ୍ର ମାଧମରେ ରେଡିଓ ପ୍ରତିଧ୍ୱନି ସାହାଯ୍ୟରେ ଦୂରବସ୍ତୁକୁ ଠାବ କରିବା ପଦ୍ଧତି ଦ୍ୱିତୀୟ ମହାସମର ସମୟରେ ନିରୂପିତ ହୋଇଥିଲା । ତାହାପରେ ଏହାର ବହୁଳ ଉନ୍ନତି ସାଧିତ ହୋଇ ବର୍ତ୍ତମାନ ଜଗତରେ ଏକ ପ୍ରଧାନ ଯନ୍ତ୍ରରୂପେ ଏ ଦିଗରେ ବ୍ୟବହୃତ ହେଉଅଛି । ମାତ୍ର ଲକ୍ଷ ଲକ୍ଷ ବର୍ଷପୂର୍ବେ ''ବାଦୁଡି'' ମାନେ ଏହି କର୍ମ ଅନାୟାସରେ ସାଧନ କରି ପାରିଥିଲେ । ସେମାନେ ରେଡିଓ ତରଙ୍ଗର ବ୍ୟବହାର କରନ୍ତି ନାହିଁ । ସେମାନଙ୍କ ପଦ୍ଧତିକୁ Sonar କୁହାଯାଏ । ସବୁ ବାଦୁଡିମାନେ ପ୍ରତିଧ୍ୱନି-ସ୍ଥାନର ଠାବ କରିବାକୁ ସକ୍ଷମ । ଅନ୍ଧକାରରେ ସେମାନଙ୍କର ବିଶେଷ କ୍ଷମତା ପ୍ରୟୋଗ କରିଥାଆନ୍ତି । ସେମାନଙ୍କ ମସ୍ତିଷ୍କରେ ପ୍ରତିଧ୍ୱନି ଜଗତରେ ଘଟୁଥିବା ଧ୍ୱନିପ୍ରତି ଅତ୍ୟନ୍ତ ସୂକ୍ଷ୍ମ-ଯନ୍ତ୍ରରାଜି ସଜାଗ ରହିଥାଆନ୍ତି । ସେମାନଙ୍କର କର୍ମଚଞ୍ଚଳତା ଅତି ପ୍ରଖର ଓ କର୍ମକୁଶଳତା ଅଭାବନୀୟ ଭାବରେ ନିଶ୍ଚିତ । ମନୁଷ୍ୟ ଉଦ୍ଭୂତ ଯନ୍ତ୍ରଠାରୁ ବହୁଗୁଣରେ କର୍ମକ୍ଷମ, ସୁଚାରୁରୂପେ ଚାଳିତ ଓ ନିର୍ଭୁଲଭାବେ ଦକ୍ଷ । ବିଜ୍ଞାନୀମାନେ ବହୁଦିନପରେ ଯେଉଁ ପ୍ରକ୍ରିୟା (Doppler Shift) ବହୁ ପରୀକ୍ଷା ନିରୀକ୍ଷା କରି ଆବିଷ୍କାର କରିଥିଲେ, ତାହା ଅତ୍ୟନ୍ତ ସାବଲୀଳ ଭାବରେ ବାଦୁଡିମାନେ ପ୍ରୟୋଗ କରି କୀଟପତଙ୍ଗ ଶିକାର କରିଥାଆନ୍ତି । ଏହି ଅଲୌକିକତାର ମୂଳ କେଉଁଠି ? ଏହା କିପରି ଜୀବଜଗତରେ ପ୍ରସାରଲାଭ କଲା ? ଡାରଉଇନ୍ କହନ୍ତି ଯେ ସାଧାରଣ

ଉତ୍ପତ୍ତି ସୋପାନରୁ ଏହା କାଳକ୍ରମେ ଧୀର ପଦକ୍ଷେପରେ ପରିବର୍ତ୍ତନ ଓ ପରିବର୍ଦ୍ଧନ ପଦ୍ଧତିରେ ଅଗ୍ରସର ହୋଇ ହୋଇ ବଂଶାନୁକ୍ରମେ ଘନିଭୂତ ହୋଇ ଜୀବନଧାରଣର ପ୍ରବୃତ୍ତିଦ୍ୱାରା ଉଦ୍‌ଜୀବିତ ହୋଇ, ପ୍ରଯୁକ୍ତ ହୋଇ, ସଂସ୍କୃତ ହୋଇ, କାଳକ୍ରମେ ସାଧାରଣ ସ୍ତରରୁ ଆଜି ଏକ ମହା ଜଟିଳ ସ୍ତରକୁ ଉନ୍ନୀତ ହୋଇଅଛି । ଏହା ଏକ ଆକସ୍ମିକ ଘଟଣା ବା ଖାମଖିଆଲି ଢଙ୍ଗରେ ପ୍ରକାଶିତ ପ୍ରକୃତିର ଏକ ଖେଳନୁହେଁ । ଏହି ପଦ୍ଧତି ଜୀବନଧାରଣ-ପ୍ରକ୍ରିୟାର ଏକ ଗଭୀର ଅର୍ଥବହ ଆରୋପ, ଏକ ସୁଚିନ୍ତିତ ଧାରା ଜୀବନପ୍ରବାହକୁ ଅକ୍ଷୁର୍ଣ୍ଣ ରଖିବା-ନିମନ୍ତେ । ଏହିଧାରା କୋଟି କୋଟି ବର୍ଷ ଧରି ଜୀବନ-ସଂରକ୍ଷଣ ପ୍ରକ୍ରିୟାକୁ ସୁଦୃଢ଼ ଭିତ୍ତିରେ ସ୍ଥାପନ କରିବାପାଇଁ ପ୍ରବହମାନ । ସହଜ ସରଳ ଧାରାର ପରିବର୍ତ୍ତନ ହେଉ କିମ୍ବା ଜଟିଳ ଧାରାର ପୁନଃପୁନଃ ପ୍ରୟୋଗରୁ ଉଦ୍‌ଭୂତ ଅତି ଘନିଭୂତ ଅବସ୍ଥା ପ୍ରାପ୍ତି ହେଉ, ଏହି ପ୍ରାକୃତିକ ଧାରା ଡକିନ୍ସଙ୍କ ମତରେ ଉଦ୍ଦେଶ୍ୟଲବ୍ଧ ନୁହେଁ । କୋଟି କୋଟି ବର୍ଷପରେ ପଶ୍ଚାତ୍-ଦୃଷ୍ଟି ପ୍ରୟୋଗ କଲେ ହୁଏତ ମନେ ହୋଇପାରେ ଯେ କ୍ରମ ବିବର୍ତ୍ତନ ପଦ୍ଧତିରେ କୌଣସି ଗୋଟିଏ ଉଦ୍ଦେଶ୍ୟ ସାଧିତ ହୋଇଅଛି । ମାତ୍ର ପ୍ରକୃତି ଏପରି ଏକ ଉଦ୍ଦେଶ୍ୟ ନେଇ, ତାହାର କର୍ମଧାରାର ପ୍ରବର୍ତ୍ତନ କରି ନଥିଲା । ଡାରଉଇନଙ୍କ ବିଶେଷ ଅବଦାନ ହେଲା ''କ୍ରମବର୍ଦ୍ଧମାନ - ସଂଗ୍ରହ - ପଦ୍ଧତି'' ଏବଂ ଏହି ପଦ୍ଧତି ଖାମଖିଆଲି ନୀତି-ଗ୍ରସ୍ତ ନୁହେଁ । ଏହାର ବିଶେଷ ପ୍ରୟୋଗ ଜୀବନ-ସଂରକ୍ଷଣରେ ଉନ୍ନତି ବିଧାନ ନିମନ୍ତେ । ଏହାର ବିଶ୍ଳେଷଣ କରିବାକୁ ଯାଇ ଡକିନ୍ସ ବାଲିଗେରେଡାର ଉଦାହରଣ ଦେଇଅଛନ୍ତି । ଢ଼େଉରେ ପଥର ସବୁ ପିଟିହୋଇ ନାନା ଆକାର ଧାରଣ କରିଥାଆନ୍ତି, ଢ଼େଉର ଉଦ୍ଦେଶ୍ୟନାହିଁ ଛୋଟ ପଥର ତିଆରି କରିବାରେ । ଚଳଚଞ୍ଚଳ-ପ୍ରକୃତିରୁ ସୃଷ୍ଟ ଛୋଟ ଆକାର ଓ ବଡ ଆକାରର ପଥର ରାଜି । ସେଥିରେ ସମୁଦ୍ରର କୌଣସି ଉଦ୍ଦେଶ୍ୟ ସାଧିତ ହୁଏନାହିଁ । ଏହା ଏକ ପ୍ରକୃତିର ନିରନ୍ତର ଧାରା । ସେହିପରି ସୌରମଣ୍ଡଳରେ ଗତି କରୁଥିବା ଗ୍ରହ ଉପଗ୍ରହ ନିଜକୁ ଦୂରରେ ରଖନ୍ତି । ନିର୍ଦ୍ଦିଷ୍ଟ ଗତିରେ ଘୁରିବୁଲନ୍ତି ମାଧ୍ୟାକର୍ଷଣ ଶକ୍ତିରୁ ନିଜକୁ ରକ୍ଷାକରି । ଠିକ୍‌ସ୍ଥାନରେ ନିର୍ଦ୍ଧାରିତ ଗତିରେ ନବୁଲିଲେ ସେମାନେ କେବେଠୁଁ ଧ୍ୱଂସ ପାଇ ଯାଆନ୍ତେଣି । ଏହା କଣ କାହାର ପୂର୍ବକଳ୍ପିତ ନକ୍ସାର ଚମତ୍କାରିତା ? କେବେହେଁ ତାହା ନୁହେଁ । ଏହା ପ୍ରକୃତିର ସଂରକ୍ଷଣଶୀଳତାର ଏକ ପ୍ରକୃଷ୍ଟ ଉଦାହରଣ ମାତ୍ର, ଡକିନ୍ସଙ୍କ ମତରେ ।

ଜୀବ ଓ ଉଦ୍ଭିଦ ଜଗତରେ ବଂଶାନୁକ୍ରମେ ଜନ୍ମିବାର ପ୍ରବଣତାରେ ଜୀବାଣୁ ଘନଘନ ଜନ୍ମଗତ ପୌନପୌନିକତାରେ ବହୁ ପରିବର୍ତ୍ତନର ସମ୍ମୁଖୀନ ହୁଏ । ଏହି ପଦ୍ଧତିରେ ବିକାଶ ପ୍ରକ୍ରିୟା ଅନ୍ତର୍ନିହିତ । ଜଣଙ୍କର ବହୁ ସନ୍ତାନ ହେଲେ ମଧ୍ୟ, ସେମାନଙ୍କର ମଧ୍ୟରେ ବହୁ ବିଭିନ୍ନତା ଦେଖାଯାଏ, ତେଣୁ ପରମ୍ପରାରେ କେବଳ ସମାନତା ଦ୍ୱିଗୁଣିତ ହୁଏ ନାହିଁ ।

ଯେପରି କପି କଲାବେଳେ କପିରେ ଅନେକ ବିଭିନ୍ନତା ଦେଖାଯାଇଥାଏ; ଭୁଲଭାଲ ମଧ୍ୟ ହୋଇଥାଏ; ସେହିପରି ପ୍ରକୃତିର ବର୍ଦ୍ଧନ ପ୍ରକ୍ରିୟାରେ ବିଭିନ୍ନତାର ପ୍ରକାଶ ମଧ୍ୟ ସ୍ୱାଭାବିକ ଭାବରେ ପରିଲକ୍ଷିତ ହୁଏ । ଏହା ଫଳରେ ପୃଥିବୀରେ ବହୁଳଭାବରେ ବିଭିନ୍ନ ଧରଣର ଜୀବଜନ୍ତୁ ଉଦ୍ଭିଦ ଓ ମନୁଷ୍ୟ ପ୍ରଜାତିର ଜନ୍ମ ହୋଇଅଛି । ପ୍ରକାର ଓ ପ୍ରକାଶ ଭେଦରେ, ସମଗ୍ର ଜଗତ ବିସ୍ମୟକର ଭାବରେ ଉଜ୍ଜ୍ୱଳ, ସୁନ୍ଦର, ଆନନ୍ଦମୟ, ସଂବୃଦ୍ଧ, ବିଭିନ୍ନ ବର୍ଣ୍ଣଛଟାରେ ଉଦ୍‌ଭାସିତ, ବିଭିନ୍ନ ରଙ୍ଗରେ ଶୋଭିତ, ବିଭିନ୍ନ ବିଭାବରେ ପରିପୁଷ୍ଟ, ଏକ ଏବଂ ବହୁର ସଂମିଶ୍ରଣରେ ଏକ ଅଦ୍ଭୁତ ଆକର୍ଷଣ-ପୂର୍ଣ୍ଣ ଅପୂର୍ବ ଯୋଜନା ପ୍ରକୃତିର ।

ଡାରଉଇନ ତାଙ୍କ ପ୍ରସିଦ୍ଧ ଗ୍ରନ୍ଥ Origin of Species ରେ ଲେଖିଥିଲେ ଯେ ଯଦି ଏହା ପ୍ରମାଣ କରାଯାଇପାରେ ଯେ କୌଣସି ଅତି ଜଟିଳ ଅଙ୍ଗପ୍ରତ୍ୟଙ୍ଗ ପାରମ୍ପାରିକ ପରିବର୍ତ୍ତନ ପ୍ରକ୍ରିୟାରେ ବଂଶାନୁକ୍ରମେ ବହୁଳଭାବରେ ପରିବର୍ଦ୍ଧନ ବିଧିରେ ସୃଷ୍ଟିହୋଇନାହିଁ; ତାହାହେଲେ ମୋର ତତ୍ତ୍ୱର ଏକାନ୍ତ ବିଲୟ ଘଟିବ । ଡକିନ୍ସ ଲେଖିଛନ୍ତି ଯେ ଶହେପଚିଶ ବର୍ଷ ପରେ ମଧ୍ୟ ଡାରଉଇନଙ୍କ ଉକ୍ତିର ସତ୍ୟତା ଆଜି ପ୍ରମାଣିତ ହୋଇ ରହିଅଛି । ସେ ଦକ୍ଷିଣ ଆମେରିକା, ଅଷ୍ଟ୍ରେଲିଆ ପ୍ରଭୃତି ଦେଶର ପ୍ରାଣୀମାନଙ୍କର ଦୃଷ୍ଟାନ୍ତ ଦେଇ ଏହି ତଥ୍ୟର ବହୁଳ ପରିପୁଷ୍ଟି ସାଧନ କରିଅଛନ୍ତି ।

ମାତ୍ର କେତେକ ପଣ୍ଡିତ ଡାରଉଇନଙ୍କର ମତର ବିରୁଦ୍ଧାଚରଣ କରିଅଛନ୍ତି । ଜର୍ଜ ବର୍ଣ୍ଣାଡଶ (ସାହିତ୍ୟରେ ନୋବେଲ ପ୍ରାଇଜପ୍ରାପ୍ତ ପ୍ରସିଦ୍ଧ ଲେଖକ) କହିଛନ୍ତି ଯେ ଡାରଉଇନଙ୍କ ମତ ବଡ ସହଜ ସରଳ ବୋଲି ପ୍ରଥମତଃ ମନେହୁଏ କାରଣ ଏହାର ଅନ୍ତର୍ନିହିତ ବିଷୟ ପ୍ରଥମେ ସମ୍ପୂର୍ଣ୍ଣଭାବେ ହୃଦୟଙ୍ଗମ ହୁଏ ନାହିଁ । ପରେ ଯେତେବେଳେ ସମଗ୍ର ବିଷୟଟି ମନୁଷ୍ୟ ମନରେ ପ୍ରତିଭାତ ହୁଏ, ସେତେବେଳେ ମନୁଷ୍ୟର ହୃଦୟ ଦୁଃଖିତ ହୋଇପଡେ । ଡାରଉଇନଙ୍କ ମତମଧ୍ୟରେ ଲୁକ୍କାୟିତ ଅଛି ଏକ ଦୁଃସହ ଜୈବବିଧାନ; ବୁଦ୍ଧି ଓ ସୌନ୍ଦର୍ଯ୍ୟର ନିନ୍ଦନୀୟ ଅଧୋଗାମିତା; ଶୌର୍ଯ୍ୟବୀର୍ଯ୍ୟ, ଆଶା ଆକାଂକ୍ଷା, ସମ୍ମାନ ବୋଧର ଚୁଡାନ୍ତ ବିପର୍ଯ୍ୟୟ । ପଣ୍ଡିତ ଆର୍‌ଥର୍ କୋଶ୍‌ଲର୍ ମଧ୍ୟ ବର୍ଣ୍ଣାଡଶଙ୍କ ଧାରଣା ସହିତ ଏକମତ ହୋଇଥିଲେ ।

ଟି.ଡି. ଲାଇସେନ୍‌କୋ ପରିମଣ୍ଡଳର ପ୍ରଭାବକୁ ବିଶେଷ ଗୁରୁତ୍ୱ ଦେଇଥିଲେ । ଜୀବମାନଙ୍କର "ସଂଗୃହିତ ଗୁଣାବଳି" (Acquired Characteristics) ଉପରେ ତାଙ୍କର ବିଶେଷ ଆସ୍ଥାଥିଲା । ସେ ବଂଶଗତ ପରମ୍ପରା-ଲବ୍ଧ ଗୁଣରାଜିକୁ ବିଶ୍ୱାସ କରୁନଥିଲେ । ସେ Mendel ଙ୍କ ଘୋର ବିରୋଧୀ ଥିଲେ । ମାତ୍ର ଡକିନ୍ସ ଲାଇସେନ୍‌କୋଙ୍କ

ମତକୁ ବିରୋଧ କରି ଲେଖିଛନ୍ତି ଯେ ତାଙ୍କର ଦିଗ୍‌ଦର୍ଶନ ନଥିଲା । ସେ ଅତି ସୀମିତ ଜ୍ଞାନର ବୃତ୍ତରେ ଆବଦ୍ଧ ରହି, ସତ୍ୟର ଅପଳାପ କରିଥିଲେ । ଅତି ବିଶ୍ଳେଷଣାତ୍ମକ ରୀତିରେ ବିଚାରକରି ଡକିନ୍ସ ନିମ୍ନଲିଖିତ ସିଦ୍ଧାନ୍ତରେ ଉପନୀତ ହେଲେ ।

''କ୍ରମ ବିବର୍ତ୍ତନ-ତତ୍ତ୍ୱ'' ସାହାଯ୍ୟରେ ମନୁଷ୍ୟ ଏହି ବିଶ୍ୱଜୀବନର ଦୂରୁହ ଜଟିଳତାର ସମାଧାନ ପାଇ ପାରିଛି । ଏହି କ୍ରମବିକାଶ ସହିତ ପ୍ରାକୃତିକ ସଂଗ୍ରହ ନୀତିର ଯୌନ-ଯୌନିକତାର ଘନତ୍ୱକୁ ବିଚାରକୁ ନେଲେ ଜୀବନ ରହସ୍ୟର ଗଭୀରଭାବରେ ସମାଧାନ ସମ୍ଭବପର ହୋଇଅଛି । ଜୀବନର ରହସ୍ୟ ସଂଖ୍ୟାତତ୍ତ୍ୱର ମାପକାଠିର ବହିର୍ଭୂତ । ଜୀବନର ଯେ କୌଣସି ଅର୍ଥ ଥାଉନା କାହିଁକି, ଏହା କେବେହେଲେ ଆକସ୍ମିକତା (Chance) ନୁହେଁ । ଜୀବନ ଆକସ୍ମିକତାର ଠିକ୍ ବିପରୀତ-ବିଭାବ । ଗୋଟିଏ ଗୋଟିଏ ପ୍ରାକୃତିକ ସଂଗ୍ରହରୁ ଘନତ୍ୱ-ଆବୃତ ବହୁଳ ପରିମାଣରେ ଅସଂଖ୍ୟ ସଂଗ୍ରହ ଜୀବନର ଜଟିଳ ନକ୍ସାର ଏକମାତ୍ର ସନ୍ତୋଷ ଜନକ ସମାଧାନ । ଏହି ସଂଗ୍ରହ-ପଦ୍ଧତି ଅତି ଧୀର ଓ କ୍ରମବିକାଶଯୁକ୍ତ ପଦକ୍ଷେପରେ ଅଗ୍ରସର ହୋଇ ଆଜିର ଅତି ଦୂରୁହ, ଜଟିଳ, ଅଭାବନୀୟ ଚିତ୍ରରେ ସନ୍ନବେଶିତ ହୋଇ, ମନୁଷ୍ୟର ବୁଦ୍ଧିକୁ ବିଭ୍ରାନ୍ତ କରିଦେଉଅଛି । ଦୃଷ୍ଟାନ୍ତ ସ୍ୱରୂପ ''ଆଖି''ର ଜଟିଳ ନକ୍ସା ଏକାଦିନେକେ ସୃଷ୍ଟି ହୋଇନଥିଲା । ଜୀବନ ଦିନେ ଏକ କୋଷୀ ମାଂସଳ ପ୍ରାଣୀ (Jelly fish) ରୁ ଆରମ୍ଭ ହୋଇ ଆଜିର ମଣିଷରେ ଉଦ୍‌ଭାସିତ । ଏହି ପ୍ରଗତି ପଥରେ ବହୁ ସୋପାନକୁ ଅତିକ୍ରମ କରି ଜୀବନ ତାର ସଂବୃଦ୍ଧ ଚିତ୍ରରେ ପ୍ରତିଫଳିତ । ଏହି ମଧ୍ୟବର୍ତ୍ତୀ ସୋପାନ ଗୁଡିକୁ ଏକତ୍ର କରି ପୂର୍ଣ୍ଣଚିତ୍ର ଦେଖିଲେ ଜୀବନର କ୍ରମବର୍ଦ୍ଧମାନ ବିକାଶର ପରିଚୟ ମିଳିବ ନିର୍ଭୁଲ ଭାବରେ । ଡାରଜଇନଙ୍କ ବିଶ୍ୱ-ନିର୍ଯାସ ହେଲା ଯେ ସ୍ଥିରଭାବରେ ପ୍ରାକୃତିକ ସଂଗ୍ରହଧାରା କୋଟି କୋଟି ବର୍ଷଧରି କ୍ରମିକ ସୋପାନରେ ଜୀବନକୁ ଋଦ୍ଧିମନ୍ତ କରିବାରେ ସଫଳ ହୋଇଅଛି ଓ ଅଲୌକିକତାର ବିଷଦ ବ୍ୟାଖ୍ୟା ଦେଇଅଛି ।

ଲାମାର୍କଙ୍କ ମତରେ ଜୀବନ୍ତ କୋଷରାଜି ପ୍ରଗତିର ସ୍ୱରୂପ ରୂପେ ପ୍ରକାଶିତ । ମନୁଷ୍ୟ ଏହି ଜୀବନ୍ତ କୋଷରାଜିର ମଧ୍ୟସ୍ଥଳରେ ଅତି ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଅଛି । ଏହି ପ୍ରାଣୀ ଆବହମାନକାଳରୁ କ୍ଷୁଦ୍ର ସତ୍ତାରୁ ଉନ୍ନତି ଲାଭକରି କ୍ରମବିକାଶ ପଦ୍ଧତିରେ ଏକ ଅତି ଉଚ୍ଚସ୍ତରକୁ ଉନ୍ନୀତ ହୋଇଅଛି । ଏହି ପଦ୍ଧତି କ୍ରମବର୍ଦ୍ଧମାନ ହୋଇ ପ୍ରଗତି ପଥରେ ବର୍ତ୍ତମାନ ସୁଦ୍ଧା ଅଗ୍ରସର । ପରିବେଶ ସହିତ ସଂଯୁକ୍ତ ହୋଇ ପ୍ରାଣୀମାନଙ୍କର ଜୀବକୋଷରେ ବହୁ ପରିବର୍ତ୍ତନ ହୋଇଅଛି । ଏହି ପରିବର୍ତ୍ତନର ମାଧ୍ୟମରେ ସେମାନେ ପରିମଣ୍ଡଳ ସହ ସଂପୃକ୍ତ ହୋଇ ନିଜର ଜୀବନଧାରଣ ପ୍ରକ୍ରିୟାକୁ ଅବ୍ୟାହତ ରଖିଅଛନ୍ତି । ଏହି ପ୍ରଣାଳୀରେ ନିଜକୁ ପରିବର୍ତ୍ତିତ ଭାବରେ ଖାପଖୁଆଇବାହିଁ ବଞ୍ଚିବାର ଏକମାତ୍ର ପନ୍ଥା । ନହେଲେ ବିଲୟ

ସୁନିଶ୍ଚିତ । ଯେଉଁ ପ୍ରାଣୀମାନେ ଏହି ପନ୍ଥା ଅବଲମ୍ବନ କରିପାରି ନାହାନ୍ତି ସେମାନେ ନିଶ୍ଚିହ୍ନ ହୋଇଯାଇ ଅଛନ୍ତି । ବ୍ୟବହାର ମାଧ୍ୟମରେ ପ୍ରାଣୀମାନଙ୍କର ଅଙ୍ଗପ୍ରତ୍ୟଙ୍ଗ ଗୁଡିକ ସବଳ, କର୍ମକ୍ଷମ, ସୁସ୍ଥ ରହିଅଛି । ଅବ୍ୟବହାରରେ ସେଗୁଡିକ କ୍ଷୟହୋଇ ଧ୍ୱଂସହୋଇ ଯିବାର ଲକ୍ଷଣ ପ୍ରବଳମାତ୍ରାରେ ପରିଲକ୍ଷିତ ହୋଇଅଛି । ଏହି ବ୍ୟବହାର ଓ ଅବ୍ୟବହାର ପଦ୍ଧତିରେ ସଂଗୃହିତ ନିଜସ୍ୱ ଗୁଣରାଜି ବଂଶପରମ୍ପରାରେ ପ୍ରାଣୀମାନଙ୍କ ମଧ୍ୟରେ ଅବାଧଭାବରେ ପ୍ରବାହିତ ହୁଏ । ଏହାକୁ ସଂଗୃହିତ ଗୁଣରାଶି (acquired characteristic) କୁହାଯାଏ । ମାତ୍ର ଲାମାର୍କଙ୍କର ଏହି ଚିନ୍ତାଧାରାର ପରିପୁଷ୍ଟି ବିଂଶଶତାବ୍ଦିରେ ସମ୍ଭବପର ହୋଇନାହିଁ । ତାଙ୍କର ଜୀବ-ଜ୍ଞାନ ବିଷୟରେ ଅବଦାନ ଥିଲେ ମଧ୍ୟ, ପରବର୍ତ୍ତୀ ଯୁଗରେ ନୂଆ ନୂଆ ଗବେଷଣା-ସମ୍ଭାର ତାଙ୍କର ମୂଳତଥ୍ୟ ଓ ତାଙ୍କର ଧାରଣାକୁ ବହୁଳପରିମାଣରେ ଭୁଲ ପ୍ରମାଣ କରିଛି ।

ଡାରଉଇନଙ୍କ ଆର୍ବିଭାବ ପୂର୍ବରୁ ଈଶ୍ୱର-ସୃଷ୍ଟ-ବିଶ୍ୱର ଧାରଣା ବଳବତ୍ତର ରହି ଜୀବଜଗତର ପ୍ରଗତିରେ ତାଙ୍କର ସିଧାସଳଖ ହସ୍ତକ୍ଷେପ ଏକ ଦୃଢ଼ ମତରେ ପରିଣତ ହୋଇଥିଲା । ମାତ୍ର ଡାରଉଇନ କହିଲେ ଯେ ପ୍ରକୃତି କ୍ଷେତ୍ରରେ ପ୍ରାଣୀମାନେ, ଏପରିକି ଉଦ୍ଭିଦ ରାଜି, ପରିମଣ୍ଡଳ ସହିତ ନିଜକୁ ଖାପଖୁଆଇ ଚାଲିବା ଧାରାରେ ନିଜ ନିଜର ଶାରୀରିକ ଉନ୍ନତି ସାଧନ କରିବାକୁ ସଚେଷ୍ଟ ହୋଇଅଛନ୍ତି । ସେମାନେ ଅତି ସୂକ୍ଷ୍ମଭାବରେ ନିଜ ନିଜର ପ୍ରଗତି ପଥରେ ଧାବିତ । ତାହାର ପଦ୍ଧତି ହେଲା ବହୁଳ ଭାବରେ ପରିସ୍ଥିତି ସହିତ ସଂଯୋଗ ରଖି ନିଜର ଅଙ୍ଗପ୍ରତ୍ୟଙ୍ଗର ପରିବର୍ତ୍ତନ ସାଧନ । ଏହି ପଦ୍ଧତି ପ୍ରାକୃତିକ ବିଜ୍ଞାନର ଅନ୍ତର୍ଭୁକ୍ତ; ଈଶ୍ୱରଙ୍କ ଦୟାରୁ ଉତ୍ପନ୍ନ ନୁହେଁ । ସବୁ ପ୍ରାକୃତିକ ଘଟଣା ବିଜ୍ଞାନର ପରିସର ମଧ୍ୟରେ ଘଟିଥାଏ ଏବଂ ସବୁ ଘଟଣାର ବୈଜ୍ଞାନିକ କାରଣ ଓ ପରିମାଣ ବିଦ୍ୟମାନ । ଏହାର ପ୍ରାକୃତିକ ସଂଯୋଗ ସାଧନ, କାରଣ-ନିମିତ୍ତ ଯୋଗାଯୋଗ, ନିର୍ଭୁଲ ବିଶ୍ଳେଷଣ ଓ କାର୍ଯ୍ୟ-କାରଣ ସମ୍ବନ୍ଧ ପରିସ୍ଫୁଟ । ଏଥିରେ ଇଶ୍ୱରଙ୍କର କୌଣସି ଅବଦାନ ନାହିଁ । ଡାରଉଇନ ଲେଖିଲେ ଯେ ପ୍ରାକୃତିକ-ସଂଗ୍ରହ-ପଦ୍ଧତି ଦ୍ୱାରା କ୍ରମବିକାଶ ମାଧ୍ୟମରେ ଜୈବିକ ଉନ୍ନତି ସାଧିତ ହୋଇଅଛି । ତାଙ୍କ ମତରେ ଜୀବନ ଧାରଣ ପାଇଁ ସଂଗ୍ରାମରେ ଜୀବଗଣ ସର୍ବଦା ଓ ସର୍ବଥା ଲିପ୍ତ । ଏହି ସଂଗ୍ରାମରେ ଯେଉଁମାନେ ବଳିଷ୍ଠ ସେହିମାନଙ୍କର ବିଜୟର ସଂଭାବନା । ଯେଉଁମାନେ ପରାଜିତ, ସେମାନେ କାଳକ୍ରମେ ଧ୍ୱଂସ ମୁଖରେ ପତିତହୋଇ ବିଲୁପ୍ତି ଲାଭ କରୁଅଛନ୍ତି । (Strunggle for existence and survival of the fittest) ତାଙ୍କ ଦୃଢ଼ ମତରେ ଜୀବନଯୁଦ୍ଧରେ ଯେଉଁ ପରିବର୍ତ୍ତନ ରାଜି ଜୀବପ୍ରତି ମଙ୍ଗଳକର ତାହାହିଁ ଚିରସ୍ଥାୟୀ ଓ ଯାହା କ୍ଷତିକର ତାହାହିଁ ବିଲୁପ୍ତିର ପଥ ପ୍ରଦର୍ଶକ । ଏହି

ପଦ୍ଧତିରେ ପ୍ରକୃତି ସଂଗ୍ରହ-କର୍ମରେ ବ୍ୟାପୃତ । ଏହି ଧାରାକୁ Natural Selection ବୋଲି ସେ ଅଭିହିତ କରିଅଛନ୍ତି । ଟି. ଏଚ୍. ହକ୍ସଲେ ଏହି ଧାରଣାର ସବଳ ପରିପୁଷ୍ଟିକରି, ଡାରଉଇନଙ୍କୁ ବଳିଷ୍ଠ ସାହାଯ୍ୟ କରିଥିଲେ । ଏହାପରେ wallace ନିଜର ଗବେଷଣାଲବ୍ଧ ଜ୍ଞାନରୁ ସ୍ୱାଧୀନ ଭାବରେ ଏହି ତଥ୍ୟରେ ଉପନୀତ ହୋଇଥିଲେ ୧୮୫୮ରେ । ଏହାପରେ Herbert Spencer ଏହି କ୍ରମବିକାଶ ଧାରାକୁ ଦର୍ଶନ ହିସାବରେ ଗ୍ରହଣକରି ଏହାର ପ୍ରଚାର ଓ ପ୍ରସାର କରିଥିଲେ ।

ମାତ୍ର ଡାରଉଇନଙ୍କ ମତବାଦରେ ଗୋଟିଏ ବିଷୟରେ ଅଭାବ ଥିଲା । ତାହାହେଲା ବଂଶପରମ୍ପରାଗତ ଅବତାରଣା ଏହି ସଦ୍ୟଲବ୍ଧ ଗୁଣରାଶି ବା ସଂଗୃହିତ ପ୍ରକୃତିଗତ ଚରିତ୍ରର ସଂଭାର । ଏହି ପଦ୍ଧତିରେ ଯାହା ଉଣା ଥିଲା ତାକୁ ଯୋଗାଇଦେଲେ Gregor Mendel ୧୮୬୬ ସାଲରେ ମେଣ୍ଡେଲ ନିଜର ଗବେଷଣାରୁ ଉପଲବ୍ଧି କଲେ ଯେ ବଂଶପରମ୍ପରାଗତ ଭାବରେ ଜୀବମାନଙ୍କର ଗୁଣାଗୁଣ ପ୍ରସାରିତ ହୋଇଥାଏ । ଜୈବିକ ପଦ୍ଧତିରେ ଜନନୀକା (Genes) ମାଧ୍ୟମରେ ଏହି ଗୁଣ ଗୁଡିକ ଭବିଷ୍ୟତର ବଂଶଧର ମାନଙ୍କ ମଧ୍ୟରେ ସଂକ୍ରମିତ ହୋଇଥାଏ କାଳ କାଳ ବା ଯୁଗ ଯୁଗ ଧରି । ତାଙ୍କର ଗବେଷଣା ୧୯୦୦ ସାଲ ପର୍ଯ୍ୟନ୍ତ ସର୍ବତ୍ର ପ୍ରଚାରିତ ହୋଇପାରି ନଥିଲା । ହ୍ୟୁଗୋଡିଭ୍ରାରିସ୍ ନାମକ ବୈଜ୍ଞାନିକ ଏହି ପଦ୍ଧତିକୁ ସଂପ୍ରସାରଣକରି ଏକ ନୂତନ ଭାବଧାରାର ପ୍ରବର୍ତ୍ତନ କଲେ ।

ହ୍ୟୁଗୋଡିଭାରିସଙ୍କ ଅବଦାନ ହେଲା ପରିବର୍ତ୍ତନ-ନୀତି ବା Mutationism । ଏହି ନୂଆନୀତି ପ୍ରାକୃତିକ ସଂଗ୍ରହ ପଦ୍ଧତିକୁ ଗ୍ରହଣ ନକରି ସିଧାସଳଖ ପରିବର୍ତ୍ତନ ଉପରେ ଦୃଢ଼ିକରଣ ପ୍ରକ୍ରିୟାରେ ଆସ୍ଥା ସ୍ଥାପନ କରିଅଛି । ଏହି "ମତ"ର ବିଷୟବସ୍ତୁ ହେଲା ଯେ ସ୍ୱତଃସିଦ୍ଧ ଭାବରେ ପରିବର୍ତ୍ତନଶୀଳ ଜୀବକୋଷାଣୁ ବା ଜନନୀକା ମାଧ୍ୟମରେ ସମୟାନୁବର୍ତ୍ତୀତାରେ ଲବ୍ଧ ବହୁଳ ପରିବର୍ତ୍ତନ ଦ୍ୱାରା ନୂତନ ଜୀବ ଶ୍ରେଣୀର ସୃଷ୍ଟି ହେଉଅଛି । ଅର୍ଥାତ୍ ନୂଆ ପ୍ରାଣୀ-ଶ୍ରେଣୀ ହଠାତ୍ ହଠାତ୍ ସୃଷ୍ଟି ହୁଏ; ପାରମ୍ପାରିକ ଧାରା ବିନ୍ୟାସ ମାଧ୍ୟମରେ ନୁହେଁ । ସଚେଷ୍ଟଭାବେ ଉନ୍ନତ ହେବାର କ୍ରିୟା ମାଧ୍ୟମରେ ମଧ୍ୟ ନୁହେଁ । ମାତ୍ର ପରେ JBS Halden ଇତ୍ୟାଦିଙ୍କ ଗବେଷଣା ଫଳରେ ଏହିମତ ଭୂଲ ପ୍ରମାଣିତ ହୋଇଥିଲା । ୧୯୩୭ ସାଲରେ (Dobzhansky) ଡବଯ୍ୟାନ୍‌ସ୍କି ନାମକ ବୈଜ୍ଞାନିକ୍ ଏକ ଆଦର୍ଶ ତଥ୍ୟର ପରିବେକ୍ଷଣ କଲେ । ଏହା Synthetic Theory ବା ସଂତୁଳିତ ତଥ୍ୟ ନାମରେ ପରିଚିତ । ଏହା ମେଣ୍ଡେଲ ଓ ଡାରଉଇନଙ୍କ ତଥ୍ୟର ଆଦର୍ଶ ସଂମିଶ୍ରଣରୁ ସୃଷ୍ଟ । ଏହି ତଥ୍ୟର ଯୋଗ୍ୟତା ସର୍ବଜନବିଦିତ । ସର୍ବଥା ବିଜ୍ଞାନୀବୃତ୍ତରେ ଗୃହିତ । ୧୯୫୩ ସାଲରେ James Watson ଓ Fransis Crick ନାମକ ଦୁଇ ଜଣ ବୈଜ୍ଞାନିକ DNA

ର ଆବିଷ୍କାରକଲେ । ଏହା ଅତି ସୂକ୍ଷ୍ମ ପଦ୍ଧତିରେ ଜୀବକୋଷ ମଧ୍ୟରେ ଅନ୍ତର୍ନିହିତ ହୋଇ ରହିଅଛି । ପରୀକ୍ଷା ନିରୀକ୍ଷାରୁ ଏହାର ବିସ୍ତାର ଆବିଷ୍କୃତ । ପ୍ରୋଟିନ, ଆମିନୋଏସିଡରୁ ଏହାର ଅବସ୍ଥିତି ଜଣାଯାଏ । ଏହା ଏକ ଅତି ଗୁରୁତ୍ୱପୂର୍ଣ୍ଣ ଆବିଷ୍କାର । ଜୈବିକ ପରିବର୍ତ୍ତନ ପରିବର୍ଦ୍ଧନ, ପରିସଂକ୍ରମଣ ଇତ୍ୟାଦି ବିଷୟରେ ବହୁମୂଲ୍ୟ ତଥ୍ୟରାଜିର ଆବିଷ୍କାର ଏଥିରୁ ସମ୍ଭବପର ହୋଇଅଛି । ଅକ୍ସଫୋର୍ଡର ଜୈବ ବିଜ୍ଞାନୀ ଡକିନ୍ସ୍, ପ୍ରାଞ୍ଜଳ ଭାବରେ ବହୁ ଉଦାହରଣ ମାଳାରେ ସଜ୍ଜିତ କରି ତାଙ୍କର ଉପପାଦ୍ୟ ବିଷୟଟିର ଅବତାରଣା କରିଛନ୍ତି । miracle ବା ଅଲୌକିକତା ଗୁଡିକ ବୁଝାଗଲାଣି ବୋଲି ସେ ଅତ୍ୟନ୍ତ ଆନନ୍ଦିତ । ଅତି ଜଟିଳ ରହସ୍ୟମୟ ନକ୍ସା ଗୁଡିକ ଈଶ୍ୱର ସୃଷ୍ଟି କରିନାହାନ୍ତି । ସେଗୁଡିକ କୋଟି କୋଟି ବର୍ଷଧରି ପ୍ରକୃତି ସାହାଯ୍ୟରେ ଆସ୍ତେ ଆସ୍ତେ ସହଜ-ସରଳ ନକ୍ସାରୁ ଜୀବନର ଉପଯୋଗୀତା ମାଧ୍ୟମରେ କ୍ରମେ କ୍ରମେ ଗୋଟିଏ ଗୋଟିଏ ସୋପାନ ରଚନା କରି ସହସ୍ର ସୋପାନ ପାରହୋଇ ଶେଷରେ ମନୁଷ୍ୟର ବିଂଶ ଶତାବ୍ଦିରେ ଦୃଷ୍ଟ ନକ୍ସାରେ ପରିଣତ । ତେଣୁ ଆଶ୍ଚର୍ଯ୍ୟ ହେବାର କିଛିନାହିଁ । ପୁଣି ଜୀବନ ଯୁଦ୍ଧରେ ବ୍ୟାପ୍ତ ପ୍ରାଣୀ-ସକଳ ତୀବ୍ର ପ୍ରତିଯୋଗୀତାରେ ଉତ୍ତୀର୍ଣ୍ଣ ହୋଇ ନିଜର ପ୍ରାଣ ବିକଳରେ ନିଜକୁ ରକ୍ଷା କରି ବଞ୍ଚି ରହିଛନ୍ତି । ଯେଉଁମାନେ ଜୀବନ ଯୁଦ୍ଧରେ ହାରିଯାଉ ଅଛନ୍ତି ସେ ପ୍ରଜାତି ଆଜି ଜୀବନ-ଦୃଶ୍ୟରୁ ଅନ୍ତର୍ହିତ । କେତେକେତେ ଜାତି, ପ୍ରଜାତି, ପ୍ରପ୍ରଜାତିର ଜୀବଯେ ପୃଥିବୀ ପୃଷ୍ଠରୁ ବିଲୁପ୍ତ ତାହାର ସବୁ ଇତିହାସ ଆମକୁ ଜଣାନାହିଁ । କେବଳ fossil ବା ଜୀବାଶ୍ମ ଗୁଡିକରୁ କେତେକ ଧାରଣା ବୈଜ୍ଞାନିକମାନେ ମାନବ ସମାଜର ଦୃଷ୍ଟିକୁ ଆଣିଛନ୍ତି । ଅନ୍ୟ ଗୁଡିକର ହିସାବ କିଏ ଦେବ ?

କ୍ରମବିକାଶର ଧାରା ଅବ୍ୟାହତ ଥିଲେ ମଧ୍ୟ ତାହା ଯେ ଜୀବନର ସବୁକିଛି ଅଲୌକିକତାର ଆଲେଖ୍ୟ ଅର୍ଥାତ୍ "miracle" ଗୁଡିକୁ ସହଜ ସରଳ ଭାବରେ ବୁଝାଇ ପାରିଛି ତାହା ନୁହେଁ । କ୍ରମ ବିବର୍ତ୍ତନ ଏକ ସହଜ-ବୋଧ ପଦ୍ଧତି ଭାବରେ ସ୍ୱୀକୃତ ହେଲେ ମଧ୍ୟ, ଏହା ଏକ-ଏବଂ-ଅଦ୍ୱିତୀୟ ତତ୍ତ୍ୱ ନୁହେଁ । ଜଙ୍ଗମ ଓ ଅଳ୍ପ ଚେତନାଲବ୍ଧ ପ୍ରାଣୀ ମାନଙ୍କର ବିକାଶର ଧାରା କେତେକ ପରିମାଣରେ ବୁଝାଇବାକୁ ସମର୍ଥ ହେଲେହେଁ, ଏହି ତଥ୍ୟ ଚୈତିନ୍ୟର ମହାପ୍ଲାବନକୁ ନିଶ୍ଚିତ ଭାବରେ ବୋଧବୃତ୍ତର ପରିସରରେ ସ୍ଥାପନ କରିବାକୁ ଏକାବେଳେକେ ଅସମର୍ଥ । ଜଙ୍ଗମଶ୍ରେଣୀର କେତେକ ଆପତଃ ଅବୋଧ୍ୟ ବ୍ୟବହାର ପଦ୍ଧତିର ବିଶ୍ଳେଷଣ କଲେ ଏହି ପ୍ରତିପାଦ୍ୟ ବିଷୟର ସନ୍ଧାନ ମିଳେ । ଅତ୍ୟୁଚ୍ଚ ଚେତନାସ୍ତରକୁ ବର୍ତ୍ତମାନ ନ ଯାଇ ପ୍ରାଣୀମାନଙ୍କ ମଧ୍ୟରେ ଉନ୍ନତ ବ୍ୟବହାର ରାଜିକୁ ବିଚାର କଲେ ଏହି ତତ୍ତ୍ୱର ସରଳୀକରଣ ସମ୍ଭବ । ଏହା ସତ୍ୟଯେ ଜୀବନ ଧାରଣ ନିମନ୍ତେ ପ୍ରାଣୀମାନେ

ପରସ୍ପର ସହିତ ପ୍ରତିଯୋଗୀତା-ଯୁଦ୍ଧରେ ଲିପ୍ତ । ସ୍ୱାର୍ଥ-ସଂଗ୍ରହରେ ସଦାବ୍ୟାପୃତ । ନିଜର ଅଧିକାର ସାବ୍ୟସ୍ତ କରିବାକୁ ଦୃଢ଼ଭାବରେ ଶ୍ରମସ୍ୱୀକାର କରିବାକୁ ସଦା-ବ୍ରତୀ । ସେମାନଙ୍କର ଅହରହ ପ୍ରୟାସ ହେଲା ନିଜର ଖାଦ୍ୟପେୟର ବ୍ୟବସ୍ଥା କରିବା, ନିଜର ଶରୀରକୁ ଅକ୍ଷୁର୍ଣ୍ଣ ରଖିବା, ଆଉ ଚିନ୍ତା ସବୁବେଳେ ନିଜକୁ ନେଇ ବ୍ୟସ୍ତ ରହିବା । ଜୀବନ-ଯୁଦ୍ଧରେ ସଫଳ ଭାବରେ ଉତ୍ତୀର୍ଣ୍ଣ ହେବା ପ୍ରାଣୀ-ମାନସର ଏକମାତ୍ର ଧେୟ ଓ ଶ୍ରେୟ । ତେବେ ତାହାର ବ୍ୟତିକ୍ରମ ମଧ ମନୁଷ୍ୟର ଦୃଷ୍ଟିଗୋଚର ହୁଏ । ପ୍ରାକୃତିକ ସଂଗ୍ରହ ତଥ୍ୟରେ (Natural Selection Theory) ପ୍ରାଣୀ-ମାନଙ୍କ ମଧରେ ସ୍ୱାର୍ଥତ୍ୟାଗର ଦୃଷ୍ଟାନ୍ତ, ଅବବୋଧ ନିମନ୍ତେ ଏକ ନୂତନ ସମସ୍ୟା । କାରଣ ସଂଗ୍ରହ ମାଧମରେ ନିଜକୁ ସୁହାଇଲା ଭଳି ବ୍ୟବହାର ସମସ୍ତେ ସ୍ୱୀକାର କରିବେ । ନିଜର ଅସ୍ତିତ୍ୱକୁ ସୁଦୃଢ଼ କରିବା ନିମନ୍ତେ ସ୍ୱାର୍ଥାନ୍ୱେଷୀ ହେବା ଏକ ଅବଧାରିତ ପ୍ରବୃତି ଜୀବ-ଜଗତର । ତାନହେଲେ ପ୍ରାଣୀର ବିଲୟ ସୁନିଶ୍ଚିତ । ମାତ୍ର ସେହି ପ୍ରାଣୀମାନଙ୍କ ମଧରେ ଅନ୍ୟପ୍ରାଣୀମାନଙ୍କ ପ୍ରତି ସଦ୍‌ଭାବ, ସଂପ୍ରୀତି, ଅନୁରାଗ, ସ୍ନେହର ଭାବଧାରା ମଧ ପ୍ରକାଶ୍ୟ ଭାବରେ ଦେଖାଯାଏ । କେତେକକ୍ଷେତ୍ରରେ ଏପରି ଦୃଷ୍ଟାନ୍ତ ଅଛି ଯେ ଏକ ପ୍ରଜାତିର ପ୍ରାଣୀ ଅନ୍ୟ ପ୍ରଜାତିର ଶିଶୁକୁ ଲାଳନ ପାଳନ କରି ତାକୁ ନିଜ ସନ୍ତାନ ପରି ବଡ କରିଛି । ବାଘଛୁଆ ବିଲେଇ ମାନଙ୍କ ମଧରେ ପ୍ରତିପାଳିତ ହୋଇଛି । କୁକୁର ଛୁଆକୁ ଗୋରୁ ନିଜ ସ୍ତନରୁ ଦୁଧଦେଇ ବଂଚାଇ ଦେଇଛି । ଏହି ପରିପ୍ରେକ୍ଷିରେ ଏକ ପ୍ରଜାତିର ଅନ୍ୟ ପ୍ରଜାତିକୁ ଯତ୍ନଦାନ, ଶ୍ରମଦାନ, ସମୟ ଦାନ, ସ୍ନେହ ଦାନ, ସାହାଯ୍ୟ ଦାନ ଇତ୍ୟାଦି ନିସ୍ୱାର୍ଥପର ପ୍ରକ୍ରିୟାର ଉଜ୍ଜ୍ୱଳ ଦୃଷ୍ଟାନ୍ତ ମନୁଷ୍ୟର ଦୃଷ୍ଟିଗୋଚର ହୋଇଅଛି । ଏହାଛଡା ସହାବସ୍ଥାନ, ଏକତ୍ରାବସ୍ଥାନ, ଗୋଷ୍ଠୀଗତ ସ୍ଥିତି ମାଧମରେ ପରସ୍ପର ସହିତ ଉଜ୍ଜ୍ୱଳ ବୁଝାମଣା, ବିପଦରେ ପରସ୍ପରକୁ ସାହାଯ୍ୟ କରିବା ଇତ୍ୟାଦିର ଦୃଷ୍ଟାନ୍ତ ମଧ ବିରଳ ନୁହେଁ । ଏହି କଲ୍ୟାଣକର, ଉନ୍ନତ ଓ ପବିତ୍ର ଭାବଧାରା (altruism) ର ଉଦ୍ରେକ ନିମ୍ନସ୍ତରର ପ୍ରାଣୀ ମାନଙ୍କ ମଧରେ ଏକ ବିସ୍ମୟ ବୋଲି ପ୍ରତିଭାତ ହେଲେହେଁ, ଏହା ସର୍ବାଦୌ ସତ୍ୟ, ଏକାନ୍ତଭାବେ ଆନନ୍ଦ ଦାୟକ ଓ ଆଶା-ବ୍ୟଞ୍ଜକ । ସବୁକିଛି ସ୍ୱାର୍ଥ ବୃତ୍ତରେ ଆବଦ୍ଧ ନୁହେଁ । ଏହି ବୃତ୍ତର ବାହାରେ ଯେ କେବଳ ଜୀବନ ଅଛି ତାହାନୁହେଁ; ସେହି ଜୀବନ ମହତ୍ତର, ଉନ୍ନତତର, ଆଲୋକ-ବିଶାରୀ ଏକ ମହାଜୀବନ; ଯେଉଁଠି କ୍ଷୁଦ୍ରତା, ଅଜ୍ଞତା, ନିକୃଷ୍ଟତା, ସ୍ୱାର୍ଥନ୍ଧତାର ଛୁଆଁ ମଧ ଲାଗେ ନାହିଁ, ଯେଉଁଠି ଆନନ୍ଦର ଏକ ଅନ୍ୟରୂପ ପ୍ରାଣୀ ବା ଜୀବମନରେ ଉଦ୍‌ଭାସିତ ହୁଏ । ଏହି ପରିଧିରେ ପ୍ରାକୃତିକ-ସଂଗ୍ରହ-ରୂପକ ନିମ୍ନସ୍ତରର ଉପସ୍ଥିତି ନାହିଁ । ଏହି ପରିମଣ୍ଡଳରେ ଏକ ଅନ୍ୟ ଭାବଧାରାର ଆଧିକ୍ୟ ଏକ ନବ ଦିଗନ୍ତର ଉନ୍ମୋଚନ କରିଥାଏ । ଏହି ଉନ୍ନତ ରାଜ୍ୟର ଅଲୌକିକତାର ବିବରଣୀ ସ୍ୱାର୍ଥରକ୍ଷାରେ ନିବଦ୍ଧ ନରହି ''ସ୍ୱାର୍ଥତ୍ୟାଗ''ରେ ପ୍ରତିଫଳିତ ହୁଏ । ତେବେ

''ତ୍ୟାଗ''ର ଆବଶ୍ୟକତା ଜୀବନ ଯୁଦ୍ଧରେ ଆସିଲା କେଉଁଠୁ ? ଜୀବନ ନାଟକରେ ଏହାର ଉପଯୋଗୀତା କଣ ? ବଂଚିବା-ପାଇଁ ଘୋର ସଂଘର୍ଷରେ ସ୍ୱାର୍ଥକୁ ଜଳାଂଜଳି ଦେବାର ପ୍ରବୃତିର ସ୍ଥାନ କେଉଁଠି ? ତେବେ କଣ ସ୍ୱାର୍ଥ-ସଂରକ୍ଷଣ-ତଥ୍ୟ ଏକାବେଳେକେ ଭୁଲ୍ ? ଜୀବନ-ଯୁଦ୍ଧ ବିଷୟଟି କଣ ଏକ ଅର୍ଥହୀନ ପ୍ରଳାପ ? ପ୍ରକୃତିର ରାଜ୍ୟରେ ସୋପାନଗତ ଓ ପରମ୍ପରା-ପ୍ରସ୍ତୁତ ବିବର୍ତ୍ତନ-ବାଦ-କ୍ରମବିକାଶ-ତଥ୍ୟ କଣ ଏକ ଭ୍ରମାତ୍ମକ ବିଚାର ଧାରା ?

ଏହି ପ୍ରଶ୍ନ ଗୁଡିକର ଉତ୍ତର ପାଇବାକୁ ହେଲେ ଜୀବନ-ପର୍ଯ୍ୟାୟର ବିଶଦ ଆଲେଖ୍ୟର ଅନୁବୀକ୍ଷଣ ଆବଶ୍ୟକ । କାରଣ ଜୀବନର ବିକାଶ କ୍ଷୁଦ୍ରରୁ ମହତ୍ତର ଓ ମହତ୍ତମ ବିଭାବରେ; ଅଣୁ ପରମାଣୁରୁ ବିସ୍ତୃତ ଅଭାବନୀୟ ''ଭୂମା''ରେ, ସ୍ଥୂଳ ଓ ମହାସ୍ଥୂଳରୁ ସୂକ୍ଷ୍ମତର ଓ ସୂକ୍ଷ୍ମତମ ବିକାଶରେ । ଜୀବନର ଉନ୍ମେଷ, ସ୍ଥିତି, ପ୍ରଗତି ଓ ପରିବ୍ୟାପ୍ତିର ବିଚାର ଅତ୍ୟନ୍ତ ଆବଶ୍ୟକ । ସମ୍ପୂର୍ଣ୍ଣଭାବରେ ସବୁକ୍ଷେତ୍ରରେ ଗଭୀରଭାବରେ ନ ହେଲେ ମଧ, ଏକ ସିଂହାବଲୋକନରୁ କେତେକ ବିଶେଷ ଚିତ୍ର ମନୁଷ୍ୟର ଦୃଷ୍ଟିଗୋଚର ହୁଏ । ଜୀବନର ବୈଚିତ୍ର୍ୟ, ବିଭିନ୍ନତା, ରୀତିନୀତିର ବର୍ଣ୍ଣଛଟା; ଏହାର ବିଶାଳ ଉଜ୍ଜ୍ୱଳ ପରିପ୍ରକାଶ ମାନବ ଜାତିକୁ ସ୍ତମ୍ଭିତ କରିଦିଏ । ତଥାପି ମାନବ ତାର ପ୍ରୟାସ ମାଧମରେ କେବଳ ଜୀବନକୁ ଦର୍ଶନ କରିବାରେ ସ୍ତିମିତ ହୋଇ ରହିନାହିଁ; ଏହାର ଶ୍ରୀବୃଦ୍ଧି, ସଂବୃଦ୍ଧି, ପରିମାର୍ଜନ, ପରିସଂକ୍ରମଣ, ପରିବେଷ୍ଟନୀର ଉନ୍ନତି ସାଧନ ଓ ଏହାର ନବରୂପ ଉଦ୍‌ଘାଟନରେ ନିମଜ୍ଜିତ ରହି ଜୀବନର ନବ ଦିଗନ୍ତ ନିରୁପଣ କିରବାରେ ସମର୍ଥ ହୋଇଅଛି ।

ଜୈବ-ବିଜ୍ଞାନରେ ଅସାଧାରଣ କୃତିତ୍ୱ ସହକାରେ ମାନବ ନୂତନ ଜୀବସୃଷ୍ଟିରେ ସଫଳ ହୋଇଅଛି । ଅନୁକୃତି ବା Cloning ଏହାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ । ଆଉ ଦଶ ବର୍ଷ ମଧରେ ମନୁଷ୍ୟର ଅନୁକୃତି କରିବା ମଧ ଅସମ୍ଭବ ନୁହେଁ । ସେହିପରି ରାସାୟନିକ ପ୍ରକ୍ରିୟାରେ ବେଙ୍ଗର ନୂତନ ଅଙ୍ଗ ସୃଷ୍ଟିକରିପାରୁଛି ଆଧୁନିକ ବୈଜ୍ଞାନିକ । ଏହାପରେ ଅଙ୍ଗପ୍ରତ୍ୟଙ୍ଗର ପରିବର୍ତ୍ତନ କରି ଏକ ନୂତନ ପ୍ରାଣୀସୃଷ୍ଟି କରିବାରେ ସମ୍ଭାବନା ମଧ ଉଜ୍ଜ୍ୱଳ ବୋଲି ମନେହୁଏ । ଏ ଗୁଡିକର କାର୍ଯ୍ୟକାରିତା କ୍ରମବିକାଶ-ତଥ୍ୟରୁ ସଂଗୃହୀତ, ବର୍ଦ୍ଧିତ, ସଂବୃଦ୍ଧ, ସୁନିୟନ୍ତ୍ରିତ ଓ ସୁବିନ୍ୟସ୍ତ ପ୍ରଣାଳୀର ଅବଲମ୍ବନ-ମାଧମରେ ପ୍ରଯୁକ୍ତ । ଏହି ନୂଆ ପ୍ରଯୁକ୍ତି କ୍ରମବିକାଶ-ଜ୍ଞାନ ସଂକଳିତ ଏକ ଅଜେୟ ପ୍ରକ୍ରିୟା, ଏକ ନବ-ପ୍ରବହମାନ ଧାରା, ଏହାର ସୀମାରେଖା ନାହିଁ । ବିଜ୍ଞାନର ଦୃତ ଓ ଦୃଢ଼ ପଦକ୍ଷେପରେ ଏହି ଚିନ୍ତା ଧାରାର ଜୟଯାତ୍ରା ମନୁଷ୍ୟ ସମାଜ ପ୍ରତି ଏକ ଶୁଭ ଶଙ୍ଖଧ୍ୱନି ।

ଏହି ବିଷୟରେ ବିଶେଷ ଅବତାରଣା ଅତ୍ୟାବଶ୍ୟକ, କାରଣ ଗୋଟିଏ ଅନୁକୃତି ବା କଲମି ମେଣ୍ଢା ସୃଷ୍ଟି ବିଶ୍ୱରେ ଏକ ବିରାଟ ଚହଳ ପକାଇପାରିଛି । ଆଗରୁ ପର୍ଯ୍ୟାଲୋଚନା

କରାହୋଇଛି ୱାଟସନ ଓ କ୍ରିକ୍‌ଙ୍କର DNA ର ଆବିଷ୍କାର । ତେୟାଳିଶି ବର୍ଷପରେ ଜୀବକୋଷ ଅଭ୍ୟନ୍ତରରେ ପ୍ରୋଥିତ ଡି. ଏନ୍. ଏର କୋଷ ସ୍ଥାନାନ୍ତରିତ କରାଯାଇ ଅଣ୍ଡକୋଷଟିକୁ ଡିମ୍ବାଣୁ ମଧରେ ପ୍ରବିଷ୍ଟ କରାହୁଏ । ଏହି କୋଷ ଓ ଅଣୁର ସଂମିଶ୍ରଣ ବୈଦ୍ୟୁତିକ ତରଙ୍ଗ ସାହାଯ୍ୟରେ ଅତି ସାବଧାନତା ର ସହିତ ଅପୂର୍ବ କୌଶଳ ସାହାଯ୍ୟରେ ସଂଘଟିତ କରାଯାଇ ଏହି କୋଷ ଗୁଡିକର କ୍ରମବର୍ଦ୍ଧନ ସମ୍ଭାବନାକୁ ଅତି ତ୍ୱରାନ୍ୱିତ କରାହୁଏ । ଶେଷରେ ଏହି ଦୁଇଟି ଜୀବକୋଷର ସଫଳ ମିଶ୍ରଣ ଗୋଟିଏ ନୂତନ ପ୍ରାଣୀସୃଷ୍ଟି କରେ । ଏହି ପ୍ରକ୍ରିୟା Cloming ବା ଅନୁକୃତି ନାମରେ କଥିତ । କଲମି ଜୀବର ସୃଷ୍ଟି ଏ ଯୁଗର ଏକ ଯୁଗାନ୍ତକାରୀ ଘଟଣା । ବହୁ ଗବେଷଣାପରେ ଏହି ସଫଳ ମେଣ୍ଢାର ଅନୁକୃତି ସମ୍ଭବ ହୋଇ ପାରିଅଛି । ଏହାର ପ୍ରଭାବ ସୁଦୂର ପ୍ରସାରୀ । ଏଥିରୁ ପ୍ରମାଣିତ ହେଲା ଯେ ପ୍ରାକୃତିକ ପ୍ରକ୍ରିୟାର ଗଭୀର ଅନୁସନ୍ଧାନ କରି ତାହାର ଭିନ୍ନ ଆରୋପ ମାଧମରେ ନୂତନ ଜୀବନର ସୃଷ୍ଟି ମନୁଷ୍ୟଦ୍ୱାରା ସମ୍ଭବପର । ଅର୍ଥାତ୍ ଜୀବନର ଏକ ନୂତନ ବିଭବ ଉନ୍‌ମୋଚିତ ହେଲା । ଏହା ପରମ୍ପରାଗତ ପୁରୁଷସ୍ତ୍ରୀ ମିଳନରୁ ସମ୍ଭବ ନ ହୋଇ, ଏକ କୃତିମ ପ୍ରକ୍ରିୟାର ପ୍ରୟୋଗରୁ ସଂଭୂତ; ଏହା ନିଶ୍ଚିତ ଭାବରେ ଏକ ବିସ୍ମୟକର ଆବିଷ୍କାର ଓ ଉଦ୍‌ଭାବନ ମଧ୍ୟ । କାରଣ ଭବିଷ୍ୟତରେ ଜୀବ-ଶ୍ରେଣୀର ଦ୍ୱିତ୍ୱସାଧନ (duplication) କରାଯାଇ ଏକ ନବ୍ୟ ପ୍ରାଣୀ-ପ୍ରଜାତି ସୃଷ୍ଟି କରାଯାଇ ପାରିବ । ସେମାନଙ୍କର ଜୀବନ-ଧାରା, ବ୍ୟବହାର-ପ୍ରଣାଳୀ, ମାନସିକତା ଇତ୍ୟାଦିର ରୂପରେଖ ସାନି ପରୀକ୍ଷା ନିରୀକ୍ଷା ମାଧମରେ ସ୍ଥିରିକୃତ ହେବ । ଏପର୍ଯ୍ୟନ୍ତ ଜୀବମାନଙ୍କର ପ୍ରବହମାନ ଧାରାରୁ ସେମାନଙ୍କର ବ୍ୟବହାର-ପଦ୍ଧତି ଭିନ୍ନ ହେବ ବା ସମାନ ହେବ ତାହା ଗବେଷଣା-ସାପେକ୍ଷ । ଅର୍ଥାତ୍ ଏହି ନୂଆ-ଜୀବ-ସୃଷ୍ଟି ମନୁଷ୍ୟକୃତ ହେବା ଫଳରେ ଏହି ଜୀବମାନଙ୍କର ଅଜଣା କ୍ରିୟା କଳାପ ଅନୁସନ୍ଧାନ ଯୋଗ୍ୟ । ସେ ଯାହା ହେଉ, ମନୁଷ୍ୟ ଯେ ଏକ ନୂତନ ସୃଷ୍ଟି କରିପାରିଛି ଜୀବନର-ପ୍ରତିକୃତି ବା ଅନୁକୃତି ମାଧମରେ ଏହା ଏକ ମହାନ ବୈଜ୍ଞାନିକ କୃତିତ୍ୱ ଓ ଏକ ଅଭାବନୀୟ କ୍ଷମତା ବିଜ୍ଞାନର, ଏଥିରେ ସନ୍ଦେହର ଅବକାଶ ନାହିଁ । ଏଥିରୁ ଉଦ୍‌ଭୂତ ସମସ୍ୟାବଳି ଏହି ପରୀପ୍ରେକ୍ଷୀରେ ଗଭୀର ଭାବରେ ଚିନ୍ତନୀୟ । ଜୀବର ଏହି ନୂତନ ପ୍ରତିକୃତି ଯୌନତା ମାଧମରେ ସୃଷ୍ଟି ନହେବା ଫଳରେ ଯୌନତାର ଆଉ ମୂଲ୍ୟ ରହିବ ନାହିଁ । ଯୌନତାର ଆକର୍ଷଣ ସ୍ତିମିତ ହେଲେ ସମାଜରେ ଜୀବନର ଛବି ପାଲଟିଯିବ । ପୁରୁଷର ସ୍ତ୍ରୀପ୍ରତି ସନ୍ତାନ-ପ୍ରଜନନ ପାଇଁ ଆବଶ୍ୟକତା ନରହିଲେ ସ୍ତ୍ରୀ ସ୍ୱାଧୀନତା ଆପେ ଆପେ ପ୍ରସାର ଲାଭ କରି ପୁରୁଷ ପ୍ରାଧାନ୍ୟ ଲୋପ କରିଦେବ । କୃତିମ ସଂଗ୍ରହ ମାଧମରେ ଶୁକ୍ରାଣୁ ଡିମ୍ବାଣୁର ମିଶ୍ରଣ ଫଳରେ ସନ୍ତାନ ଲାଭ ସମ୍ଭବପର ହେବ ଏହି ନୂଆ ଅନୁକୃତି ପଦ୍ଧତିରେ । ତେଣୁ ଚିରାଚରିତ ପ୍ରଜନନ ପଦ୍ଧତିରେ ଭଙ୍ଗା ପଡିଯିବ । କାଳକ୍ରମେ ଏହା ବର୍ଜିତ ମଧ ହୋଇପାରେ ।

ଅନୁକୃତ ଜୀବର କାମ ପ୍ରେରଣା, ଯୌନ ଉନ୍ମାଦନା, ସ୍ତ୍ରୀ-ପୁରୁଷ ମିଳନତା ଇଚ୍ଛା ରହିବକି ନାହିଁ, ତାହାର ଗବେଷଣା ଉପରେ ଭବିଷ୍ୟତର ଜୀବଶ୍ରେଣୀର ପ୍ରଗତି ନର୍ଭର କରେ । ବର୍ତ୍ତମାନ ପ୍ରଚଳିତ ପଦ୍ଧତିକୁ ଅନୁଧାବନ କଲେ ଦେଖାଯାଏ ଯେ ମାନବ ସମାଜରେ ଉଦଗ୍ର କାମ ପ୍ରବୃତ୍ତି ଏକ ପଶୁ-ଜୀବନ ଆଡକୁ ଧାବିତ । କ୍ରମ ବିବର୍ତ୍ତନ ବାଦରେ ଉନ୍ନତି ହେବା ପରିବର୍ତ୍ତେ ଏକ ଅଧୋଗାମିତାର ଧାରା ସର୍ବତ୍ର ପରିଲକ୍ଷିତ । ସେଥିରୁ ଚିରାଚରିତ ବିଧି, ନ୍ୟାୟ, ଚରିତ୍ର, ମୂଲ୍ୟମାନ, ନୀତିର ଅବକ୍ଷୟ ମଧ ଦେଖାଯାଉଅଛି । କ୍ରୋଧ ଓ କାମ ପ୍ରବୃତ୍ତିରୁ ଅଧୋଗତି ହୁଏ ଏହା ଶ୍ରୀକୃଷ୍ଣ ଗୀତାରେ ଅର୍ଜୁନଙ୍କୁ ବୁଝାଇଛନ୍ତି । ଅର୍ଜୁନ ପଚାରୁଛନ୍ତି । ‘‘ଅଧକେନ ପ୍ରଯୁକ୍ତୋୟଂ ପାପଂ ଚରତି ପୁରୁଷଃ ଅନିଚ୍ଛନ୍ନପି ବାର୍ଷ୍ଣେୟ ବଳାଦପି ନିୟୋଜିତଃ ?’’ ଶ୍ରୀକୃଷ୍ଣ ଉତ୍ତର ଦେଉଛନ୍ତି - ‘‘କାମଏଷଃ କ୍ରୋଧ ଏଷଃ ରଜୋଗୁଣୋ ସମୁଦ୍‌ଭବଃ ମହାଶନୋ ମହାପାପ୍ମା ବିଦ୍ଧ୍ୟେନଇପ୍ ବୈରୀଣାମ୍’’ ରଜୋଗୁଣରୁ ଉତ୍‌ପନ୍ନ କାମ ଓ କ୍ରୋଧ ସର୍ବନାଶକାରୀ ପାପପୂର୍ଣ୍ଣ । ଏହି ଗୁଡିକୁ ଶତ୍ରୁରୂପରେ ଜାଣିରଖ ।

ଯଦି ଅନୁକୃତି ମାଧମରେ କାମ ପ୍ରବଣତାର ବିନାଶ ବା କ୍ଷୟ ସାଧିତ ହୁଏ, ତେବେ, ଜୀବଜଗତରେ ଉର୍ଦ୍ଧଗାମିତା ସମ୍ଭବପର ହୋଇପାରିବ । ଏହା ଏକ ବିବର୍ତ୍ତନବାଦର ଉନ୍ନତ ସୋପାନ ମଧ ସୃଷ୍ଟି କରିପାରେ । ଏହି କଲମି ଜୀବର ମାନସିକତା କଣ ହେବ, ତାହା କେବଳ ଅନୁମାନ-ସାପେକ୍ଷ । କାରଣ ଏପରି ଅନୁକୃତ ଶରୀର କାମଜ-କ୍ରିୟାରୁ ସୃଷ୍ଟି ନ ହୋଇଥିବା ଯୋଗୁ ସେଥିରେ କାମପ୍ରତି ଅନୁଭୂକ୍ତି, ଆସକ୍ତି ପ୍ରବୃତ୍ତି ବା ଲିପ୍‌ସା ରହିବକି ନାହିଁ ତାହା ଦେଖିବାର କଥା । ଯଦି ସେଥିପ୍ରତି ବିଶେଷ ପ୍ରବଣତା ନରହେ, ତେବେ ସେପରି ଶରୀରରେ ଉନ୍ନତ ଭାବଧାରା, ଜୀବନ ପ୍ରବାହ, ଉଚ୍ଚମାନର ଶକ୍ତିର ଅବତରଣର ସମ୍ଭାବନା ଉଜ୍ଜ୍ୱଳ । ଯେପରି ‘‘ଋଷିପ୍ରାଣେ ଦେବାବତରଣ’’ର ବର୍ଣ୍ଣନା ଭକ୍ତକବି ମଧୁସୂଦନ ଦେଇଛନ୍ତି; ସେପରି ଅନୁକୃତ ମନୁଷ୍ୟର ଶୁଦ୍ଧପୂତ ଅନ୍ତଃକରଣରେ ଋଷି ଅରବିନ୍ଦ କଥିତ ‘‘ଅତିମାନସ ଚେତନା’’ରଅବତରଣ ଅବଶ୍ୟମ୍ଭାବି ହୋଇପାରେ । କାରଣ ବର୍ତ୍ତମାନ ଯୁଗରେ ମନୁଷ୍ୟ ଶରୀରରେ ଯେଉଁ ନିମ୍ନ ମାନର ପ୍ରକୃତି ବିରାଜମାନ କରୁଅଛିଁ, ସେଥିରେ ଉଚ୍ଚମାନର ଚେତନାର ସଂଚାର ଅଧିକ ପରିମାଣରେ ବାଧାପ୍ରାପ୍ତ ହେଉଅଛି ।

ଜଡ ପ୍ରକୃତିର ଶରୀରରେ ପରିପ୍ରକାଶ ଓ ନିମ୍ନମାନର ଚେତନାର ଅଭିବ୍ୟକ୍ତି ମନୁଷ୍ୟର ଅତିମାନସ ଚେତନା ପଥରେ ବହୁ ବାଧା ଓ ଅନ୍ତରାୟ ସୃଷ୍ଟି କରୁଅଛି । କିପରି ଭାବରେ ଜଡ ପ୍ରକୃତିର ଅନୁଗାମୀ ଶରୀର ଉନ୍ନତି ସାଧନ କରି ଉଚ୍ଚ ଅବସ୍ଥା ପ୍ରାପ୍ତି

ହୋଇପାରେ ତାହା ଶ୍ରୀ ଅରବିନ୍ଦଙ୍କ ବିଶଦ ବ୍ୟାଖ୍ୟା ସହ ପରବର୍ତ୍ତୀ ପର୍ଯ୍ୟାୟରେ ଆଲୋଚିତ ହେବ । ଏହି ପରିପ୍ରେକ୍ଷୀରେ ଏତିକି କୁହାଯାଇପାରେ ଯେ ଅନୁକୃତି-ଲବ୍ଧ କଲମୀ-ମନୁଷ୍ୟର ପ୍ରକୃତି କିପରି ସମ୍ଭାବନାମୟ ହେବ, ତାହା ଗଭୀର ଚିନ୍ତାର ବିଷୟ ।

ଏ ବିଷୟରେ ଚର୍ଚ୍ଚାର ଅନ୍ୟଗୋଟିଏ ଦିଗହେଲା ଅନୁକୃତ ଜୀବର ଉଦାସୀନତା । ମାତୃ ଗର୍ଭରେ ଲାଳନ ପାଳନ ଅନୁଭୂତିରିକ୍ତ ମନୁଷ୍ୟର ସ୍ୱଭାବସୁଲଭ ସ୍ନେହ, ପ୍ରୀତି, ମମତା, ପରସ୍ପର ପ୍ରତି ବନ୍ଧୁତ୍ୱ, ମାତୃ ଆଦର ଇତ୍ୟାଦି, ମୌଳିକ ଗୁଣ ରାଜିର ଅଭାବ ପରିଲକ୍ଷିତ ହେବାର ବିଶେଷ ସମ୍ଭାବନା । ଯଦି ଏପରି ହୁଏ ତାହା ହେଲେ ସମାଜର ଆବେଷ୍ଟନୀ ଓ ବନ୍ଧନୀ କ୍ରମେ ଶିଥିଳ ହୋଇ ଏକ ଉଦାସୀନ, ନିସ୍ପୃହ ଜାତିର ସୃଷ୍ଟି ହୋଇ ବର୍ତ୍ତମାନର ସଭ୍ୟତା ପ୍ରତି କୁଠାରାଘାତ କରିପାରେ । ଶିଥିଳ ସମ୍ବନ୍ଧରୁ ସାମାଜିକ ବନ୍ଧନ କାଳକ୍ରମେ ବିନିଷ୍ଟ ମଧ୍ୟ ହୋଇଯାଇପାରେ । ଏହା ଏକ ବିପଦକୁ ଡାକି ଆଣିପାରେ । ଆମର ଅଭିଜ୍ଞତା ଲବ୍ଧ ମୂଲ୍ୟମାନ ଏଥିରେ ବିପର୍ଯ୍ୟସ୍ତ ମଧ୍ୟ ହୋଇପାରେ ।

ଅନ୍ୟଦୃଷ୍ଟିରୁ ଉଦାସୀନ ଜୀବ-ଶ୍ରେଣୀ ହିଂସା, ଦ୍ୱେଷ, କ୍ରୂରତା, ପରସ୍ପର ସହିତ ଦ୍ୱନ୍ଦ୍ୱ ଯୁଦ୍ଧରୁ ବିରତ ହୋଇ ସମାଜକୁ ଏକ ଅଜଣା ଆବେଷ୍ଟନୀ ମଧ୍ୟକୁ ଟାଣି ନେଇପାରେ; ଏହି ପରି ବହୁଧରଣର, ବହୁ ପ୍ରକୃତିର ବହୁରୂପରେ ସାମାଜିକ ପରିବର୍ତ୍ତନ ଘଟିପାରେ । ଏଥିରେ ମାନବ ଜାତିର ଉନ୍ନତି ପଥରେ ପଦକ୍ଷେପ ମଧ୍ୟ ସୃଷ୍ଟି ହୋଇପାରେ ।

ସାଧାରଣ ମନୁଷ୍ୟର ଏକ ବିରାଟ ଦୋଷ ହେଲା ତାର ଚିନ୍ତାରାଜ୍ୟରେ ସ୍ଥାଣୁତ୍ୱ । ସେ ଭାବେ ନିଜେ ଯେପରି ଦେଖିଛି, ଜାଣିଛି, ଅନୁଭବ କରିଛି, ହୃଦୟଙ୍ଗମ କରିଛି ତାହାହିଁ ଜୀବନର ଚରମ ସତ୍ୟ । ଅନ୍ୟକିଛି ପରିବର୍ତ୍ତନଶୀଳ ମୂଲ୍ୟମାନକୁ ସେ ସହଜରେ ଆନ୍ତରିକତାର ସହିତ ଗ୍ରହଣ କରିପାରେ ନାହିଁ । ସୀମିତ ଦୃଷ୍ଟି ହେତୁ ସବୁ ନୂଆ ପଦ୍ଧତିକୁ ସନ୍ଦେହର ଆଖିରେ ଦେଖେ । ତେଣୁ ମାନବ ଜାତି ଆଜି ବହୁଧା ବିଭକ୍ତ ହୋଇ ଧର୍ମ। ଧର୍ମ ନେଇ, ରୀତିନୀତି ନେଇ, ସାମାଜିକ ବ୍ୟବହାରକୁ ନେଇ, ବିଶ୍ୱାସକୁ ନେଇ ପରସ୍ପର ମଧ୍ୟରେ ବିବାଦ-ଗ୍ରସ୍ତ । ସେଥିରେ ବହୁମୂଲ୍ୟ ପ୍ରଗତି ବାଧାପ୍ରାପ୍ତ ହେଉଅଛି । ପ୍ରଚଳିତ ପ୍ରବହମାନ ପଦ୍ଧତିରେ କ୍ରମ ବିବର୍ତ୍ତନ ବାଧାପ୍ରାପ୍ତ ହେବାରୁ ହୁଏତ ପ୍ରକୃତିର ପ୍ରେରଣାରେ ମନୁଷ୍ୟ ଅନ୍ୟଏକ ପ୍ରଜାତି ନିଜ ମଧ୍ୟରେ ସୃଷ୍ଟି କରିବାକୁ ଅନୁପ୍ରେରଣା ଲାଭ କରିଅଛି । ଯଦି ଏହି ପ୍ରଜାତିର ପ୍ରାଧାନ୍ୟ ପ୍ରତିଷ୍ଠିତ ହୁଏ, ତେବେ ଅଯଥା ଅସମ୍ଭାଳ ପ୍ରବୃତ୍ତିରାଜି ଶାନ୍ତ ହୋଇ ପଡିବେ । ଉତ୍ସାହ ଉଦ୍ଦୀପନାର ଆଧିକ୍ୟ କମିଯିବ । ଶାନ୍ତ ପରିବେଶରେ ଅନୁକୃତ ଜୀବମାନେ ଏକ ନୂତନ ଜୀବନ-ମାନର ପ୍ରଚଳନ କରିପାରିବେ । ଅନ୍ତତଃ ସେମାନେ ଗୋଟିଏ ଅନ୍ୟପନ୍ଥାର ସନ୍ଧାନ ଦେଇ ପାରିବେ ମନୁଷ୍ୟ ସମାଜକୁ ବଂଚି ରହିବା ପାଇଁ ଅଯଥା ଉତ୍ତେଜିତ ନହୋଇ, ଉଦାସୀନ ରହି, ନିରପେକ୍ଷ ଭାବରେ ଶୁଚିଦକ୍ଷ ହେବାପାଇଁ ।

କାରଣ କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟର ଆଧିକ୍ୟରେ ବର୍ତ୍ତମାନର ଜୀବନ ଏକାବେଳେକେ ଦୂଷିତ ହୋଇ ଉଠିଲାଣି । କେଇଟି ମହାପୁରୁଷଙ୍କର ଅମରବାଣୀ ଉଚ୍ଚାରଣରେ ସାଧାରଣ ମାନବ ସମାଜର ପରିବର୍ତ୍ତନ ହୋଇପାରିନାହିଁ। କେବଳ ଅଗଭୀର ଶବ୍ଦ-ପ୍ରାଣ ବାଣୀର ଉଚ୍ଚାରଣରେ ଅନ୍ତରର ଗଭୀରତମ ପ୍ରଦେଶରେ ଉଚ୍ଚ ଚିନ୍ତାର ସଂଚାର ହୋଇନାହିଁ । ''ଯତ୍ ପଠିତଂ ତତ୍ ଗୁରବେ ନିବେଦିତମ୍'' ଯାହା ପଢ଼ିଲେ ତାହା ଗୁରୁଙ୍କୁହିଁ ନିବେଦନ କରୁଛନ୍ତି ବର୍ତ୍ତମାନର ଜନ-ସମଗ୍ର, ତେଣୁ ଆମୂଳଚୂଳ ପରିବର୍ତ୍ତନର ଓ ଚରିତ୍ର ସଂଶୋଧନର ଉଦ୍ରେକ ହୋଇନାହିଁ। ଚର୍ବିତ ଚର୍ବଣ ଚାଲିଛି ଓ ଚାଲିଥିବ। ଏହି ବ୍ୟବସ୍ଥାରେ ଅନୁକୃତ ଜୀବନର ନବ ଅବତାରଣା ଏକ ନବଦିଗନ୍ତ ସୃଷ୍ଟି କରିପାରେ ଭବିଷ୍ୟତରେ । ଅବଶ୍ୟ ଏପରି ଭାବନା କେବଳ ସମ୍ଭାବନା-ପ୍ରସୂତ । ମାତ୍ର ଜୀବନର ଅନ୍ୟତମ ଲହରୀ ମାଳାର ସୃଷ୍ଟିହେବାର ଯଥେଷ୍ଟ ଉପାଦାନ ଏହି କଲମୀ-ସଭ୍ୟତା ମଧ୍ୟରେ ପ୍ରୋଥିତ ଅଛି, ଏହା ନିସନ୍ଦେହ ଭାବରେ କୁହାଯାଇପାରେ ।

ପୁଣି ମନ୍ଦଦିଗ ମଧ୍ୟ ରହିଛି ଏହି କଲମୀ ସଭ୍ୟତାର । ଯୋଗସୂତ୍ରହୀନ, ସ୍ନେହ ମମତା ବିହୀନ ଇତସ୍ତତଃ ଭ୍ରାମ୍ୟମାଣ କଲମୀ ମନୁଷ୍ୟର ମାନସିକତା ବିକୃତ ହେବାର ସମ୍ଭାବନାକୁ ଅସ୍ୱୀକାର କରାଯାଇନପାରେ । ସାଧାରଣ ସମାଜର ଅବହେଳା ପ୍ରାପ୍ତ ଅସଂଲଗ୍ନ ଏକାକୀ ଜୀବନ ଯାପନ କରୁଥିବା ମନୁଷ୍ୟର ବ୍ୟବହାର ଅସାମାଜିକ ମଧ ହୋଇପାରେ । ସମ୍ୟକ୍ ଦିଗଦର୍ଶନ ଅଭାବରୁ ପଥଭ୍ରଷ୍ଟ ହୋଇ ହିଂସାତ୍ମକ ପନ୍ଥା ମଧ୍ୟ ଅବଲମ୍ବନ କରିପାରେ ଏହି ନବ୍ୟ-ସୃଷ୍ଟ-ଜୀବ । ଯଦି ସମାଜ ଏମାନଙ୍କୁ ଆପଣାର ମନେକରି ଆଦରି ନନିଏ, ତେବେ ସେଗୁଡିକ ସମାଜପ୍ରତି ଏକ ଭୟାବହ ବିପଦ ମଧ୍ୟ ସୃଷ୍ଟି କରିପାରନ୍ତି । ସମାଜର ନୂଆନୂଆ ଅନେକ ସମସ୍ୟା ମଧ୍ୟ ଉଦ୍‌ଗତ ହେବାର ଆଶାଙ୍କା ଅଛି । ତେବେ ବହୁମୁଖୀ ଜୀବନର କଲମୀ ଜୀବଯେ ଏକ ଅଭିନବ ପରିପ୍ରକାଶ ଏଥିରେ ସନ୍ଦେହ କରିବାର କିଛିନାହିଁ । ଯେପରି ପ୍ରାଗୈତିହାସିକ ଯୁଗରେ ବହୁ ବିଚିତ୍ର ଜୀବ ସୃଷ୍ଟ ହୋଇ ବିନିଷ୍ଟ ହୋଇ ଯାଇଅଛନ୍ତି । ନୂତନ ପ୍ରାଣୀ-ଶ୍ରେଣୀ ସୃଷ୍ଟ ହୋଇଛନ୍ତି । ସେହିପରି କଲମୀଜୀବ ଏକ ନବ୍ୟଜୀବନର ଧାରା ସୃଷ୍ଟି । ଏହା ମନୁଷ୍ୟକୃତ ହେଲେହେଁ ପ୍ରାକୃତିକ ଜୀବନ-ସୂତ୍ରରୁ ସଂଗୃହୀତ ପ୍ରଜନନର ଆଉ ଏକ ନୂତନ ଧାରା । ସବୁଠାରୁ ବେଶୀ ସଂଖ୍ୟକ ପ୍ରାଣୀ, ଅର୍ଥାତ୍ ଜୀବାଣୁ, ସ୍ତ୍ରୀ-ପୁରୁଷ ସଂଗମରୁ ଜାତ ନୁହନ୍ତି । ସେଗୁଡିକ ନିଜେ ନିଜକୁ ଦ୍ୱିତ୍ୱ କରିବାକୁ ସମର୍ଥ । କୋଟି କୋଟି ଜୀବାଣୁ କ୍ଷଣକରେ ସୃଷ୍ଟ ହେଉଅଛନ୍ତି । ପୁଣି ବିଲୟ ପ୍ରାପ୍ତ ମଧ୍ୟ ହେଉଛନ୍ତି । ତେଣୁ ଜୀବନର ବୃଦ୍ଧି-କରଣ କେବଳ ସଙ୍ଗମ ପ୍ରକ୍ରିୟାରେ ଆବଦ୍ଧ ନୁହେଁ । ଥରେ ଜୀବନ-ବୃତ୍ତର ପରିଧି ବୁଝିପାରିଲେ, ତାହାର ବ୍ୟାପ୍ତି ବିଷୟରେ କିଛି

ଧାରଣା କରାଯାଇପାରେ। ସାଧାରଣ ମନୁଷ୍ୟ କାମପ୍ରକ୍ରିୟାକୁ ଏକ ଅତି ସୀମିତ ବୃତ୍ତରେ, ଜୀବନର ଉତ୍ସଭାବରେ, ଏକମାତ୍ର ପନ୍ଥା ରୂପେ, ପରିକଳ୍ପନା କରି ଅତି କ୍ଷୁଦ୍ର ଦୃଷ୍ଟିରେ ନିଜକୁ ଆବଦ୍ଧ ରଖି କୃତିମତାର ଆବରଣରେ ଏହି ପ୍ରଜନନ-ପଦ୍ଧତିର ବିଶେଷ ଉଦ୍ଦେଶ୍ୟ ବୁଝିପାରନ୍ତି ନାହିଁ। ମହାବିଶ୍ୱରେ ଜୀବନର ବହୁଧାରା ବା ପ୍ରକ୍ରିୟା ମାଧ୍ୟମରେ ପ୍ରକାଶକୁ ଥରେ ବୁଝିଲେ ମନୁଷ୍ୟର ଭ୍ରମ ଏକାବେଳେକେ ଦୂର ହୋଇଯାଆନ୍ତା। ଏହି ବିଷୟର ପୂର୍ଣ୍ଣ ଅବତାରଣା ଓ ବିଚାର ପରେ କରାଯିବ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ କଲମୀ ଜୀବନର ଗବେଷଣାଲବ୍ଧ ତଥ୍ୟରାଜିରୁ ବହୁ ଚିକିତ୍ସା ପଦ୍ଧତିର ଉଦ୍‌ଭବ ହୋଇଅଛି। genes ବା ଜନନୀକା ଚିକିତ୍ସା ଦ୍ୱାରା ବହୁ ଦୁରାରୋଗ୍ୟ ବ୍ୟାଧିର ନିରାକରଣ ସମ୍ଭବ ହୋଇଅଛି। ରୋଗଗ୍ରସ୍ତ ଜନନୀକାକୁ ନୀରୋଗ genes ସାହାଯ୍ୟରେ ସଫଳ ଓ ସକ୍ରିୟ କରିବାପରେ କେବଳ ଯେ ଲୋକ ନିରୋଗ ହୋଇପାରୁଛି ତାହାନୁହେଁ, ତାହାର ପୂର୍ବବଳ ଫେରି ଆସୁଛି। ଜନନୀକା ଅବସ୍ଥାପନ ଫଳରେ ବୃଦ୍ଧକୁ ଯୌବନ ମଧ୍ୟ ଫେରାଇ ଦିଆଯାଇପାରେ। ଏହିପରି ପରିକଳ୍ପନା ପୁରାଣମାନଙ୍କରେ ମିଳେ। ଏହା ବର୍ତ୍ତମାନ ଯୁଗରେ ସତ୍ୟ ହେବାକୁ ଯାଉଅଛି। ଏହାଫଳରେ ଜୀବନମାନ କେବଳ ଯେ ଉନ୍ନତ ହେବ ତାହା ନୁହେଁ; ଜୀବନର ଧାରଣା ଏକାବେଳେକେ ପାଲଟିଯିବ। ନୂତନ ଯୁଗର ଏହି ଘଡିସନ୍ଧି ମୂହୁର୍ତ୍ତରେ ମାନବ ସମାଜ ଉପସ୍ଥିତ। ନବକଳେବର ପ୍ରାପ୍ତି ବର୍ତ୍ତମାନ ସୁଦୂର ନୁହେଁ। ଏହି ନବ୍ୟ ଚିକିତ୍ସା ପଦ୍ଧତିରେ ଅମରତ୍ୱର ପଦଧ୍ୱନି ମଧ୍ୟ ଶୁଣାଯାଉଅଛି। ଯଦି ଶରୀରକୁ ଜନନୀକା ରୋପଣ ମାଧ୍ୟମରେ ନୂତନତ୍ୱ ଦିଆଯାଇପାରେ, ତେବେ ଚିର ନବକଳେବର ସୃଷ୍ଟି ପ୍ରକ୍ରିୟାରେ ମନୁଷ୍ୟ ଅମର ନ ହେବ କାହିଁକି ? ଏହି ଜଡ ବିନାଶ ପ୍ରବଣ ଶରୀର ଘନ ଘନ ଚିକିତ୍ସାର ସାହାଯ୍ୟ ନେଇ ଅମର ହୋଇ ରହିବାରେ ବାଧା କେଉଁଠି ? ବିଜ୍ଞାନ ଜଡକୁ ଅମର କରିବାପାଇଁ ପ୍ରତିଶ୍ରୁତିବଦ୍ଧ ହୋଇ ଚେଷ୍ଟା ଚଳାଉଛି।

ଏହି କୃତ୍ରିମ ଉପାୟରେ ଅନୁକୃତିର ସଫଳତା ପ୍ରମାଣ କରିଦେଇଛି ଯେ ଜୀବନର ବିବର୍ତ୍ତନବାଦ ବା କ୍ରମବିକାଶତତ୍ତ୍ୱ ଏକମାତ୍ର ପନ୍ଥା ନୁହେଁ ଜୀବନର ଉନ୍ମେଷ, ପ୍ରଗତି ଓ ଅଭିବୃଦ୍ଧି ନିମନ୍ତେ। ମାତ୍ର କ୍ରମବିକାଶ ଏକ ବିଶିଷ୍ଟ ଧାରା। ଏହି ସତ୍ୟକୁ ଏକାବେଳେକେ ଅସ୍ୱୀକାର କରାଯାଇ ପାରିବ ନାହିଁ। ଅଲୌକିକତା ଯେ କେବଳ ଏହି ତଥ୍ୟଦ୍ୱାରା ଆଲୋକିତ ହୋଇଛି ତାହାନୁହେଁ, ଜଟିଳ ଚିତ୍ରରେ ପ୍ରତିଫଳିତ ଜୀବ-ନକ୍ସା କୋଟି କୋଟି ବର୍ଷଧରି ବିକାଶ ମାଧ୍ୟମରେ ଅତୀତରୁ ବର୍ତ୍ତମାନକୁ ପ୍ରବାହିତ ହେଲେ ମଧ୍ୟ, ଏହା ଏକମାତ୍ର ସୋପାନ ନୁହେଁ ଜୀବନ-ବିକାଶର, ପ୍ରାଣୀ ସୃଷ୍ଟିର, ରହସ୍ୟମୟ ଜୀବ-ବିସ୍ତାରର। ଆହୁରି ଅନେକ

ଅନେକ ପନ୍ଥା ରହିଛି ପ୍ରକୃତିର ନିଭୃତ ଭଣ୍ଡାରରେ ଜୀବ-ଉତ୍କର୍ଷ ସାଧନ ନିମନ୍ତେ । ଏହି ପନ୍ଥା ଗୁଡିକ କେବଳ ଧୀର ମନ୍ଥର ଗତିରେ ସବୁବେଳେ ସବୁଦିନପାଇଁ ଯେ କାମକରୁଥିବେ ଏହା କେତେକ କ୍ଷେତ୍ରରେ ପ୍ରମାଣିତ ହେଲେ ମଧ୍ୟ, ସର୍ବସାରତତ୍ତ୍ୱର ସ୍ୱରୂପ ନୁହନ୍ତି । ଆହୁରି ଅନେକ ପନ୍ଥା ରହିଛି ବିକାଶର, ସେଥିରେ ପ୍ରକୃତିର ଯେପରି ହାତ ରହିଛି; ବିଜ୍ଞାନର ଅବଦାନ ମଧ୍ୟ ରହିଛି ନବ-ସ୍ୱରୂପ ଉଦ୍‌ଘାଟନର । କାରଣ ଅନ୍ତର୍ନିହିତ ତଥ୍ୟ-ସନ୍ଧାନରେ ସଦାବ୍ୟାପୃତ ବିଜ୍ଞାନ, ପ୍ରକୃତିର ବର-ଦାନକୁ ନାନାଭାବରେ ତାର ପ୍ରୟୋଗଶାଳାରେ ବ୍ୟବହାର କରି, ରହସ୍ୟମୟ କଣିକା ଗୁଡିକୁ ଜୀବନରୁ ସଂଗ୍ରହ କରିବାରେ ସକ୍ଷମ ହୋଇ, ସେଗୁଡିକୁ ନବ ପ୍ରଯୁକ୍ତି ମାଧମରେ ବ୍ୟବହାର କରି, ଜୀବନର ଶ୍ରୀବୃଦ୍ଧି ସାଧନ କରୁଅଛି । ଏହି ମହନୀୟ ପ୍ରଚେଷ୍ଟାରେ ବହୁ ନୂତନ ତଥ୍ୟ ଉଦ୍‌ଘାଟିତ ହୋଇ ଶେଷରେ ମନୁଷ୍ୟକୁ ଚିରଯୌବନର ଆଶ୍ୱାସନା ଦେଇ ଅମରତ୍ୱର ଇଙ୍ଗିତ ମଧ୍ୟ ପ୍ରେରଣ କରୁଅଛି । ଏପରି ଚମତ୍କାରୀତା କ୍ରମବିକାଶ ତତ୍ତ୍ୱର ଫଳଶୃତି ନୁହେଁ । ଏହା ନବ ପ୍ରଯୁକ୍ତିର ଆଶୀର୍ବାଦ । ତେଣୁ ଏଥିରୁ ପ୍ରମାଣିତ ହେଲା ଯେ ବ୍ୟବହାରଯୋଗ୍ୟ ପ୍ରଯୁକ୍ତି ବିଦ୍ୟାର କ୍ଷମତା ସର୍ବୋପରି ଏଯୁଗର ଏହି ଅପୂର୍ବ ସମ୍ଭାବନାମୟ ବିଦ୍ୟାର ଚ଼ମତ୍କାରିତା କୋଟି ବର୍ଷବ୍ୟାପି ପ୍ରକୃତିର ଧୀର ପଦକ୍ଷେପବାହୀ ଜୀବ ପ୍ରଗତିଠାରୁ କୌଣସି ଗୁଣରେ ନ୍ୟୁନ ନୁହେଁ, ବରଂ ଏହା କ୍ଷିପ୍ର ପଦକ୍ଷେପରେ ଆଗେଇ ଚାଲିଛି ଭବିଷ୍ୟତର ନବଦିଗନ୍ତ ଅନୁସନ୍ଧାନରେ । ପ୍ରଯୁକ୍ତିର ମହିମା ପ୍ରକୃତିର ମହିମାମୟ ଅବଦାନ ତୁଳନାରେ ଅଧିକ ଚମକପ୍ରଦ । ପ୍ରକୃତିରୁ ସଂଗୃହିତ ତଥ୍ୟରାଜିକୁ ବ୍ୟବହାର କରି ପ୍ରଯୁକ୍ତି ବିଦ୍ୟା ଅସମ୍ଭବକୁ ସମ୍ଭବରେ ପରିଣତ କରିପାରୁଅଛି । ବହୁ ରହସ୍ୟର ସମାଧାନ କରିପାରୁଛି । ଜୀବନର ବୃହତ୍ତର ବୃତ୍ତକୁ ଅନୁଧାବନ କରିପାରୁଅଛି । ବର୍ତ୍ତମାନର ସଭ୍ୟତା ପ୍ରତି ପ୍ରଯୁକ୍ତି ବିଦ୍ୟାର ଅବଦାନ ଅପରିସୀମ । ଏବର ଜୀବନ ଧାରଣ ପ୍ରକ୍ରିୟା, ଏହାର ମାନବୃଦ୍ଧି, ବ୍ୟବହାରିକ ସଂଭାରବୃଦ୍ଧି, ସୁଖ-ସମ୍ପଦ-ଶ୍ରୀବୃଦ୍ଧିରେ ପ୍ରଯୁକ୍ତି ବିଦ୍ୟାର କୃତି ଅବିସ୍ମରଣୀୟ । ତେଣୁ ଏହା ଅବଲିଳାକ୍ରମେ କୁହାଯାଇପାରେ ଯେ ଜୀବନ -ବିକ୍ଷେପ, ସଂପ୍ରସାରଣ, ଗୁଣାତ୍ମକ ବିକାଶ କ୍ଷେତ୍ରରେ ପ୍ରଯୁକ୍ତି ଏକ ନୂତନ ମାତ୍ରା । ଏହି ମାତ୍ରାକୁ ବାଦଦେଲେ ଅଗ୍ରଗତି ଅସମ୍ଭବ ହୋଇପଡିବ । ବର୍ତ୍ତମାନର ବିଶ୍ୱ ଅଚଳ ହୋଇପଡିବ । ସମସ୍ୟା ବଳିରେ ଜର୍ଜରିତ ହୋଇ ଥାଣୁ ଓ ପଙ୍ଗୁ ହୋଇ ପଡିବ । ଶେଷରେମଣିଷ ପଶ୍ଚାତ୍ ଗତିର ପ୍ରବାହରେ ଉର୍ଦ୍ଧ୍ୱଶ୍ୱାସ ହୋଇ ସଭ୍ୟତାର ବିନାଶ ପଥରେ ପଡି ବିଲୟ ଲାଭ କରିବ । ବୋଧୋଦୟର ସାର ଅଂଶ ହେଲା ପ୍ରଯୁକ୍ତି ବିଦ୍ୟା ଲାଭ । ଏହା ମହନୀୟ ଜୀବନର ପଥପ୍ରଦର୍ଶକ ମଧ୍ୟ ।

କିନ୍ତୁ କଳମୀ-ମନୁଷ୍ୟ ତିଆରି କରିବା ବିରୁଦ୍ଧରେ ଏକ ସବଳ ଜନ-ମତ ମଧ୍ୟ ଅଛି । ପ୍ରଯୁକ୍ତିର ଅବଦାନ ଯଦି ମଣିଷର ନୀତିଜ୍ଞାନ, ମନୁଷତ୍ୱ, ସଭ୍ୟତାର ଗୁଣାବଳିରେ

ଆଞ୍ଚ ଆଣେ ଓ ବିରୋଧାଭାସ ପ୍ରକଟ କରେ ତେବେ ସେହି ପ୍ରଯୁକ୍ତିରେ ନିଷେଧାଜ୍ଞା ପ୍ରୟୋଗ କରିବାର ଅଧିକାର ମନୁଷ୍ୟରେ ଅଛି । ସଭ୍ୟତା କେତେ ଗୁଡିଏ ବିଶିଷ୍ଟ ମାନ ମହତ୍ୱ ରୀତି-ନୀତି, ମୂଲ୍ୟବୋଧ ଗୁଡିକ ଉପରେ ପ୍ରତିଷ୍ଠିତ । "Civilisation is a conglomeration of values and virtues"। ଯଦି ପ୍ରଯୁକ୍ତି ବିଦ୍ୟାରୁ ବିଷମୟ ଫଳ ଜାତହୁଏ ଯାହା ଏହି ସଭ୍ୟତାକୁ ଧ୍ୱଂସ କରିଦେବ, ତେବେ ତାହାକୁ ନିଷେଧ କରିବା ପାଇଁ ମାନବ-ସମାଜ ବଦ୍ଧ-ପରିକର; ଯେପରି ପରମାଣୁ ବୋମା । ଏହାର ପ୍ରୟୋଗରେ ସମଗ୍ର ମାନବଜାତିର ବିନାଶ ହେବ । ତେଣୁ ଏହାର ପ୍ରସ୍ତୁତିକୁ ଏକାବେଳେକେ ବନ୍ଦ କରିବାପାଇଁ ଚେଷ୍ଟା ଚାଲିଛି ଅପ୍ରତିହତ ଭାବରେ । ସମସ୍ତେ ଏପର୍ଯ୍ୟନ୍ତ ରାଜି ନହେଲେ ମଧ, ବହୁଦେଶ ରାଜି ହୋଇ ସାରିଲେଣି ।

ସେହିପରି ମନୁଷ୍ୟ-କୃତି ବିରୁଦ୍ଧରେ ଜନମତ ବର୍ତ୍ତମାନ ଆମେରିକାରେ ପ୍ରବଳ ହୋଇ ଉଠିଛି । ଏଥି ନିମନ୍ତେ ଯୁକ୍ତରାଷ୍ଟ୍ର ଆମେରିକାର ସଭାପତି ବିଲ୍ କ୍ଲିଣ୍ଟନ୍ ସେଠାର ନୀତି-କମିଶନ୍‌କୁ ଏ ବିଷୟରେ ବିଚାର କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ଏହି କମିଶନରେ ସର୍ବସମ୍ମତି କ୍ରମେ ଏହି ମତ ପ୍ରକାଶ ପାଇଛି ଯେ କଲମୀ-ମଣିଷ ତିଆରି ଏକ ଅତି ବିପଜ୍ଜନକ-କୃତି । ଏହା ପିଲାମାନଙ୍କ ମାନସ କ୍ଷେତ୍ରରେ ଭୟଙ୍କର ବିଷମୟ ହେବ ଏବଂ ନୀତିଗତ ଭାବରେ କେବେହେଁ ଗ୍ରହଣ ଯୋଗ୍ୟ ନୁହେଁ । ଏହା ମଣିଷ ସମାଜ ପକ୍ଷରେ ଘୋର କ୍ଷତିକାରକ । ଏହି ମତକୁ ଗ୍ରହଣ କରି କ୍ଲିଣ୍ଟନ୍ ୬ବର୍ଷ ନିମନ୍ତେ ମନୁଷ୍ୟକୃତି ବିରୋଧରେ ନିଷେଧାଜ୍ଞା ପ୍ରୟୋଗ କରିବାକୁ ପ୍ରସ୍ତୁତି ପର୍ବ ଶେଷ କରି ସାରିଲେଣି । ସେ କହିଛନ୍ତି ଯେ ଏହା ସାମାଜିକ-ମନୁଷ୍ୟ-ଜୀବନ ପ୍ରତି ଏକ ଅଭିଶାପ ସଦୃଶ ହୋଇ ''ମନୁଷ୍ୟ ଜୀବନ'' ପ୍ରତି ପ୍ରତ୍ୟେକ ମନୁଷ୍ୟର ଶ୍ରଦ୍ଧାକୁ ଧୂଳିସାତ୍ କରିଦେବ । ଏ ବିଷୟରେ ନିୟମକାନୁନ କରି ଏହାକୁ ବନ୍ଦ କରିବାକୁ ପଡିବ । ଏହି ନିୟମ ବଳରେ ପୂର୍ବ-ଇପ୍ସିତ ବିଶ୍ୱାସ ମାନବ ମଧରେ ଦୃଢ଼ିଭୂତ ହେବ ଯେ ମନୁଷ୍ୟ ଭଗବାନଙ୍କ ପ୍ରଦତ୍ତ ବ୍ୟକ୍ତିତ୍ୱଦ୍ୱାରା ବିକଶିତ; ଏବଂ ମାନବ ଜୀବନ ଏକ ଈଶ୍ୱରକୃତ ଅଲୌକିକତା । ଏହା ଫଳରେ ମାନବ କୃତିକୁ ବଢ଼ାଇ ଦେଇ ପିଲାମାନଙ୍କ ଭବିଷ୍ୟତକୁ ନଷ୍ଟ ପରିବାର ପ୍ରଚେଷ୍ଟା ବ୍ୟାହତ ହେବ । ନବେ ପ୍ରତିଶତ ଯୁକ୍ତରାଷ୍ଟ୍ର ଆମେରିକୀୟ ନାଗରିକ ଏହି ନିଷେଧାଜ୍ଞା ସପକ୍ଷରେ ମତ ଦେଇଛନ୍ତି । ୬ବର୍ଷ ପର୍ଯ୍ୟନ୍ତ ଏହି ଆଜ୍ଞା ବଳବତ୍ତର ରହିବ ବୋଲି ପ୍ରଥମତ ସିଦ୍ଧାନ୍ତ ନିଆ ଯାଇଅଛି ।

ବର୍ଣ୍ଣାଡଶଙ୍କ ମତରେ ଡାରଉଇନଙ୍କ ତଥ୍ୟ ଗ୍ରହଣଯୋଗ୍ୟ ନୁହେଁ କାରଣ ଏଥିରେ ଶୌର୍ଯ୍ୟ, ବିର୍ଯ୍ୟ, ଆଶା, ଆକାଙ୍କ୍ଷାର ଘୋର ବିପର୍ଜୟ ପୋଥିତ ଅଛି । ମନୁଷ୍ୟର ବିଭିନ୍ନ

ଗୁଣାବଳୀର ନିନ୍ଦନୀୟ ଅଧୋଗାମିତା ମଧ୍ୟ ସେଥିରେ ପରିଲକ୍ଷିତ ହୁଏ । ଏହି ମନ୍ତବ୍ୟର ଗୋଟିଏ ଗଭୀର ଚିନ୍ତାର ଦିଗ ଅନ୍ତର୍ଭୁକ୍ତ । ସେହି ଆଲୋଚନା ଦୃଷ୍ଟିରୁ ଡାରଉଇନଙ୍କ ତଥ୍ୟ ଅସମ୍ପୂର୍ଣ୍ଣ ମନେହୁଏ । ଏହାର ପୁଙ୍ଖାନୁପୁଙ୍ଖ ବିଚାର ଆବଶ୍ୟକ ।

ମନୁଷ୍ୟ କେଉଁ ଉପାଦାନରେ ସୃଷ୍ଟ ତାହା ପ୍ରଥମେ ଆଲୋଚନାଯୋଗ୍ୟ । ମଣିଷ ଯଦି ଈଶ୍ୱରଙ୍କର ଅଂଶ ବିଶେଷ ହୋଇଥାଏ ତେବେ ଶ୍ରୀକୃଷ୍ଣ କଥିତ ତାଙ୍କର ଉପାଦାନ ମଧ୍ୟ ମଣିଷ ଭିତରେ ଅନ୍ତର୍ନିହିତ ଅଛି । ''ଭୂମିରାପୋନଳ ବାୟୁ ଖଂ ମନୋ ବୁଦ୍ଧିରେବଚ, ଅହଂକାରଂ ଇତିୟଂମେ ଭିନ୍ନା ପ୍ରକୃତି ଅଷ୍ଟଧା ।'' ଅର୍ଥାତ ମାଟି, ପାଣି, ପବନ, ଅନଳ, ବାୟୁ, ଆକାଶ, ମନ, ବୁଦ୍ଧି ଓ ଅହଂକାର ଈଶ୍ୱରଙ୍କ ସ୍ୱଭାବଜାତ ପ୍ରକୃତି । ସେହି ପ୍ରକୃତି ମଣିଷ ଭିତରେ ଖୋଜିଲେ ମଧ୍ୟ ମିଳେ । ଜଡ ବସ୍ତୁରେ ସୃଷ୍ଟ ଶରୀର ଧ୍ୱଂସ ପାଇଗଲେ ସେହି ବସ୍ତୁ ଗୁଡିକ ଜଡରେ ମିଶିଯାଆନ୍ତି । ମାତ୍ର ମନ, ଆତ୍ମା, ବୁଦ୍ଧି ଇତ୍ୟାଦିର ବିନାଶ ହୁଏ ନାହିଁ । ଏହି ମନ ବସ୍ତୁଟି କଣ ? ଏହାର ଉତ୍ପତ୍ତି, ଉଦ୍‌ଭବ, ପ୍ରକାଶ, ସଂପ୍ରସାରଣ, ପ୍ରଭାବ ଓ କାର୍ଯ୍ୟକାରୀତାର ରୂପରେଖ କଣ ? ଏ ବିଷୟଟି ଏହି ପରିପ୍ରେକ୍ଷୀରେ ବିଶେଷ ଭାବରେ ଆଲୋଚନା-ଯୋଗ୍ୟ । କାରଣ ମନୁଷ୍ୟ ଗୋଟିଏ ବିଚାରବାନ ଜୀବ; କେବଳ ପଶୁ ନୁହେଁ । ଏହି ବିଚାର କେଉଁଠାରୁ ଆସେ, କେଉଁଠି ଏହାର ଅବସ୍ଥିତି ଓ ସଂଗ୍ରହ ? ଏହାର ପ୍ରଭାବ ମନୁଷ୍ୟ ଜୀବନରେ କେତେଦୂର ପ୍ରସାରିତ ? ଏହି ପ୍ରଶ୍ନ ଗୁଡିକର ଉତ୍ତର ଡାରଉଇନଙ୍କ ତଥ୍ୟରେ ମିଳେ ନାହିଁ । ପ୍ରକୃତିର ବ୍ୟବହାର ତତ୍ତ୍ୱରେ ଏହାର ସମାଧାନ ନାହିଁ । ''ମନ'' ବିଷୟରେ ପାଶ୍ଚାତ୍ୟରେ ଗଭୀରଭାବେଚିନ୍ତା କରାଯାଇଅଛି । ତାହାର ସଂକ୍ଷିପ୍ତ ଅବତାରଣାର ପ୍ରୟୋଜନ ।

ମନୋବିଜ୍ଞାନରେ ''ମନ''ର ସଂଜ୍ଞା ଦିଆ ହୋଇଛି "epi phenomenon" ଅର୍ଥାତ୍-ଶରୀରରୁ ଉଦ୍‌ଭୂତ ଏକ ଅତି-ପ୍ରକାଶ ବା ଏକ ବହିର୍ଭୂତ ଉଜ୍ଜ୍ୱଳ-ଶକ୍ତି ବିଶିଷ୍ଟ ବସ୍ତୁ । କିନ୍ତୁ ମନର ସଂଜ୍ଞାଟି ସନ୍ତୋଷଜନକ ହୋଇପାରିନାହିଁ । ଯଦିବା ଏହା ଶରୀରର ବହିର୍ଭୁତ ଏକ ବିକାଶଶୀଳ ଅଭିବ୍ୟକ୍ତି ହୋଇଥାଏ, ତାହାହେଲେ ଶରୀରରେ ତାହାର ଅବସ୍ଥାନ କେଉଁଠାରେ ? ଏହା କେଉଁ ଅଙ୍ଗ ଉପରେ ଆଧାରିତ ବା ଆରୋପିତ ? ଅର୍ଥାତ୍ ଏହାର ସ୍ଥାନ କେଉଁଠି ? ସେ ବିଷୟରେ ମଧ୍ୟ ନାନା ମୁନିଙ୍କ ନାନାମତ ଅଛି । କେହି କେହି କହନ୍ତି ଏହା ମସ୍ତିଷ୍କରେ ଅବସ୍ଥିତ । ଯଦି ତାହାହୁଏ ତେବେ କେଉଁ ଅଂଶରେ କିପରି ଭାବରେ ଏହା ମସ୍ତିଷ୍କ ସହିତ ଜଡିତ ଓ ତାର କର୍ମ ପଦ୍ଧତି କେଉଁ ନୀତି ନିୟମକୁ ଅନୁସରଣ କରେ ସେ ବିଷୟରେ ମଧ୍ୟ ସମ୍ପୂର୍ଣ୍ଣ ଯୁକ୍ତିନିଷ୍ଠ ନିର୍ଭରଶୀଳ ଧାରଣାର ଅସ୍ତିତ୍ୱ ନାହିଁ ।

ପ୍ରସିଦ୍ଧ ମନସ୍ତାତ୍ତ୍ୱିକ ଶିଗମଣ୍ଡ୍ ଫ୍ରଂୟେଡ୍‌ଙ୍କ ମତରେ ଏହି ମନର ଜ୍ଞାତ ଅଂଶରୁ ଅଜ୍ଞାତ ଅଂଶ ବହୁଳାଂଶରେ ଅଧିକ । ଏହି ଅଜ୍ଞାତ ଅଂଶର ପ୍ରଭାବ ମନୁଷ୍ୟ ଉପରେ ଏପରି ଭାବରେ ବିସ୍ତାରିତ ହୁଏ ଯେ ଅନେକ କୃତକର୍ମର ବ୍ୟାଖ୍ୟା ଉହ୍ୟ ରହିଯାଏ ବା ଅଧିକାଂଶରେ ବୋଧଗମ୍ୟ ହୁଏ ନାହିଁ । ତାଙ୍କ ମତରେ ମନୁଷ୍ୟର ଅଭିଳାଷ ଗୁଡିକର ପରିପୂରଣ ନହେବା ଯୋଗୁ ସେଗୁଡିକ ଦଳିତ ଓ ନିଷ୍ପେଷିତ ହୋଇ ଅଜଣା ଅଂଶରେ ବୁଡିରହି ସେମାନଙ୍କର ପ୍ରହେଳିକାମୟ ପ୍ରଭାବ ବ୍ୟକ୍ତ କରନ୍ତି ମନୁଷ୍ୟ ଜୀବନରେ । ସ୍ୱପ୍ନରେ ସେ ଗୁଡିକର ଛବିଳ ଚିତ୍ର ମିଳେ ଅନେକାଂଶରେ । ଏହି ଅଭିଳାଷ ବା ଇଚ୍ଛାରାଜି ଜୀବନରେ ଚରିତାର୍ଥ ନହେବାର କାରଣ ସାମାଜିକ ଅବସ୍ଥା, ବିଧିବ୍ୟବସ୍ଥା, ନିୟମକାନୁନର ଅନୁଗାମିତା ଓ କେତେକ ସାମାଜିକ ନିଷେଧାଜ୍ଞା । କିନ୍ତୁ ଇଚ୍ଛାର ଜନ୍ମ, ଘାସପରି, ଅନ୍ତହୀନ ଭାବରେ ହୋଇଥାଏ । ଏତେଗୁଡିଏ ଇଚ୍ଛା ପରିପୂରଣ କରିବା ମନୁଷ୍ୟର ସାଧ୍ୟାତୀତ । ତେଣୁ ସେ ଗୁଡିକ ମନର ଗହନ ବନରେ ବିଚରଣ କରେ ଆବିଳ ପରିସ୍ଥିତିରେ ଛନ୍ଦାଛନ୍ଦି ହୋଇ ବହୁ ବହୁ ବର୍ଷ ଧରି । ସାମୟିକ ଭାବରେ ମଣିଷର ଅଭାବନୀୟ ଦୁଷ୍କର୍ମ, ହିଂସା, ଦ୍ୱେଷ, ଅସୂୟାପୂର୍ଣ୍ଣ ବ୍ୟବହାର ମାଧ୍ୟମରେ ଅବଦମିତ ଅଭିଳାଷ ଗୁଡିକର ପ୍ରରିପ୍ରକାଶ ଘଟିଥାଏ । ସେ ଗୁଡିକର ଗଭୀର ତଦନ୍ତ କରି ଫ୍ରଂୟେଡ ସାହେବ ତାଙ୍କର ''ମନୋ ବିଶ୍ଳେଷଣ'' ନାମକ ଅତି ପ୍ରସିଦ୍ଧ ଗ୍ରନ୍ଥରେ ଉଦାହରଣମାଳା ଅତି ସଂନ୍ତପର୍ଣ୍ଣତା ସହକାରେ ମନୋମୁଗ୍ଧକର ରୂପରେ ବିଚକ୍ଷଣ ଭାବରେ ପରିବେଷଣ କରିଅଛନ୍ତି । ମନ ଅଜଣା ଦିଗରେ କେତେ ଯେ ଅଲିଖିତ କାହାଣୀ, ଅନ୍ଧକାରମୟ ଲିପ୍ସା, ଉଦ୍‌ବେଗଜନକ ପ୍ରବୃତ୍ତି, ପ୍ରଚଣ୍ଡ ବିରୋଧାଭାସ, ଅନନ୍ତ କାମ-ପ୍ରବଣତା ଲୁକ୍କାୟିତ ଅଛି ତାହାର ସୀମା ସଂଖ୍ୟା ନାହିଁ । ଫ୍ରଂୟେଡ୍ ତାହାର ବୈଜ୍ଞାନିକ ରୀତିରେ ବିଶ୍ଳେଷଣ କରି ବହୁ ଦୃଷ୍ଟାନ୍ତ ମାଧ୍ୟମରେ ତାଙ୍କର ତଥ୍ୟର ବଳିଷ୍ଠ ପରିପୋଷଣ କରିଅଛନ୍ତି । ମାନସିକ ଭାରସାମ୍ୟହୀନ ବ୍ୟକ୍ତିମାନଙ୍କୁ ମନୋ ବିଶ୍ଳେଷଣ ମାଧ୍ୟମରେ ଚିକିତ୍ସା କରି ଭଲ ମଧ୍ୟ କରିଦେଇ ଅଛନ୍ତି । ତାଙ୍କର ସ୍ୱପ୍ନତତ୍ତ୍ୱ ବଶ୍ୱ-ବିଖ୍ୟାତ । ମନୁଷ୍ୟ ଯାହା ଭାବେ ତାହା ଚରିତାର୍ଥ ନ କରିପାରିଲେ ତାହାର ପ୍ରତିଫଳନ ସ୍ୱପ୍ନ ମାଧ୍ୟମରେ ହୋଇଥାଏ । ତାଙ୍କର ଜଣେ ବନ୍ଧୁ ଓକିଲ ଥିଲେ । ସେ ସ୍ୱପ୍ନ ଦେଖିଲେ ଯେ ସେ ସବୁ କେଶ୍ ହାରିଯାଇଛନ୍ତି । ପରଦିନ ଫ୍ରଂୟେଡଙ୍କୁ କହିଲେ, ''ତୁମର ସ୍ୱପ୍ନତତ୍ତ୍ୱ ଏକାନ୍ତ ଭ୍ରମାତ୍ମକ । କାରଣ ମୁଁ କେବେହେଲେ କେଶ୍ ହାରିବା କଥା ଚିନ୍ତା କରିନପାରେ । ତାହାହେଲେ ଏପରି ଉଦ୍‌ଭଟ ସ୍ୱପ୍ନର ଅର୍ଥ କଣ ହୋଇପାରେ ?'' ଫ୍ରଂୟେଡ୍ ଉତ୍ତର ଦେଲେ ମୋର ତଥ୍ୟ ଭୁଲ ପ୍ରମାଣ କରିବାକଥା ତୁମେ ନିଶ୍ଚୟ ଚିନ୍ତା କରିଥିବ । କାରଣ ଅଧିକାଂଶ ଲୋକତ ମୋ ତଥ୍ୟକୁ ହେୟ ପ୍ରତିପନ୍ନ କରିବାକୁ ତତ୍‌ପର । ତୁମ୍ଭ ମନରେ ମଧ୍ୟ ସେପରି ଭାବନା ନିଶ୍ଚୟ

ଉପୁଜିଥିବ ।'' ତାଙ୍କ ବନ୍ଧୁ ଚୁପକରି ରହି ତାଙ୍କର ମତ ବିରୋଧରେ କିଛି କହିପାରିଲେ ନାହିଁ । ଏହିପରି ମନର ରହସ୍ୟମୟ ଆଖ୍ୟାନ, ଅଗଣିତ ଓ ଅପରିକଳ୍ପନୀୟ । ଏହା ଏକ ଅତି ଅଦ୍‌ଭୂତ ସୃଷ୍ଟି ଯାହାର ରୂପରେଖ, ଅବସ୍ଥାନ, ବିଧିପଦ୍ଧତି, ଗତିପ୍ରକୃତି ସର୍ବତୋଭାବେ ନିର୍ଣ୍ଣନୀୟ ନୁହେଁ ।

ଫ୍ରଂୟେଡ୍‌ଙ୍କ ବିଶିଷ୍ଟ ମତ ହେଲା ଜୀବନକୁ ଯୌନଭାବ, କାମ ପ୍ରବୃତ୍ତି, ଯୌନତା-ପ୍ରବଣ କ୍ରିୟା-କଳାପ ବିଶେଷ ଭାବରେ ନିୟନ୍ତ୍ରିତ କରୁଅଛି । ମନୁଷ୍ୟର ଯୌନ ପ୍ରବୃତ୍ତି ଚରିତାର୍ଥ କରିବା ନିମନ୍ତେ ସେ ସଦା ଚପଳ, ସଦା ତତ୍‌ପର, ସଦା ଚିନ୍ତିତ । ସୃଷ୍ଟିର ଆଦିରେ ଯୌନତା ଥିବା ଯୋଗୁ ମଣିଷର କର୍ମ-ପ୍ରବଣତା ଭିତରେ କାମ ଭାବର ପ୍ରବଳତା ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ । ଏହି ପ୍ରବଣତାରେ ବାଧାବିଘ୍ନ ପହଞ୍ଚୁଥିବାରୁ ମଣିଷ ତାର ଲିପ୍ସା ଚରିତାର୍ଥ ନ କରିବାରୁ ତାହାର ମନରେ ଘୋର ଅସନ୍ତୋଷ, ଅଶାନ୍ତି, ବିଭ୍ରାନ୍ତିମାନ ଜାତ ହୁଏ, ଫଳରେ ତାହାର ଜୀବନରେ ଅସ୍ଥିରତା ଦେଖାଦିଏ । ଏହି ଅସ୍ଥିରତା ମନକୁ ବିଶେଷଭାବରେ ପ୍ରଭାବିତ କରେ । ଅଶାନ୍ତ ମନରୁ ଉତ୍‌ପନ୍ନ ହୁଏ ମାନସିକ ଅସ୍ଥିରତା, ରୋଗ, ଭାରସାମ୍ୟହୀନତା । ଫଳରେ ମଣିଷ ପାଗଳ ମଧ ହୋଇଯାଏ । କେତେକ ଦୁଃଖରେ ମ୍ରିୟମାଣ ହୋଇ ବିଷାଦଗ୍ରସ୍ତ (depresed) ହୋଇ ପଡନ୍ତି । ଅନ୍ୟ କେତେକ ଲୋକ ଉଦ୍‌ଭ୍ରାନ୍ତ ହୋଇ ଆକ୍ରମଣାତ୍ମକ ମନୋଭାବଗ୍ରସ୍ତ (paranoid) ହୋଇ ପଡନ୍ତି । ସେମାନଙ୍କୁ ପାଗଳ ଖାନାରେ ରଖିବାକୁ ପଡେ । ମନୋବିକାରର ଧାରା ଅଂସଖ୍ୟ । ବହୁ ପାଗଳ ସାଧାରଣ ଜୀବନ ଯାପନ କଲେ ମଧ, ପ୍ରକୃତରେ ସେମାନେ ମାନସିକ ରୋଗୀ, ସନ୍ଦିଗ୍ଧମନା, ସଂଶୟୀ, ହୀନତାପୂର୍ଣ୍ଣ ଆଚରଣ କରିବାରେ ଅଗ୍ରଣୀ । ଅନ୍ୟ କେତେକ ବ୍ୟକ୍ତି ଶୁଚିବାୟୁ ଗ୍ରସ୍ତ, ଆଗ୍ରାସୀ-ମନୋଭାବପୂର୍ଣ୍ଣ, କ୍ରୂରତା-କୁଶଳୀ, ନୀଚମନା । ସେମାନେ ସମାଜରେ ପ୍ରଭାବ ବିସ୍ତାର କରି ଅଧୋଗାମୀତାର ପଥ ସରଳୀ-କରଣରେ ବ୍ୟସ୍ତ । ମନର ପ୍ରଖର ବିଶ୍ଳେଷଣ କରି ଫ୍ରଂୟେଡ୍ ପ୍ରମାଣ କରିଛନ୍ତି ଯେ ପୃଥିବୀରେ ସବୁକର୍ମରେ ମନର ଖେଳ ସୁସ୍ପଷ୍ଟ ଏବଂ ଏହି ମନର ଆଚରଣ କାମ-ଭାବର ସନ୍ତୁଳନ ବା ଅସ୍ଥିରତାର ସିଧାସଳଖ ପ୍ରସାରଣ ।

ମନହେଲା କର୍ମର ସାରଥୀ ଏଥିରେ ସନ୍ଦେହ ନାହିଁ । ମାତ୍ର କାମଭାବର ପ୍ରଖରତା ଏକମାତ୍ର ଶିଖା ମନକୁ କର୍ମରେ ପ୍ରଜ୍ୱଳିତ କରିବା ନିମନ୍ତେ ଏହା ସମ୍ପୂର୍ଣ୍ଣଭାବରେ ସତ୍ୟ ନୁହେଁ ବୋଲି ଫ୍ରଂୟେଡଙ୍କ ଦୁଇ ଶିଷ୍ୟ ପରେ ବୁଝିଲେ । ସେମାନଙ୍କର ଗୁରୁଙ୍କ ସହିତ ମତଭେଦ ହେଲା । ସେମାନେ ସ୍ୱାଧୀନଭାବରେ ଗବେଷଣାକରି ନିଜ ନିଜର ତଥ୍ୟ ନିର୍ଭୀକ

ଭାବରେ ପ୍ରକାଶ କଲେ । ଅଧ୍ୟାପକ ୟୁଙ୍ଗ୍ କହିଲେ ଯେ ମନୁଷ୍ୟର କର୍ମ ପ୍ରବୃତ୍ତି କେବଳ କାମ-ଭାବର ପ୍ରତିଫଳନ ନୁହେଁ । ଏହା ପଛରେ ଏକ ଅତି ଗଭୀର ସତ୍ୟ ଅନ୍ତର୍ନିହିତ ଅଛି । କୋଟି କୋଟି ବର୍ଷ ଧରି ମନୁଷ୍ୟ ଜାତି ତାହାର ପ୍ରଗତି ପଥରେ ଯେତେ ଭାବଧାରା, କର୍ମକୁଶଳତା, ଚରିତ୍ରବତ୍ତା, ପ୍ରବୃତ୍ତି ରାଜି କ୍ରମ ବିବର୍ତ୍ତନ ମାଧ୍ୟମରେ ସଂଗ୍ରହ କରି ଅଗ୍ରସର ହୋଇଅଛି, ସେହି ''ପ୍ରଜାତି ପ୍ରଜନ୍ମରୀତି'' ଯୁଗଯୁଗଧରି ତାହା ମଧ୍ୟରେ ବସାବାନ୍ଧି ରହି ତାହାର କର୍ମ ପଦ୍ଧତିରେ, ଶରୀରରେ, ମନରେ, ବ୍ୟବହାରରେ, ବହିଃପ୍ରକାଶରେ ନିଜକୁହିଁ ବିସ୍ତାରିତ ଭାବେ ପ୍ରଯୁକ୍ତ କରୁଅଛି । ଏହାକୁ ୟୁଙ୍ଗ racial archetype ନାମ ଦେଇ ଅଛନ୍ତି । ଏହାର ପ୍ରଭାବ କାମଭାବଠାରୁ ଅତ୍ୟଧିକ କ୍ଷମତାଶାଳୀ । ମନୁଷ୍ୟର ରୋଗନିର୍ଣ୍ଣୟରେ ମଧ୍ୟ ଏହି ପ୍ରଜାତି-ରୀତି-ବିଶ୍ଳେଷଣ ସାହାଯ୍ୟକାରୀ ହେଉଅଛି । ସେହି ରୀତିରେ ଚିକିତ୍ସା କରିବା ଦ୍ୱାରା ରୋଗ ଆଶୁ ନିରାମୟ ହେଉଅଛି । ଆଜି କାଲି ଆମେରିକାରେ ଏହି ପ୍ରକାରର ବିଶ୍ଳେଷଣ ଅତ୍ୟନ୍ତ ପ୍ରତିଷ୍ଠା ଲାଭ କରିଅଛି । ଏହି ବିଶ୍ଳେଷଣ ମାଧ୍ୟମରେ ମାନବ ଜାତିର ପ୍ରୋଥିତ-ପ୍ରବୃତ୍ତିର ନିର୍ଣ୍ଣୟ କରାଯାଇ ଦୁର୍ଷବୃତ୍ତିକୁ ଆମୁଳ ନିରାକରଣ କରାଯାଉଛି ।

ଦ୍ୱିତୀୟ ଶିଷ୍ୟ ଆଡଲର (Adler) ୟୁଙ୍ଗଙ୍କ ସହିତ ମଧ୍ୟ ଏକମତ ହେଲେନାହିଁ । ତାଙ୍କ ମତ ହେଲା କାମ-ଭାବଠାରୁ ଅଧିକ ପ୍ରବଳ ଏକ ସତ୍ତା ଅଛି ମନୁଷ୍ୟ ମଧ୍ୟରେ । ତାହାହେଲା ନିଜକୁ ପ୍ରତିଷ୍ଠା କରି ନିଜର ସ୍ୱାଭିମାନ ବୃଦ୍ଧିକରି ନିଜକୁ ସବୁଥିରେ ପ୍ରଚାର କରି ନିଜର ଗର୍ବଭାବ ବିଭିନ୍ନ ଉପାୟରେ ପ୍ରକାଶ କରିବା । ନିଜକୁ ଅନ୍ୟଠାରୁ ଶ୍ରେଷ୍ଠ ମନେ କରିବା, ସର୍ବତ୍ର ନିଜକୁ ଜାହିର କରିବାର ପ୍ରୟାସ ମନୁଷ୍ୟ ମନରେ ସବୁଠାରୁ ବଳବତ୍ତର ପ୍ରବୃତ୍ତି । ଏଥିପାଇଁ ମଣିଷ ନାନାଭାବରେ ଚେଷ୍ଟା କରି ନିଜର ପ୍ରୌଢ଼ିକୁ ପ୍ରତିପନ୍ନ କରିବା ନିମନ୍ତେ ବଦ୍ଧ ପରିକର । ଛାତ୍ର ତାହାର ଶ୍ରେଣୀର ଅନ୍ୟଛାତ୍ରମାନଙ୍କଠାରୁ ତାର ଶ୍ରେଷ୍ଠତ୍ୱ ପ୍ରମାଣ କରିବାକୁ ତତ୍ପର; ତାହା ଶିକ୍ଷା ହେଉ, ଖେଳ ହେଉ, ନାଟକ ସଙ୍ଗୀତ ହେଉ ବା ହସ କୌତୁକ ହେଉ, ଯେ କୌଣସି କ୍ଷେତ୍ରରେ ନିଜର ପାରଦର୍ଶୀତା ଦେଖାଇ ଅନ୍ୟ ମାନଙ୍କର ଦୃଷ୍ଟି ଆକର୍ଷଣ କରିବାର ପ୍ରୟାସ ଲକ୍ଷଣୀୟ । ସେହିପରି ସ୍ତ୍ରୀଲୋକମାନେ ନିଜର ସୌନ୍ଦର୍ଯ୍ୟ, ସ୍ୱାସ୍ଥ୍ୟ, ଆକର୍ଷଣୀୟତା, କମନୀୟତା, ସୌଷ୍ଠବ, ସଙ୍ଗୀତ ନାଟକ ଇତ୍ୟାଦିରେ ନିଜର କ୍ଷମତା ପ୍ରଦର୍ଶନ ନିଜର ଗୁଣାବଳିଦ୍ୱାରା ଅନ୍ୟମାନଙ୍କୁ ଆକର୍ଷଣ କରିବାର ଦୁର୍ନିବାର ପ୍ରୟାସ ସମାଜରେ ଦେଖିବାକୁ ମିଳିଥାଏ । ପୁରୁଷମାନେ ନିଜର ସାହସିକତା, ଶାରୀରିକ ବଳ, କ୍ଷମତା, ଶକ୍ତି, ଜ୍ଞାନ, ପାରଙ୍ଗମତା ଓ ବିଭିନ୍ନ କର୍ମକ୍ଷେତ୍ରରେ ନିଜର କଳା କୌଶଳ ଦେଖାଇ ଅନ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କରି ଖ୍ୟାତିଲାଭ କରିବା ପାଇଁ ସଦା ଚେଷ୍ଟିତ । ଆଉ ରାଜନୀତିଜ୍ଞ ମାନଙ୍କର ସାମାଜିକ ପ୍ରତିଷ୍ଠା, କ୍ଷମତାର ଲୋଭ,

ଅପରବ୍ୟକ୍ତି ମାନଙ୍କ ଉପରେ ନିଜର ଶ୍ରେଷ୍ଠତା ପ୍ରଦର୍ଶନ କରିବାର ଦୃଷ୍ଟାନ୍ତ ବର୍ତ୍ତମାନ ଯୁଗରେ ସର୍ବଜନ ବିଦିତ । ଏହିସବୁ ପ୍ରବୃତ୍ତିର ମୂଳଦୁଆ ହେଲା ନିଜକୁ ଶ୍ରେଷ୍ଠ ପ୍ରତିପନ୍ନ କରିବାର ଦୁର୍ଦମନୀୟ ଆକାଙ୍କ୍ଷା । ଏହିପରି ମାନସିକ ପ୍ରବଣତା ସବୁଠାରୁ ବେଶୀ ପ୍ରାଧାନ୍ୟ ଲାଭ କରେ ମଣିଷ ମନରେ, ପ୍ରତିଫଳିତ ହୁଏ ତାହାର କର୍ମରେ, ପ୍ରଭାବିତ କରେ ତାହାର ଜୀବନକୁ, ନିଜର ଶେଷ୍ଠତ୍ୱର ସଫଳ ରୂପାୟନରେ ସେ ଗର୍ବରେ ସ୍ଫୀତ ହୋଇଉଠେ ଓ ଅନେକ କ୍ଷେତ୍ରରେ ତାର ରୁକ୍ଷତା ପ୍ରକାଶପାଏ ବ୍ୟବହାରରେ, ଗର୍ବ ପ୍ରକାଶପାଏ ତାର ସାମାଜିକ ଜୀବନରେ, ଅସହିଷ୍ଣୁତା ପ୍ରକାଶପାଏ ବିରୋଧାଭାସରେ । ସେ ଏକପ୍ରକାର ମାନସିକ ରୋଗୀ ସଦୃଶ ଅଶାନ୍ତ, ଉଦ୍‌ବେଳିତ, ସ୍ଫୀତ ହୋଇଉଠେ । ମାତ୍ର ସେ ନିଜର ଦୋଷାବଳି ନବୁଝି ପାରି ଅନ୍ୟର ଦୋଷଦର୍ଶୀ ହୁଏ । ତାହାର ରୁଦ୍ରରୂପର ଏକ ଉଦାହରଣ ହିଟଲର ଭଳି ଏକ ଉଗ୍ରକ୍ଷମତା-ଲିପ୍ସୁ ମାନବ-ବିଧ୍ୱଂସୀ-ବ୍ୟକ୍ତି-ସ୍ୱରୂପ । ଅନ୍ୟ ଦିଗରେ, ଯେଉଁ ଲୋକ ତାର କ୍ଷମତା-ପ୍ରକାଶରେ ବିଫଳହୁଏ, ସେ ହୋଇପଡେ ଦୁଶ୍ଚିନ୍ତାଗ୍ରସ୍ତ, ଦୁଃଖୀ, ବିଭ୍ରାନ୍ତ, ନିରାସକ୍ତ ଓ ନିରାନନ୍ଦ । ସେ ସବୁବେଳେ ମାନସିକ ବିରାଗରେ ଭରପୁର ହୋଇ ଜୀବନର ସନ୍ତୁଳନ ହରାଇବସେ । କେତେକ ଅତି ଦୁଃଖୀ ହୋଇ ପାଗଳ ମଧ ହୋଇଯାଆନ୍ତି । ଏହିପରି କ୍ଷମତା-ଲିପ୍ସୁ ବ୍ୟକ୍ତିର ମାନସିକତା ସଦା ଆଗ୍ରାସୀ ହୋଇଥାଏ । ଏହା ପ୍ରତ୍ୟେକ ମଣିଷ ମଧରେ ଊଣା ଅଧିକେ ପ୍ରକାଶ ପାଇଥାଏ । ନିଜକୁ ଶ୍ରେଷ୍ଠ ପ୍ରତିପନ୍ନ କରିବାର ପ୍ରବୃତ୍ତି କାମଭାବ ଅପେକ୍ଷା ଅଧିକ ବଳବାନ । ଜୀବନରେ ଏହି ପ୍ରବୃତ୍ତିର ପ୍ରଭାବ ସୁଦୂର ପ୍ରସାରୀ । ଅଧିକାଂଶ ଲୋକେ କ୍ଷମତା ପ୍ରକାଶ ପାଇଁ ସବୁବେଳେ ବ୍ୟାପୃତ ରହି ଜୀବନର ଅନ୍ୟ ଅନେକ ବିଭାବରେ ପ୍ରୋଥିତ ଥିବା ଆନନ୍ଦ ଉପଭୋଗରୁ ବଞ୍ଚିତ ହୁଅନ୍ତି । ଏକମୁଖୀ ନିଜକୁ କ୍ଷମତାଶାଳୀ କରିବାର ପ୍ରଚେଷ୍ଟାରେ ନିମଗ୍ନ ରହି ଅନ୍ୟ ସୂକ୍ଷ୍ମ ବୃତ୍ତିରାଜିରୁ ଦୂରକୁ ଅପସରି ଯାଆନ୍ତି । ଏହିପରି ସମାଜରେ ସୂକ୍ଷ୍ମପ୍ରବୃତ୍ତି ରାଜିର ଅବହେଳା ହେବା ସହିତ ଉଗ୍ର-ଆତ୍ମ-ବାଦର ବହୁଳ ପ୍ରସାର ହୁଏ । ନିଜ ନିଜ ଭିତରେ ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାର ପ୍ରଚେଷ୍ଟା ବଢ଼ିଚାଲେ । ଦ୍ୱନ୍ଦ୍ୱ ଉପୁଜେ । ଦ୍ୱନ୍ଦ୍ୱରୁ ହିଂସାତ୍ମକ କାର୍ଯ୍ୟ, ପରସ୍ପର ପ୍ରତି ଦ୍ୱେଷାତ୍ମକ ବିଚାର, ହୃଦୟହୀନତା, ଅପକର୍ମ, ମାଡପିଟ, ହତ୍ୟା ଇତ୍ୟାଦି ବଢିଚାଲେ । ଫଳରେ ସାମାଜିକ ଜୀବନ ଦୁର୍ବିସହ ହୋଇଉଠେ । ବର୍ତ୍ତମାନ ସମାଜର ଛବି ପ୍ରାୟତଃ ପଙ୍କିଳ, ଦୂଷିତ, ଦୋଷଦର୍ଶୀ, ଗଭୀର ଭାବରେ ହିଂସାତ୍ମକ ଓ ଶେଷରେ ମାନବତାର ବିନାଶ-ପ୍ରବଣ । ଆଡଲର୍‌ କଥିତ ଶ୍ରେଷ୍ଠତା ପ୍ରତିପାଦନର ଅପଚେଷ୍ଟା ଯେ କେତେଦୂର ସତ୍ୟ ତାହା ଆଜିର ମାନବର କୁପ୍ରବୃତ୍ତିର ଚିତ୍ରରୁ ସହଜରେ ଅନୁମେୟ । ଏ ଯୁଗର ସମାଜରେ ଘଟୁଥିବା ଘଟଣାବଳିରୁ ସୁସ୍ପଷ୍ଟ ।

ତୁଳନାତ୍ମକ ବିଚାରରୁ ଏହା ପ୍ରତୀୟମାନ ହୁଏ ଯେ ଫ୍ରଂୟେଡ୍‌ଙ୍କ ଯୌନତା-ପ୍ରବଳ ମନୁଷ୍ୟ ଚରିତ୍ର ସତ୍ୟ ହେଲେହେଁ, ଏହା ଏକମାତ୍ର ସତ୍ୟନୁହେଁ । ସେହିପରି ପ୍ରଜାତି-ପ୍ରସୂତ କୋଟିକୋଟି ବର୍ଷ ବ୍ୟାପୀ ମାନବ ପ୍ରବୃତ୍ତିର ଗଭୀରତା ଓ ପ୍ରଭାବ ସ୍ଥିର ନିଶ୍ଚିତ ହେଲେ ମଧ୍ୟ, ଏହା ମନୁଷ୍ୟର ସମଗ୍ର ସତ୍ତା ନୁହେଁ । ଅହଂଭାବର ପ୍ରକାଶ ମନୁଷ୍ୟକୁ ଅତ୍ୟଧିକ ଭାବରେ ପ୍ରଭାବିତ କରି ଜୀବନକୁ ଅନ୍ୟଏକ ରଙ୍ଗରେ ରଂଜିତ କରିଅଛି । ଏହି ତିନୋଟି ପ୍ରଭାବଶାଳୀ ଶକ୍ତି ମନକୁ ଏକାବେଳେକେ ଆବୋରି ରହି ଅଛନ୍ତି । ମନର ପ୍ରବୃତ୍ତିରାଜିର ସଂଜ୍ଞା ଖୋଜିବାକୁ ଯାଇ ଫ୍ରଂୟେଡ୍ ଓ ତାଙ୍କ ଶିଷ୍ୟମାନେ ଅନେକ ପରିମାଣରେ ସତ୍ୟର ନିକଟବର୍ତ୍ତୀ ହେଲେହେଁ, ମନର ସମ୍ପୂର୍ଣ୍ଣ ତଥ୍ୟ ସେମାନଙ୍କୁ ମିଳିନାହିଁ । ଏହାର ସ୍ଥିତି ଓ ଗତି ସଠିକଭାବରେ ସେମାନଙ୍କୁ ଜଣାନାହିଁ । କେବଳ ମନୁଷ୍ୟର ବ୍ୟବହାରରୁ ମନର ପ୍ରବୃତ୍ତିର କେତେକ ସନ୍ଧାନ ସେମାନଙ୍କୁ ମିଳିଛି । ମନର ଗଭୀର ବିଶ୍ଳେଷଣରୁ ଏହାର ଅସ୍ଥିରତାର ମୂଳ କେତେକ ପରିମାଣରେ ଏହି ମନସ୍ତାତ୍ତ୍ୱିକ ମାନଙ୍କ ଦ୍ୱାରା ନିର୍ଭୁଲ ଭାବରେ ଆବିଷ୍କୃତ ହୋଇଅଛି । ମାତ୍ର ମନର ଗହନ ବନରେ ଏ ପର୍ଯ୍ୟନ୍ତ ବହୁ ଅନାବିଷ୍କୃତ ତଥ୍ୟ ନିହିତ ଅଛି । ମନ ବିଷୟରେ ଶ୍ରୀମଦ୍ ଭଗବତ୍ ଗୀତାରେ ମଧ୍ୟ ଅତ୍ୟନ୍ତ ହୃଦୟଗ୍ରାହୀ ଓ ଆଲୋକ-ଦର୍ଶୀ ବାର୍ତ୍ତା ବିରାଜମାନ । ଅର୍ଜ୍ଜୁନଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଶ୍ରୀକୃଷ୍ଣ ମନ ବିଷୟରେ କେତେକ ସତ୍ୟନିଷ୍ଠ ରହସ୍ୟର ଉଦ୍‌ଘାଟନ କରିଅଛନ୍ତି । ଏହି ପରୀପେକ୍ଷିରେ ଏହାର ଅବତାରଣା ବିଧେୟ । ଗୀତାର ତୃତୀୟ ଅଧାୟ ୪୨ଶ୍ଳୋକରେ ଶ୍ରୀକୃଷ୍ଣ କହିଛନ୍ତି :- "ଇନ୍ଦ୍ରିୟାଣି ପରାଣ୍ୟାହୁ ଇନ୍ଦ୍ରିୟେଭ୍ୟଃ ପରଂମନ ମନସସ୍ତୁ ପରାବୁଦ୍ଧି ଯୋ ବୁଦ୍ଧେଃ ପରତସ୍ତୁ ସଃ ।" ଇନ୍ଦ୍ରିୟ ଗୁଡିକ ଶରୀରଠାରୁ ଶ୍ରେଷ୍ଠ । ମନ ଇନ୍ଦ୍ରିୟ ଗୁଡିକରୁ ଶ୍ରେଷ୍ଠ । ବୁଦ୍ଧି ମନଠାରୁ ଶ୍ରେଷ୍ଠ ଏବଂ ଆତ୍ମା ବୁଦ୍ଧିଠାରୁ ଶ୍ରେଷ୍ଠ । ଅର୍ଜ୍ଜୁନ ପଚାରୁଛନ୍ତି ଶ୍ରୀକୃଷ୍ଣଙ୍କୁ :- ଚଞ୍ଚଳଂହି ମନଃ କୃଷ୍ଣ ପ୍ରମାଥି ବଳବଦ୍‌ଦୃଢଂ, ତସ୍ୟାହଂ ନିଗ୍ରହଂ ମନ୍ୟେ ବାୟୁରେବ ସୁଦୁଷ୍କରଂ । (ଅଧାୟ ୬/୩୪) ଭଗବାନ ଉତ୍ତର ଦେଉଛନ୍ତି : - "ଅସଂଶୟଂ ମହାବାହୋ ମନୋ ଦୁର୍ନିଗ୍ରହ ଚଳମ୍, ଅଭ୍ୟାସେନ ତୁ କୌନ୍ତେୟ ବୈରାଗ୍ୟେଣ ଚ ଗୃହ୍ୟତେ ।" (ଅଧାୟ ୩୫) ଅର୍ଥାତ୍, ଅର୍ଜ୍ଜୁନଙ୍କ ମତରେ ମନ ଅତ୍ୟନ୍ତ ଚଞ୍ଚଳ, ଅସ୍ଥିର, ଅମାନିଆ, ଅବୁଝା ଓ ବଳବାନ । ବାୟୁ ଯେପରି ମଣିଷର କ୍ଷମତାର ବାହାରେ ମନ ମଧ୍ୟ ସେହିପରି । ଶ୍ରୀକୃଷ୍ଣ ବୁଝେଇ କହୁଛନ୍ତି ଯେ ଏକଥା ସତ୍ୟ, ମନ ଅତ୍ୟନ୍ତ ଅସ୍ଥିର ଓ କାବୁର ବାହାରେ । ମାତ୍ର ଚେଷ୍ଟାଦ୍ୱାରା, ବୈରାଗ୍ୟଦ୍ୱାରା, ଅଭ୍ୟାସଦ୍ୱାରା ଧୀରେ ଧୀରେ ମନକୁ ନିଜ କାବୁରେ ରଖିବାକୁ ମଣିଷ ସମର୍ଥ ହୋଇପାରେ । ଉତ୍ତେଜିତ ଇନ୍ଦ୍ରିୟରାଜି ଦୁର୍ଦ୍ଦଷ ଭାବରେ ମନକୁ ହରଣ କରନ୍ତି । ତେଣୁ ଇନ୍ଦ୍ରିୟ ଗଣକୁ ବଶରେ ରଖିବା ବିଧେୟ । ଏହା ଫଳରେ ବୁଦ୍ଧି ନିଜ ବାଟରେ ଚାଲେ ।

ଝଡ ଯେପରି ଜାହାଜକୁ ଠେଲି ନେଇଯାଏ ସେହିପରି ଇନ୍ଦ୍ରିୟ ପ୍ରଭାବରେ ମନ ମଧ୍ୟ ମଣିଷର ପ୍ରଜ୍ଞାକୁ ହରଣକରି ନିଏ । ସେଇଥିପାଇଁ ଇନ୍ଦ୍ରିୟ ଗଣକୁ କାବୁରେ ରଖିଲେ, ମଣିଷର ପ୍ରଜ୍ଞା ପ୍ରତିଷ୍ଠିତ ହୁଏ ।

ପୂର୍ବରୁ ଆଲୋଚିତ ହୋଇଛି ଯେ ''ମନ'' ଈଶ୍ୱରସତ୍ତାର ଏକ ମାତ୍ରା ବିଶେଷ । ମନର ସ୍ୱରୂପ, ପ୍ରକୃତି, ଅବସ୍ଥାନ ଓ ସ୍ୱଭାବ ଯାହା ହେଉନା କାହିଁକି, ତାକୁ ବଶରେ ନରଖିଲେ, ମଣିଷର ପ୍ରଜ୍ଞା ପ୍ରତିଷ୍ଠିତ ନହୋଇ ତାକୁ ବିପଥଗାମୀ କରିବ । ମନକୁ ନିଜ ଅଧୀନରେ ରଖିବା ନିମନ୍ତେ ମଣିଷ ସର୍ବଦା ଚେଷ୍ଟା କରିବା ଉଚିତ । ତାହା ହେଲେ ତାହା (ମନ) ମଣିଷକୁ ସତ୍ ପଥରେ ଚାଳିତ କରିବ । ଏହି ମନ ଏକ ଅତି ରହସ୍ୟମୟ ବସ୍ତୁ ଯାହାର ଉତ୍ପତ୍ତି ଓ ସ୍ୱଭାବ ବିଷୟରେ ଅନେକ ଚିନ୍ତା ଭାବନା କରାଯାଇଥିଲେ ମଧ୍ୟ ସଠିକ ଭାବରେ ସେ ଗୁଡିକକୁ ନିରୂପଣ କରାଯାଇ ପାରିନାହିଁ । ମନସ୍ତାତ୍ତ୍ୱିକ ମାନେ ଆଂଶିକ ଭାବରେ ସଫଳ ହେଲେ ମଧ୍ୟ, ପୂର୍ଣ୍ଣମାତ୍ରାରେ ଏହାକୁ ଜାଣିବାରେ ବିଫଳ ହୋଇ ଅଛନ୍ତି । ଏପରି ଅବସ୍ଥାରେ ଗୀତା ବର୍ଣ୍ଣିତ ତଥ୍ୟ ସମୀଚନ ବୋଲି ଗୃହୀତ ହେବାର ବାଧା କେଉଁଠାରେ ? ସନ୍ତୁଳିତ-ତଥ୍ୟର ଗୌରବ ନେଇ ଗୀତାର ବିଶ୍ଳେଷଣ ସର୍ବୋଦୌ ସ୍ମରଣୀୟ ଓ ଶ୍ରୀକୃଷ୍ଣଙ୍କର ଉପଦେଶ ପାଳନୀୟ ମଧ୍ୟ । କାରଣ ଏହା ମାନବ ଜାତି ପକ୍ଷରେ ଶୁଭଙ୍କର ।

ମନ, ବୁଦ୍ଧି, ଆତ୍ମାର ଅବସ୍ଥିତି ମନୁଷ୍ୟର ଶରୀର ଉପରେ । ଶରୀର ନଥିଲେ ସେମାନଙ୍କର ଅସ୍ତିତ୍ୱ ନାହିଁ । ଜଡ ହେଲେ ମଧ୍ୟ ଶରୀର ହେଲା ସବୁ ସାଧନାର ମୂଳ । ''ଶରୀରଂ ଆଦ୍ୟଂ ଖଳୁ ଧର୍ମ ସାଧନମ୍'' । ଅତଏବ ଏହି ଶରୀରହିଁ ଏକ ଅତି ମୂଲ୍ୟବାନ ଯନ୍ତ୍ର, ଯାହା ସାହାଯ୍ୟରେ ମନୁଷ୍ୟ ତାର ସବୁ ଉପଲବ୍ଧି, ଅଭିଜ୍ଞତା, ଜ୍ଞାନ, ମହତ୍ତର ସତ୍ତାର ସନ୍ଧାନ ପାଇବାକୁ ସକ୍ଷମ ହୁଏ । ତେଣୁ ମଣିଷ ତାର ଶରୀରକୁ ବିଶେଷ ଭାବରେ ଉପଯୁକ୍ତ କରି, ସମର୍ଥ କରି, ଉନ୍ନତ କରି, ମହିୟାନ ଶକ୍ତି ବଳରେ ଉଜ୍ଜୀବିତ କରି; ଏହାକୁ ଭାଗବତ ଜୀବନର ରହସ୍ୟ ଉଦ୍‌ଘାଟନରେ ବ୍ରତୀ କରି, ଏହାର ଅନ୍ତର୍ନିହିତ ସତ୍ତାକୁ ଜାଗରିତ କରିବା ନିମନ୍ତେ ଦୃଢ଼ ସଂକଳ୍ପ ହେବା ଆବଶ୍ୟକ । ଏହି ମରଣଶୀଳ, ପତନଶୀଳ, କ୍ଷଣ ଭଙ୍ଗୁର, ଅତି ଦୁର୍ବଳ ଜଡ ପିଣ୍ଡଟିକୁ କିପରି ତାର ମହାଯାତ୍ରାର ଯାତ୍ରୀ କରିବାକୁ ମଣିଷ ସମର୍ଥ ହେବ ? ଏହାର ବିଧାନ ମଧ୍ୟ ଅଛି ।

ପ୍ରଥମତଃ ଶାରୀରିକ ସୁସ୍ଥତା, ଶକ୍ତି, ସବଳତା ଏକାନ୍ତ ଆବଶ୍ୟକ, କାରଣ ଶରୀର ମାଧ୍ୟମରେ ଭାଗବତ ଜୀବନର ସାଧନା ନିମନ୍ତେ ଦୁଇଟି ଯାକ ପ୍ରାନ୍ତର ସୁଦୃଢ଼ ମୂଳଦୁଆ ଦରକାର । ଆତ୍ମା ଶରୀରର ମୂଳଦୁଆକୁ ଧ୍ୱଂସକରେ ନାହିଁ । ଏହା ଦୁଇ ପ୍ରାନ୍ତକୁ ଏକତ୍ର କରିବାରେ ସାହାଯ୍ୟ କରେ । ଆତ୍ମାର ଚେତନା ଜଡ ପିଣ୍ଡରେ ପ୍ରବେଶ କରି ଜଡକୁ

ଜୀବନ୍ତ କରେ । ଏହାକୁ ସୂକ୍ଷ୍ମତା ପ୍ରଦାନ କରି ସମ୍ପୂର୍ଣ୍ଣ ଭାବରେ ବଦଳାଇ ଦିଏ । ଜୀବନରେ ପରିବର୍ତ୍ତନ ଆଣେ । କ୍ରମେ କ୍ରମେ ଜଡ-ସଂଚାରିତ ଜୀବନ ଭାଗବତ ଜୀବନ ଆଡକୁ ଗତିକରେ । ଜଡର ଶକ୍ତିକୁ ବର୍ଜନ ନକରି, ଜଡ ଭିତରେ ଅନ୍ତର୍ହିତ ଥିବା ଶକ୍ତିକୁ ଜାଗରିତ କରି ତାହାର ସମ୍ଭାବନାମୟ ପ୍ରକୃତିକୁ ଉଚ୍ଚାଭିମୁଖୀ କରି ସେଥିରେ ଭାଗବତ ଜୀବନର ଉନ୍ମେଷ ଘଟାଏ । ମନ, ଆତ୍ମାର ପ୍ରକୃତି ବିଷୟରେ ଅଜ୍ଞ ଥିଲେ ମଧ୍ୟ, ମନୁଷ୍ୟର ଚିନ୍ତାଧାରା, ଅଭିଜ୍ଞତା ଓ ଅନ୍ତର୍ଦୃଷ୍ଟିକୁ ଏକତ୍ର କରି, ଅତିମାନସ-ଚେତନା ଆଡକୁ ଆକୃଷ୍ଟ କରି, ଚରମ ସତ୍ୟର ଉପଲବ୍ଧି ଦିଗରେ ଧାବିତ କରି ଶେଷରେ ମନୁଷ୍ୟକୁ ଭାଗବତ ଚେତନାରେ ସମୃଦ୍ଧ କରି ବାହ୍ୟ ଓ ଅନ୍ତର ଚେତନାକୁ ଏକତ୍ରିକୃତ କରି, ପରମ ଆନନ୍ଦରେ ନିମଜ୍ଜିତ ହେବାର ଦିଗ୍‌ଦର୍ଶନ ଦେଇପାରେ । ଶେଷରେ ଆନନ୍ଦ-ପ୍ଲାବିତ ଶରୀର ଭଗବତ ଚେତନାରେ ଋଦ୍ଧିମନ୍ତ ହୋଇ ଭାଗବତ-ଶରୀରରେ ପରିଣତ ହୋଇଥାଏ । ଋଷି ଅରବିନ୍ଦଙ୍କ ଉପର୍ଯୁକ୍ତ ବାଣୀ ଏ ଯୁଗରେ ଏକ ମହନୀୟ ଆଲୋକ ବହନ କରି ଆଣିଛି ।

ଏ ଯୁଗର ମହାଯୋଗୀ ଶ୍ରୀ ଅରବିନ୍ଦଙ୍କ ଜୀବନୀ ପର୍ଯ୍ୟାଲୋଚନା କରିବା ଆବଶ୍ୟକ । କାରଣ ବହୁ ଅଭିଜ୍ଞତା ପରିପୂର୍ଣ୍ଣ ତାଙ୍କର ଜୀବନ । I.C.S. ଚାକିରୀ ଛାଡି ସେ ବରୋଦାମହାରାଜାଙ୍କ ଅନୁରୋଧରେ ଶିକ୍ଷକତା କରିଥିଲେ ବରୋଦାରେ; ତାପରେ କଲିକତା ଆସି ଭାରତର ସ୍ୱାଧୀନତା ପ୍ରାପ୍ତି ନିମନ୍ତେ ସର୍ବତ୍ୟାଗୀ ବୀରବୃନ୍ଦଙ୍କୁ ନେତୃତ୍ୱ ଦେଇ ଅତି ''ଗୁପ୍ତ ଅନୁଶୀଳନ ସମିତି''ର ସେ ଅଜ୍ଞାତ ସଭାପତି ଥିଲେ । ତାଙ୍କୁ ସାହାଯ୍ୟ କରିଥିଲେ ସିଷ୍ଟର ନିବେଦିତା । ମାତ୍ର ପି. ମିତ୍ର, ବାରିଷ୍ଟର, ସମସ୍ତଙ୍କର ଜାଣିବାରେ ଏହି ସମିତିର ସଭାପତି ଥିଲେ । ଆଲିପୁର ବୋମା କେଶ୍‌ରେ ଆସାମୀ ଭାବରେ ତାଙ୍କୁ ଜେଲରେ ରଖାଯାଇଥିଲା । ସେଠାରେ ସେ ଲକ୍ଷ ଲକ୍ଷବାର ଗୀତା ପାଠ କରିବାପରେ ଦିନେ ଦେଖିଲେ ଲୌହକାରା ମଧ୍ୟରେ ଶ୍ରୀକୃଷ୍ଣ ତାଙ୍କୁ କୋଳରେ ଧରି ବସିଛନ୍ତି । ତାଙ୍କର ଦିବ୍ୟ ଦର୍ଶନ ପରେ ଜୀବନର ଆଦର୍ଶ ମଧ୍ୟ ବଦଳିଗଲା । ଚିତ୍ତରଞ୍ଜନ ଦାଶ ତାଙ୍କ ମାମଲା ଲଢୁଥିଲେ । ଶେଷରେ କୋର୍ଟରେ ଚିତ୍ତରଞ୍ଜନ କହିଲେ ଯେ ଅଦାଲତର ଗୋଳମାଳ ଯେତେବେଳେ ଥଣ୍ଡାପଡିଯିବ ଏବଂ ଆଉ ଶୁଣାଯିବ ନାହିଁ, ଶ୍ରୀ ଅରବିନ୍ଦଙ୍କ ବାଣୀ ସମୁଦ୍ରର ପରପାରରୁ ଅଣୁରଣିତ ହୋଇ ପ୍ରବାହିତ ହେବ । ଏହା ଶୁଣି ଚମତ୍‌କୃତ ହୋଇ ଚାହିଁଲାବେଳକୁ ସେ ଦେଖିଲେ ଯେ ଶ୍ରୀକୃଷ୍ଣ ଚିତ୍ତରଂଜନଙ୍କ ବେଶରେ କଥାଗୁଡିକ କହୁଛନ୍ତି । ବିଚାରକଙ୍କ ପ୍ରତି ଦୃଷ୍ଟି ଦେଇ ଦେଖିଲେ ଶ୍ରୀକୃଷ୍ଣ ହସୁଛନ୍ତି । ଶେଷରେ ସେ ବିଚାରକଙ୍କ ଆଦେଶରେ ମୁକ୍ତ ହୋଇଥିଲେ । ସେଦିନ ରାତିରେ ତାଙ୍କୁ ଆଦେଶହେଲା ଗଙ୍ଗାନଦୀ କୂଳକୁ ଯାଇ ଡଙ୍ଗାରେ ବସି ଅନ୍ୟତ୍ର ଯିବାପାଇଁ । ସେ ଦେଖିଲେ ନାଉରି ତାଙ୍କର ଅପେକ୍ଷାରତ । ତାଙ୍କୁ ଫରାସୀ ଅଧିକୃତ ଚନ୍ଦନ ନଗରରେ ପହଞ୍ଚାଇ ଦେଲା । ସେଠାରୁ ପଣ୍ଡିଚେରୀ ଯାଇ ଯୋଗବଳରେ

ସିଦ୍ଧ ଲାଭ କରି ଋଷି ଅରବିନ୍ଦ ଭାବରେ ଖ୍ୟାତ ହେଲେ । ତାଙ୍କର ଯୋଗବଳରେ ଭାରତର ସ୍ୱାଧୀନତା ପାଇଁ ବିଶେଷ ପ୍ରୟାସ କରିଥିଲେ । ତାଙ୍କର ଜନ୍ମ ଦିବସ୍‌ରେ ବହୁ ପ୍ରତୀକ୍ଷିତ ଭାରତର ସ୍ୱାଧୀନତା ଲାଭ ହୋଇଥିଲା । ମାତ୍ର ବିଖଣ୍ଡିତ ଭାରତର ସ୍ୱାଧୀନତା ସେ ଚାହିଁ ନ ଥିଲେ । ଭାରତର ଭାଗଭାଗ ହେବାର ଦଶା ତାଙ୍କୁ ବହୁ ଦୁଃଖ ଦେଇଥିଲା । ସେ ତିବ୍ବତ ବିଷୟରେ ଭାରତୀୟ ନୀତିକୁ ନାପସନ୍ଦ କରି ଲେଖିଥିଲେ ଯେ ତିବ୍ବତର ସାର୍ବଭୌମତ୍ୱ ନଷ୍ଟହେଲେ ଚୀନର ବନ୍ଧୁକ ଭାରତ ଆଡକୁ ମୁହାଁଇ ଆସିବ । ଏକଥା ଗାନ୍ଧୀଜୀଙ୍କ ଦୂତ, ସୁଧୀରଘୋଷ, ଯୁକ୍ତରାଷ୍ଟ୍ରର ପ୍ରେସିଡେଣ୍ଟ କେନେଡିଙ୍କୁ କହିଥିଲେ । କେନେଡି ପଚାରିଲେ, କଣ ୧୯୬୨ରେ ଅରବିନ୍ଦ ଲେଖିଥିଲେ ଏ କଥା ? ତାଙ୍କୁ ଉତ୍ତରଦେଲେ ସୁଧୀର ଘୋଷ ଯେ ଦଶବର୍ଷରୁ ଉର୍ଦ୍ଧ୍ୱ ସମୟ ଆଗରୁ ଶ୍ରୀ ଅରବିନ୍ଦ ଦେହତ୍ୟାଗ କରିସାରିଥିଲେ । ଏକଥା ଶୁଣି କେନେଡି ସ୍ତମ୍ଭୀଭୂତ ହୋଇଯାଇଥିଲେ । ଯୋଗୀଙ୍କର ଦୂରଦୃଷ୍ଟି ଓ ଦିବ୍ୟଦୃଷ୍ଟି କେନେଡିଙ୍କୁ ଚମତ୍‌କୃତ କରିଦେଇଥିଲା । ଏ ବିଷୟଟି ଅତି ସୁଚାରୁରୂପେ ସୁଧୀର ଘୋଷ ତାଙ୍କର ଅନବଦ୍ୟ ପୁସ୍ତକ "Gandhiji's Emissary" ରେ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । ଦେହତ୍ୟାଗ ପରେ ବହୁଦିନ ଧରି ଶ୍ରୀ ଅରବିନ୍ଦଙ୍କର ମରଶରୀର ଈଶ୍ୱର ଉପସ୍ଥିତି ଯୋଗୁ ତେଜୀୟାନ ହୋଇ ରହିଥିଲା ।

କେହି କେହି ଜଡ ଶରୀରକୁ ବାଧା ମନେକରି ଭାଗବତ ଜୀବନରେ ଏହାର କୌଣସି ଅବଦାନ ନାହିଁ ବୋଲି ମନେ କରନ୍ତି । କାରଣ ସ୍ଥୂଳ ଶରୀରର ନୀଚସ୍ଥ କାର୍ଯ୍ୟାବଳି ଇନ୍ଦ୍ରିୟ ଚରିତାର୍ଥ କରିବା ନିମନ୍ତେ ଉଦ୍ଦିଷ୍ଟ । ଏହା ଆଳସ୍ୟ ଓ ଅଜ୍ଞାନତାର ବାସଭୂମି । ଏହି ସ୍ଥୂଳ ପ୍ରବୃତ୍ତି ଗୁଡିକ ମନୁଷ୍ୟର ସୂକ୍ଷ୍ମ ଜୀବନର ଅଭ୍ୟୁଦୟ ପକ୍ଷରେ ବିରାଟ ପ୍ରତିବନ୍ଧକ ସୃଷ୍ଟି କରିଥାଏ । ତେଣୁ ଶରୀରକୁ ଏକ ନୀଚଗ୍ରାମର ବସ୍ତୁ ବୋଲି ବହୁ ସାଧକ ଅବହେଳା କରଥାଆନ୍ତି । ଅନ୍ୟ କେହି ଏହାକୁ ଅତି ସାମାନ୍ୟ ଖାଦ୍ୟ ଦେଇ ବଞ୍ଚି ରଖିବାକୁ ଉପଦେଶ ଦିଅନ୍ତି । "Give the dog a bone only" କୁକୁରକୁ ଖଣ୍ଡିଏ ହାଡ ଚୋବାଇବାକୁ ଦେଲାଭଳି ଶରୀରକୁ ଗଣ୍ଡେ ଭାତ ମାତ୍ର ଦିଅ ବୋଲି ଶ୍ରୀଯୁକ୍ତେଶ୍ୱର ଗିରିଙ୍କ ମତ । ପରମହଂସ ଯୋଗାନନ୍ଦଙ୍କ ଗୁରୁ ଶ୍ରୀ ଯୁକ୍ତେଶ୍ୱର ଜଣେ ଜ୍ଞାନୀ ଗୁରୁ ଥିଲେ । ତାଙ୍କର ଉପଦେଶ ଶିରୋଧାର୍ଯ୍ୟ । ହଠଯୋଗୀ ଓ ରାଜଯୋଗୀ ମାନେ ଆସନ ଓ ପ୍ରାଣାୟାମ କ୍ରିୟାଦ୍ୱାରା ଶରୀରକୁ ଆଧାତ୍ମ ଚେତନା ପ୍ରାପ୍ତି ନିମନ୍ତେ ଉପଯୁକ୍ତ କରି ତୋଳନ୍ତି । ମଣିଷକୁ ଯେତେବେଳେ ଶରୀର ମାଧମରେ ଆଧାତ୍ମିକ ଚେତନା ଲାଭ କରିବାକୁ ହେବ ସେତେବେଳେ ଏହି ସ୍ଥୂଳ ଶରୀରକୁ ସୂକ୍ଷ୍ମ ଚେତନା ବା ଅତିମାନସ ଚେତନା ଲାଭ କରିବା ନିମନ୍ତେ ଉପଯୁକ୍ତ କରି ରଖିବାକୁ ହେବ ।

ବୈଷ୍ଣବମାନେ ଆଧ୍ୟାତ୍ମିକତା ପ୍ରଜ୍ୱଳିତ ''ଚିନ୍ମୟ ଦେହ''ର ଅସ୍ତିତ୍ୱ ବିଷୟରେ ଉଲ୍ଲେଖ କରନ୍ତି । ବେଦ କଥିତ ''ଜ୍ୟୋତିର୍ମୟ ଦେହ''ର ବର୍ଣ୍ଣନା ମଧ୍ୟ ମିଳେ । କେତେକ ମହାପୁରୁଷ ମାନଙ୍କରର ଜ୍ୟୋତିନିର୍ଗତ ଶରୀର ଅନ୍ୟମାନଙ୍କର ଦୃଷ୍ଟିଗୋଚର ହୋଇଅଛି । ମାତ୍ର କ୍ରମବିବର୍ତ୍ତନ ପଦ୍ଧତିରେ ଶରୀରର ପଶୁପ୍ରବୃତ୍ତି ଲକ୍ଷଣୀୟ । ଶରୀର ଜଡ ବସ୍ତୁରୁ ସୃଷ୍ଟ ଏବଂ ଅଜ୍ଞାନରେ ଭରପୁର । ଏହାର କ୍ରମବିକାଶ ହୋଇ ଜଡ ଶରୀରରେ ମନର ପ୍ରବେଶ ହୋଇଅଛି । ପ୍ରଥମ ସ୍ତରରେ ମନ କେତେପରିମାଣରେ ସ୍ଥୂଳତ୍ୱରେ ଆବଦ୍ଧ ରହି ଜଙ୍ଗମ ମାନଙ୍କର ପ୍ରକୃତିରେ ଅଳ୍ପକ୍ଷମତା ସମ୍ପନ୍ନ ଭାବରେ ନିଜକୁ ପ୍ରକାଶ କରିଥିଲା । କ୍ରମ ବିକାଶ ପଦକ୍ଷେପରେ ମହୀୟାନ ହୋଇ ଏହା ମନୁଷ୍ୟର ମହାର୍ଘ ଚିନ୍ତା ଶକ୍ତିକୁ ଉଦ୍ରେକ କରାଇ ଆଧ୍ୟାତ୍ମିକତା ଦିଗକୁ ଧାବମାନ ହେଲା । ଆତ୍ମାର ସାନ୍ନିଧରେ ଏହା ସବଳ ପଦକ୍ଷେପରେ ଅଗ୍ରସର ହୋଇ ସ୍ଥୂଳତ୍ୱକୁ ପରିହାର କରି ସୂକ୍ଷ୍ମତ୍ୱର ଉନ୍ନତ ସୋପାନ ଦେଇ ଦିବ୍ୟ ବା ଭାଗବତ-ଜୀବନ ଆଡକୁ ଆଗେଇ ଚାଲିଛି । କ୍ଷୁଦ୍ରତ୍ୱର ଗଣ୍ଡିରୁ ମୁକ୍ତି ଦେଇ ଆତ୍ମା ମନୁଷ୍ୟକୁ ଉଚ୍ଚସ୍ତରକୁ ନେଇଯିବାର ମହାନ ପ୍ରସ୍ତୁତିରେ ଅଭିନିବିଷ୍ଟ ।

ମାତ୍ର ଶାରୀରିକ ଓ ଜୈବିକ ଦାବି ମଣିଷ ଏକାବେଳେକେ ପରିହାର କରି ନ ପାରି, ଅଧିକାଂଶ ମଣିଷ ଜୈବିକ ଦାବି ପାଖରେ ପରାସ୍ତ ହୋଇ ଶାରୀରିକ ବେଷ୍ଟନୀରେ ଆବଦ୍ଧ ହୋଇ ରହନ୍ତି । ତାହା ଛଡା ଶରୀରର ଦାବିରେ କେତେକ ଅନ୍ତର୍ନିହିତ ଆବଶ୍ୟକତା ରହିଛି । ଯଥା କାମରଚରିତାର୍ଥତାରୁ ମାନବ ସମାଜର ଉତ୍ପତ୍ତି । ଏହାର ଅନୁପସ୍ଥିତିରେ ମାନବ ଜାତି ଲୋପ ପାଇ ଯାଇ ପାରେ । କାମ ଭାବରେ ପଶୁତ୍ୱ ଦୃଷ୍ଟିରୁ ଉଚ୍ଚ ସାଧକ ଏହାକୁ ପରିହାର କରି ଉଚ୍ଚଗ୍ରାମରେ ନିଜର ମନକୁ ସ୍ଥିର ରଖନ୍ତି । ତେବେ କଣ ଏହା ସମ୍ପୂର୍ଣ୍ଣ ରୂପେ ବର୍ଜନୀୟ । ଋଷି ଅରବିନ୍ଦ କହନ୍ତି ଯେ ତାହାନୁହେଁ । ସାଧକ ନିଜକୁ ସେଥିରୁ ମୁକ୍ତ ରଖି ସାଧନା କରିବା ବିଧେୟ । ଅନ୍ୟ ବହୁ ବହୁ ଲୋକେ ଏଥିରେ ଆବଦ୍ଧ ରହି ମାନବ ସମାଜ ସୃଷ୍ଟିରେ ସାହାଯ୍ୟ କଲେ ଅଭିଯୋଗର ଅବକାଶ ନାହିଁ ।

ଏ ବିଷୟରେ ଶ୍ରୀରାମକୃଷ୍ଣଙ୍କର ଅନୁଭୂତି ଓ ଦର୍ଶନ ଉଲ୍ଲେଖନୀୟ । ସେ କୁକୁର-କୁକୁରୀର ପ୍ରଣୟ ଲୀଳାରେ ଈଶ୍ୱର-ଶକ୍ତି-ପ୍ରକାଶର ଉଜ୍ଜ୍ୱଳତା ଲକ୍ଷ୍ୟ କରିଥିଲେ । ଅର୍ଥାତ୍ କାମଭାବ ଈଶ୍ୱରିଙ୍କ ଲୀଳାର ଅଙ୍ଗ ବିଶେଷ । ଏହାର ଦୃଢ଼ିକରଣ ଶ୍ରୀମଦ୍ ଭଗବତ୍ ଗୀତାରେ ମଧ୍ୟ ରହିଛି । ଶ୍ରୀକୃଷ୍ଣ ତାଙ୍କର ବିସ୍ତାରିତ ବିଭୁତିର ବର୍ଣ୍ଣନା କଲାବେଳେ କହିଛନ୍ତି :- ''ଧର୍ମ ଅବିରୁଦ୍ଧ ଭୁତେଷୁ କାମୋସ୍ମି ଭରତର୍ଷଭ ।'' ଅର୍ଥାତ୍ ଧର୍ମର ବିରୋଧ ନ କରୁଥିବା ''କାମ'' ହେଲେ ସେ ନିଜେ । କାରଣ ସୃଷ୍ଟିକର୍ତ୍ତା ହିସାବରେ ଏହା ତାଙ୍କର ଏକ ମହାନ କର୍ତ୍ତବ୍ୟ ।

ତାନହେଲେ ''ଲୀଳା'' ର ବିସ୍ତାରରେ ବାଧା ଉପୁଜିବ । ଋଷି ଅରବିନ୍ଦ କହନ୍ତି ଯେ କାମ ଚରିତାର୍ଥତା ଭାଗବତ ଜୀବନରୁ ଏକାବେଳେକେ ବର୍ଜନୀୟ ବୋଲି କୁହାଯାଇପାରିବ ନାହିଁ । ଏହା ଜୀବନର ଅଂଶ ବିଶେଷ ହୋଇ ରହିଛି ଓ ରହିବ । ଈଶ୍ୱର ଓ ଶକ୍ତିଙ୍କର ସମନ୍ୱୟରୁ ଏହି ସୃଷ୍ଟି ହୋଇଅଛି । ପ୍ରକୃତି ଓ ପୁରୁଷର ସଙ୍ଗମରୁ ବିଶ୍ୱଜୀବନର ଅବତାରଣା । ତେଣୁ କାମଭାବର ଅସ୍ତିତ୍ୱ ଭଗବତଜୀବନରୁ ବହିର୍ଭୁତ ନୁହେଁ । ଏହାର ଉଚ୍ଚସ୍ତରର ବିଭାବ ବା ଆଦର୍ଶ ମଧ୍ୟ ଅଛି । ମାତ୍ର ପଶୁଭଳି ଏହାର ବ୍ୟବହାର ଓ ଆସକ୍ତିରୁ ମନୁଷ୍ୟକୁ ମୁକ୍ତିଲାଭ କରିବାକୁ ପଡିବ । ମନରେ ଶକ୍ତି ସଂଚୟ କରି ଏହି ସ୍ଥୂଳ ପ୍ରବୃତ୍ତିକୁ ସୂକ୍ଷ୍ମଚେତନାପ୍ରତି ଆଗ୍ରହୀ କରିବାକୁ ପଡିବ । ନୀଚ ପ୍ରବୃତ୍ତିକୁ ପରିହାର କରି ଉଚ୍ଚତର ଶୁଦ୍ଧତା ମାଧ୍ୟମରେ ପ୍ରକୃତ ପ୍ରେମରେ ପରିଣତ କରିବାକୁ ପଡିବ । ଏହାକୁ ବିଶ୍ୱ-ଜନୀନ ସ୍ନେହ, ପ୍ରେମ, ବନ୍ଧୁତ୍ୱରେ ବଦଳାଇଦେଇ ଭାଗବତ-ପ୍ରେମରେ ସଂମିଶ୍ରଣ କରିବାକୁ ହେବ । ଏହା ଭାଗବତ-ବାସ୍ତବତା ଆଡକୁ ଆରୋହଣରେ ପରିଣତ ହେବ । ଏହାହିଁ ପ୍ରକୃଷ୍ଟ କ୍ରମବିକାଶ ମନୁଷ୍ୟ ଜୀବନର । ଏହି ପଦ୍ଧତିରେ ଆହାରର ଆବଶ୍ୟକତା, ସ୍ଥୂଳ ଜୀବନର ପ୍ରବୃତ୍ତିରାଜି ପ୍ରତିବ୍ରନ୍ଧକ ହେବାର ସମ୍ଭାବନା । ଏଥିନିମନ୍ତେ ଶାରୀରିକ ଚରିତାର୍ଥତା ପ୍ରତି ଅଦୃଷ୍ଟିଦାନ, ଭୋଜନ ବିଳାସରୁ ନିବୃତ୍ତି, ଆଧାତ୍ମିକତାରେ ଆଶ୍ରୟ ନେଲେ ଶାରୀରିକ ଦାବି କ୍ରମଶଃ କମି ଆସିବ ଏବଂ ମହାବିଶ୍ୱରେ ପ୍ରସାରିତ ଐଶ୍ୱରିକ ଶକ୍ତିରୁ ମନୁଷ୍ୟକୁ ଜୀବିତ ରହିବାର କ୍ଷମତା ମିଳିବ । ଏପରିକି ଯୋଗ ସାଧନ ପଦ୍ଧତିରେ ମଧ୍ୟ ଆହାରର ଆବଶ୍ୟକତା କମାଇ ଦିଆଯାଇ ପାରେ ଏବଂ ପରିବେଶ-ମଣ୍ଡଳରେ ବ୍ୟାପ୍ତ ଶକ୍ତି-କ୍ଷେତ୍ରରୁ ଜୀବନୀଶକ୍ତି ସଂଗ୍ରହ କରାଯାଇପାରେ । ବହୁ ସାଧନାବଳରେ ସାଧକମାନେ ଏହି ଶକ୍ତିର ଅଧିକାରୀ ହୋଇଥାଆନ୍ତି । ଏବିଷୟରେ ଋଷି ଅରବିନ୍ଦ କହିଛନ୍ତି ଶରୀରକୁ ଭାଗବତ ଜୀବନର ଏକ ଯନ୍ତ୍ର ହିସାବରେ ତିଆରି କରିବାକୁ ହେଲେ ଶାରୀରିକ ଆବଶ୍ୟକତା ଗୁଡିକୁ ଅଗ୍ରାହ୍ୟ ନ କରି ଉଚ୍ଚସ୍ତରକୁ ଉନ୍ନୀତ କରାଯାଇ, ଆତ୍ମାର ସମ୍ଭାବନାମୟ ଶକ୍ତିର ବିକାଶ ପର୍ଯ୍ୟାୟରେ ଏକ ଉନ୍ନତ ଜୀବନର ସୋପାନ ରୂପେ ବ୍ୟବହାର କରାଯାଇପାରେ । ସେ କହିଛନ୍ତି ଯେ, ଆତ୍ମାର ବିକାଶରେ ଏଗୁଡିକର ସମୁହ ପରିବର୍ତ୍ତନ ଘଟି, ଜୀବନ ଏକ ମହନୀୟ ଆଧାତ୍ମିକତାର ଆଲୋକରେ ଆଲୋକିତ ହୋଇ ଉଠିବ । ସେଥିରେ ଭାଗବତଜ୍ଞାନ, ଭାଗବତ ଶକ୍ତି ଓ ଭାଗବତ ଆନନ୍ଦର ପୂର୍ଣ୍ଣ ସଂମିଶ୍ରଣ ପ୍ରତିଭାତ ହେବ ।

ଏହି ପରିବର୍ତ୍ତନ ସମ୍ଭବ ହେବ କିପରି ? ଅଜ୍ଞାନତା ପୂର୍ଣ୍ଣ ଜଡରେ ଚୈତନ୍ୟର ବିକାଶ କିପରି ହେବ ? ଜଡତ୍ୱ, ପଶୁତ୍ୱ ଓ ସୀମାରେ ଆବଦ୍ଧ ଜୀବର ମୁକ୍ତି କିପରି ସମ୍ଭବ ହେବ ? ଋଷି ଅରବିନ୍ଦ କହନ୍ତି ଯେ ମନୁଷ୍ୟ ଭିତରେ କିଛି ଅନ୍ତର୍ନିହିତ ଶକ୍ତି ସୁପ୍ତରୂପରେ

ଅବସ୍ଥିତ । ଯେପରି ଶରୀରରେ ସ୍ଥିତ ''ଚକ୍ରରାଜି'' ଓ ''ସହସ୍ରାର ପଦ୍ମ'' । ସେ ଗୁଡିକ ଜାଗରିତ ହେଲେ ପ୍ରଭୁତ ଶକ୍ତିର ଉନ୍ମେଷ ହେବ ଶରୀର ମଧ୍ୟରେ । ଏହି ମୁକ୍ତ ଶକ୍ତି ଐଶ୍ୱରିକ ଶକ୍ତି ସହିତ ମିଳିତ ହୋଇ ମହାଜୀବନର ଉନ୍ମୋଚନ କରିବ । ଚିତ୍ତବୃତ୍ତି ରାଜିର ଅଜେୟ କ୍ଷମତାରେ ମନୁଷ୍ୟ ଜାଗରିତ ହୋଇ ଦିବ୍ୟ ଜୀବନର ସନ୍ଧାନ ପାଇବ; ଏହି ଜୀବନୀ ଶକ୍ତିର ପ୍ରସାର ମାଧ୍ୟମରେ ଗୋଟିଏ ହୃଦୟ ଆଉ ଗୋଟିଏ ହୃଦୟ ସହିତ ମିଳିତ ହୋଇପାରିବ, ଅନ୍ୟମାନଙ୍କ ଜୀବନ ସହିତ ନିଜକୁ ଏକତ୍ରିଭୂତ କରିପାରିବ, ଗୋଟିଏ ଭାଗବତ କେନ୍ଦ୍ରରୁ ଆଲୋକ ବିଚ୍ଛୁରୀତ ହୋଇ ବହୁପ୍ରାଣ ଏହାର ସନ୍ଦେଶ ବହନ କରି ପାରିବେ । ଫଳରେ ଖାଦ୍ୟ, ପେୟ, ସ୍ୱାସ୍ଥ୍ୟ, ଇଚ୍ଛା ବୃତ୍ତି, ଲୋଭ, ମୋହ ଇତ୍ୟାଦିର ପ୍ରଭାବ ଦୂରିଭୂତ ହୋଇ, ବିଶ୍ୱ-ଶକ୍ତି କେନ୍ଦ୍ରରୁ ଶକ୍ତି ଆଣି ଶରୀରକୁ ବହୁଦିନ ପାଇଁ ସମର୍ଥ କରି ରଖି, ଜଡ ଶକ୍ତିରୁ ମୁକ୍ତି ଦେଇପାରିବ ମଣିଷକୁ, ଏହି ଦିବ୍ୟ-ଜୀବନ ।

ଶ୍ରୀଅରବିନ୍ଦ ତାଙ୍କ ଦିବ୍ୟଦୃଷ୍ଟିରେ ଦର୍ଶନ କରିଛନ୍ତିଯେ ''ସୂକ୍ଷ୍ମଶରୀର'' ର କେନ୍ଦ୍ର ଗୁଡିକରୁ ଶକ୍ତି ନିର୍ଗତ ହୋଇ ଜଡତା-ପୂର୍ଣ୍ଣ ମଣିଷର ଧମନୀରେ, ସ୍ନାୟୁ ଗୁଡିକରେ, ଶରୀର ମଧ୍ୟରେ ପ୍ରବେଶ କରି ଜଡ ଶରୀରକୁ ଉଜ୍ଜ୍ୱଳ ଭାବରେ ପ୍ରତିଭାତ କରି, ଶରୀରର ବିଭିନ୍ନ ଅଙ୍ଗକୁ ଉଚ୍ଚକ୍ଷମତା ସମ୍ପନ୍ନ ଶକ୍ତିଦ୍ୱାରା ପରିଚାଳିତ କରି, ଶରୀରକୁ କ୍ଷୁଦ୍ରତା ବଳୟରୁ ମୁକ୍ତିଦେଇ, ଗୋଟିଏ ନୂତନ ପ୍ରାଣକେନ୍ଦ୍ରର ପ୍ରତିଷ୍ଠା କରିବ । ଏପରିକି ସୂକ୍ଷ୍ମ ଅବୟବ ସୃଷ୍ଟି ହୋଇ ଏକ ପ୍ରଗତିଶୀଳ ମାଧ୍ୟମର ଅବତାରଣା କରିବ । ଏହା ଶରୀରର ସମ୍ପୂର୍ଣ୍ଣ ପରିବର୍ତ୍ତନର ପ୍ରଥମ ଆଭାସମାତ୍ର । ପରିପୂର୍ଣ୍ଣତାର ଯାତ୍ରାରେ କ୍ରମବିକାଶ ଧାରା ବହୁ ନୂତନତ୍ୱ ସୃଷ୍ଟି କରି ଶରୀରକୁ କ୍ଷୁଦ୍ରଗଣ୍ଡିରୁ ମୁକ୍ତି ଦେଇ ତାକୁ ମହାଯାତ୍ରାର ଅଙ୍ଗରୂପେ ପ୍ରତିପାଦନ କରିବ ଭବିଷ୍ୟତରେ । ଅତି ମାନସ ଚେତନାର ଅବତରଣ ନିମନ୍ତେ ଅତି ମାନୁଷ ଶରୀରର ଆବଶ୍ୟକତା ଜରୁରୀ ହୋଇପଡିବ । ଏହି ପ୍ରସ୍ତୁତି ପର୍ବରେ ଶରୀରର ନୂତନ କ୍ଷମତା ରାଜିର ଆବିର୍ଭାବ ହେବ । ବର୍ତ୍ତମାନ ଯୁଗରେଏହା ଚିନ୍ତାର ବହିର୍ଭୂତ । କାରଣ ଆତ୍ମାର ଜାଗ୍ରତ କ୍ଷମତାବଳରେ ଏପରି ସବୁ କର୍ମ ଶରୀରଦ୍ୱାରା ସାଧନ-ସାର୍ଥକ ହେବ ଯାହା ଏବେ ଚିନ୍ତାର ଅଗୋଚର । ଆତ୍ମ-ସତ୍ତାର ଉଜ୍ଜ୍ୱଳ ପ୍ରକାଶରେ ପୃଥିବୀରେ ଭାଗବତ ଜୀବନର ପ୍ରତିଷ୍ଠା ସମ୍ଭବ ହେବ, ଆଧ୍ୟାତ୍ମିକ ପରିବର୍ତ୍ତନ ମାଧ୍ୟମରେ ।

ଏହି ପ୍ରତିଷ୍ଠାର ମୂଳ ସୋପାନ ହେଲା ଶରୀର, ମନ ଓ ଜୀବନ ଉପରେଥିବା ପର୍ଦ୍ଦାଗୁଡିକର ଅପସାରଣ ଏବଂ ପୂର୍ଣ୍ଣଜ୍ଞାନର ଅବତରଣ ଓ ଆଧ୍ୟାତ୍ମିକ ଚେତନାର ସମ୍ପୂର୍ଣ୍ଣ ପ୍ରବାହ ମାନବ ଜୀବନରେ । ଏହାଦ୍ୱାରା ମାନବ-ଜୀବନର ଧାରା ଏକ ପରିପୂର୍ଣ୍ଣ ପରିବର୍ତ୍ତନ ଲାଭ କରି ଅତିମାନସ ଚେତନାରେ ଅଭିଭୂତ ହେବ । ଅଜ୍ଞାନର ତମସା ଦୂରୀଭୁତ ହୋଇ

ଆତ୍ମଜ୍ଞାନର ପ୍ରତିଷ୍ଠା ହେଲାପରେ ସତ୍ୟରୁ ବୃହତ୍ତର ସତ୍ୟକୁ, ଅନୁଭବରୁ ଦୃଢ ଅଭିଜ୍ଞତାକୁ, ଆଲୋକରୁ ଉଜ୍ଜ୍ୱଳତର ଅସୀମ ଆଭାକୁ, ସସୀମରୁ ସୀମାହୀନ ସତ୍ତାପ୍ରତି ମାନବ ଧାବମାନ ହେବ ତାର ସ୍ଥିର-ନିଶ୍ଚିତ-ପ୍ରଜ୍ଞାଦ୍ୱାରା । ସ୍ଥୁଳତ୍ୱକୁ ଅତିକ୍ରମ କରି ବିରାଟ ସୂକ୍ଷ୍ମରାଜ୍ୟରେ ମଣିଷ ପ୍ରବେଶ କରିପାରିବ । ଥରେ ଅତିମାନସ ଚେତନାର ପ୍ରତିଷ୍ଠା ହେଲେ ଜୀବନର ଧାରା ଅସତ୍ୟରୁ ସତ୍ୟକୁ, ମିଥ୍ୟାରୁ ଅବିନଶ୍ୱରକୁ, ଶେଷରେ ପୂର୍ଣ୍ଣତା ଆଡକୁ ନିର୍ଭୁଲ ଭାବରେ ଗତି କରିବ ।

ଶ୍ରୀ ଅରବିନ୍ଦଙ୍କ ଦୃଢ ମତ ଅତିମାନସ ଚେତନାର ଉଦୟ ଅବଶ୍ୟାମ୍ଭାବି । ଏହି ଚେତନାରେ ଅନ୍ତର୍ନିହିତ ସତ୍ୟ-ଜ୍ଞାନ ଉର୍ଦ୍ଧ୍ୱସ୍ତରରୁ ପୃଥିବୀ ଉପରେ ନିଶ୍ଚିତ ଭାବରେ ଅବତରଣ କରିବ । ପ୍ରକୃତିର ସତ୍ତା ଉର୍ଦ୍ଧଗତି କରିବାର ପ୍ରଚେଷ୍ଟା ବିବର୍ତ୍ତନବାଦର ଅଂଶ ବିଶେଷ । କାରଣ ନିମ୍ନରେ ଅବସ୍ଥିତ ପ୍ରକୃତିର ଉର୍ଦ୍ଧଗତି କ୍ରମବିକାଶ ପଦ୍ଧତିର ଏକ ଅଙ୍ଗ, ଏଥିରେ ସନ୍ଦେହ ନାହିଁ । କେବଳ ବିବର୍ତ୍ତନ ମାଧ୍ୟମରେ ନୁହେଁ, ବିପ୍ଳବ ମାଧ୍ୟମରେ ମଧ୍ୟ ପ୍ରକୃତିର ବିକାଶ ଘଟିଥାଏ, ଚେତନାର ଅଭିବୃଦ୍ଧି ସାଧିତ ହୁଏ । ଏହି ସୂକ୍ଷ୍ମ ପରିବର୍ତ୍ତନ ପଦ୍ଧତି ଓ ପ୍ରକ୍ରିୟା ମାଧ୍ୟମ ଛଡା ଅଲୌକିକତା ଦ୍ୱାରା ମଧ୍ୟ ସଂଘଟିତ ହୁଏ । କାରଣ ଭାଗବତ ଜୀବନ ଆତ୍ମାର ଆପେ ଆପେ ପ୍ରକାଶ ହେବାର ଇଚ୍ଛା ଉପରେ ନିର୍ଭର କରେ । ତେଣୁ ପରମ ସତ୍ତାର ଅବତରଣ ଦ୍ୱାରା ଏହା ନିୟନ୍ତ୍ରିତ ହୁଏ । ପୃଥିବୀରେ କ୍ରମ ବିକାଶର ଧାରା ଅତି ଧୀରେ ଧୀରେ ଶ୍ଳଥ ଗତିରେ ସମ୍ପନ୍ନ ହୁଏ । ଯୁଗଯୁଗ ବିତିଯାଏ । କାରଣ ଅଜ୍ଞାନରୁ ଜ୍ଞାନ ଆଡକୁ ଗତି ବହୁ ଅନୁନ୍ନତ, ନୀଚ, ନିକୃଷ୍ଟ ବସ୍ତୁକୁ ଶୋଧନ କରିବାରେ ଜଡିତ ହୋଇପଡେ । ଏହି ଶୋଧନ ପ୍ରକ୍ରିୟା ସମୟ-ସାପେକ୍ଷ । ତେଣୁ ପରମ ଓ ଚରମ ସତ୍ତାର ଉର୍ଦ୍ଧ୍ୱରୁ ଅଧଃକୁ ଅବତରଣର ଆବଶ୍ୟକତା ହୁଏ । ଅବଶ୍ୟ ମହାନସତ୍ତାର ଇଚ୍ଛା ତାଙ୍କ ଉପରେ ନିର୍ଭର କରେ । କିନ୍ତୁ ଶ୍ରୀ ଅରବିନ୍ଦ ତାଙ୍କର ଯୋଗବଳରେ ଅନନ୍ତ ଅତିମାନସ ଚେତନାକୁ ପୃଥିବୀରେ ଅବତରଣ କରୁଥିବା ମନଶ୍ଚକ୍ଷୁରେ ଦର୍ଶନ କରି ଦୃଢ଼ତାର ସହିତ ଏହି ସତ୍ୟର ଅବତାରଣା କରିଅଛନ୍ତି । ଦୀର୍ଘ ତିରିଶବର୍ଷର ସାଧନାରେ ସିଦ୍ଧି ଲାଭକରି ଏହି ମହାନ ଚେତନାକୁ ପୃଥିବୀ ବକ୍ଷରେ ଅବତରଣ କରାଇବାରେ ସାର୍ଥକ ହୋଇ ଅଛନ୍ତି, ମହାଯୋଗୀ-ପ୍ରବର, ଋଷି ଅରବିନ୍ଦ ।

ଏଥର ବିଚାରର ବସ୍ତୁହେଲା, ଏହି ଚେତନାଶକ୍ତିର ମନୁଷ୍ୟ ଜାତି ଉପରେ ପ୍ରଭାବ । ଏହାକଣ ଏକ ବିଶିଷ୍ଟ ଜୀବନଧାରା ହୋଇ ଅଲଗା ଭାବରେ କେତେକ ଶୁଦ୍ଧପୂତ ନରନାରୀଙ୍କ ପ୍ରାଣରେ କେବଳ ପ୍ରବାହିତ ହେବ ? ନା, ଏହାର ଅନ୍ୟ ଜଡତାପୂର୍ଣ୍ଣ

ମାନବଗଣଙ୍କ ପ୍ରତି କୌଣସି ଆଶୀର୍ବାଦ, ଶୁଭେଚ୍ଛା ବା ଅବଦାନ ଥିବ ? ଏହି ଜଡ ପୃଥିବୀ ପ୍ରତି ଏହାର କୌଣସି ବିଶେଷ ଆହ୍ୱାନ ରହିବ କି ନାହିଁ ? ଏହି ଜଟିଳ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଶ୍ରୀ ଅରବିନ୍ଦ କହିଛନ୍ତି ଯେ ଏହି ଅପରିସୀମ ଶକ୍ତି ମନୁଷ୍ୟର ଜୀବନ ଧାରଣ ପ୍ରଣାଳୀରେ ନିଶ୍ଚୟ ପରିବର୍ତ୍ତନ ଆଣିବ; ତାହାର ନୀତି ନିୟମକୁ ପ୍ରଭାବିତ କରିବ, ତାହାର ମନରେ ଏକ ବିରାଟ ସମ୍ଭାବନାର ଉଦୟ ହେବ, ଅଜ୍ଞାନତା ଦୂରହୋଇ ଜ୍ଞାନର ଆଲୋକ ତାହାର ଜୀବନରେ ପ୍ରତିଭାତ ହେବ ଏବଂ ମନୁଷ୍ୟ ଜୀବନରେ ଆମୂଳଚୂଳ ପରିବର୍ତ୍ତନ ଲକ୍ଷିତ ହେବ । ମନୁଷ୍ୟଜୀବନକୁ ଅତିମାନସଚେତନା - ସଂମ୍ବନ୍ଧି ଦିଗରେ ଆକର୍ଷଣ କରି, ଏହି ନବ ଶକ୍ତି ଏକ ଶକ୍ତିଶାଳୀ ମାନବ ଜାତିର ସୃଷ୍ଟି କରିବାକୁ ସମର୍ଥ ହେବ । ପଶୁତ୍ୱର ବନ୍ଧନରୁ ମୁକୁଳି, ଭ୍ରମ ଓ କ୍ଷୁଦ୍ରତା ର ବନ୍ଧନତ୍ୟାଗ କରି, ମଣିଷ ମନ ଅତିମାନସ ପଥରେ ଅଗ୍ରଗତି କରିବ ଓ ଉଜ୍ଜ୍ୱଳ ସତ୍ୟର ଅନୁଧାବନ କରି ମିଥ୍ୟାର ପ୍ରବଞ୍ଚନାରୁ ଚିରଦିନ ନିମନ୍ତେ ମୁକ୍ତ ହେବ । ଏହା ଏକ ପରମ ଲାଭ ଅତିମାନସ ଚେତନା ପ୍ରାପ୍ତିର ।

ଅନ୍ୟ ପ୍ରଶ୍ନହେଲା, ସମଗ୍ର ମାନବ ଜାତି ଏହି ଚେତନା ଦ୍ୱାରା ଉଦ୍‌ବୁଦ୍ଧ ହେବେ ନା କେବଳ କେତେକ ଅଳ୍ପ ସଂଖ୍ୟକ ପ୍ରଗତି-ପ୍ରାପ୍ତ ମଣିଷ ? ପଶୁତ୍ୱରୁ କଣ ଏକାବେଳେକେ ଅତିମାନସ ସ୍ତରକୁ ସମସ୍ତେ ଏକତ୍ର ଭାବରେ ଦିନେ ଉନ୍ନତ ହୋଇଯିବେ ? ନା, ଏକ ବିରାଟ ବ୍ୟବଧାନ ରହିଯିବ ମୁକ୍ତ ଧାରଣା ବିଶିଷ୍ଟ ମାନବ ଓ ପଶୁତ୍ୱଗ୍ରସ୍ତ ମଣିଷ ମଧ୍ୟରେ ? ଏହାର ଉତ୍ତରରେ ଶ୍ରୀ ଅରବିନ୍ଦ କହିଛନ୍ତି ଯେ ଥରେ ଅତିମାନସ ଚେତନାର ଆବିର୍ଭାବ ହେଲେ ଏହା ଏକାଭିମୁଖୀ ହୋଇ ରହିପାରିବ ନାହିଁ । ଏହା ଅତି ଉନ୍ନତ ମାନବ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ସାଧାରଣ ମନୁଷ୍ୟକୁ ମଧ୍ୟ ପରିବର୍ତ୍ତନ କରି, ତାହାର ମନକୁ ଉନ୍ନତ ସ୍ତରକୁ ନେଇଯିବ । ସବୁ ମଣିଷ ଏକାଠି ଅତିମାନସ ଚେତନା ଲାଭ ନକଲେ ମଧ୍ୟ, ତାହାର ଆଲୋକରେ ଆଲୋକିତ ହୋଇ ମନୁଷ୍ୟର ମନ ଏକ ନୂତନ ମାନବ ଜୀବନର ସୋପାନ ରଚନା କରିବ । ଏହି ନବ-ମାନବ-ଜାତି ପୃଥିବୀ ବକ୍ଷରେ ଏକ ଉନ୍ନତ ମାନସିକତାର ପ୍ରଜାତିରୂପେ ପ୍ରତିଭାତ ହେବେ; ସେମାନଙ୍କ ମନରେ ସତ୍ୟର ପ୍ରତିଫଳନ ଉଦ୍‌ଭାସିତ ହେବ । ଏହା ଜ୍ଞାନର କ୍ରମବିକାଶ ପନ୍ଥା ଭାବରେ ପରିଚିତ ।

ଶ୍ରୀ ଅରବିନ୍ଦଙ୍କ ମତରେ ସମଗ୍ର ମାନବ ଜାତିର ଉତ୍ତରଣ ଓ ଉର୍ଦ୍ଧ୍ୱଗମନ, ଅତି ମାନସ ଚେତନା ପ୍ରାପ୍ତି ନିର୍ଭର କରିବ ଏହି କ୍ରମ ବିକାଶ ପଦ୍ଧତି ଉପରେ ଓ ବିଶ୍ୱ ଚେତନାର ଇଚ୍ଛାପୂର୍ତ୍ତି ଉପରେ । ତେବେ ଏହି କ୍ରମବିକାଶର ପ୍ରକ୍ରିୟା ଆରମ୍ଭ ହେବାର ସୂଚନା ମିଳୁଛି । ଯଦିବା ପୃଥିବୀ ଜଡପିଣ୍ଡ ଗଠିତ, ଏହାର ଶୀର୍ଷରେ ଆତ୍ମାର ଅବସ୍ଥିତି ଯୋଗୁ ସେହି

ଆଧ୍ୟାତ୍ମିକ ପୂର୍ଣ୍ଣ ପରିବେଶ ଆଡକୁ ଗତିକରିବା ପୃଥିବୀଗତ ଜୀବନର ଲକ୍ଷ୍ୟ, ଏଥିରେ ହିଁ ଜୀବନର ସାର୍ଥକତା । ଏହି ପ୍ରଗତି ମାଧ୍ୟମରେ ଅତିମାନସ ଚେତନାକୁ ପୃଥିବୀରେ ଓହ୍ଲାଇବାକୁ ପଡିଛି । ଏଥିରେ ବାଧା ସୃଷ୍ଟିକରିଛି ବୁଦ୍ଧି-ଭ୍ରଂଶ । ବୁଦ୍ଧିର-ଅଜ୍ଞାନତା ପ୍ରସୂତ ଭ୍ରମ ମଣିଷକୁ ଏହି ମାୟାଜାଲକୁ ଛିନ୍ନ କରିବାକୁ ଦେଉନାହିଁ । ଫଳତଃ ଜଡ ଜଗତରେ ଆବଦ୍ଧତା ମଣିଷକୁ ବାନ୍ଧି ରଖିଛି । ଏହି ଭ୍ରମଦୂର ହେବାମାତ୍ରେ ମନୁଷ୍ୟ ମୁକ୍ତିର ସନ୍ଧାନ ପାଇବ । ପ୍ରକୃତରେ ଜଡ ଓ ଚୈତନ୍ୟ ମଧ୍ୟରେ ଯେଉଁ ସମ୍ବନ୍ଧ ଓତଃପ୍ରୋତଭାବେ ଜଡିତ ଅଛି, ଏହି ସୂତ୍ରରେ ମାଧ୍ୟମରେ ଚୈତନ୍ୟ ଆଡକୁ ମାନବ ମନର ଚିରାଚରିତ ଯାତ୍ରା ଅବ୍ୟାହତ, ଏହି ପଦ୍ଧତିରେ ମାନବ ମନର ଉର୍ଦ୍ଧଗମନ ପ୍ରକୃତିଗତ; ଏଥିରୁ ହୋଇଛି ଆତ୍ମା ସହିତ ସଂଯୋଗ ଓ ପରମାତ୍ମାରେ ଲୀନ ହେବାର ପ୍ରବୃତ୍ତି । ଏହି ପନ୍ଥାରେ ପରମ ସତ୍ତାର ଆଶୀର୍ବାଦବିନା ପ୍ରଗତି ଅସମ୍ଭବ । ସେଥିପାଇଁ ସେହି ପରମ ଚେତନାର ଅବତରଣ ମନୁଷ୍ୟର ସାହାଯ୍ୟାର୍ଥେ । ମଣିଷ ଯଦି ପାଦେ ଆଗେଇଯାଏ, ସେହି ଚେତନା ତା ଆଡକୁ ପାଞ୍ଚପାଦ ଆଗେଇ ଆସିବ । ଏହି ଉର୍ଦ୍ଧ୍ୱଗତି ଓ ଅଧୋଗାମିତା ମାଧ୍ୟମରେ ଜଡ ଓ ଚୈତନ୍ୟର ମିଳନ; ଏକ ନବ-ନିର୍ମାଣ ନିମନ୍ତେ; ଏକ ନୂଆ ମନୁଷ୍ୟଜାତି ସୃଷ୍ଟି ନିମନ୍ତେ; ଅନ୍ଧକାରରୁ ଆଲୋକକୁ ଉର୍ଦ୍ଧ୍ୱଗମନ ପାଇଁ, ଅଜ୍ଞାନରୁ ଜ୍ଞାନର ଅବଗତି ପାଇଁ । ଏହି ପ୍ରଣାଳୀରେ ଯେଉଁ ସମାଜ ସୃଷ୍ଟି ହେବ ତାହା ପୃଥିବୀ-ସମ୍ଭୁତ ହେଲେ ମଧ୍ୟ, ଆଲୋକପୂର୍ଣ୍ଣ ମନର ଅଧିକାରୀ ହୋଇ ଜଡ ଜଗତରୁ ମନୁଷ୍ୟର ମୁକ୍ତି ପ୍ରଦାନ କରି ଉନ୍ନତ ଚିନ୍ତା, ଭାବନା, ଚିତ୍ତଶୁଦ୍ଧି, ଅନୁଭୂତି, ଅଭିଜ୍ଞତାର ଜଗତକୁ ନେଇଯିବ ସାଧାରଣ ମନୁଷ୍ୟକୁ । ଏହିପରି ଭାବରେ ଉନ୍ନତ ସୋପାନ ଚଢ଼ିବାରେ ଆଲୋକମୟ ଜୀବନର ସୂତ୍ରପାତ ହେବ । ଏହି ପଦ୍ଧତିରେ ରହସ୍ୟମୟ ନୀତିରାଜି କ୍ରମେ କ୍ରମେ ଉଦ୍‌ଘାଟିତ ହେବେ ଓ ମଣିଷର ବୋଧବୃତ୍ତର ପରିସର ମଧ୍ୟରେ ଧୀରେ ଧୀରେ ଧରାଦେବେ ପରମ ଭଗବତ ଜୀବନ ପ୍ରାପ୍ତି ସୂତ୍ରରେ । ଆଧ୍ୟାତ୍ମିକ ପ୍ରଗତି ପଥରେ ହିଁ ମନୁଷ୍ୟର କ୍ରମବିକାଶର ଶେଷ ପରିଣତି ଅବଧାରିତ । ଋଷି ଅରବିନ୍ଦଙ୍କର ଦୃଢ଼ ପ୍ରତ୍ୟୟ ତାଙ୍କର ଯୋଗଲବ୍ଧ ଦର୍ଶନର ଆଶୀର୍ବାଦ । ସେ ବିଶଦଭାବରେ ବୁଝାଇ କହିଛନ୍ତି ଯେ ବିଭିନ୍ନ ପ୍ରାଣୀ ସମୁହରେ ଅଜ୍ଞାନତାର ପ୍ରକାଶ ଦେଖାଗଲେ ମଧ୍ୟ, ପ୍ରକୃତିର ପ୍ରକାଶରେ ବିରୋଧାଭାସ ଲକ୍ଷ୍ୟ କରାଗଲେ ମଧ୍ୟ, କୋଟି କୋଟି ପଶୁ, ପକ୍ଷୀ, କୀଟ, ପତଙ୍ଗ, ମନୁଷ୍ୟ ସେମାନଙ୍କର ନିଜ ନିଜ ପ୍ରାକୃତିକ ନିୟମାବଳି ପାଳନ କରୁଥିଲେ ମଧ୍ୟ, ବିଭିନ୍ନ ଧରଣର ଗୋଳମାଳିଆ ପରିସ୍ଥିତି ମଧ୍ୟଦେଇ ପ୍ରାକୃତିକ ଜୀବମାନେ ଗତିକରୁଥିଲେ ମଧ୍ୟ, ସେହି ସର୍ବୋଚ୍ଚ ଚେତନା ବିଶ୍ୱ-ସ୍ଥିତିକୁ ଆପଣାଛାଁଏ ତିଆରି କରି ନେଇ, ସର୍ବଶେଷ ପରିଣତି ଆଡକୁ ଆଗେଇ ନେଉଛି । ସେହି ପରମ ଚେତନାର ସ୍ରୋତ ସମଗ୍ର ବିଶ୍ୱରେ ବ୍ୟାପ୍ତ ହୋଇ

ଆପତଃ ବିରୋଧୀ ସ୍ରୋତ ମାନଙ୍କୁ ଗୋଟିଏ ଦୃଢ ନିଶ୍ଚିତ ଲକ୍ଷ୍ୟ ଆଡକୁ ଟାଣିନେଇ ଯାଉଛି । କାରଣ କ୍ରମବିକାଶର ଧାରା ସୁସ୍ପଷ୍ଟରୂପେ ଜଡରୁ ଜୀବନ, ଜୀବନରୁ ମନ; ମନରୁ ଆତ୍ମା ଓ ଆତ୍ମା ରୁ ପରମାତ୍ମା ଆଡକୁ ଧୀର ପଦକ୍ଷେପରେ ସମୟର ବିବର୍ତ୍ତନ ମାଧ୍ୟମରେ କଳ୍ପ କଳ୍ପ ଧରି ପ୍ରବହମାନ୍ । ଏହାର ଉଦ୍ଦେଶ୍ୟ ସ୍ଥିର ଓ ଅଚଞ୍ଚଳ । ଯେଉଁ ଗୁପ୍ତ ତଥ୍ୟ ଅତି ମାନସ ଚେତନା ମଧ୍ୟରେ ଅନ୍ତର୍ନିହିତ ଅଛି, ତାହା ନିଜକୁ କ୍ରମଶଃ ପ୍ରକାଶ କରୁଛି ପଦାର୍ଥ, ଜୀବନ ଓ ଆମର ବିଶ୍ୱରେ ଅବସ୍ଥିତିର ଗୂଢ଼ ରହସ୍ୟକୁ ନିରାଭରଣ କରି ।

ଏହି ପରିପ୍ରେକ୍ଷୀରେ ପରମପୁରୁଷ ଶ୍ରୀରାମକୃଷ୍ଣଙ୍କ ଉକ୍ତି ଉଲ୍ଲେଖ୍ୟଯୋଗ୍ୟ । ସେ କହିଥିଲେ ହଜାରବର୍ଷ ଧରି ଘୋର ଅନ୍ଧକାର ପୂର୍ଣ୍ଣ କୋଠରୀରେ ଯଦି ଗୋଟିଏ ଆଲୋକମୟ ବତୀ ଜଳାଇ ଦିଆଯାଏ, ତେବେ ମୁହୂର୍ତ୍ତ ମଧ୍ୟରେ ସେହି ଘନାୟମାନ ଅନ୍ଧକାର ଏକାବେଳେକେ ଦୂର ହୋଇଯିବ । ସମ୍ପୂର୍ଣ୍ଣ କୋଠରୀ ଆଲୋକରେ ଉଦ୍‌ଭାସିତ ହୋଇ ଉଠିବ । ଯେତେ ଅଜ୍ଞନତା ବିଧ୍ୱସ୍ତ ଜୀବହେଲେ ମଧ ତାହା ମନରେ ଯଦି ଆଲୋକପୂର୍ଣ୍ଣ ଜ୍ଞାନର ବର୍ତ୍ତିକା ଜଳାଇ ଦିଆଯାଏ ତାହାହେଲେ ତାହାର ଘୋର ଅଜ୍ଞାନ ନିମେଷକ ମଧ୍ୟରେ ଦୂର ହୋଇ ପୂର୍ଣ୍ଣଜ୍ଞାନରେ ମନ ବିଭାସିତ ହୋଇ ଉଠିବ । ଜ୍ଞାନର ଆଲୋକବର୍ତ୍ତିକା ଛଡା ଅଜ୍ଞାନ-ବିତାଡନର ଅନ୍ୟ ଅସ୍ତ୍ର ନାହିଁ ।

ଏହି ଭାବଧାରାର ପୂର୍ଣ୍ଣ ପ୍ରୟୋଗ କଲେ ବୁଝାଯିବ ଯେ ଅତିମାନସ ଚେତନା ହେଉଛି ସେହି ପୂର୍ଣ୍ଣଜ୍ଞାନର ଏକ ତୀକ୍ଷ୍ଣ ଅସ୍ତ୍ର । ଏହା ପୃଥିବୀପୃଷ୍ଠରେ ଅବତରଣ କରି ଏଠାରେ ଘୋଟିଥିବା ଅଜ୍ଞାନର ବାତାବରଣକୁ ଦୂର କରି ପରିପୂର୍ଣ୍ଣ ଜ୍ଞାନର ବିକାଶ କରାଇବ । ପ୍ରଶ୍ନ ହେଲା, ତାହା ନିମେଷ ମାତ୍ରେକେ ସବୁ ଜୀବଙ୍କୁ ଉଦ୍‌ଭାସିତ କରିବ ? ନା, କେବଳ ଆଲୋକ ପଥଯାତ୍ରୀ ଅଗ୍ରଗତି ଲାଭ କରିଥିବା ମନୁଷ୍ୟଙ୍କ ପ୍ରତି ଦୟା କରିବ ? ଏଥିରେ ଶ୍ରୀ ଅରବିନ୍ଦଙ୍କ ମତହେଲା ଯେ ଏହାର ଉପଯୋଗୀତା କ୍ଷଣିକ ମଧ୍ୟରେ ସର୍ବଜନ-ପ୍ରଯୁକ୍ତ ନୁହେଁ । ଏହା ମଧ କ୍ରମବିକାଶ ପ୍ରଣାଳୀରେ ଏହାର ଶେଷ ଲକ୍ଷ୍ୟ ପୂରଣ କରିବ । କିନ୍ତୁ ସମସ୍ତେ ଦିନେ ସତ୍, ଚିତ୍, ଆନନ୍ଦ ଅନୁଭବ କରି ଆଲୋକମୟ ଜୀବନର ଅଧିକାରୀହେବେ । ଏଥିପାଇଁ ଏକ ପ୍ରସ୍ତୁତିପର୍ବ ବିଦ୍ୟମାନ ।

''ସାବିତ୍ରୀ''ର ପ୍ରଥମ ପୁସ୍ତକର ଚତୁର୍ଥ ଅଧ୍ୟାୟରେ ଶ୍ରୀଅରବିନ୍ଦ ଲେଖିଛନ୍ତି ଯେ ଯାହା ଏହି ପୃଥିବୀରେ ଘଟୁଛି ଏବଂ ଏହାର ବାହାରେ ମଧ ଘଟୁଅଛି, ତାହା ଏକ ଅନନ୍ତ ଯୋଜନାର କ୍ଷୁଦ୍ର ଅଂଶ ବିଶେଷ । ଯାହା ବହିର୍ଜଗତରେ ପ୍ରତିଫଳିତ ତାର ମୂଳ ଅନ୍ତରରେ ପ୍ରୋଥିତ; ଯାହା ଭାଗ୍ୟବୋଲି କଥିତ, ଯାହା ଅବୋଧ୍ୟ ଫଳାଫଳର ଏକତ୍ରିକୃତ ମିଶ୍ରଣ,

ତାହାସବୁ ସେହି ଅଜ୍ଞେୟ ସତ୍ୟାବଳିର କୃତି; ସେହି ଅଜ୍ଞାତହିଁ ଜ୍ଞାତକୁ ସୃଷ୍ଟି କରିଅଛି । ଆମେ ସବୁ ଦୈନନ୍ଦିନ ଗତ୍ତାଳିକାଗତ କର୍ମରେ ବ୍ୟାପୃତ ରହି ସେହି ଆତ୍ମାର ଗଭୀରତା ପ୍ରସୂତ କୃତକର୍ମ ଓ ତଦ୍‌ଜନିତ ଫଳାଫଳର ଓ ଏଗୁଡିକର ଆବଶ୍ୟକତା ସମ୍ବନ୍ଧରେ ଅବହିତ ନୋହୁଁ । ଆମର ଦୃଷ୍ଟି ବର୍ହିଦୃଶ୍ୟରେ ନିବଦ୍ଧ । ଆମ୍ଭେମାନେ ଘଟଣାର ଘୋର ଘର୍ଘର ନିନାଦ ଶୁଣି ସେଗୁଡିକର ଗୁପ୍ତ କାରଣ ବିଷୟରେ ବିସ୍ମିତ ହୋଇ ରହୁସିନା, ମହାବିଶ୍ୱର କାର୍ଯ୍ୟ କାରଣ, ନିମିତ୍ତର ଆବରଣକୁ ଭେଦ କରିବାର ଶକ୍ତି ଆମର କାହିଁ ? ଏହି ସବୁ ଘଟଣାବଳି ମହାନ ଆତ୍ମାର ସୂର୍ଯ୍ୟ ଭଳି ଶକ୍ତିମାନ ଗୁପ୍ତ କ୍ଷମତାରୁ ଜାତ, ତତ୍‌କାଳିକ-ଖୋଦିତ ଝରଣା ମଧ୍ୟଦେଇ ପ୍ରବାହିତ । ଆତ୍ମାର କଣ ଏପରି ଗଭୀର ଆବଶ୍ୟକତା ପଡିଲା ଏହି କାର୍ଯ୍ୟକାରଣ ଓ ଫଳାଫଳ ସୃଷ୍ଟି କରିବାକୁ ତାହା କିଏ ଜାଣିପାରିବ ? ମନୁଷ୍ୟ କେବଳ ସ୍ତମ୍ଭିତ ହୋଇରହେ ଏହି ମହାବିଶ୍ୱର ବିଭିନ୍ନ ପ୍ରକାଶକୁ ଦେଖି ।

ମନୁଷ୍ୟମନରେ ଏକ ଅତି ଗୁଢ଼ ପ୍ରଶ୍ନ ବହୁଦିନରୁ ଅମୀମାଂସିତ ହୋଇ ରହିଅଛି । ମଣିଷର ଜୀବନ କଣ ପୂର୍ବଜନ୍ମ-କର୍ମଫଳ ଦ୍ୱାରା ନିର୍ଦ୍ଧାରିତ ନା. ତାହାର ସ୍ୱତଃପ୍ରବୃତ ଇଚ୍ଛାରାଜି, କର୍ମକ୍ଷମତା, ପ୍ରବଣତା, ଚିନ୍ତାଶକ୍ତିଦ୍ୱାରା କ୍ରମ-ନିଶ୍ଚିତ; ଅର୍ଥାତ୍ ତାର ନିଜର ଜୀବନକୁ ସେ ନିଜର କ୍ଷମତାବଳରେ ନିର୍ଦ୍ଧାରିତ କରିଥାଏ । ତାହାର ସ୍ୱାଧୀନ ଚିତ୍ତବୃତ୍ତିହିଁ ସତ୍ୟ । ପୂର୍ବଜନ୍ମ କର୍ମଫଳ ଏକ ବିରାଟ ଅସତ୍ୟ କଥନ; ଏକ ଭ୍ରମାତ୍ମକ ଧାରଣା, ଅଳସ ଲୋକର ଅଜ୍ଞାନତାରୁ ଉଦ୍‌ଭୂତ ଏକ ମିଥ୍ୟା ବିଶେଷ ।

ସାଧାରଣତଃ ମନ ସବୁପଦାର୍ଥର ବହିରାଭରଣ ଦୃଷ୍ଟିରୁ ସେଗୁଡିକର ମୂଲ୍ୟାୟନ କରିଥାଏ । ଇନ୍ଦ୍ରିୟ ଅନୁଭୂତିରୁ ଜ୍ଞାନ ସଂଗ୍ରହ କରିଥାଏ; ଘଟଣାଗୁଡିକର ବାହ୍ୟିକ ପ୍ରକାଶ ଏବଂ ସେଥିରୁ ଜାତ ଫଳାଫଳରୁ ନିଜର ଧାରଣା ସୃଷ୍ଟି କରିଥାଏ । ବାକି ଧାରଣା ଗୁଡିକ ନିଜର ଅନୁମାନ ନିର୍ଭର ତଥ୍ୟ ନିସୃତ । ସାଧାରଣ ମଣିଷ ବାହ୍ୟଜଗତର ସଂସ୍ପର୍ଶରେ ଆସି ତାହାର ନିଜର ମନ ଓ ଇନ୍ଦ୍ରିୟ ଲବ୍ଧ ଧାରଣାରୁ ନିଜର ତଥ୍ୟରାଜିରେ ଉପନୀତ ହୋଇଥାଏ । ତାହାର ସଚେତନାତା ବାହ୍ୟିକ ଧ୍ୟାନ ଧାରଣାରୁ ସତ୍ୟ ସଂଗ୍ରହ କରେ । ଅନ୍ତର୍ନିହିତ ସତ୍ୟ ବିଷୟରେ ସେ ଅଚେତନ ଥାଏ । ମାତ୍ର ଯେତେବେଳେ ମନୁଷ୍ୟ ସବୁ ଜାଗତିକ ଓ ବର୍ହିଜାଗତିକ ପଦାର୍ଥ ସହିତ ଘନିଷ୍ଠ ଭାବରେ ଯୁକ୍ତ ହୋଇ ତାହାର ସଚେତନାତାର ବ୍ୟାପ୍ତି ସେହି ପଦାର୍ଥ ଗୁଡିକର ଅନ୍ତର୍ନିହିତ ସତ୍ତା ସହିତ ସଂସ୍ପର୍ଶରେ ଆସେ, ସେହି ବର୍ହିସତ୍ତା ମଣିଷର ଅନ୍ତସତ୍ତା ସହିତ ନିମିଳିତ ହୁଏ । ସେତେବେଳେ ସେ ବର୍ହି ବିଶ୍ୱକୁ ନିଜଭିତରେ ଦେଖିପାରେ ବା ତାହାର ଅନ୍ତର୍ନିହିତ ସତ୍ତା ବର୍ହିବିଶ୍ୱରେ ନିମଜ୍ଜିତ ହୋଇଥାଏ ।

ସେ ସମଗ୍ର ବିଶ୍ୱକୁ ନିଜ ଭିତରେ ଅନୁଭବ କରେ ଏବଂ ନିଜକୁ ସବୁ ବହିର୍ବସ୍ତୁ ମଧ୍ୟରେ ଦେଖେ । ସେତେବେଳେ ତାର ସତ୍ତାର ଜାଗତିକିକରଣ (Universalisation) ସଂଘଟିତ ହୁଏ । ସମଗ୍ର ଜଗତ୍ ତାହାମଧ୍ୟରେ ସନ୍ନିବିଷ୍ଟ ବୋଲି ସେ ଅନୁଭବ କରେ । ଏହି ପରିସ୍ଥିତିରେ ସେ ସିଧାସଳଖ ଗୁପ୍ତ ଶକ୍ତିରାଜିର ବିଶ୍ୱ ମଧ୍ୟରେ ପ୍ରକାଶ ପ୍ରକ୍ରିୟାକୁ ହୃଦୟଙ୍ଗମ କରେ । ସେହି ଶକ୍ତିର ଗତିକୁ ଅନୁଭବ କରେ । ସେମାନଙ୍କର ଗତି ପ୍ରକୃତିକୁ ବିଶେଷ ଭାବରେ ବୁଝିପାରି; ସେଗୁଡ଼ିକ ସହିତ ସଂପର୍କ ସ୍ଥାପନ କରି ସେଗୁଡ଼ିକୁ ବ୍ୟବହାର ମଧ୍ୟ କରିପାରେ । ଯେପରି ବିଜ୍ଞାନୀମାନେ ପଦାର୍ଥ ବିଦ୍ୟାରେ ଶକ୍ତି କ୍ଷେତ୍ରରେ ବିଶ୍ଳେଷଣ କରିପାରନ୍ତି, ସେହିପରି-ଭାବରେ ମଣିଷ ଗୁପ୍ତ ଶକ୍ତିକୁ ମଧ୍ୟ ନିଜ ଅକ୍ତିଆରରେ ଆଣିପାରେ, ଜାଗତିକିକରଣ ପଦ୍ଧତିରେ । ଏହି ସୂକ୍ଷ୍ମ-ସତ୍ୟ ମଣିଷର ଭାବରାଜ୍ୟରେ ପ୍ରତିଫଳିତ । ଶ୍ରୀ ଅରବିନ୍ଦ ଏହି ତଥ୍ୟର ବିଶ୍ଳେଷଣ କରିବାକୁ ଯାଇ କହିଅଛନ୍ତି ଯେ ଆମ୍ଭେମାନେ ସ୍ୱାଧୀନଚେତାରୂପେ ନିଜକୁ ପ୍ରକାଶ କରି ଯେଉଁ ପ୍ରୌଢ଼ି ଦେଖାଉ, ତାହା ଅଜ୍ଞନତାର ଚୁଡାନ୍ତ ନିଦର୍ଶନ । କାରଣ ପ୍ରତିମୁହୂର୍ତ୍ତରେ କୋଟି କୋଟି ବିଶ୍ୱ-ରଶ୍ମିରଧାରା, ଶକ୍ତିପ୍ରଭାବ, କ୍ଷମତାଶୀଳ ସୂକ୍ଷ୍ମବୃତ୍ତି, ନାନାଦି ପ୍ରବୃତ୍ତିରାଜି ବିଶ୍ୱ-ପ୍ରକୃତି ମାଧ୍ୟମରେ ମଣିଷକୁ ପ୍ରଭାବିତ କରି, ତାକୁ ଶକ୍ତିକ୍ଷେତ୍ରରେ ଏକ ଖେଳନାରେ ପରିଣତ କରୁଛି । ଏହା ସେ ସମ୍ପୂର୍ଣ୍ଣ ଭାବରେ ମାପି ପାରୁନାହିଁ ।

ମାତ୍ର ଏହାର ଅର୍ଥନୁହେଁ ଯେ ମଣିଷ ଏକବେଳେକେ ଦୈବର ଦାସାନୁଦାସ । ଭାଗ୍ୟର ଏକ ଅସହାୟ କ୍ରୀଡନକ ମାତ୍ର । ଏହି ଶକ୍ତିକ୍ଷେତ୍ରର ପ୍ରଭାବ ମନୁଷ୍ୟ ଜୀବନରେ ଏକ ଅଭାବନୀୟ ଆଶୀର୍ବାଦ । ଏହା ମଣିଷ ଜୀବନର କ୍ରମବିକାଶକୁ ସାହାଯ୍ୟ କରି ତାକୁ ଉନ୍ନତ ସ୍ତରକୁ ଉପନୀତ କରି, ଅଜ୍ଞାନରୁ ଜ୍ଞାନକୁ ବିକଶିତ କରି, ଆତ୍ମାର ଉର୍ଦ୍ଧ୍ୱଗତିକୁ ସୁଚାରୁରୂପେ ପରିଚାଳିତ କରି, ଜଡରୁ ଚୈତନ୍ୟ ଦିଗକୁ ପ୍ରସାରକରି, ଚୈତନ୍ୟରୁ ଅତିମାନସ ଚୈତନ୍ୟ ଆଡକୁ ନେଇଯାଏ । ଏହି ପ୍ରଗତିଶୀଳ ପନ୍ଥାରେ ଗୁପ୍ତ-ଶକ୍ତିରାଜି ଜୀବନରେ କ୍ରମ ବିକାଶ ପଦ୍ଧତିରେ ବିବର୍ତ୍ତନ ସଂଘଟନର ସହାୟକ ବୋଲି ଋଷି ଅରବିନ୍ଦ ଦୃଢ଼ ଉକ୍ତି କରିଅଛନ୍ତି ।

ଏଠାରେ ବିଚାର୍ଯ୍ୟ ବିଷୟ ହେଲା ଯଦି ସବୁକିଛି ଗୁଢ଼ ଶକ୍ତିରାଜିର ଗୁପ୍ତ ଖେଳ, ତେବେ ମଣିଷର ଅଜେୟ ଚିରବୃତ୍ତି, ସ୍ୱାଧୀନ ପ୍ରେରଣା ଓ ସାଧନା ଏକ ମାୟାଜାଲ ମାତ୍ର; ତାହାର କୌଣସି ଅସ୍ତିତ୍ୱ ନାହିଁ ? ତେବେ ମଣିଷ ଉତ୍ସାହର ସହିତ ଉଦ୍ୟୋଗ କରିବ କାହିଁକି ? ତାହାହେଲେ ଉଦ୍ୟୋଗ ଏକ ଅର୍ଥହୀନ ପ୍ରଳାପ ମାତ୍ର ? ଏଠାରେ ଶ୍ରୀରାମକୃଷ୍ଣଙ୍କ ଉକ୍ତିର ସତତା ବିଷୟରେ ଆଲୋଚନା ଆବଶ୍ୟକ । ସେ ପୂର୍ବଜନ୍ମ, କର୍ମଫଳ ଓ ତାହାର

ଇହଜୀବନରେ ପ୍ରଭାବ ଓ ମଣିଷର ସ୍ୱାଧୀନ-ପ୍ରଚେଷ୍ଟା-ଗତ ବିରୋଧାଭାସର ଏକ ସାମ୍ଭାବ୍ୟ ସନ୍ତୁଳନ ଦେଇଅଛନ୍ତି । ତାଙ୍କର ଉଦାହରଣ ଗୁଡ଼ିକ ବଡ ମନୋ ମୁଗ୍ଧକର ।

ସେ କହିଲେ ଯେ ପୂର୍ବଜନ୍ମର ପ୍ରଭାବ ଅଛି । ଯେପରି ତେଲି ତେଲପେଡ଼ିବା ପାଇଁ ଗୋରୁକୁ ଖୁଣ୍ଟରେ ବାନ୍ଧିଛି ଦଉଡ଼ିଦ୍ୱାରା । ମାତ୍ର ଦଉଡ଼ିର ପରିସର ଯଥେଷ୍ଟ । ଖୁଣ୍ଟ ଚାଡ଼ିଆଡେ ଗୋରୁ ବୁଲିବୁଲି ତେଲ ପେଡୁଛି । ଏହି ଦଉଡ଼ି ପର୍ଯ୍ୟନ୍ତ ପରିସର ମଧ୍ୟରେ ଯେତେ ଘାସ ଅଛି ତାହା ସେ ଅତି ଅନାୟାସରେ ଖାଇପାରୁଛି । ଅର୍ଥାତ୍ ସେହି ପରିସରରେ ଘାସ ଖାଇବା ପାଇଁ ସେ ସ୍ୱାଧୀନଚେତା । ସେଥିରେ କୌଣସି ବାଧା ନାହିଁ । ସେହିପରି, ମଣିଷର ପୂର୍ବଜନ୍ମ କର୍ମଫଳ ତାର ଜନ୍ମରେ, ତାର ଦେଶରେ, ତାହାର ଆର୍ଥିକ ପରିସରରେ, ତାହାର ନିର୍ଦ୍ଦିଷ୍ଟ ସାମାଜିକ ବନ୍ଧନରେ, ତାହାର ଜୀବନର କ୍ଷୁଦ୍ର ପରିମଣ୍ଡଳରେ, ତାହାର ସୀମିତ ଲୋକସମ୍ପର୍କରେ ଆବଦ୍ଧ । ଅର୍ଥାତ୍ ଖୁଣ୍ଟଟି ପରିବେଶକୁ ବୁଝାଉଛି । ଆଉ ଦଉଡ଼ି ହେଲା ତାହାର ଉଦାରିକରଣ-ପ୍ରକ୍ରିୟା । ସେହି ସୀମିତ ବାତାବରଣରେ ନିଜର ଶକ୍ତି ସାହାଯ୍ୟରେ ମଣିଷ ତାହାର ସର୍ବାଙ୍ଗୀନ ଉନ୍ନତି ସାଧନ କରିପାରେ । ସେଥିରେ କୌଣସି ବାଧାନାହିଁ । ଶ୍ରୀରାମକୃଷ୍ଣ କହିଛନ୍ତି, ନିଜକୁ ପାପୀ ବୋଲି ଭାବନାହିଁ । ମଣିଷ ଇଶ୍ୱରଙ୍କ ସନ୍ତାନ । ସେ କେବଳ ନିଜର ଅସଲ ପ୍ରକୃତିକୁ ଭୁଲି ଅମଡାବାଟରେ ପଶିଯାଇଛି । ଈଶ୍ୱରଙ୍କୁ ଉପଲବ୍ଧି କରି ତାଙ୍କର ସ୍ୱରୂପ ଧ୍ୟାନ କରି, ସେ ନିଜକୁ ନିଶ୍ଚୟ ଫେରିପାଇବ ।

ଅସଲରେ ତଳେଇ ବୁଝିଲେ ଜଣାଯିବ ଯେ ସେହି ଏକ ଏବଂ ଅଦ୍ୱିତୀୟ ଶକ୍ତିର ଖେଳ ଏହି ବିଶ୍ୱବ୍ରହ୍ମାଣ୍ଡ, ଜୀବଶ୍ରେଣୀ, ସ୍ଥାବର, ଜଙ୍ଗମ ସବୁ କିଛି । ସେହି ଶକ୍ତି ନିଜକୁ ବହୁ ମାଧ୍ୟମରେ ବିଭିନ୍ନ ରୂପରେ ଭିନ୍ନ ଭିନ୍ନ କ୍ଷେତ୍ରରେ ବହୁ ପ୍ରକ୍ରିୟାରେ ପ୍ରକାଶ କରୁଅଛି । ''କରି କରାଉଥାଏ ମୁହିଁ; ମୋବିନୁ ଅନ୍ୟ ଗତି ନାହିଁ ।'' ଏହାହିଁ ସବୁ ବୁଝାମଣାର ସାରାଂଶ । ତେବେ ସେହି ଶକ୍ତିର ବିଭିନ୍ନତା ବିଷୟରେ ଜାଣିବା ପାଇଁ ମନୁଷ୍ୟର କୌତୁହଳର ଅନ୍ତ ନାହିଁ ।

ଏହି ପ୍ରସଙ୍ଗରେ ପ୍ରଶ୍ନ ଉଠେ ମନରେ ଯେ ଖାଦ୍ୟ, ପେୟ, ସୂର୍ଯ୍ୟର ଉତ୍ତାପ, ପାଣି, ପବନ ଇତ୍ୟାଦିରୁ ଯେଉଁ ଶକ୍ତି ଜୀବଜନ୍ତୁ କୀଟ ପତଙ୍ଗ ଇତ୍ୟାଦି ସଂଗ୍ରହ କରି ବଞ୍ଚି ରହନ୍ତି ତାହା କଣ ଶକ୍ତିର ଏକମାତ୍ର ଉତ୍ସ, ନା ଏହାଛଡା ଅନ୍ୟ ଶକ୍ତି-କ୍ଷେତ୍ର ଅଛି ? ଅନ୍ୟ ଗୁପ୍ତ, ଗୂଢ଼, ଅଦୃଶ୍ୟ, ଅଜଣା, ଅଶୁଣା ଶକ୍ତିର ଧାରା ସମଗ୍ରବିଶ୍ୱ ଜୀବନକୁ ପ୍ରଭାବିତ କରୁଛିକି ? ଏ ବିଷୟରେ ଯେଉଁମାନେ ପ୍ରତ୍ୟକ୍ଷ ଦ୍ରଷ୍ଟା, ଯେଉଁମାନେ ଜୀବନର ରହସ୍ୟ ଉଦ୍‌ଘାଟନ କରିବାରେ ସମର୍ଥ ହୋଇଛନ୍ତି, ସେମାନଙ୍କର ବକ୍ତବ୍ୟ ଅନୁଧାନଯୋଗ୍ୟ । ସେହି ରହସ୍ୟବାଦୀ ସତ୍ୟଦ୍ରଷ୍ଟା ଋଷି ମାନଙ୍କ ମଧ୍ୟରେ ଶ୍ରୀ ଅରବିନ୍ଦ ଅନ୍ୟତମ । ତାଙ୍କର ଏ

କ୍ଷେତ୍ରରେ କେତେକ ପ୍ରତ୍ୟକ୍ଷ ଅଭିଜ୍ଞତା ଦୃଷ୍ଟିରୁ ତାଙ୍କ ମତାମତ ବହୁଳଭାବରେ ଲୋକଙ୍କ ଦ୍ୱାରା ଆଦୃତ ଓ ତାଙ୍କର ଶିଷ୍ୟମଣ୍ଡଳିଦ୍ୱାରା ସ୍ୱୀକୃତ ।

ସେ କହିଛନ୍ତି ଯେ ସାଧାରଣ ମଣିଷର ମନରେ ନିଜର ଭାବଧାରା, ଅଭିଜ୍ଞତାପ୍ରସୂତ ଜ୍ଞାନ, ପରିବେଶର ପ୍ରାଧାନ୍ୟ ଏବଂ ଜାଗତିକ ଶକ୍ତିର ପ୍ରଭାବ ସୁସ୍ପଷ୍ଟ । ମାତ୍ର ଥରେ ଅନ୍ତର୍ନିହିତ ଶକ୍ତି ବିଷୟରେ ଚିନ୍ତାକଲେ ଜଣାଯିବ ଯେ ଜଣକର ନିଜ ବ୍ୟକ୍ତିତ୍ୱରୁ ଜାତ କ୍ଷମତା ସାହାଯ୍ୟରେ ସେହି ଗୁଢ଼ ଅବ୍ୟକ୍ତ ଶକ୍ତିର କଳନା କରାଯାଇପାରେ ନାହିଁ । କାରଣ ବିଶ୍ୱଜନୀନ ଶକ୍ତି ତାହାର ବୋଧଶକ୍ତିର ବାହାରେ କାମକରୁଛି । ଜୀବନ ସମଗ୍ର ଏହି ବିଶ୍ୱ-ଶକ୍ତିର ଖେଳ ମାତ୍ର । ଏହି ନାଟକରେ ସମସ୍ତେ ନିଜ ନିଜର ଅଂଶ ଗ୍ରହଣ କରି ବିଦାୟ ନେଇ ଚାଲିଯାଇଛନ୍ତି । ମାତ୍ର କେତେଜଣ ବୁଝିପାରୁଛନ୍ତି ଯେ ଏହି ନାଟକ ଏକ ଖେଳ ବିଶେଷ । ସେମାନେ ଭାଗବତ ଜୀବନରେ ଆତ୍ମସମର୍ପଣ କରି ତାଙ୍କର ଅଂଶ ଟିକକ ନିର୍ବିଘ୍ନରେ ପାଳନ କରୁଅଛନ୍ତି । ଶ୍ରୀ ଅରବିନ୍ଦଙ୍କ ମତରେ ଦୃଶ୍ୟ ଶକ୍ତିର ଅନ୍ତରାଳରେ କେତେକ ଅଦୃଶ୍ୟ ଶକ୍ତି କାମକରୁ ଅଛି; ତାହା ସାଧାରଣ ମନୁଷ୍ୟର ଅଗୋଚର । ଯୋଗ ମାଧ୍ୟମରେ ସୂକ୍ଷ୍ମ ମାନସିକ ପ୍ରକ୍ରିୟାରେ ସେହି ଶକ୍ତି ସହିତ ଯୋଗସ୍ଥାପନ କଲେ, ଏହି ଖେଳରେ ଅଂଶ ଗ୍ରହଣ କଲେ ମଧ୍ୟ, ଏଥିରେ ସାମାନ୍ୟ ହସ୍ତକ୍ଷେପ କରିବାର ଶକ୍ତି ଉତ୍ପନ୍ନହୁଏ । ଅବଧାରିତ ସତ୍ୟ ହେଲା, ପୂର୍ବ-ନିର୍ଦ୍ଧାରିତ-କର୍ମ ଓ ସ୍ୱାଧୀନ କର୍ମ ଗୋଟିଏ ମୁଦ୍ରାର ଦୁଇପଟ ପରି । ଗୋଟିଏ ପଟହେଲା ସମଗ୍ର-ସୃଷ୍ଟିର ନିଜର ଭବିଷ୍ୟତକୁ ନିର୍ଦ୍ଦିଷ୍ଟ ଭାବରେ ସ୍ଥିର କରିବାର କ୍ଷମତା; ଆଉ ଅପର ପଟଟିହେଲା ସେଥିରେ ବିନ୍ୟସ୍ତ ଗୋଟିଏ ପ୍ରାଣୀର ନିଜର ଭବିଷ୍ୟତ ତିଆରି କରିବାର କ୍ଷମତା । ମନୁଷ୍ୟ ବାହ୍ୟ ପ୍ରକୃତିର ପ୍ରକାଶରେ ବିସ୍ମିତ ହୋଇ ରହେ । ତାହାର ମୌଳିକ ଅଜ୍ଞତା ଯୋଗୁ ସମଗ୍ର ସୃଷ୍ଟିର ଅନ୍ତର୍ନିହିତ ଶକ୍ତି କ୍ଷେତ୍ରକୁ ବୁଝିବାକୁ ଅସମର୍ଥ ହୁଏ । ସ୍ୱାଧୀନ-ମନୋବୃତ୍ତି ମହାବିଶ୍ୱରେ କେବଳ ପ୍ରକୃତିର ମନୋବୃତ୍ତିକୁହିଁ ବୁଝାଏ । ପ୍ରକୃତି ସେହି ପରମ ପୁରୁଷଙ୍କଠାରୁ ତାହା ଲାଭ କରିଥାଏ ।

ଆଉ, ମଣିଷର ଚିତ୍ତବୃତ୍ତି ବହୁବହୁ ଗୁପ୍ତ ଶକ୍ତିଦ୍ୱାରା ପ୍ରଭାବିତ । ଶ୍ରୀ ଅରବିନ୍ଦ କହି ଅଛନ୍ତି ଯେ ମଣିଷ ଯେତିକି ଟିକିଏ ନିଜ ବିଷୟରେ ଜାଣିଛି, ତାହାର ସ୍ୱରୂପ ସେତିକିରେ ଆବଦ୍ଧ ନୁହେଁ । ଆହୁରି ଅନେକ କିଛି ନିଜ ବିଷୟରେ ମଣିଷ ଜାଣିପାରେ ନାହିଁ । କାରଣ ଆମର କ୍ଷଣିକ ବ୍ୟକ୍ତିତ୍ୱ ବିଶ୍ୱରେ ଅସ୍ତିତ୍ୱରୂପ-ମହାସାଗରରେ ଗୋଟିଏ ପାଣି ଫୋଟକା ପରି । ଆମର ନିଜ ବିଷୟରେ ଜ୍ଞାନ କେବଳ ବାହାରର ପ୍ରକାଶରେ ସୀମାବଦ୍ଧ । ଭିତରେ ଯେ ଅମାପଗୁପ୍ତ ଅସ୍ତିତ୍ୱ ରହିଛି ସେ ବିଷୟରେ ଆମ୍ଭେମାନେ କିଛି ଜାଣିପାରୁନାହିଁ । ଯେତେବେଳେ ଆପାତତଃ ମନ ବିକାଶର, ଜୀବନ-ପ୍ରକାଶର ଶାରୀରିକ ବ୍ୟବହାର ବର୍ଗର

ବିଶ୍ଳେଷଣକରୁ, ସେତେବେଳେ ଅସଲ ତଥ୍ୟର କିଛି ଅଂଶ ଆମ ମନରେ ପ୍ରତିଭାତ ହୁଏ । ଗୁପ୍ତ ବ୍ୟକ୍ତିତ୍ୱର ଅଜ୍ଞାନତା ଆମର ବୁଦ୍ଧି, ନୀତି, ଜ୍ଞାନ, ବୋଧଶକ୍ତିର ଅସଫଳତାରୁ ଜାତ । କାରଣ ଆମର ଦୈହିକ ବୋଧବୁଦ୍ଧିର ତଳେ ଗଭୀର ଭାବରେ ପ୍ରୋଥିତ ଅଛି ଏକ ଅଜଣାସ୍ତର ମନର । ତାହାକୁ ଅବ-ଚେତନ କୁହାଯାଇଥାଏ । ଏହି ଅବଚେତନ ସ୍ତରରେ ଏକ ଜୀବନ୍ତ ଶକ୍ତିର ଅବସ୍ଥାନ । ସେଥିରେ ଆମର ଅତୀତ କର୍ମର ବୀଜ-ସକଳ ସନ୍ନିବିଷ୍ଟ ଅଛି । ଏବେବି ଆମେ ଯାହା କରୁଛେ ତାହାର ବୀଜଗୁଡିକ ଯାଇ ସେଠାରେ ଯୁକ୍ତ ହୋଇ ରହି ଆମର ଭବିଷ୍ୟତ-ନିର୍ମାଣ କରୁଛି । ଏହି ପାର୍ଥିବ-ଜୀବନରେ ଏହି ଅବଚେତନ-ଶକ୍ତିର ପ୍ରାଧାନ୍ୟ ଅସୀମ । ଏହି ଶକ୍ତି ଯୁକ୍ତିନିଷ୍ଠ ରୂପେ କାମ କରେନାହିଁ । ଏହାର ପ୍ରକୃତିହେଲା ନିର୍ବୁଦ୍ଧିରେ ଭରା, ଏବଂ ଖାମଖିଆଲି ନୀତିରେ ଏହାର ପ୍ରକାଶ । ତେଣୁ ଅନେକ ସମୟରେ ମନୁଷ୍ୟର ଆପତଃ ବ୍ୟବହାର ବୋଧଗମ୍ୟ ହୁଏ ନାହିଁ । ପୁନଶ୍ଚ ମଣିଷର ମନର ଅନ୍ତରାଳରେ, ଜୀବନର ଆଢୁଆଳରେ, ଶାରୀରିକ ଚେତନାର ପଛରେ ଏକ ଚେତନା-ସତ୍ତା ରହିଛି ଯାହା ଅତି ଗୁପ୍ତରେ ଗୂଢ଼ ଭାବରେ କାର୍ଯ୍ୟରତ । ଆମର ବହିଃ ଚେତନା ଓ ଏହି ଗୂଢ଼ ଚେତନା ଓ ଶାରୀରିକ ଚେତନାମଧରେ ଅତି କ୍ଷୀଣ ବ୍ୟବଧାନ ଅବସ୍ଥିତ । ଏହି ବ୍ୟବଧାନ ବିଦୂରିତ କଲେ ସେହି ଅନ୍ତର୍ନିହିତ ଗୁପ୍ତ ଶକ୍ତିର ସନ୍ଧାନ ମଣିଷ ଅତି ସହଜରେ ପାଇପାରିବ । ସେହି ଶକ୍ତିକୁ କିୟତ୍‌ପରିମାଣରେ ବ୍ୟବହାର ମଧ୍ୟ କରିପାରିବ । ତାହାର ମନୁଷ୍ୟ ଉପରେ ପ୍ରଭାବକୁ ନିୟନ୍ତ୍ରଣ ମଧ୍ୟ କରିପାରିବ ।

ଏହି ପ୍ରସଙ୍ଗରେ ପୂର୍ବ ଅଲୋଚିତ ମନୋବିଜ୍ଞାନୀ ଫ୍ରଂୟେଡ୍‌ଙ୍କ ଚିନ୍ତାଧାରାର ସସୀମତା ଉଲ୍ଲେଖଯୋଗ୍ୟ । ଅବଚେତନ ସତ୍ତାର ଆବିଷ୍କାର କରି ତାହାର ବିଶ୍ଳେଷଣଦ୍ୱାରା ସେ ମନୁଷ୍ୟର ବହୁ ମାନସିକ ରୋଗର ନିରାକରଣ କରିପାରିଥିଲେ । ସେ ସତ୍ୟର କିୟତ୍ ପରିମାଣରେ ସନ୍ଧାନ ପାଇଥିଲେ, ମାତ୍ର ଅବଚେତନର ପଛରେ ଯେଉଁ ଗୁପ୍ତଶକ୍ତି-କ୍ଷେତ୍ର ରହି ମନୁଷ୍ୟକୁ ବହୁଳଭାବରେ ପ୍ରଭାବିତ କରୁଅଛି, ତାହାର ସନ୍ଧାନ ପାଇପାରିନଥିଲେ । ତାକୁ ପାଇବାକୁ ହେଲେ ଗଭୀର ଅନ୍ତର୍ଦୃଷ୍ଟିର ଆବଶ୍ୟକତା ରହିଛି । ଶ୍ରୀ ଅରବିନ୍ଦ ତାଙ୍କର ଯୋଗ ବଳରେ କେବଳ ସୁପ୍ତ ଶକ୍ତିକୁ ଆବିଷ୍କାର କରି ନାହାନ୍ତି । ସେ ମନୁଷ୍ୟମନର ଅତି ଊର୍ଦ୍ଧ୍ୱରେ ଥିବା ଅତିଚେତନ ସତ୍ତାର ଅସ୍ତିତ୍ୱରେ ଅବଗାହନ କରିଅଛନ୍ତି । ସେ ପୁଣି କହିଛନ୍ତି ଯେ ଅତି-ମାନସ ଚେତନାରୁ ମନୁଷ୍ୟ ଉପରେ ଗୁପ୍ତଭାବରେ ରହସ୍ୟମୟ ପଦ୍ଧତିରେ ବହୁ ପ୍ରଭାବ, ଶକ୍ତି, କ୍ଷମତା, ସଂସ୍ପର୍ଶ ପ୍ରଭୃତି ବର୍ଷିତ ହେଉଅଛି । ଏହାର ଅତିମାନୁଷରୂପ ଏହି ଜଡ ଜଗତର ଜୀବନକୁ ସମ୍ପୂର୍ଣ୍ଣରୂପେ ବଦଳାଇଦେଇପାରେ । ଏ ପ୍ରସଙ୍ଗରେ ଶ୍ରୀ ଅରବିନ୍ଦ ବୁଝାଇ କହିଛନ୍ତି ଯେ ଅବଚେତନ ମନ ଯେପରି ଆମର ଶାରୀରିକ, ଜୈବିକ ଓ ମାନସିକ

ପ୍ରେରଣାର ଉତ୍ସ ଯୋଗାଇ ଥାଏ; ସେହିପରି ଅତିମାନସ ଚେତନା ମଣିଷର ଆଧ୍ୟାତ୍ମିକ ଚେତନାକୁ ଉଦ୍‌ବୁଦ୍ଧ କରି ତାକୁ କ୍ରମ-ବର୍ଦ୍ଧିତ କରିଥାଏ । ମଣିଷର ଅନ୍ତରତମ ପ୍ରଦେଶରେ ଅବସ୍ଥିତ ଆଧ୍ୟାତ୍ମିକ ସ୍ୱରୂପ ସ୍ୱଚ୍ଛ ଉପାଦାନରେ ତିଆରି । ଆଧ୍ୟାତ୍ମିକ ସତ୍ତା ଏକ ଅତି ପବିତ୍ର ଅଗ୍ନିଶିଖା । ଏହାକୁ କୌଣସି ଅଶୁଦ୍ଧତା ସ୍ପର୍ଶମାତ୍ର କରିପାରେ ନାହିଁ । ଏହା ଅତ୍ୟନ୍ତ ତେଜୀୟାନ ବସ୍ତୁ ଓ ଓତଃପ୍ରୋତ ଭାବରେ ପରମ ସତ୍ୟ ସହିତ ଜଡିତ; ସତ୍, ଚିଦ୍, ଆନନ୍ଦ ବିଷୟରେ ଅବଗ୍ରାହୀ କାରଣ ଏହି ସତ୍ତାର ଉପାଦାନ ମଧ୍ୟ ସେହି ଗୁଣର ଆଧାର । ତେଣୁ ଯାହା କୁତ୍ସିତ, ଅସୁନ୍ଦର, ଅସତ୍, ନିକୃଷ୍ଟ ବା ମନ୍ଦ ତାହା ଏହି ସତ୍ତାକୁ ସ୍ପର୍ଶ କରିପାରେ ନାହିଁ । ମାତ୍ର ଏହି ବଦ୍‌ଗୁଣ ଗୁଡିକ ଶରୀର ମନ ଓ ଜୀବନକୁ ବିଶେଷଭାବରେ ପ୍ରଭାବିତ କରିଥାଏ । ଯଦିବା ଆତ୍ମା ଶରୀରକୁ ବ୍ୟବହାର କରିଥାଏ, ତଥାପି ଏହା ଶରୀରର ଉପାଦାନଠାରୁ ଏକାବେଳେକେ ଭିନ୍ନ ପ୍ରବୃତ୍ତିର ।

ଆତ୍ମାର ତତ୍ତ୍ୱାବଧାନରେ ଥାଇମଧ୍ୟ ଶରୀର ଓ ମନ ଭ୍ରମାତ୍ମକ ରାସ୍ତାଦେଇ ଗତି କରନ୍ତି କାହିଁକି ? ପୃଥିବୀରେ ଏତେ ପ୍ରଭାବ ଅସତ୍, ନିକୃଷ୍ଟ ଓ ମନ୍ଦଭାବ କିପରି ଭାବରେ ପ୍ରସାରିତ ହେଉଅଛି ? ଏହାର ଉତ୍ତର ଦେଇଛନ୍ତି ଶ୍ରୀ ଅରବିନ୍ଦ । ମଣିଷର ଚୈତନ୍ୟର ଅଭାବଯୋଗୁ ତାହାର ବହିସ୍ୱରୁପର ଅନ୍ତରାତ୍ମା ସହିତ ଯୋଗସୂତ୍ରଚ୍ଛିନ୍ନ ହୋଇଥିବାରୁ, ଅନ୍ତର୍ନିହିତ ଶକ୍ତି ସହିତ ଯୋଗସୂତ୍ରର ଅଭାବରୁ, ବହୁ ବାଧାସୃଷ୍ଟିକାରୀ ଶକ୍ତିର ପ୍ରଭାବରୁ, ମଣିଷ ବହି ପ୍ରଭାବକୁ ବିଶେଷ ପ୍ରାଧାନ୍ୟ ଦେଇ, ଭୁଲରାସ୍ତାରେ ଅଗ୍ରସର ହୁଏ । ସେ ଅନ୍ତରାତ୍ମାକୁ ଏକ ଧାରଣାରେ ସୀମିତ କରିରଖେ । ତାକୁ ନିଜସ୍ୱରୂପ ସହିତ ଯୁକ୍ତ ହେବାକୁ ଦିଏନାହିଁ । ତାର ହାର୍ଦ୍ଦିକ ଉଚ୍ଛ୍ୱାସକୁ ଏକ ଭ୍ରମାତ୍ମକ ଭାବ ରୂପରେ ତାଚ୍ଛିଲ୍ୟ କରି ଦୂରେଇ ରଖେ । ସେ ଭାବେ ହୃଦୟର ଉତ୍ସାହ ଏକ ଉତ୍ତେଜନା ପ୍ରବଣ ପ୍ରବୃତ୍ତି ମଣିଷର । ତେଣୁ ସେ ବାହ୍ୟିକ ପ୍ରଭାବକୁ ଉଚିତ ମଣି, ନିଜର ଅସଲ ସ୍ୱରୂପକୁ ଅସ୍ୱୀକାର କରି, ଆତ୍ମାଠାରୁ ଦୂରକୁ ଚାଲିଯାଏ । ଫଳରେ ଆଧ୍ୟାତ୍ମିକତାର ଅଗ୍ରଗତି ଶିଥିଳ ହୁଏ ମଣିଷରାଜ୍ୟରେ । ମାତ୍ର ବିବର୍ତ୍ତନବାଦର ଶତାବ୍ଦି ଶତାବ୍ଦି ଧରି ଯେଉଁ ଅପ୍ରତିହତ ଧାରା ପ୍ରବାହିତ, ତାହା ଫଳରେ ସେହି ଅନାଦି ଅନନ୍ତ ଶକ୍ତି ଆତ୍ମାକୁ ଜାଗରିତ କରାଏ । ଯେତେବେଳେ ମନୁଷ୍ୟ ତାର୍ ଆତ୍ମାର ସ୍ୱରୂପ ଉପଲବ୍ଧି କରିପାରେ; ଏବଂ ଏହାକୁ ପ୍ରଧାନ୍ୟ ଦେବାକୁ ଶିଖେ ଓ ନିଜ ଜୀବନର କର୍ତ୍ତାରୂପେ ପ୍ରତିଷ୍ଠା ଦିଏ, ସେତେବେଳେ କ୍ରମବିକାଶର ଚଞ୍ଚଳଧାରା ତାହାମଧ୍ୟରେ ପ୍ରବାହିତ ହୋଇ ତାହାର ଆମୂଳଚୂଳ ପରିବର୍ତ୍ତନର ସୂତ୍ରପାତ କରେ । ତାହାପରେ ତାର ଅତିମାନସ ଚୈତନ୍ୟ ଜାଗରିତ ହୋଇ ତାହାକୁ ସତ୍ୟ-ପ୍ରାପ୍ତିରେ ସାହାଯ୍ୟ କରିଥାଏ । ଏହି ଗୁପ୍ତ ଭାଗବତ-ଇଚ୍ଛା ବା Divine will ଅନନ୍ତ, ଅସୀମ, ସର୍ବଜ୍ଞାନ ସମ୍ପନ୍ନ,

ସର୍ବକ୍ଷମତାସମ୍ପନ୍ନ; କ୍ଷୁଦ୍ରତମ ବସ୍ତୁରୁ ବୃହତ୍ତମ ନକ୍ଷତ୍ର ପୁଞ୍ଜରେ ଅବସ୍ଥାନ କରେ ଏବଂ ସମଗ୍ରବିଶ୍ୱକୁ ଚାଳନା କରେ । ଶ୍ରୀକୃଷ୍ଣ ଗୀତାର ଅଷ୍ଟାଦଶ ଅଧ୍ୟାୟରେ ଏହି ବିଷୟରେ କହିଛନ୍ତି : ''ଈଶ୍ୱରଃ ସର୍ବଭୂତାନାଂ ହୃଦ୍ଦେଶେଽର୍ଜୁନ ତିଷ୍ଠତି, ଭ୍ରାମୟନ୍ ସର୍ବଭୂତାନି ଯନ୍ତ୍ରାରୂଢ଼ାଣି ମାୟୟା'' ସବୁ ପ୍ରଣୀମାନଙ୍କର ହୃଦୟରେ ଈଶ୍ୱର ଅବସ୍ଥିତ ରହି, ଯେପରି ଏକ ଯନ୍ତ୍ରରେ ଆରୁଢ଼ ହୋଇ, ସେମାନଙ୍କୁ ବୁଲାଉଛନ୍ତି ତାଙ୍କର ମାୟାବଳରେ । ଏହାହିଁ ସର୍ବଶେଷ ତଥ୍ୟ । ତେଣୁ ସେ ଅର୍ଜୁନଙ୍କୁ କହୁଛନ୍ତି ଯେ ତୁମେ ମୋର ଶରଣନିଅ, ସର୍ବଭାବରେ ନିଜକୁ ସମର୍ପଣ କର । ମୁଁ ତୁମକୁ ସର୍ବପାପରୁ ମୁକ୍ତ କରିଦେବି । ଶ୍ରୀଅରବିନ୍ଦ ଏହା ଉଲ୍ଲେଖକରି କହିଛନ୍ତି ଯେ ସାଧାରଣ ମନୁଷ୍ୟର ଚେତନା ଏହି ସର୍ବକ୍ଷମତା-ସମ୍ପନ୍ନ ଭାଗବତ ଇଚ୍ଛାର ଧାରଣା କରିପାରେ ନାହିଁ । କାରଣ ସେ ନିଜର କ୍ଷୁଦ୍ର ଗଣ୍ଡିରେ ଆବଦ୍ଧ ରହି, ନିଜର ଅହମିକା ବା ''ମୁଁ-ତ୍ୱ''ରେ ସବୁକିଛି ବୁଝିବାକୁ ଚେଷ୍ଟାକରେ । ଯେତେବେଳେ ସେ ନିଜର କ୍ଷୁଦ୍ରତ୍ୱ ପରିହାରକରି ବିଶ୍ୱ ଚେତନା ସହିତ ଏକାକାର ହୋଇ ନିଜକୁ ସର୍ବତ୍ର ଦେଖେ ଓ ନିଜ ମଧ୍ୟରେ ସମଗ୍ର ବିଶ୍ୱକୁ ଦେଖେ, ସେତେବେଳେ ସର୍ବଭୂତାତ୍ମ ଆତ୍ମା ଏକାକାର ହୋଇଗଲେ, ମଣିଷର ଶେଷ ଉପଲବ୍ଧି ହୁଏ । ସେ ଐଶ୍ୱରିକ ଚେତନାରେ ବିଲୀନ ହୋଇଯାଏ ।

ଯଦି ଈଶ୍ୱର ସର୍ବକ୍ଷମତା-ସମ୍ପନ୍ନ ହୋଇ ଏହି ବିଶ୍ୱର ପ୍ରାଣୀମାନଙ୍କର କ୍ରମୋନ୍ନତି ସାଧନ କରାଉଛନ୍ତି ତେବେ ମନ୍ଦ, ନିକୃଷ୍ଟ, ତମସାପୂର୍ଣ୍ଣ ଶକ୍ତିର ଜନ୍ମ ହେଲା କିପରି ? ଏହି ବିରୋଧୀ ଶକ୍ତିର ଏତେ କ୍ଷମତା ବା ଆସିଲା କେଉଁଠାରୁ ? କଣ ଶୁଦ୍ଧ ପବିତ୍ର ଶକ୍ତି ବ୍ୟାତୀତ, ଅସତ୍ ଅପବିତ୍ର ଶକ୍ତିର ନିଜସ୍ୱ କ୍ଷମତା ରହିଛି ଈଶ୍ୱରୀୟ ଶକ୍ତିକୁ ପ୍ରତିହତ କରିବା ପାଇଁ ? ମଣିଷ ମନରେ ଏହି ଦ୍ୱନ୍ଦ୍ୱ ଉପୁଜି ତାର ଚିତ୍ତକୁ ଦୋଳାୟମାନ କରିଥାଏ । ଏହି ପ୍ରସଙ୍ଗରେ ଶ୍ରୀଅରବିନ୍ଦଙ୍କ ଉକ୍ତି ହେଲା ଯେ ଦୁଷ୍ଟ ପ୍ରକୃତିର ଶକ୍ତିରାଜି ମଧ୍ୟ ବିଶ୍ୱରେ ବିଦ୍ୟମାନ ଅଛନ୍ତି ଏବଂ ଏହି ଶକ୍ତିର ଧାରକ ଓ ବାହକ ସୂକ୍ଷ୍ମ ପ୍ରକୃତିର ଜୀବମାନଙ୍କୁ ମଧ୍ୟ ମନଶ୍ଚକ୍ଷୁରେ ଦେଖାଯାଇ ଅଛି । ଏହି ମନ୍ଦଶକ୍ତି, ଅନ୍ଧକାରଯୁକ୍ତ, ଅଜ୍ଞତାର ମୂଳ, ଆନନ୍ଦର ବାଧକ, ଶୁଦ୍ଧଶକ୍ତିର ବିପରୀତ, ଓ ଅସତ୍‌ର ସମର୍ଥକ । ଏହି ଶକ୍ତି ନିଜକୁ କ୍ଷମତାଶୀଳ ପ୍ରତିପନ୍ନ କରିବା ପାଇଁ ଆଲୋକର ପ୍ରସାରରେ ବାଧା ଦିଅନ୍ତି । ସତ୍ୟ, ଧର୍ମ, ନ୍ୟାୟର ପ୍ରଗତି ପଥରେ ଆତ୍ମାର ଗତିକୁ ଅବରୋଧ କରନ୍ତି । ଏହି ପ୍ରସଙ୍ଗରେ ଭଲ ମନ୍ଦ ମଧ୍ୟରେ ବୈରିତା, ଆଲୋକ ଅନ୍ଧକାର ମଧ୍ୟରେ ବିରୋଧ, ଶୃଙ୍ଖଳା ବିଶୃଙ୍ଖଳା ମଧ୍ୟରେ ଦ୍ୱନ୍ଦ୍ୱ, ବହୁପୁରାତନ ଶାସ୍ତ୍ରରେ ସବୁଦେଶରେ ଗଳ୍ପ, ଆଖ୍ୟାୟିକା ଛଳରେ ବର୍ଣ୍ଣିତ ହୋଇଅଛି । ଏକଥା ଦେବତା ଅସୁର ମଧ୍ୟରେ ବିବାଦରେ ପ୍ରତିଫଳିତ । ଶଇତାନ ଓ ଈଶ୍ୱରଙ୍କ ମଧ୍ୟରେ ଯୁଦ୍ଧରେ ଚିତ୍ରିତ । ମାତ୍ର

ଏଯୁଗର ବିଜ୍ଞାନ ଏଗୁଡିକୁ ପ୍ରାଧାନ୍ୟ ଦିଏ ନାହିଁ । ବାସ୍ତବ ପୃଥିବୀର ଜୀବ, ଜନ୍ତୁ, ମନୁଷ୍ୟ ଇତ୍ୟାଦି ଛଡା ଅଦୃଶ୍ୟ ମାନସିକ, ଜୈବିକ ବା ଈଶ୍ୱରୀୟ ଶକ୍ତିରେ ବିଶ୍ୱାସ କରେ ନାହିଁ । ଜଡ ଜଗତରେ ଅବସ୍ଥିତ ବସ୍ତୁମାନଙ୍କ ଉପରେ ମାନସିକ ବା ଆଧ୍ୟାତ୍ମିକ ଶକ୍ତିର ପ୍ରୟୋଗକୁ ବିଜ୍ଞାନ ଅସ୍ୱୀକାର କରେ । ମାତ୍ର ବିଜ୍ଞାନ ସବୁ ଘଟଣାର କାରଣ ଆବିଷ୍କାର କରିବାରେ ଅସମର୍ଥ । ବହୁ ବିଷୟର ପୂର୍ଣ୍ଣ ସ୍ୱରୂପ ଉଦ୍‌ଘାଟନରେ ଅସଫଳ । ''ମହାବିଶ୍ୱ'' ଅଧ୍ୟାୟରେ ପୂର୍ଣ୍ଣାଙ୍ଗ ଆଲୋଚନା କରାଯାଇଛି ଏହି ବିଷୟରେ ।

ତେବେ ଆଲୁଅ ଅନ୍ଧାରର ଖେଳ ଚଳମାନ, ଭ୍ରାମ୍ୟମାଣ, ଗତିମାନ ବିଶ୍ୱର ଚିରନ୍ତନ ପ୍ରକୃତି । ଆଗରୁ ଆଲୋଚନା କରାଯାଇଅଛି ଯେ ଶୁକ୍ଳ କୃଷ୍ଣ ଜଗତର ଶାଶ୍ୱତ ସ୍ୱରୂପ । ଅର୍ଥାତ୍ ଆଲୁଅର ପ୍ରକାଶ ଅନ୍ଧକାରର ଅସ୍ତିତ୍ୱ ଯୋଗୁହିଁ ମୂଲ୍ୟବାନ । ଯଦି ଅନ୍ଧକାର ନଥାନ୍ତା ତେବେ ଆଲୁଅର ମହତ୍ୱ କେହି ଉପଲବ୍ଧି କରନ୍ତେ ନାହିଁ । ତେଣୁ ଏହି ବିଶ୍ୱଖେଳରେ ଭଲମନ୍ଦ, ଉତ୍‌କୃଷ୍ଟ-ନିକୃଷ୍ଟ, ଉଚ୍ଚନୀଚ, ଉତ୍ତମ ଅଧମ, ସୁନ୍ଦର ଅସୁନ୍ଦର, ସତ୍ୟମିଥ୍ୟା ଇତ୍ୟାଦି ପରସ୍ପର ବିରୋଧୀ ସତ୍ତାର ନାଟକୀୟତା ଉପଭୋଗ୍ୟ ହୁଏ ସ୍ରଷ୍ଟାଙ୍କର । ଏପରିକି ଜୀବନରେ ମଧ୍ୟ ଏହାର ଖେଳ ଜୀବନକୁ ସରସକରିଥାଏ । ସେଥିପାଇଁ ଶ୍ରୀରମକୃଷ୍ଣ କହିଛନ୍ତି ଯେ ନାଟକରେ ''ଜଟିଳା ଓ କୁଟିଳା'' ନଥିଲେ ''ଲୀଳା''ର ସରସତା ଅନୁଭୂତ ହୁଏ ନାହିଁ । ଏଥିରୁ ବୁଝାଯିବ ଯେ ଲୀଳା ବା ନାଟକରେ ସବୁ ଦ୍ୱନ୍ଦ୍ୱାତ୍ମକ ଚରିତ୍ରର ଅବତାରଣାର ପ୍ରୟୋଜନ । ଏହି ଦୃଷ୍ଟିରୁ ଦ୍ୱନ୍ଦ୍ୱାତ୍ମକ ଶକ୍ତିର ପ୍ରାଦୁର୍ଭାବ ଜୀବନରେ ପରିଲକ୍ଷିତ ହୁଏ । ଅତି ଗୁଢ଼ ଗୁପ୍ତ ଶକ୍ତି ନୀଚସ୍ତରରେ ସେମାନଙ୍କର କ୍ଷମତା ପ୍ରଦର୍ଶନକରି ସାଧାରଣ ଜୀବନକୁ ବହୁ ସମସ୍ୟା ସଂକୁଳ ପଥରେ ଆଗ୍ରସର ହେବାକୁ ବାଧ କରନ୍ତି । ଏହି ପ୍ରସଙ୍ଗରେ ଶ୍ରୀ ଅରବିନ୍ଦ ଅବଚେତନ ମନର ଅନ୍ଧକାରାଛନ୍ନ ଚେତନାର ଓ ଦୁର୍ଘଟଣା ଘଟାଇବାର ସମ୍ଭାବନାର କଥା ଉଲ୍ଲେଖ କରିଛନ୍ତି । ନୀଚ ଶକ୍ତିକ୍ଷେତ୍ରର କେତେକ ସୂଚନା ସଂଗ୍ରହ କରି ଅବଚେତନ ମନ ମନୁଷ୍ୟକୁ ବିଭ୍ରାନ୍ତ କରି ଅଘଟଣ, ଦୁର୍ଘଟଣା ବା ରୋଗ ସୃଷ୍ଟି କରିପାରେ । ବର୍ତ୍ତମାନ ଆମେରିକାରେ ଏହି ରୋଗର ନିରାକରଣ ମାନସିକ-ସୂଚନାଦ୍ୱାରା କରାଯାଉଅଛି । ଫ୍ରାନ୍ସର ଜଣେ ପ୍ରସିଦ୍ଧ ଡାକ୍ତର ଶରୀର ଉପରେ ନିଷେଧାତ୍ମକ-ସୂଚନା ପ୍ରୟୋଗଦ୍ୱାରା ରୋଗର ଉତ୍‌ପତ୍ତିକୁ ବାଧାଦେଇଥିଲେ । ଏଥିରୁ ପ୍ରମାଣିତ ହେଉଅଛି ଯେ ଶାରୀରିକ କାରଣ ଛଡା ଅସୁସ୍ଥତାର ମାନସିକ କାରଣ ମଧ୍ୟ ପ୍ରମାଣିକ ସତ୍ୟ । ତେଣୁ ମନୋବିଜ୍ଞାନ, ପଦାର୍ଥ-ବିଜ୍ଞାନର ସସୀମ ଦୃଷ୍ଟିଭଙ୍ଗିକୁ ଦୃଢ଼ିକରଣ କରିଅଛି । ବିଶୃଙ୍ଖଳାର ଶକ୍ତି, ଧ୍ୱଂସର ଶକ୍ତି କ୍ଷମତାଶୀଳ ହେଲେ ବହୁ ବିଶୃଙ୍ଖଳାର ସୃଷ୍ଟି କରନ୍ତି ଜଗତରେ, ମନୁଷ୍ୟର ଉନ୍ନତିପଥରେ ଅନ୍ତରାୟ ହୋଇ । ଯେପରି ପ୍ରଥମ ଓ ଦ୍ୱିତୀୟ ମହାସମର ପୃଥିବୀର

ଆଧ୍ୟାତ୍ମିକ ଉନ୍ନତି ପଥରେ ଘୋର ବାଧାର ସୃଷ୍ଟି କରିଛନ୍ତି; ମନୁଷ୍ୟ ଦିଗ୍‌ଦର୍ଶନ ହରାଇ ହିଂସାର କବଳରେ ପଡି ନଷ୍ଟଭ୍ରଷ୍ଟ ହୋଇ ଯାଇଅଛି । ମୂଲ୍ୟମାନର ଅଧପତନ ହୋଇ, ମାନବ ଆଲୋକପଥରୁ ବିଚ୍ୟୁତ ହୋଇପଡିଅଛି ସାମୟିକ ଭାବରେ । ମାତ୍ର ଜୀବନର ଶେଷଲକ୍ଷ୍ୟ, ବହୁ ସମୟ-ସାପେକ୍ଷ ହେଲେ ମଧ୍ୟ, ନିଶ୍ଚିତ ଭାବରେ ସ୍ଥିରିକୃତ ଏବଂ ସଫଳ ହେବହିଁ ହେବ । କାରଣ ତାହା ବିଶ୍ୱ-ଜନୀନ ସର୍ବସାରତତ୍ତ୍ୱ ଦ୍ୱାରା ନିର୍ଦ୍ଦିଷ୍ଟ । ତାହାର ଅନ୍ୟଥା ହେବନାହିଁ । ଏ ବିଷୟରେ ସବୁ ଦ୍ରଷ୍ଟା, ରହସ୍ୟବାଦୀ, ସ୍ଥିତପ୍ରଜ୍ଞ ଏକମତ । ବିଶ୍ୱର ପ୍ରଗତି ବକ୍ର ଗତିରେ ଚାଲିଲେ ମଧ୍ୟ, ତାହାର ଶେଷ ପରିଣତି ସିଧାସଳଖ ଆଲୋକରେ ଅବଗାହନ, ସତ୍ୟର ଉଦ୍‌ଘାଟନ ଓ ଆନନ୍ଦର ପ୍ଲାବନ । ଏହି ପ୍ରସଙ୍ଗରେ ବ୍ୟକ୍ତି ବିଶେଷଙ୍କର ପ୍ରଶ୍ନ ହେଲା ସେ କଣ କେବଳ ଶକ୍ତିକ୍ଷେତ୍ରର ପ୍ରଭାବ ଉପରେ ନିର୍ଭର କରିବ ତାର କ୍ରମ ବିବର୍ତ୍ତନ ପାଇଁ, ନା, ତାହାର କିଛି କରଣୀୟ କର୍ତ୍ତବ୍ୟ ଅଛି ? ଯଦିଥାଏ ତେବେ ତାହା କାର୍ଯ୍ୟକାରୀ କରିବାର ମାର୍ଗ କଣ ? ପନ୍ଥା କଣ ? ପ୍ରଣାଳୀ କଣ ? କିଏ ତାକୁ ସେ ରାସ୍ତା ଦେଖାଇବ ? ଏହି ବ୍ୟକ୍ତିଗତ ସମସ୍ୟାର ସମାଧାନ ନିମନ୍ତେ କେତେକ ଅତି ସାରଗର୍ଭକ ଓ ଚମକପ୍ରଦ ସୂଚନା ଦେଇଛନ୍ତି ମହାପୁରୁଷ ପରମହଂସ ଯୋଗାନନ୍ଦ । ତାଙ୍କର ପୁସ୍ତକ ''ଯୋଗୀର ଆତ୍ମକଥା'' ପୃଥିବୀ ପ୍ରସିଦ୍ଧ; ଲକ୍ଷ ଲକ୍ଷ ନରନାରୀ ମାନଙ୍କର ଦିବ୍ୟ ଜୀବନ ଲାଭରେ ସହାୟକ ହୋଇଅଛି । ''କ୍ରିୟା-ଯୋଗ''ବଳରେ ତାଙ୍କର ସିଦ୍ଧି ଲାଭ ହୋଇଥିଲା । ଏହି ଯୋଗ ବିଷୟରେ ଶ୍ରୀମଦ୍ ଭଗବତ୍‌ଗୀତାରେ ଶ୍ରୀକୃଷ୍ଣ ଉଲ୍ଲେଖ କରିଅଛନ୍ତି ଯେ ସେ ବିବସ୍ୱାନଙ୍କୁ ଏହା ଶିକ୍ଷା ଦେଇଥିଲେ । ତାଙ୍କଠାରୁ ମନୁ ଶିକ୍ଷାକଲେ । ମନୁ ଈକ୍ଷାକୁଙ୍କୁ କହିଲେ, ପରେ ଏହି ଯୋଗ କାଳକ୍ରମେ ନଷ୍ଟ ହୋଇଗଲା । ଏହି ମହାନ୍ ଯୋଗର ଧାରା ସଂକ୍ଷେପରେ ଅର୍ଜ୍ଜୁନଙ୍କୁ ସେ ଜଣାଇଥିଲେ । ଏ ଯୁଗରେ ଶ୍ରୀମଦ୍ ବାବାଜୀ ମହାରାଜ ଏହି ''କ୍ରିୟା ଯୋଗ'' ଲାହିରୀ ମହାଶୟଙ୍କ ମାଧ୍ୟମରେ ପ୍ରଚାର କରିଥିଲେ । ପରମହଂସ ଯୋଗାନନ୍ଦ ଏହା ତାଙ୍କଗୁରୁ ଶ୍ରୀ ଯୁକ୍ତେଶ୍ୱରଙ୍କ ଠାରୁ ଲାଭ କରିଥିଲେ । ପ୍ରାଚ୍ୟରେ ଓ ପାଶ୍ଚାତ୍ୟରେ ବହୁ ଶିଷ୍ୟ ଶିଷ୍ୟାକୁ ଏହି ଯୋଗପ୍ରକ୍ରିୟା ଶିକ୍ଷା ଦେଇ ଈଶ୍ୱରଙ୍କର ଏକ ମହତ୍ ଉଦ୍ଦେଶ୍ୟ ସାଧନ କରିଯାଇଅଛନ୍ତି ।

ଈଶ୍ୱର ପ୍ରାପ୍ତିର ଶ୍ରେଷ୍ଠ ଉପାୟ ହେଉଛି ''ଯୋଗସାଧନ'' । ଏହି ଯୋଗଧାସନ କେତେକ ବିଜ୍ଞାନ ସମ୍ମତ ଫଳପ୍ରସୂ ଧ୍ୟାନ ପ୍ରଣାଳୀ ଉପରେ ନିର୍ଭରଶୀଳ । ଯେପରି ମହାବିଶ୍ୱକୁ ବହୁ ନିୟମାବଳି ଚାଳନା କରୁଅଛି, ସେହିପରି ଆଧ୍ୟାତ୍ମିକ ଜଗତରେ ମଧ୍ୟ ନିର୍ଦ୍ଦିଷ୍ଟ ନିୟମାବଳୀ ରହିଛି । ଆର୍ଯ୍ୟ ଋଷିମାନେ ସେମାନଙ୍କର ମହାନ କ୍ଷମତା ବଳରେ ଏହି ଯୋଗର ଉତ୍କୃଷ୍ଟ ନିୟମାବଳିକୁ ଆବିଷ୍କାର କରି, ମାନବ-ପ୍ରଗତି ପାଇଁ ଉତ୍ସର୍ଗ କରିଯାଇଅଛନ୍ତି । ଶ୍ରୀମଦ୍

ବାବାଜି ସେମାନଙ୍କ ମଧ୍ୟରେ ଅନ୍ୟତମ । ତାଙ୍କର ବୟସ କାହାରିକି ଜଣାନାହିଁ । ସେ ହିମାଳୟରେ ଏବେ ମଧ୍ୟ ଅଛନ୍ତି ବୋଲି ଶୁଣାଯାଏ । ତାଙ୍କର ପ୍ରକାଶ ଅତ୍ୟନ୍ତ ଅଲୌକିକ ଓ ତାଙ୍କର ଜୀବନ ପ୍ରଣାଳି ଅଜ୍ଞାତ । ପରମହଂସ ଯୋଗନନ୍ଦ କହନ୍ତି ଯେ ପ୍ରାର୍ଥନା ମାଧ୍ୟମରେ ଈଶ୍ୱର ପ୍ରାପ୍ତି ଅତ୍ୟନ୍ତ ସମୟସାପେକ୍ଷ । ମାତ୍ର କ୍ରିୟା ଯୋଗ ମାଧ୍ୟମରେ ତଡିତ୍‌ଗତିରେ ଫଳଲାଭ ହୁଏ । ଯେପରି ଶଗଡ ଗାଡିରେ ଗନ୍ତବ୍ୟ ସ୍ଥଳକୁ ଯିବାକୁ ମାସମାସ ଲାଗେ, ମାତ୍ର ଉଡାଜାହାଜରେ କେଇ ଘଣ୍ଟାରେ ମଣିଷ ପହଞ୍ଚିଯାଇ ପାରେ । ସେହିପରି ଭାବରେ ବିଜ୍ଞାନ-ସଂବୃଦ୍ଧ-ପଦ୍ଧତିରେ କ୍ରିୟାଯୋଗ ସାଧନରେ ଅଚିରେ ଫଳପ୍ରାପ୍ତି ହୋଇଥାଏ । ଯୋଗାନନ୍ଦ ଅତି ଅଳ୍ପ ସର୍ମୟରେ ଅଭୀଷ୍ଟ ଫଳଲାଭ କରିଛନ୍ତି ତାଙ୍କ ଜୀବନରେ । ଶ୍ରୀକୃଷ୍ଣ ସେଇଥିପାଇଁ କହିଥିଲେ ଗୀତାରେ ଯେ ଧ୍ୟାନମାର୍ଗ, ଭକ୍ତି, ଜ୍ଞାନ, ନିବୃତ୍ତି, ପ୍ରାର୍ଥନା, କର୍ମ ମାର୍ଗ ଅପେକ୍ଷା ଶ୍ରେୟସ୍କର । ତେଣୁ ଅର୍ଜ୍ଜୁନଙ୍କୁ କହିଲେ ''ତସ୍ମାତ୍ ଯୋଗୀ ଭବାର୍ଜ୍ଜୁନ ।'' ଏହି କ୍ରିୟାଯୋଗ ମାର୍ଗରେ ଶାରୀରିକ ଶୃଙ୍ଖଳା, ମାନସିକ ଶୃଙ୍ଖଳା ଓ ଆଧ୍ୟାତ୍ମିକ ଶୃଙ୍ଖଳା ପ୍ରତିଷ୍ଠିତ ହୋଇ, ସମସ୍ତ ବାଧାଦୂର ହୋଇ, ଈଶ୍ୱରସାନିଧ୍ୟ ସମ୍ଭବ ହୁଏ । ମନୁଷ୍ୟ ଈଶ୍ୱରଙ୍କ ସହିତ ବାର୍ତ୍ତାଳାପ, ଆଲୋଚନା, ସଂଯୋଗ ସ୍ଥାପନ କରିପାରେ । ସେଥିପାଇଁ ଯୋଗକୁ ଈଶ୍ୱର-ସାଧନର ସର୍ବଶ୍ରେଷ୍ଠମାର୍ଗ ରୂପେ ଚିହ୍ନିତ କରାଯାଇଅଛି । ''ପ୍ରାଣାୟାମ'' ଯୋଗର ଏକ ସୂକ୍ଷ୍ମ ପଦ୍ଧତିରୂପେ ଚିହ୍ନିତ । ଗୀତାର ଚତୁର୍ଥ ଅଧ୍ୟାୟ ୨୯ତମ ଶ୍ଳୋକରେ ପ୍ରାଣାୟାମର ପ୍ରଣାଳି ବର୍ଣ୍ଣିତ । ''ଅପାନେ ଜୁହ୍ୱତି ପ୍ରାଣ ପ୍ରାଣେଽପାନଂ ତଥାପରେ । ପ୍ରାଣାପାନ୍ ଗତୀରୁଦ୍‌ଧ୍ୱା ପ୍ରାଣାୟାମ ପରାୟଣା'' । ''କ୍ରିୟା ଯୋଗ''ର ଅତିସୂକ୍ଷ୍ମ ପଦ୍ଧତି ଅନୁସରଣରେ ସିଦ୍ଧିଲାଭ ଅବଶ୍ୟାମ୍ଭାବି । ପରମହଂସ ଯୋଗାନନ୍ଦ କହନ୍ତି ଯେ ମନୁଷ୍ୟ ଈଶ୍ୱରଙ୍କଠାରୁ ବିଚ୍ୟୁତ ହୋଇ ବହୁଦୂର ଚାଲିଯାଇଅଛି । ଅର୍ଥ, ଐହିକ ସୁଖ ତାକୁ ନୈରାଶ୍ୟ, ଦୁଃଖ, ରୋଗ, ଶୋକ ଇତ୍ୟାଦିରୁ ମୁକ୍ତି ଦେଇ ପାରିନାହିଁ । ତାକୁ ଈଶ୍ୱରଙ୍କ ପାଖକୁ ଫେରି ଆସିବାକୁହିଁ ପଡିବ । ଏହି ''ଯୋଗ''ର କାର୍ଯ୍ୟକାରୀତା ମନୁଷ୍ୟ ପକ୍ଷରେ ଏକାନ୍ତ ଉପଯୋଗୀ ହେବ । ଅନ୍ୟକେହି ମନୁଷ୍ୟକୁ ମୁକ୍ତି ଦେଇନପାରେ । ଏଥିନିମନ୍ତେ ସେ ନିଜେ ପ୍ରବଳ ପ୍ରଚେଷ୍ଟା କରିବା ଆବଶ୍ୟକ । ତାହାହେଲେ ତାହାର ଇପ୍ସିତ ଫଳ ଲାଭହେବ । କ୍ରିୟାଯୋଗର ପ୍ରଭାବ ବର୍ତ୍ତମାନ ବିଶ୍ୱରେ ବହୁଦେଶରେ ଅନୁଭୂତ ହୋଇ ବିଶେଷ ଭାବରେ ଆଦୃତ ହୋଇଅଛି । ଲକ୍ଷ-ଲକ୍ଷ ନରନାରୀ ଏହି ଯୋଗ-ସାଧନ କରି ସଂସାର ବନ୍ଧନରୁ ମୁକ୍ତ ହୋଇପାରୁଛନ୍ତି । ଏହାର ପ୍ରଚାର ଓ ପ୍ରସାର ସର୍ବଜନ ବିଦିତ । ପରମହଂସ ଯୋଗାନନ୍ଦ କହିଛନ୍ତି ଏହି ଯୋଗରେ ସିଦ୍ଧି ଲାଭ କଲେ ମନୁଷ୍ୟ ନିଜେ ବୁଝିପାରିବ ଯେ ଏହି ସମଗ୍ର ବିଶ୍ୱ ଈଶ୍ୱରଙ୍କ ମନ-ସମ୍ଭୁତ ଏକ ଚଳଚିତ୍ର-ପ୍ରଯୁକ୍ତି । ସେଥିରେ ପ୍ରକୃତରେ ମୃତ୍ୟୁ, ରୋଗ,

ଦୁଃଖ, ଦୁଷ୍ଟତା ଇତ୍ୟାଦି କିଛି ନାହିଁ । ଦିନେ ଯେତେବେଳେ ଈଶ୍ୱର ଦୟାପରବଶ ହୋଇ ତାଙ୍କର ଜ୍ୟୋତିପସୃତ ବିଶ୍ୱସୃଷ୍ଟିଗତ ଜୀବନ-ମରଣର ଚଳଚିତ୍ର ପ୍ରଦର୍ଶନ କରିବେ, ଏବଂ ପରେ ତାହା ଫେରେଇ ନେବେ; କେବଳ ତାଙ୍କର ଉଜ୍ଜ୍ୱଳ ଆଲୋକ ଅବଶିଷ୍ଟ ରହି ପ୍ରତିଭାତ ହେବ; ସେତେବେଳେ ମଣିଷ ଈଶ୍ୱରଙ୍କର ଆଲୋକ-ଛାୟା ମିଶ୍ରଣରେ ପ୍ରଯୁକ୍ତ ଅନିତ୍ୟ ସୃଷ୍ଟି କଥା ବୁଝିପାରି ଏହାର ଅସାରତା ହୃଦୟଙ୍ଗମ କରି, ହସିବ । ସେ ବୁଝିବ ଯେ ଆଲୋକ ହିଁ କେବଳ ସତ୍ୟ, ନିତ୍ୟ, ସ୍ଥିର; ଏବଂ ଏଥିରୁ ସବୁ କିଛି ସୃଷ୍ଟ ହୋଇଅଛି । ସେତେବେଳେ ମନୁଷ୍ୟ ତାର ଭ୍ରମାତ୍ମକ ସ୍ୱପ୍ନ କଥା ହୃଦୟଙ୍ଗମ କରି ଜାଣିବ ଯେ ସେ ସେହି ଅମର-ଆଲୋକର କିୟତ୍ ଅଂଶ ବିଶେଷ । ଏହି ''କ୍ରିୟାଯୋଗ'' ପଦ୍ଧତିରେ ଧ୍ୟାନ କରିବା ଫଳରେ ତାହାର ଏହି ଅଭିଜ୍ଞତା ଲାଭହେବ । ଏହାଛଡା ଆଉ କୌଣସି ପନ୍ଥା ସତ୍ୟ ଅନୁଭୂତି ନିମନ୍ତେ ଅବଶିଷ୍ଟ ନାହିଁ ଏହି ମରଜଗତରେ ।

ଏହି ଅପରିକଳ୍ପନୀୟ ସୃଷ୍ଟିରହସ୍ୟର ଏକ ଅତି ଅଲୌକିକ ଧାରାହେଲା ଅସୀମ, ଅନନ୍ତ, ଅନିର୍ବଚନୀୟ ବୈଚିତ୍ର୍ୟ । ବୋଧହୁଏ ସ୍ରଷ୍ଟାଙ୍କର ତୃପ୍ତି ହୁଏ ବିଭିନ୍ନତାରେ, ବିବିଧ ଚିତ୍ରରେ, ବହୁ ବର୍ଣ୍ଣାଳିର ଅପୂର୍ବ ଛଟାରେ । ଏକତ୍ୱର ଏକାକିତ୍ୱରେ ସେ ତୁଷ୍ଟ ନୁହନ୍ତି । ଏକରୁ ଅନେକ ହେବାକୁ ତାଙ୍କର ଆନ୍ତରିକ ବାସନା । ''ଏକୋହଂ ବହୁସ୍ୟାମ୍'' । ସ୍ରଷ୍ଟାଙ୍କର ବହୁଳ ପରିପ୍ରକାଶର କଳନା ମାନବ ପକ୍ଷରେ ଏକାନ୍ତଭାବେ ଅସମ୍ଭବ । ଆଗରୁ ଉଲ୍ଲେଖ କରାଯାଇଛି ଯେ ମଣିଷ ସୂର୍ଯ୍ୟ-ମଣ୍ଡଳଛଡା ଆଉ କିଛି ବୁଝୁନଥିଲା । ପରେ ଜଣେ ସୌର ବିଜ୍ଞାନୀ ଆବିଷ୍କାର କଲେ ଛାୟାପଥ । ସେଥିରେ କୋଟି କୋଟି ଗ୍ରହତାରା ସନ୍ନିବିଷ୍ଟ । ପରେ ବିଜ୍ଞାନୀମାନେ କଳନା କରି ଅଛନ୍ତି ଯେ ଆମର ଛାୟାପଥ ଗୋଟିଏ ନୁହେଁ ଏହି ବିଶ୍ୱବ୍ରହ୍ମାଣ୍ଡରେ । ଅନ୍ତତଃ ଏକ ଲକ୍ଷ ଛାୟାପଥ ଏହି ସୃଷ୍ଟିର ଅନନ୍ତ ବାରିଧିରେ ଘୁରିବୁଲୁଛି । ସେଗୁଡିକର ଉପାଦାନ, ଗତିର ମାତ୍ରା, ଘୂର୍ଣ୍ଣନର ଉଦ୍ଦେଶ୍ୟ ଓ ଲକ୍ଷ୍ୟ, କେଉଁ ଦିଗକୁ ସେଗୁଡିକ ଧାବମାନ ତାହାର ଉତ୍ତର କ୍ଷୁଦ୍ର ମାନବକୁ ଜଣାନାହିଁ । କେବେ ତାହା ତାହାର ଜ୍ଞାନର ପରିସରଭୁକ୍ତ ହେବ ତାହା ମଧ୍ୟ ଦୁର୍ଜ୍ଞେୟ । ଏହା ଏକ ସୀମାହୀନ ପ୍ରହେଳିକା ।

ମହାନ ଆଚାର୍ଯ୍ୟ ଓ ଗୁରୁମାନେ ମନୁଷ୍ୟର ବ୍ୟକ୍ତିଗତ ଜୀବନରେ ଈଶ୍ୱରଲାଭର ଗୁରୁତ୍ୱ ପ୍ରତିପାଦନ କରି ତାହାର ପନ୍ଥାର ଅନୁଧାବନ କରିବାକୁ ଉପଦେଶ ଦେଇଯାଇଅଛନ୍ତି । ସେମାନେ କହିଛନ୍ତି ଯେ ତୁମେ ଏକା ଆସିଛ ଏକା ଚାଲିଯିବ । ଅନ୍ୟ କଥା ଭାବିବାକୁ ସମୟ ନାହିଁ । ମନୁଷ୍ୟର ଜୀବନ କ୍ଷଣ ଭଙ୍ଗୁର, ଆଜି ଅଛି କାଲି ନାହିଁ । ତେଣୁ ଗୋଟିଏ ଛୋଟ ଜୀବନର କେଇବର୍ଷ ଦେଖୁ ଦେଖୁ ଚାଲିଯିବ, ଜାଣିପାରିବ ନାହିଁ । ସାଙ୍ଗେ ସାଙ୍ଗେ ଲାଗିପଡ ଈଶ୍ୱରଙ୍କ ଖୋଜରେ । ଆଗେଇଚାଲ । ଶ୍ରୀରାମକୃଷ୍ଣ କହନ୍ତି ତୁମ୍ଭେ

ଆମ୍ବ ଖାଅ । ଆମ୍ବ ଗଛରେ କେତେ ପତ୍ର ଅଛି ତାହା ଗଣିବାର ଦରକାର କଣ ? ସତକଥା ! ପତ୍ର ଗଣି ଶେଷ କରିହେବ ନାହିଁ । ଶେଷରେ ବିଦାୟ ନେବାର ସମୟ ଆସିଯିବ । ସେହିପରି ରବୀନ୍ଦ୍ରନାଥ ଲେଖିଛନ୍ତି, ପ୍ରଭୁ ତୁମର କଥା ଏଠି କେହି କହନ୍ତି ନାହିଁ । କେବଳ ମିଛଟାରେ କୋଳାହଳ କରନ୍ତି । ହେଲେ, ବର୍ତ୍ତମାନର ପୃଥିବୀ ମାତ୍ର ୫୫୫ କୋଟି ମଣିଷର ବାହକ । ଏମାନେ ସମସ୍ତେ ଏକାବେଳେକେ ଏକତ୍ରଭାବେ ଈଶ୍ୱର ପ୍ରାପ୍ତି ବିଷୟରେ ଯଦି ମିଳିତ ହୋଇପଡନ୍ତି ତେବେ ଜୀବନରେ ବୈଚିତ୍ର୍ୟର ଓ ବିଭିନ୍ନତାର ଧାରା ଖର୍ବ ହୋଇଯିବ । ତେଣୁ ଈଶ୍ୱର ଭିନ୍ନ ଭିନ୍ନ ଲୋକଙ୍କୁ ବିଭିନ୍ନ ଚିନ୍ତାଧାରାରେ ବ୍ୟାପୃତ କରି ରଖି ଅଛନ୍ତି । ଏହି ଚିନ୍ତାର ବୈଚିତ୍ର୍ୟମୟ ଫୁଲର ସୁବାସରେ ପୃଥିବୀ ସୁଗନ୍ଧମୟ ହୋଇ ଉଠିଛି । ତାହାଛଡା ବ୍ୟକ୍ତି-ସର୍ବସ୍ୱ ଜୀବନରେ ସ୍ୱାର୍ଥର ଗନ୍ଧଛଡା ଏକ ଦୁଷ୍ଟ ଏକାକିତ୍ୱର ପ୍ରକାଶ ମଧ୍ୟ ପରିସ୍ଫୁଟ । ବ୍ୟକ୍ତିର କର୍ତ୍ତବ୍ୟ ରହିଛି ସମଷ୍ଟିଗତ ସମାଜରେ । କାରଣ ଯେକୌଣସି ବ୍ୟକ୍ତି ସମଷ୍ଟିଗତ ପ୍ରୟାସରୁ ପୁଷ୍ଟ ଖାଦ୍ୟପେୟ, ଆବାସ, ପରିବହନ, ସାମାଜିକ ଜୀବନରୁ ନିଜର ସୁଖ, ସ୍ୱାଚ୍ଛନ୍ଦ୍ୟ, ପରିପୁଷ୍ଟି ଓ ଆନନ୍ଦ ସଂଗ୍ରହ କରି ଜୀବିତ ଥାଏ । ତେଣୁ ସମଷ୍ଟିକୁ ଘୋର ଅବଜ୍ଞା କରିବା ତାପକ୍ଷରେ ଶୋଭନୀୟ ନୁହେଁ । ଯଦି ପ୍ରତ୍ୟେକ ବ୍ୟକ୍ତି ସ୍ୱାର୍ଥର ସେବା କରନ୍ତି ତାହା ଐହିକ ହେଉ ବା ପାରମାର୍ଥିକ ହେଉ, ତେବେ ସମଗ୍ର ସମାଜର ପତନ ସହିତ ତାହାର ନିଜର ମଧ୍ୟ ଅଧୋଗତି ହେବ ସେଥିରେ ସନ୍ଦେହ ନାହିଁ । ସାମୁହିକ ପାରମାର୍ଥିକ ଜୀବନ ବା ଅତି ଉନ୍ନତମାନର ସାମାଜିକ ଜୀବନର ରୂପରେଖ କଣ ? ୫୫୫ କୋଟି ଲୋକଙ୍କ ପାଇଁ କିପ୍ରକାରର ବାର୍ତ୍ତା ଈଶ୍ୱରଙ୍କର ବ୍ୟବସ୍ଥାରେ ପ୍ରକଟ କରାଯାଇଛି ? ଏ ବିଷୟରେ ଅତି ପ୍ରାଚୀନ ଗ୍ରନ୍ଥ ମାନଙ୍କରେ ସମୁହ ଜୀବନ ବିଷୟରେ କିଛି ବିଶେଷ ଇଙ୍ଗିତ ଅଛି କି ? ଏହି ପ୍ରଶ୍ନଗୁଡିକର ଉତ୍ତର ବେଦରେ ଅନେକ ପରିମାଣରେ ପ୍ରକଟିତ । ସାମୁହିକ ଜୀବନ ଏକ ଅତି କଠୋର ବାସ୍ତବତା, ଏକ ଅପରିହାର୍ଯ୍ୟ ଅଙ୍ଗ ଚିନ୍ତାରାଜ୍ୟର, ଏକ ପରମ ସତ୍ୟ ଯାହା ସମାଧାନର ଦାବିକରେ ପ୍ରତିମୂହୁର୍ତ୍ତରେ । କାରଣ ବିଶୃଙ୍ଖଳ ସମାଜରେ ବ୍ୟକ୍ତି, ବିଶେଷ ଭାବରେ, ବିପନ୍ନ । ତାର ଅସ୍ତିତ୍ୱ ମଧ୍ୟ ଆତଙ୍କିତ ଓ ଦୁର୍ଯ୍ୟୋଗପୂର୍ଣ୍ଣ । ତାର ଭବିଷ୍ୟତ ଅନିଶ୍ଚିତ । ଏପରି ପରିସ୍ଥିତିରେ ସମୁହ ଜୀବନର ସୁଖ, ଶାନ୍ତି, ସମୃଦ୍ଧି ''ବେଦ''ର ଧେୟ । ଏହା ଯଜୁର୍ବେଦରେ ପ୍ରକାଶିତ । ଅନୁକୂଳ ପରିବେଶ, ବାୟୁମଣ୍ଡଳ, ପାଣି ପବନର ପ୍ରବାହ, ସବୁଜ ବନାନୀ ଓ ଅରଣ୍ୟାନି, ନିରୋଗ ଜୀବନ, ଉର୍ବର ଭୂମି, ପ୍ରାଣି ମାନଙ୍କର ସୌଖ୍ୟ, ପାଳନ, ପୋଷଣ, ଅପର୍ଯ୍ୟାପ୍ତ ଖାଦ୍ୟର ସମ୍ଭାର, ମାଧୁର୍ଯ୍ୟମୟ ସ୍ୱାସ୍ଥ୍ୟପୂର୍ଣ୍ଣ ମନୁଷ୍ୟ ଓ ପ୍ରାଣୀ ଜୀବନ ଦିବ୍ୟ ଜୀବନର ସହାୟକ । ସେକଥା ଅତି ପାଣସ୍ପର୍ଶୀ ଭାଷାରେ ବର୍ଣ୍ଣିତ ହୋଇଅଛି ଆଶୀର୍ବାଣୀ ସହିତ ।

''ମଧୁବାତା ରିତାୟତେ ମଧୁ କ୍ଷରନ୍ତି ସୌନ୍ଧବଃ, ମାଧ୍ୱୀର୍ନ ସନ୍ତୋଷଧିଃ ।
ମଧୁନକ୍ତୋ ମୁତୋଷସି, ମଧୁମତ୍ ପାର୍ଥିବରଜଃ । ମଧୁଦୌରସ୍ତନଃ ପିତା ।
ମଧୁମାନ୍ନୋ ବନସ୍ପତି ମଧୁମାଂ ଅସ୍ତୁ ସୂର୍ଯ୍ୟଃ ମାଧ୍ୱୀର୍ଗାଭୋ ଭବନ୍ତୁ ନଃ ।''

ସମାଜରେ ମନୁଷ୍ୟ ଏପରି ଲୋକମାନଙ୍କୁ ମିତ୍ର ରୂପରେ ବରଣ କରନ୍ତୁ ଯେଉଁମାନେ ସବୁବେଳେ ସତ୍‌କର୍ମରେ ଲିପ୍ତ । ଯେଉଁମାନେ ବିଶ୍ୱକଲ୍ୟାଣର କାମନା କରନ୍ତି ଓ ସମସ୍ତଙ୍କୁ ସୁଖୀ ଦେଖିବା ନିଜର କର୍ତ୍ତବ୍ୟ ବୋଲି ବିଚାର କରନ୍ତି, ସେମାନଙ୍କ ସହିତ ମୈତ୍ରୀ କାମ୍ୟ । ଯେଉଁ ବିଦ୍ୱାନ ପୁରୁଷ ଶ୍ରେଷ୍ଠ କର୍ମ କରନ୍ତି ସେମାନଙ୍କଠାରୁ ଶିକ୍ଷା ଗ୍ରହଣ କରିବା ଉଚିତ୍ । ନୀଚ ସ୍ୱଭାବ ପୂର୍ଣ୍ଣ ବ୍ୟକ୍ତିଠାରୁ ଦୂରରେ ରହିବା ବିଧେୟ । ଅନ୍ୟମାନଙ୍କ ସହିତ ସେହିପରି ସଦ୍‌ବ୍ୟବହାର କରିବା ଦରକାର ଯେପରି ଆମ୍ଭେମାନେ ଅନ୍ୟମାନଙ୍କଠାରୁ ଆଶାକରୁ । ଉତ୍ତମ ପଦାର୍ଥର ବିନିମୟ ଶୁଦ୍ଧନୀତି ଅଟେ । ଯେଉଁମାନେ ଅନ୍ୟ ସମସ୍ତ ମନୁଷ୍ୟ ମାନଙ୍କୁ ଅବିଦ୍ୟାରୁ ମୁକ୍ତି ଦେଇ ଧର୍ମ ମାର୍ଗରେ ପ୍ରବର୍ତ୍ତାନ୍ତି, ସେହିମାନଙ୍କୁ ହିଁ ସୌଭାଗ୍ୟ ମିଳିଥାଏ । ବିଦ୍ୱାନ ପୁରୁଷଙ୍କର କର୍ତ୍ତବ୍ୟ ହେଲା ଯେ ସେମାନେ ନିଜେ ଶ୍ରେଷ୍ଠ କର୍ମ କରିବେ ଓ ଅନ୍ୟମାନଙ୍କୁ ମଧ କରିବାକୁ ପ୍ରେରଣା ଦେବେ । ଏହାଦ୍ୱାରା ଦ୍ୱେଷର ନିବୃତ୍ତି, ଆଉ ବଳ, ବିଦ୍ୟା, ବୁଦ୍ଧି, ଆୟୁର ବୃଦ୍ଧି ହୋଇଥାଏ । ସଂସାରର ସବୁ ଲୋକେ ପରସ୍ପର ପ୍ରତି ମିତ୍ରତାପୂର୍ଣ୍ଣ ବ୍ୟବହାର କରିବା ଉଚିତ୍ । କ୍ରୋଧଦ୍ୱାରା ବିରୋଧ ବୃଦ୍ଧି କରିବା ଉଚିତ୍ ନୁହେଁ । ଶାନ୍ତିରେ ନିଜକାମ ସମାପନ କରିବା ଓ ବିକାରକୁ କାବୁରେ ରଖିବା ଆବଶ୍ୟକ (ଋକ୍‌ବେଦ)

ସମାଜରେ ସଦାଚାରର ଆବଶ୍ୟକତାକୁ ଲକ୍ଷ୍ୟରେ ରଖି ଋକ୍‌ବେଦର ବାଣୀ ମନୁଷ୍ୟ ପ୍ରତି ଏକ ମହନୀୟ ପରାମର୍ଶ ଦେଇଅଛି । କୌଣସି ଧର୍ମ ଗ୍ରନ୍ଥ ବା ମନ୍ତ୍ର ଗୁଡିକ ଶୁଆ ଭଳି ରଟନା କଲେ ସେଥିରୁ କୌଣସି ଲାଭ ମିଳେନାହିଁ । ମଣିଷକୁ ସେହି ନିୟମଗୁଡିକୁ ଜୀବନରେ ପାଳନ କରିବା ଅତ୍ୟନ୍ତ ଆବଶ୍ୟକ । ଯେଉଁମାନେ ଧର୍ମନିଷ୍ଠ ସଦାଚାରୀ ପୁରୁଷମାନଙ୍କର ସହିତ ମିତ୍ରତା କରନ୍ତି, ସେମାନଙ୍କୁ ରକ୍ଷା କରନ୍ତି, ସେମାନଙ୍କର ସହିତ ସଦ୍‌ବ୍ୟବହାର କରନ୍ତି, ସେମାନଙ୍କୁ ଭୋଜନ, ବସ୍ତ୍ର ଆଦି ପ୍ରଦାନ କରି ସମ୍ମାନ କରନ୍ତି, ସେମାନଙ୍କରହିଁ ସବୁବେଳେ ସୁଖ ପ୍ରାପ୍ତି ହୁଏ । ଧର୍ମାତ୍ମାମାନଙ୍କ ସହିତ ମୈତ୍ରୀ କରିବା ବିଧେୟ ।

ଋଗ୍‌ବେଦରେ ଲିଖିତ ଅଛି ଯେ ପରୋପକାର ଓ ପାରମାର୍ଥିକ କାର୍ଯ୍ୟ କରିବାରେ ନିନ୍ଦା, ଲାଞ୍ଛନା, ଉପହାସ ଆଦିର ଭୟ କରିବା ଦରକାର ନାହିଁ । ଏପରି ବ୍ୟକ୍ତିଙ୍କୁ ଈଶ୍ୱର ରକ୍ଷା କରନ୍ତି । ସୂର୍ଯ୍ୟ ଚନ୍ଦ୍ର ଯେପରି ନିୟମିତ ଭାବେ ନିର୍ଦ୍ଧାରିତ ପଥରେ ଚଳମାନ ହୋଇ

ରହିଅଛନ୍ତି, ମନୁଷ୍ୟ ସେହିପରି ନ୍ୟାୟ ଓ ନୀତିର ମାର୍ଗ ପରିହାର କରିବା ଅନୁଚିତ । ସମଗ୍ର ମନୁଷ୍ୟ ଜାତିର ଉତ୍‌ଥାନ ନିମନ୍ତେ, ଆମେ ସମସ୍ତେ ସମାନ ଭାବନା ରଖି ଜ୍ଞାନ ଓ କର୍ମକୁ ସର୍ବତ୍ର ପ୍ରସାର କରିବା ଦରକାର । ଶତ୍ରୁମାନଙ୍କଠାରୁ ନିଜର ରକ୍ଷା କରିବା ଓ ପର୍ଯ୍ୟାପ୍ତ ପରିମାଣରେ ଅନ୍ନ ସଂସ୍ଥାନ କରିବା ଆବଶ୍ୟକ । ଏହି ସଂସାରରେ ସମସ୍ତେ ସମାନ । ସମସ୍ତେ ଶ୍ରେଣୀବଦ୍ଧ, ଜଣଙ୍କଠାରୁ ଆଉଜଣେ ଅଧିକ ଧନୀ ଓ ବିଦ୍ୱାନ ହେଲେ ମଧ୍ୟ, ଅନ୍ୟ ସହିତ ତୁଳନା କରି ଦୁଃଖଭୋଗ କରିବା ଅନୁଚିତ । ଯାହା ମିଳୁଛି ସେଥିରେ ସନ୍ତୁଷ୍ଟ ରହି ନିଜର କର୍ତ୍ତବ୍ୟ ପାଳନ ବିଧେୟ । ବେଇମାନିକରି ଅର୍ଥ ସଂଗ୍ରହ କରିବା ଅନୁଚିତ । ଈଶ୍ୱରକୃତ ନିୟମକୁ ମାନି ଧନ ଅର୍ଜନ କରିବା ବିଧେୟ । ମଣିଷ କୁଟିଳ ପ୍ରବୃତ୍ତି ତ୍ୟାଗକରି ସବୁବେଳେ ସତ୍‌ମାର୍ଗରେ ଚାଲି ଧନ-ଧାନ୍ୟ ପ୍ରାପ୍ତି କରିବା ଉଚିତ୍ । ମନୁଷ୍ୟ ବିଦ୍ୟାବୁଦ୍ଧି, ଧର୍ମ, ଗୁଣ ଇତ୍ୟାଦିର ପ୍ରୟୋଗରେ ଉତ୍ସାହର ସହିତ ଧନ ଅର୍ଜନ କରି ଲୋକ-କଲ୍ୟାଣ-କାରୀ କାର୍ଯ୍ୟରେ ବିନିଯୋଗ କରିବା ଆବଶ୍ୟକ । ଅଧର୍ମ ପ୍ରାପ୍ତ ଧନ ବିନାଶକାରୀ ଅଟେ । ମଣିଷ ନିଜର ଶକ୍ତି ସାମର୍ଥ୍ୟ ପରିଶ୍ରମ ଯୋଗେ ଓ ନିରନ୍ତର ପୁରୁଷାର୍ଥ-ଦ୍ୱାରା ନିଜର ଆର୍ଥିକ ସମୃଦ୍ଧି କରିବା ଦରକାର । ସେଥିରେ ସମାଜ ସୁଦୃଢ଼ ହେବାର ସମ୍ଭାବନା ଉଜ୍ଜ୍ୱଳ । ଧନର ଉପଯୋଗୀତା ଦୁଃଖୀମାନଙ୍କର ଅଭାବମୋଚନ । ସେଥିପାଇଁ ନିଜର ସଂଚିତ ଧନରୁ ଯାହା ବଳକା ହେବ, ତାହା ସମାଜକୁ ଦେବା ଦରକାର । ଯେଉଁମାନେ ନ ଦିଅନ୍ତି ସେମାନଙ୍କୁ ଅନ୍ୟମାନେ ଘୃଣା-ଚକ୍ଷୁରେ ଦେଖନ୍ତି । ଯେଉଁସମାଜରେ ଅଧିକରୁ ଅଧିକ ଲୋକ ଏକମନ, ଏକ ବିଚାର, ଏକସଂକଳ୍ପବଦ୍ଧ ହୁଅନ୍ତି, ସେ ସମାଜ ଉନ୍ନତିଶୀଳ । ଆମର ହୃଦୟ, ମନ, ସଂକଳ୍ପ ଏକ ହେଉ । କଦାପି ଆମର ସଂଗଠନ ନଷ୍ଟ ନ ହେଉ । ସମସ୍ତେ ମିଳିମିଶି ରହନ୍ତୁ । ସମସ୍ତେ ସଂଘବଦ୍ଧ ହୁଅନ୍ତୁ । ନିଜ ଆଚରଣରେ ଯାହା ସିଦ୍ଧ ତାହାହିଁ ଉପଦେଶ ଆକାରରେ ବକ୍ତବ୍ୟ । ଉପଦେଷ୍ଟା ନିଜ ଆଚରଣଦ୍ୱାରା ତାହାର ବକ୍ତବ୍ୟର ପୁଷ୍ଟି କରିବା ଉଚିତ୍ । ସଂସାରର ଶ୍ରେଷ୍ଠ ଦାନ ହେଉଛି ଜ୍ଞାନଦାନ । କାରଣ ଚୋର ଏହା ଚୋରିକରି ପାରିବ ନାହିଁ । କେହି ଏହା ନଷ୍ଟ କରିପାରିବେ ନାହିଁ । ଏହା ନିରନ୍ତର ବଢ଼ିଚାଲେ ଓ ଲୋକଙ୍କୁ ସ୍ଥାୟୀ ସୁଖ ପ୍ରଦାନ କରେ ।

ଅଥର୍ବ ବେଦର ବାଣୀ ଏ ଯୁଗରେ ମଧ କେତେ ଉପଯୋଗୀ ତାହା ନିମ୍ନଲିଖିତ ଉଦ୍ଧୃତିରୁ ପ୍ରମାଣିତ । ଆମର ଶିକ୍ଷକ, ନେତା ଓ ଅଧିକାରୀମାନେ ବ୍ରହ୍ମଚାରୀ ହେବା ଦରକାର । ସେମାନଙ୍କର ଚିରିତ୍ର ଯେପରି ଭ୍ରଷ୍ଟ ନହୁଏ । ତାହେଲେ ଅସାମାଜିକ, ଅନର୍ଥମୂଳକ ତତ୍ତ୍ୱର ପ୍ରାଧାନ୍ୟ ଓ ପ୍ରବଳତା ଯୋଗୁ ରାଷ୍ଟ୍ରଧ୍ୱଂସ ହୋଇଯିବ । ଆମର ପୂର୍ବପୁରୁଷଙ୍କ-କୃତ ରାଷ୍ଟ୍ରର ରକ୍ଷା ନିମନ୍ତେ ଆମ୍ଭେମାନେ ସଦା ବଳିଦାନ କରିବା ପାଇଁ

ପ୍ରସ୍ତୁତ ରହିବା ଦରକାର । ସବୁ ନାଗରିକ ରାଷ୍ଟ୍ରର ନିର୍ମାଣ ନିମନ୍ତେ କର୍ମଶୀଳ ଓ ଜାଗ୍ରତ ହେବା ଦରକାର । କାରଣ ଅଳସୁଆ ଓ ପ୍ରମାଦ-ପ୍ରବଣ ନାଗରିକ ମାନଙ୍କର ଯୋଗୁ ଦେଶ ପରାଧୀନ ହୁଏ । ମାତୃଭୂମି ଆମକୁ ଲାଳନ ପାଳନ କରି ବଞ୍ଚାଇ ରଖିଛି । ତାହାପାଇଁ ନିଜକୁ ବଳିଦାନ ଦେବା ନିମନ୍ତେ ଆମେ କେବେହେଲେ ପଛକୁ ହଟିବୁ ନାହିଁ । ବର୍ତ୍ତମାନ ଅବସ୍ଥାରେ ସନ୍ତୁଷ୍ଟ ନହୋଇ ଆହୁରି ଅଗ୍ରସର ହେବା ଦରକାର, ଆତ୍ମବଳଦ୍ୱାରା ପୁରୁଷାର୍ଥ ସମ୍ପନ୍ନ କରିବା ଉଚିତ । ଯେଉଁମାନେ ଶିକ୍ଷାଦ୍ୱାରା ବାଧାବିଘ୍ନ ପାର ହୋଇ ଅଗ୍ରସର ହୁଅନ୍ତି, ସେମାନଙ୍କୁହିଁ ସମାଜରେ ସମ୍ମାନ ମିଳେ । ଐଶ୍ୱର୍ଯ୍ୟ ପ୍ରାପ୍ତି ପାଇଁ ମନୁଷ୍ୟର ଉଦ୍ୟମ କରିବା ଉଚିତ, ଆଉ ସମସ୍ତଙ୍କ ସହିତ ମିଳିତ ହୋଇ ସାଂସାରିକ.ଧନରତ୍ନ ପ୍ରାପ୍ତ କରିବା ଦରକାର । ଆଳସ୍ୟ ତ୍ୟାଗକରି ପୁରୁଷାର୍ଥୀ ହେବା, ମୂର୍ଖତା ତ୍ୟାଗକରି ଜ୍ଞାନ ଆହରଣ କରିବା, ମଧୁର ସମ୍ଭାଷଣ କରି ପରସ୍ପର ସହୟତାରେ ଇହଲୋକରେ ଓ ପରଲୋକରେ ସୁଖ ପ୍ରାପ୍ତି ସମ୍ଭବ ହୋଇଥାଏ ।

ଋଗ୍‌ବେଦ ଓ ଯଜୁର୍ବେଦରେ ଲିଖିତ ଅଛି ଯେଉଁଠାରେ ଜ୍ଞାନଦ୍ୱାରା ସତ୍‌କର୍ମକୁ ଜାଗ୍ରତ ରଖିବାର ଆବଶ୍ୟକତା ଅଛି, ସେଠାରେ ଶସ୍ତ୍ରଦ୍ୱାରା ଦୁଷ୍ଟ ଲୋକକୁ ସଂହାର କରିବା ମଧ୍ୟ ଜରୁରୀ କର୍ତ୍ତବ୍ୟ । ଜ୍ଞାନ ଓ କର୍ମର ସଂଯୋଗରେହିଁ ସର୍ବାଙ୍ଗ ସୁନ୍ଦର ଆଧ୍ୟାତ୍ମିକ ଜୀବନ ସମ୍ଭବ ହୁଏ । ଯେଉଁମାନେ ପ୍ରାଣୀମାନଙ୍କର ସୁଖ ଦୁଃଖ ହାନି ଲାଭ ନିଜର ହାନି ଲାଭ ଭଳି ମନେ କରନ୍ତି, ସେମାନଙ୍କର ସବୁ ଦ୍ୱିଧା ଦୂର ହୋଇଯାଏ । ସେମାନେ ସମସ୍ତଙ୍କ ମଧ୍ୟରେ ଏକ ପରମାତ୍ମାଙ୍କୁ ଦେଖିବାକୁ ସକ୍ଷମ ହୁଅନ୍ତି । ହେ ପରମାତ୍ମା । ଆମର ଦେଶ ମହାନ ହେଉ । ଏଠାରେ ବ୍ରହ୍ମବିଦ୍ ପୁରୁଷଙ୍କର ଅଭାବ ନରହୁ । ଅସ୍ତ୍ରଶସ୍ତ୍ର ବିଦ୍ୟାରେ ପାରଙ୍ଗମ ଯୋଦ୍ଧାମାନେ ବହୁ ସଂଖ୍ୟାରେ ପ୍ରସ୍ତୁତ ରହନ୍ତୁ । ରାଷ୍ଟ୍ରକୁ ରକ୍ଷା କରିବା ବାଲା କ୍ଷତ୍ରୀୟମାନଙ୍କର ଅଭାବ ନରହୁ । ଦୁଗ୍ଧ ପ୍ରଦାନକାରୀ ଗୋରୁ ଆଦି ପଶୁଧନ ଉନ୍ନତ ହେଉ, ମାତାମାନେ ବିଦୁଷୀ ହୁଅନ୍ତୁ । ସନ୍ତାନମାନେ ବୀର, ତେଜସ୍ୱୀ ଓ ଚତୁର ହୁଅନ୍ତୁ । ସମୟରେ ବର୍ଷାହେଉ, ଫଳ ଫୁଲର ସମ୍ଭାର କମ୍ ନ ରହୁ । ସମୁଦ୍ରର କୌଣସି କାମନା ନଥିଲେ ମଧ୍ୟ, ନଦୀମାନେ ସେଥିରେ ଲୀନ ହୁଅନ୍ତି, ସେହିପରି ଉଦ୍ୟୋଗୀ ପୁରୁଷମାନଙ୍କର ସେବାରେ ସଦାବେଳେ ଲକ୍ଷ୍ମୀ ତତ୍‌ପର । ଆଳସ୍ୟ ଓ ବ୍ୟର୍ଥ ବାର୍ତ୍ତାଳାପରୁ ମୁକ୍ତହେବା ନିମନ୍ତେ ସର୍ବଦା କାର୍ଯ୍ୟବ୍ୟସ୍ତ ରହିବା ଉଚିତ୍ । ଦୁର୍ଗୁଣରୁ ଦୂରରେ ରହିବା, ଜ୍ଞାନର ପ୍ରସାରଦ୍ୱାରା ଉନ୍ନତି କରାଇବା ଓ ଶ୍ରେଷ୍ଠ ସନ୍ତାନକୁ ଜନ୍ମଦେବା ଆମର ଧ୍ୟେୟ ହେଉ । ସମସ୍ତେ ଏକସ୍ଥାନରେ ଥାଇ ନିଜର ଚିତ୍ତବୃତ୍ତିକୁ ଏକଭାବରେ ସ୍ଥିର ରଖନ୍ତୁ । ନିଜ ନିଜର କ୍ଷମତାନୁସାରେ କାର୍ଯ୍ୟ କରି ସଂବୃଦ୍ଧି ପ୍ରାପ୍ତ ହୁଅନ୍ତୁ । ବିଦ୍ୱାନ ପୁରୁଷଙ୍କ ସଙ୍ଗରେ ରହି ସୁନ୍ଦର ଶବ୍ଦ ଶୁଣି ଆମେ ସତ୍ୟକୁ ଉପଲବ୍ଧ

କରି ପରମାତ୍ମାଙ୍କ ଉପାସନା କରିବା । ଅସତ୍ୟ ସମ୍ଭାଷଣ କରିବା ନାହିଁ । ମିଥ୍ୟା ପ୍ରଶଂସା ଶୁଣିବା ନାହିଁ । ଅନ୍ୟର ଦୋଷ ଦେଖିବା ନାହିଁ ଏବଂ ଆମର ପ୍ରବୃତ୍ତି ବ୍ୟଭିଚାର ଆଡକୁ ଯିବ ନାହିଁ । ମନୁଷ୍ୟ ନିଷ୍କାମ କର୍ମ କରି ଜୀବନ ଯାପନ କଲେ ଅନ୍ୟପ୍ରତି ଖରାପ ବ୍ୟବହାର କରେ ନାହିଁ । ଆସକ୍ତିରୁ ଉଦ୍ଧାର ପାଇବାର ଆଉ ରାସ୍ତା ନାହିଁ ।

ଋଗ୍‌ବେଦରେ ସ୍ତ୍ରୀମାନଙ୍କର ଗୌରବ ବିଷୟରେ ବିଶେଷ ଉଲ୍ଲେଖ ଅଛି । ଯଥା ପତିବ୍ରତା ସ୍ତ୍ରୀଠାରୁ ପୁରୁଷ ବିଶେଷ ଆନନ୍ଦ ପାଏ, ଯେପରି ପ୍ରାଣୀମାନେ ଉଷାର ଉଦୟରେ ଆନନ୍ଦିତ ହୁଅନ୍ତି । ବିଦୁଷୀ ସ୍ତ୍ରୀମାନେ ଅଧ୍ୟାପନା କାର୍ଯ୍ୟ କଲେ କନ୍ୟାମାନେ ଉତ୍ତମ ଶିକ୍ଷା ପାଇଥାଆନ୍ତି । ଉତ୍ତମ ଗୁଣ ଯୁକ୍ତ ସୁଶୀଳା ସ୍ତ୍ରୀ-ପ୍ରାପ୍ତ ପୁରୁଷମାନେ ସୁଖୀ ହୁଅନ୍ତି । ଗୁଣ, କର୍ମ, ସ୍ୱଭାବ ଦେଖି ବିବାହ କରିବା ଉଚିତ ।

ମାତାମାନେ ଆତ୍ମାଭିମାନୀ ହୁଅନ୍ତୁ । ସେମାନଙ୍କର ସନ୍ତାନମାନେ ବୀର ହୁଅନ୍ତୁ ଏବଂ କନ୍ୟାମାନେ ତେଜସ୍ୱୀ ହୁଅନ୍ତୁ । ଉତ୍ତମ ସ୍ତ୍ରୀମାନେ ଘରକାମକୁ ରୁଚିପୂର୍ବକ ସମ୍ପନ୍ନ କରନ୍ତି । ଆଳସ୍ୟ ଦେଖାନ୍ତି ନାହିଁ । ସେମାନେ ଗୃହକର୍ମର ଶିକ୍ଷା ଅନ୍ୟକୁ ମଧ୍ୟ ଦେଇଥାଆନ୍ତି । ସୁନ୍ଦରୀ ବୁଦ୍ଧିମତି କନ୍ୟାମାନେ ଯୁବାବସ୍ଥାରେ ସ୍ୱେଚ୍ଛାରେ ଶୁଭ ଗୁଣ ସମ୍ପନ୍ନ ପୁରୁଷର ପାଣି ଗ୍ରହଣ କରନ୍ତି । ପୁରୁଷ-ସ୍ତ୍ରୀ ଉଭୟଙ୍କୁ ପ୍ରେମର ଦୃଷ୍ଟିରେ ଦେଖନ୍ତୁ । ପୁରୁଷ, ସ୍ତ୍ରୀ ଆଣିଥିବା ଯୌତୁକ ଗ୍ରହଣ କଲେ, ଅପବିତ୍ର ହୋଇଯାଏ । ସୁଲକ୍ଷଣା ସାଧ୍ୱୀ ସ୍ତ୍ରୀ ଓ ଶ୍ରେଷ୍ଠ ବିଦ୍ୱାନ ପୁରୁଷର ସଂଯୋଗରେ ଘର ସ୍ୱର୍ଗରେ ବଦଳି ଯାଏ । ଅଭାବ ରହେ ନାହିଁ । ଦାମ୍ପତ୍ୟ ଜୀବନର ସଫଳତା ପାଇଁ ସଦ୍‌ବିଚାରର ଆବଶ୍ୟକତା ହୁଏ । ଅତିଥି ସତ୍‌କାର ଏକ ମହାନ ପାରମ୍ପାରିକ କର୍ମ ।

ଏହି ସଂସାରରେ ଭଲମନ୍ଦ ବିଭିନ୍ନ ଶ୍ରେଣୀର ପ୍ରାଣୀ ଅଛନ୍ତି । ସଜ୍ଜନମାନେ ଅଛନ୍ତି ଆଉ ହିଂସ୍ର ବାଘ, ଭାଲୁ ମଧ୍ୟ ଅଛନ୍ତି । ମନୁଷ୍ୟ ଦୁଷ୍ଟଠାରୁ ନିଜକୁ ବଞ୍ଚାଇ ସାଧୁପୁରୁଷଙ୍କ ସଙ୍ଗ କରିବା ଉଚିତ । ଲୋକେ ଅନ୍ୟର ଛିଦ୍ରାନ୍ୱେଷଣରେ ସବୁବେଳେ ତତ୍‌ପର । ଏମାନଙ୍କଠାରୁ ଦୂରରେ ରହିବା ଦରକାର । ତା ନହେଲେ ନିଜର ସ୍ୱଭାବ ମଧ୍ୟ ସେହିପରି ହୋଇଯିବ । ଈଶ୍ୱରଙ୍କୁ ପ୍ରାର୍ଥନା କର, ଯେପରି ଦ୍ୱେଷ ଭାବନାରୁ ଆମକୁ ମୁକ୍ତ ରଖନ୍ତୁ । ପ୍ରତ୍ୟେକ ପୁରୁଷ ଶୁଭ କର୍ମ କରନ୍ତୁ, ଛନ୍ଦ କପଟ ଦ୍ୱାରା ଅନ୍ୟକୁ ନ ଠକନ୍ତୁ । ସାଂସାରିକ ସୁଖ ଓ କଲ୍ୟାଣର ଅଭିଳାଷୀ ଲୋକଙ୍କର ମନ, କର୍ମ, ବଚନରେ ସତ୍ୟ ବ୍ୟବହାର କରି କଲ୍ୟାଣର ଭାଗୀଦାର ହେବା ଉଚିତ । ଏହାହିଁ ସ୍ଥାୟୀ ସୁଖ ପ୍ରାପ୍ତିର ଏକମାତ୍ର ପଥ ଅଟେ ।

ସଂସାରରେ ଧନର ଉପଯୋଗୀତା ବିଷୟରେ ସମସ୍ତେ ଅବଗତ ହେଲେହେଁ

ମହାପୁରୁଷ ଓ ଆଚାର୍ଯ୍ୟମାନେ ଅର୍ଥର ପ୍ରଭାବକୁ କ୍ଷୁର୍ଣ୍ଣ କରିବା ନିମନ୍ତେ ବଡ କଠୋର ମନ୍ତବ୍ୟମାନ ପ୍ରକାଶ କରଅଛନ୍ତି । କାରଣ ଅର୍ଥ ଗୃଧ ମାନେ ପ୍ରକୃତ ଓ ପ୍ରକୃଷ୍ଟ ଉଦ୍ଦେଶ୍ୟ କଥା ଭୁଲି, ଭୁଲବାଟରେ ଚାଲି ମନୁଷ୍ୟ ସମାଜକୁ ଅର୍ଥର ଦାସତ୍ୱ ଆଡକୁ ନେଇ ଯାଆନ୍ତି । ମୋହ ମୁଦ୍‌ଗରରେ ଆଚାର୍ଯ୍ୟ ଶଙ୍କରଙ୍କ ଉକ୍ତି :-

ଅର୍ଥ ଅନର୍ଥ ସଦୃଶ । ସେଥିରେ ଟିକିଏ ହେଲେ ସୁଖ ନାହିଁ । ତାକୁ ପରିହାର କରି ଗୋବିନ୍ଦଙ୍କର ଭଜନ କର । ସେହିପରି ପରମହଂସ ରାମକୃଷ୍ଣ କହିଲେ ମାଟି ଯାହା ଟଙ୍କା ସେଇଆ । ସେ ମାଟି ଓ ଟଙ୍କାକୁ ଏକତ୍ର କରି ଗଙ୍ଗାନଦୀରେ ପକେଇଦେଲେ । ଲିଖିତ ଅଛି ଯେ ତାଙ୍କୁ ପରୀକ୍ଷା କରିବା ନିମନ୍ତେ ତାଙ୍କ ବିଛଣା ତଳେ ଟଙ୍କା ରଖିଦିଆଯାଇଥିଲା । ସେ ଜାଣିନଥିଲେ ଶୋଇବାମାତ୍ରେ ଛଟପଟ କରି ଉଠିଲେ । ଅର୍ଥର ପ୍ରଭାବ ତାଙ୍କ ଉପରେ ବିଷ ସଦୃଶ ଥିଲା ।

ମହାପୁରୁଷମାନଙ୍କ ମତି ବୁଝିବାକୁ ହେଲେ ସେମାନଙ୍କର ସତ୍ୟ ନିର୍ଭର ଅନୁଭୂତିକୁ ବୁଝିବାକୁ ହେବ । ମଣିଷର ଗୁଣଗତ ଉନ୍ନତି ପଥରେ ଅର୍ଥାଗମର ପନ୍ଥା, ଅର୍ଥଚିନ୍ତା, ଅର୍ଥର ପ୍ରୟାସ ପରିପନ୍ଥୀ ଏଥିରେ ସନ୍ଦେହ ନାହିଁ । ମାତ୍ର ସଂସାରରେ ଜୀବନ ଧାରଣ ପାଇଁ ଏହାର ଆବଶ୍ୟକତା ବିଷୟରେ କେହି ଦ୍ୱିମତ ନୁହନ୍ତି । ପୂରାତନ କାଳରେ ଯେତେବେଳେ ଜନସଂଖ୍ୟା ଅତ୍ୟନ୍ତ କମ୍‌ଥିଲା, ସେତେବେଳେ ଜଙ୍ଗଲର ଫଳ ମୂଳ ଖାଇ ଗିରିଗୁହା ବା କନ୍ଦରରେ ଋଷିମାନେ ଆନନ୍ଦରେ କାଳାତିପାତ କରିପାରୁଥିଲେ, ଜନସଂଖ୍ୟାର ଅଭିବୃଦ୍ଧି ସହିତ ସମସ୍ୟାର ଘେରରେ ମନୁଷ୍ୟ ଅଣନିଶ୍ୱାସୀ ହୋଇ ଉଠିଅଛି । ଆଜିର ସମାଜରେ ଅର୍ଥର ଆବଶ୍ୟକତା ତିଳେତିଳେ ଅନୁଭୂତ ହୋଇଅଛି । ଉତ୍‌କଟ ଅଭାବରେ ବହୁ ମହାନ ଅଧିବାସୀମାନେ ଦୁଷ୍ଟ ଜୀବନ ଯାପନ କରୁଅଛନ୍ତି । ଅନେକାଂଶ ଲୋକ ଦାରିଦ୍ର୍ୟର ସୀମାରେଖାତଳେ ଅବସ୍ଥାନ କରୁ ଅଛନ୍ତି। ସେମାନେ ଅର୍ଥ କୁ ଅନର୍ଥ ବୋଲି କହିବା, ସେମାନଙ୍କ ପ୍ରତି ଏକ କ୍ରୁର ଉପହାସ ଛଡା ଆଉ କିଛି ନୁହେଁ । ପାରମାର୍ଥିକ ତତ୍ତ୍ୱ ଦୃଷ୍ଟିରୁ ଏହା ସତ୍ୟ ହେଲେ ମଧ, ଏହା ସାମାଜିକ ଦୃଷ୍ଟିରୁ ଏକ ଅସତ୍ୟ ଛଡା ଆଉ କିଛି ନୁହେଁ ।

ଏହି ପ୍ରସଙ୍ଗରେ ଶ୍ରୀ ଅରବିନ୍ଦଙ୍କ ଭାବଧାରା ଅନ୍ୟରକମର । ଗୋଟିଏ ଛୋଟିଆ ପୁସ୍ତିକା ''ମା''ରେ ସେ ଲେଖିଛନ୍ତି ଯେ ମା ଶଙ୍କରୀଙ୍କ ଦୁଇଟି ବିଭାବ ଅଛି (୧) ଲକ୍ଷ୍ମୀ (୨) ସରସ୍ୱତୀ । ଲକ୍ଷ୍ମୀ ଶ୍ରୀ ବୋଲି ଜ୍ଞାତ । ତାଙ୍କର ପ୍ରଭାବରେ ଶସ୍ୟ ଶ୍ୟାମଳା ପୃଥିବୀରେ ଶ୍ରୀବୃଦ୍ଧି ହୋଇଥାଏ । ମନୁଷ୍ୟ ଜୀବନରେ, ତାର ପରିବାରରେ ଦେଶରେ ଆର୍ଥିକ ଉନ୍ନତି ମଧ ଦେଇ ପ୍ରଭୁତ ଉନ୍ନତି ସାଧିତ ହୁଏ । ସର୍ବତ୍ର ସୌନ୍ଦର୍ଯ୍ୟ-ଶ୍ରୀ ବିରାଜମାନ କରେ । ସମାଜରେ ଗୃହଆଦିର ପ୍ରତିଷ୍ଠା ହୋଇ ମାନବ ସମାଜ ସୁଖ ଶାନ୍ତିରେ ବାସକରିବାକୁ ସକ୍ଷମ

ହୁଏ । ଏହି ସମାଜର ସର୍ବାଙ୍ଗୀନ ଉନ୍ନତି ପଥରେ ଅର୍ଥର ମହାନ ଭୂମିକା ରହିଛି । କେବଳ ଆଜି ନୁହେଁ, ଆବହମାନ କାଳରୁ । ତେଣୁ ଅର୍ଥକୁ ରୋଜଗାର କରି ତାକୁ ସତ୍‌ପଥରେ ବ୍ୟୟକରିବାକୁ ହେବ । ଶ୍ରୀ ଅରବିନ୍ଦଙ୍କ ମତ ହେଲା ଯେ ମଣିଷ ଯେଉଁ ଅର୍ଥ ଅର୍ଜନ କରେ, ତାହାର ସେ ନ୍ୟାସଧାରୀ (ଟ୍ରଷ୍ଟି) ମାତ୍ର । ସେ ଅର୍ଥ ଈଶ୍ୱର ଦେଇଅଛନ୍ତି ଏକଥା ଚିନ୍ତା କରି ଅର୍ଥକୁ ତାଙ୍କର ବୋଲି ମନେକରି ସଦୁପଯୋଗ କରିବା ମନୁଷ୍ୟର ଧର୍ମ । ଯାହା ସେ ରୋଜଗାର କରିବ ତାକୁ ନିଜର ସାମାନ୍ୟ ଅଭାବକୁ ଦୂରକରିବା ପରେ, ଅନ୍ୟପାଇଁ ବ୍ୟୟକରିବା କାମ୍ୟ । ସମାଜରେ ଯାହାର ଅର୍ଥ ନାହିଁ ତାକୁ ଦେବା ଉଚିତ; ଯେଉଁ ପ୍ରକଳ୍ପରେ ଜନ-ସମୁଦାୟର ଭଲ ହେବ, ଉପକାର ହେବ, ଉନ୍ନତି ହେବ, ସେଥିରେ ବିନିଯୋଗ କରିବା ଦରକାର । କାରଣ, ସମଷ୍ଟିର ଉନ୍ନତିରେ ବ୍ୟକ୍ତିର ଉନ୍ନତି । ସମାଜର ଉନ୍ନତିରେ ଜନସାଧାରଣଙ୍କର ଉନ୍ନତି । ସମାଜ ଅସୁସ୍ଥ, ଦୁର୍ବଳ, ଦୁଷ୍ଟ ହୋଇପଡିଲେ ସର୍ବାଙ୍ଗିନ ଅବନତି ହୋଇ ମଣିଷର ଘୋର ସଂକଟ ଦେଖାଦେବ । ତାହାର ଧନ ସଂପଦ ଅଭାବି ଲୋକ ଲୁଟିନେବେ । ଅରାଜକତା ଦେଖାଦେବ ସମଗ୍ର ମାନବ ଜାତିରେ । ପଶୁବଳର ପ୍ରାଧାନ୍ୟ ହେବ । ବାହୁବଳର ଅଧିକାର ପ୍ରବଳ ହେବ । ସୂକ୍ଷ୍ମ ପ୍ରବୃତ୍ତି, ଗୁଣରାଜି, ଓ ଧାର୍ମିକତା ଶେଷରେ ଲୋପପାଇଯିବ । ଅର୍ଥାତ୍ ସମାଜର ସମୂହ ପତନ ଅବଶ୍ୟାମ୍ଭାବି । ତେଣୁ ଅର୍ଥର ସୁବିନିଯୋଗ ନ୍ୟାସଧାରୀ ବା ନ୍ୟାସୀରୂପରେ ସମ୍ପନ୍ନ କଲେ, ମଣିଷର ଅଭାବ-ମୋଚନ ହୋଇ ସର୍ବତ୍ର ଏକତ୍ୱ, ସହଯୋଗ, ସହାବସ୍ଥାନର ସୁନ୍ଦର ପରିବେଶ ସୃଷ୍ଟ ହୋଇ, ଏକ ଆଦର୍ଶ ମନୁଷ୍ୟ ସମାଜର ପ୍ରତିଷ୍ଠା ହେବାର ସମ୍ଭାବନା ଉଜ୍ଜ୍ୱଳ ହୋଇ ଉଠିବ । ଏହାଦ୍ୱାରା କାଳ-କାଳ ଧରି ମଣିଷ ଉନ୍ନତି ପଥରେ ଅଗ୍ରସର ହେବ ।

ଉପର୍ଯ୍ୟୁକ୍ତ ମତାବଳିର ପରିପ୍ରେକ୍ଷୀରେ, "ବେଦ" ରେ ଲିଖିତ ଉପଦେଶାବଳି ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଋଗ୍‌ବେଦର (୧/୧/୩) ଉପଦେଶ ଅନୁସାରେ ମନୁଷ୍ୟ ଈଶ୍ୱରଙ୍କ ତିଆରି ନିୟମାବଳି ଅନୁସାରେ ଧନ ଉପାର୍ଜନ କରିବା ବିଧେୟ । ଦୁର୍ନିତି-ଯୁକ୍ତ ଧନରୁ ଦୂରରେ ରହିବା ଦରକାର । ଅର୍ଥାତ୍ ଧାର୍ମିକ ପ୍ରକ୍ରିୟାରେ ଧନ-ଆହରଣ କରି ଧାର୍ମିକ ପନ୍ଥାରେ ତାହାର ବ୍ୟୟ କରିବା ଉଚିତ୍ । ଯେଉଁ ବ୍ୟକ୍ତି ନିରଳସ ଭାବରେ ଧର୍ମାଚରଣ ପୂର୍ବକ ଧନ ଉପାର୍ଜନ କରି, ତାହାର ସମୁଚିତ ରକ୍ଷାକରି, ନିଜର ଉପଭୋଗ ସହିତ ଅନ୍ୟହିତରେ ପ୍ରୟୋଗ କରେ, ସେ ବ୍ୟକ୍ତି ଏହି ସଂସାରରେ ସଦା ସୁଖୀ ରହେ । ସମସ୍ତେ କୁଟିଳ ପ୍ରବୃତ୍ତି ଗୁଡିକୁ ପରିହାର କରି ସବୁବେଳେ ସତ୍‌ମାର୍ଗରେ ଅଗ୍ରସର ହୋଇ ଧନଧାନ୍ୟ ପ୍ରାପ୍ତ ହୁଅନ୍ତୁ ଏହାହିଁ ପ୍ରାର୍ଥନା । ମନୁଷ୍ୟ ବିଦ୍ୟା, ବୁଦ୍ଧି, ଧର୍ମ, ଗୁଣ ଆଦିଦ୍ୱାରା ଯେଉଁ ଧନ ପ୍ରାପ୍ତ ହୁଏ ତାହାକୁ ଲୋକ କଲ୍ୟାଣକାରୀ କର୍ମରେ ବିନିଯୋଗ କରିବା ଦରକାର । ଉଚିତ୍

ପନ୍ଥାରେ ଅର୍ଜିତଧନ ସତ୍‌କାର୍ଯ୍ୟରେ ଲଗାଇଲେ, ମଣିଷର ସଦ୍‌ଗତି ହୋଇଥାଏ । ଯେଉଁଲୋକ ଏହି ଧନକୁ ପାପକର୍ମରେ ଲଗାଏ, ତାହାର ସର୍ବନାଶ ହୁଏ । ଧନ, ପଦ, ଶ୍ରୀ, ସମୃଦ୍ଧି ନ୍ୟାୟପୂର୍ଣ୍ଣ ଆଚରଣଦ୍ୱାରା ସମ୍ଭବ । ଅଧର୍ମରେ ଅର୍ଜିତ ଧନ ବିନାଶକାରୀ । ଅଧିକ ପରିଶ୍ରମ ଓ ନିରନ୍ତର ପୁରୁଷାର୍ଥ ଦ୍ୱାରା ନିଜର ଆର୍ଥିକ ସ୍ଥିତି ସୁଦୃଢ଼ କରିବାଦ୍ୱାରା ମଣିଷ-ସମାଜ ସମୁନ୍ନତ ହୁଏ । ଧନର ଉପଯୋଗୀତା ଦୁଃଖି ଦରିଦ୍ରମାନଙ୍କର ଅଭାବ ମୋଚନ କରିବା ପାଇଁ ଉଦ୍ଦିଷ୍ଟ । କୃପଣତା ଓ ସଂଗ୍ରହ ବୃତ୍ତିଦ୍ୱାରା ମଣିଷ ସବୁବେଳେ କଷ୍ଟହିଁ ଲାଭ କରେ । ଭୟ ଓ ଆଶଙ୍କା ହୁଏ ଯଦି କେହି ଚୋରି କରି ନିଅନ୍ତି ସେ ଧନକୁ । ତେଣୁ ନିଜର ଖର୍ଚ୍ଚ ପରେ, ବଳକା ଧନ ସମାଜକୁ ଦେଇ ଦେବା ଉଚିତ । ଯେଉଁ ଲୋକ ଧନଧାନ୍ୟ ସମ୍ପନ୍ନ ହୋଇ ମଧ୍ୟ ନିକୃଷ୍ଟ ସ୍ୱାର୍ଥରେ ଜଡିତ ହୋଇ ରହେ, ଦୁଃଖୀ ଓ ବିଷାଦଗ୍ରସ୍ତ ଲୋକଙ୍କୁ କୌଣସି ସାହାଯ୍ୟ କରେନାହିଁ, ତାକୁ ସମସ୍ତେ ଘୃଣା କରନ୍ତି । ଅନ୍ନକୁ ଲୁଚାଇ ରଖିବା ଉଚିତ ନୁହେଁ । ତାହାକୁ କ୍ଷୁଧିତ ଲୋକଙ୍କୁ ଦେଲେ ମନୁଷ୍ୟର ଶ୍ରେଷ୍ଠତା ପ୍ରତିପନ୍ନ ହୁଏ । ନିଜ ଅଧ୍ୟବସାୟଦ୍ୱାରା ଅନ୍ୟଠାରୁ ପରାମର୍ଶନେଇ, ଶତହସ୍ତରେ ବେଶୀଧନ ଆହରଣ କର; ଆଉ ସହସ୍ର ହାତରେ ଉତ୍ତମକର୍ମରେ ତାହା ପ୍ରସାରଣ କର । ଏଥିରେହିଁ ତୁମ୍ଭର ଉନ୍ନତି ସବୁବେଳେ ପ୍ରତିଷ୍ଠିତ ହେବ । ନିର୍ଧନ ମନୁଷ୍ୟ ସଂସାରରେ ଦୁର୍ବଳ ହୋଇପଡେ । ଦୁଃଖୀ ଜୀବନ ଯାପନ କରେ । ତେଣୁ ପ୍ରୟାସ କରି, ଦାରିଦ୍ର୍ୟକୁ ଦୂରରେ ରଖ । ସ୍ୱାର୍ଥପର ହୋଇ ଅନ୍ୟକୁ କଷ୍ଟ ଦିଅନାହିଁ । ଯେଉଁଲୋକ ଧନ ଉପାର୍ଜନ କରୁଛି, ସେ କେବଳ ନିଜର ସ୍ୱାର୍ଥପ୍ରତି ଦୃଷ୍ଟିଦେଇ ଅନ୍ୟକୁ କଷ୍ଟ ଦେବା ଉଚିତ ନୁହେଁ । ସେ ସମସ୍ତଙ୍କୁ ସମାନ ଭାବରେ ଦେଖିବା ଉଚିତ । ସମସ୍ତଙ୍କୁ ସୁଖ ଦେବା ଉଚିତ । ପାପରୁ ପ୍ରାପ୍ତ ଧନ ନିଜପାଖରେ ନରଖି ଶତ୍ରୁପାଖରେ ରଖିବା ଉଚିତ । ଧନରୁ ବହୁ ବିପଦ ଉପୁଜିଥାଏ । ତେଣୁ ଧନ ଅର୍ଜନ କଲାପରେ ଉନ୍ମତ୍ତ ଓ ଗର୍ବୀ ହୋଇପଡିବା ଅନୁଚିତ ଅଟେ । ପୂର୍ବୋକ୍ତ ଉପଦେଶାବଳିରୁ ଏହା ଅତ୍ୟନ୍ତ ସୁସ୍ପଷ୍ଟ ଯେ ସଂସାରରେ ଧନ ଅର୍ଜନର ଆବଶ୍ୟକତା ଅଛି ଏବଂ ଏହି ଧନର ସୁବିନିଯୋଗ ଦ୍ୱାରା ମାନବ ସମାଜର ସର୍ବାଙ୍ଗୀନ ଉନ୍ନତି ସାଧିତ ହୋଇପାରିବ । କେବଳ ସେତିକି ନୁହେଁ, ମନୁଷ୍ୟ ତାହାର ଶହେ ହାତରେ ପରିଶ୍ରମଦ୍ୱାରା ଧନକମାଇ, ତାହାକୁ ହଜାର ହାତରେ କଲ୍ୟାଣକାରୀ କର୍ମରେ ବିନିଯୋଗ କରି ଅନ୍ୟମାନଙ୍କର ଦୁଃଖ ମୋଚନ କରି, ନିଜର ପାରତ୍ରିକ ଉନ୍ନତି ସାଧନ କରିପାରିବ । ଉପର୍ଯ୍ୟୁକ୍ତ ପ୍ରସଙ୍ଗରେ ବେଦର ଆଦେଶ ଯେ କେତେଦୂର ମଣିଷର ସମାଜ ପକ୍ଷରେ ହିତକାରୀ, ତାହା ବର୍ତ୍ତମାନ ସମାଜ ବ୍ୟବସ୍ଥା ଦୃଷ୍ଟିରୁ ସହଜରେ ଅନୁମାନ କରାଯାଇପାରେ । ବେଦର ଉକ୍ତି ଗୁଡିକ ଯେ କେତେଦୂରଦୃଷ୍ଟି ସମ୍ପନ୍ନ, ଉଦାର ପନ୍ଥୀ, ଉପଯୋଗିତା-ଭିତ୍ତିକ, ପ୍ରୟୋଜନୀୟ ଓ ମଣିଷ ପକ୍ଷରେ ହିତକର ତାହାର

ବର୍ଣ୍ଣନା ନିଷ୍ପ୍ରୟୋଜନ । ସୂକ୍ତି ଗୁଡିକର ପ୍ରତିପାଦ୍ୟତା, ଗଭୀରତା, କାର୍ଯ୍ୟକାରିତା ଏ ଯୁଗରେ ହୃଦୟଙ୍ଗମ କରି ମନୁଷ୍ୟ ତାହା ପାଳନ କଲେ ତାହାର ଭବିଷ୍ୟତ ଅତ୍ୟୁଜ୍ଜ୍ୱଳ ହେବ, ଏହା ସନ୍ଦେହାତୀତ । ପ୍ରାୟ ପାଞ୍ଚହଜାର ବର୍ଷ ପୂର୍ବେ ଯେତେବେଳେ ମଣିଷର ସମସ୍ୟା ଅତି ଅଳ୍ପଥିଲା ଏବଂ ସମାଜ ଅତି ଉଚ୍ଚସ୍ତରରେ ଉପନୀତ ହୋଇଥିଲା, ସେତେବେଳେ ଭବିଷ୍ୟତର ଚିନ୍ତା କରି ବେଦ ମାଧ୍ୟମରେ ବହୁ ମୂଲ୍ୟବାନ ତଥ୍ୟ ପରିବେଷିତ ହୋଇଥିଲା ଏହି ଭାରତଭୂମିରେ । ଚିନ୍ତା ରାଜ୍ୟର ଏହି ମହିମାନ୍ୱିତ ସତ୍ୟର ଉପଲବ୍ଧି କରି ଆଜିର ମଣିଷ ଆଶ୍ଚର୍ଯ୍ୟରେ ହତବାକ୍ ହୋଇଯାଏ । ସତେକଣ ସମାଜ-ବିଜ୍ଞାନ ପଢ଼ିଥିଲେ ଆର୍ଯ୍ୟ ଋଷି ବୃନ୍ଦ ନା ସତରେ ସର୍ବଜ୍ଞାନବାନ ଈଶ୍ୱରହିଁ ବେଦର ରଚନା କରିଥିଲେ ? ଏହାର ଉତ୍ତର ଇତିହାସରେ ମିଳେନାହିଁ । କାରଣ ସେତେବେଳେ ଇତିହାସକାର ନଥିଲେ; ନଥିଲେ ସମାଜ ବିଜ୍ଞାନୀ, ନଥିଲା ବିଶ୍ୱବିଦ୍ୟାଳୟ, ସେଥିରେ ସମାଜ ବିଜ୍ଞାନର ପାଠ୍ୟକ୍ରମ ମଧ୍ୟ ନଥିଲା । ମାତ୍ର ଗୋଟିଏ ବସ୍ତୁର ଅସ୍ତିତ୍ୱ ଯୋଗୁ ସବୁଜ୍ଞାନ ଆଲୋକିତ ହୋଇଥିଲା । ତାହାହେଲା ''ପ୍ରଜ୍ଞା'' । ସେହି ପ୍ରଜ୍ଞାର ଆଲୋକରେ ସମଗ୍ର ବିଶ୍ୱର ସତ୍ୟ ଉଦ୍‌ଭାସିତ ହୋଇଥିଲା ମାନବ-ମନରେ । ତାହାରି ପ୍ରତିଛବି ଚାରିବେଦରେ ପ୍ରତିଫଳିତ; ପତ୍ରାୟିତ, ପୁଷ୍ପାୟିତ ଦ୍ରୁମାୟିତ ହୋଇ ମହାମହିରୁହରେ ପରିଣତ ହୋଇଅଛି । ଏହି ମହିରୁହ ଗୁଡିକ ଭାରତବର୍ଷରେ ଥାଇ ମଧ୍ୟ, ଭାରତୀୟମାନେ ଅନ୍ୟତ୍ର ଗଛର ସନ୍ଧାନରେ ଘୁରି ବୁଲିଛନ୍ତି । ପାଶ୍ଚାତ୍ୟ ସଭ୍ୟତାର ନିମ୍ନଗାମୀ ନୀତି, ପ୍ରକୃତି ଓ ସ୍ୱଭାବଚରିତ୍ରର ପ୍ରକାଶରେ ଏବେ ଭାରତୀୟମାନେ ଭବିଷ୍ୟତ ବିଷୟରେ ସନ୍ଦିହାନ ହୋଇ, ସତ୍ୟ-ନିର୍ଦ୍ଧାରିତ ପନ୍ଥା ପ୍ରତି ଆକୃଷ୍ଟ ହେଉ ଅଛନ୍ତି । ଏବେ ବେଦର ସମ୍ୟକ ଅଧ୍ୟୟନ ଓ ଆଚରଣର ସମୟ ଉପସ୍ଥିତ ।

ଏ ଗୁଡିକ ବେଦ କଥିତ ଶୁଭ୍ର ସୁନ୍ଦର ତଥ୍ୟରାଜି ଯାହା ଆଜିର ସମାଜରେ ମଧ୍ୟ ପ୍ରାସଙ୍ଗିକ । କେବଳ ତାହାନୁହେଁ ଆଜିର ସଭ୍ୟତାରେ ଯେଉଁ ନୀତି ନିୟମର ଅଭାବ ଅଛି ତାହାର ଏକାନ୍ତ ପରିପୁରକ ମଧ୍ୟ । ବେଦର ଉପଦେଶାବଳି ଅତ୍ୟନ୍ତ ସରସ, ସୁନ୍ଦର, ଶୁଭଦାୟକ ଓ ସର୍ବଥା ଗ୍ରହଣଯୋଗ୍ୟ । ଆଜିର ଜଗତରେ ଯେଉଁ ସନ୍ତୁଳନର ଅଭାବ ଦେଖାଯାଏ ଦାମ୍ପତ୍ୟ ଜୀବନରେ, ରାଜନୀତିକ ଓ ସମାଜିକ କ୍ଷେତ୍ରରେ, ମଣିଷ ମଣିଷ ଭିତରେ ତାହାର, ଅବ୍ୟର୍ଥ ଔଷଧ ବେଦମାନଙ୍କର ସୂକ୍ତିରେ ପ୍ରତିଫଳିତ ହୋଇ ରହିଅଛି । ମାତ୍ର ଏହାର ଆଦର ଏ ଯୁଗର ସମାଜ ପ୍ରକୃଷ୍ଟ ଭାବରେ ନକରି, ଏହାର ଜ୍ଞାନକୁ ହତାଦର କରୁଅଛି, ଏହା ଅତି ପୁରାତନ ବୋଲି । ମାତ୍ର ଏଯୁଗରେ ଶାନ୍ତିର ଘୋର ଅଭାବ ପରିଲିକ୍ଷିତ ହୁଏ, ଧୈର୍ଯ୍ୟ, ବିଚାର, ଶୁଦ୍ଧ ଆଚାର ଓ ମହାନ ଚିନ୍ତାର ଅନୁପସ୍ଥିତିରେ । ବୈଦିକ ଜୀବନ ଶାନ୍ତିରେ ଭରା । ସର୍ବତ୍ର ଶାନ୍ତିର ଅନ୍ୱେଷଣ ବୈଦିକ ଜୀବନର ଶ୍ରେଷ୍ଠ ଆଧାର । ଏଯୁଗର

ଅହେତୁକ ଅସ୍ଥିରତା, ମନର ଚଞ୍ଚଳତା, ଚିନ୍ତାର ଅଗଭୀରତା ଦୃଷ୍ଟିରୁ, ବୈଦିକ ଦୃଷ୍ଟିଭଙ୍ଗିର ବହୁଳ ଆବଶ୍ୟକତା ରହିଛି । ମନୁଷ୍ୟ ଯଦି ଚୈତନ୍ୟମୟ, ପ୍ରଗତିଶୀଳ, ସତ୍ୟ-ପରିପୂର୍ଣ୍ଣ, ପାପହୀନ, କର୍ମଠ, ଆଶାପୂର୍ଣ୍ଣ, ସମନ୍ୱୟ-ସଂବୃଦ୍ଧ, ବିକାଶଶୀଳ ବୈଦିକ ଜୀବନର ପ୍ରତିକୃତି ଆଜିର ଉଦ୍‌ବେଗମୟ, ଅନ୍ତସାରଶୂନ୍ୟ, ଭୋଗପ୍ରବଣ, ଶାରୀରିକ-ସୁଖ-ସନ୍ଧାନୀ ଜୀବନ ଉପରେ ଆରୋପ କରେ, ତେବେ ଏହାର ପ୍ରଲେପ ଦୁଃଖ ଯନ୍ତ୍ରଣାକୁ ଲାଘବ କରି ସ୍ଥିର-ଚିତ୍ତ-ପ୍ରସୂ ଅଭିଜ୍ଞତା ମାଧ୍ୟମରେ ମାନବ ସମାଜକୁ ଏକ ପ୍ରଗତିଶୀଳ, ମୂଲ୍ୟବୋଧପୂର୍ଣ୍ଣ, ମାଧୁରିମା-ସିଂଚିତ ଦିବ୍ୟଜୀବନ ଉପହାର ଦେବାର ଆଶୀର୍ବାଦ ବହନ କରି ଆଣିବ । ମନୁଷ୍ୟର ଶାନ୍ତିର ବାର୍ତ୍ତାବହ ରୂପେ ବେଦର ଅପୂର୍ବ ବାଣୀ ମାନବ ସମାଜରେ ଆବିର୍ଭୂତ ହେବ । ଏହା ପରମ ଓ ଚରମ ସତ୍ୟ ।

ଏହି ଅଧ୍ୟାୟର ପରିସମାପ୍ତି ''ମହାଜୀବନ''ର ପ୍ରାରମ୍ଭିକ ସୋପାନ ରଚନା କରିବା ପୂର୍ବରୁ ନୁହେଁ । କ୍ଷଣଭଙ୍ଗୁର ଜୀବନ ବହୁ ବ୍ୟର୍ଥତା, ନୈରାଶ୍ୟ, ଦୁଃଖ, ଯନ୍ତ୍ରଣା ହତାଶା, ରୋଗଭୋଗ, ଅସ୍ଥିରତା ମଧ୍ୟଦେଇ ଗତିକରେ । ତେଣୁ ମଣିଷ ଏହି ଜୀବନକୁ ଅସାର, ତୁଚ୍ଛ, ଶଠତାପୂର୍ଣ୍ଣ ଭାବି ଘୋର ମନସ୍ତାପ ଭୋଗକରେ । ମାତ୍ର ଏହି ନାସ୍ତିବାଚକ ପରିସ୍ଥିତି ମଧ୍ୟରେ ସେ ଭୁଲିଯାଏ କେତେଗୁଡ଼ିଏ ଅସ୍ତିବାଚକ ବାସ୍ତବତାକୁ । ଏହି ପୃଥିବୀରେ ଅଛି ଅତି ସୁନ୍ଦର ଫୁଲ, ଶ୍ୟାମଳ ସବୁଜିମା, ଶସ୍ୟର ହରିତ୍ କ୍ଷେତ୍ର, ହିମାଳୟର ହିମପ୍ରଭ ଉତ୍ତୁଙ୍ଗ ଶିଖର ରାଜି, ଅନନ୍ତ ବାରିଧିର ସୁନିଳ ଜଳରାଶି, ଚଳଚଞ୍ଚଳ ଶବ୍ଦାୟମାନ ଲହରୀମାଳା, ପୂର୍ଣ୍ଣିମାର ଜହ୍ନ, କଳକଳ ନାଦିନୀ ସ୍ରୋତସ୍ୱିନୀ, ନିର୍ମଳ ନିର୍ଝରିଣୀ ଓ ଆହୁରି ଅନେକ ଅନେକ ନୟନାଭିରାମ ଦୃଶ୍ୟରାଜି । ସେଥିରେ ମନଦେଲେ ମଣିଷ ତାର ଅପୂର୍ଣ୍ଣତାକୁ ଭୁଲି ମହାବିଶ୍ୱର ପରିପୂର୍ଣ୍ଣତାରେ ନିଜକୁ ହରାଇ ବସେ । ବିଶାଳ ବ୍ୟାପ୍ତିରେ ଭୂମାର ସଂସ୍ପର୍ଶରେ ଆସି ନିଜକୁ ତାହାର ଅଂଶବୋଲି ଅନୁଭବ କରେ । ସେତେବେଳେ ଏହି ମର ପୃଥିବୀରେ ବସି ମଧ୍ୟ, ତାର ଅଭିଜ୍ଞତା ସସୀମତାରୁ ଅସୀମତା ଆଡକୁ ପ୍ରବାହିତ ହୁଏ । ସେ ବୁଝିପାରେ ଯେ ମହାନ ବୃକ୍ଷରାଜି ମଣିଷଠାରୁ ଆଘାତ ପାଇମଧ୍ୟ ଫଳ, ପୁଷ୍ପ, ପତ୍ର, କାଠ ଯୋଗାଇବାରେ କୃପଣତା ଦେଖାଉ ନାହାନ୍ତି । ବାୟୁରେ ଦୁର୍ଗନ୍ଧମୟ କାରଖାନାର ଧୂଆଁ ଓ ବାଷ୍ପ ମିଶିଲେ ମଧ୍ୟ, ବାୟୁ ତାର ପ୍ରବାହ ଅବ୍ୟାହତ ରଖିଛି । ନଦୀରେ ଅତି ବିଷମୟ ରାସାୟନିକ ପଦାର୍ଥ ମଣିଷ ଢାଳିଲେ ମଧ୍ୟ, ନଦୀ ତାହାର ସ୍ରୋତ ବନ୍ଦ କରିଦେଇ ନାହିଁ । ସେହିପରି ସୂର୍ଯ୍ୟ ନିରଳସ, ଅବିଶ୍ରାନ୍ତ ଭାବରେ ତାହାର ଆଲୋକ ରଶ୍ମି ପୃଥିବୀକୁ ଦାନକରି ଏଠାର ସମସ୍ତ ଜୀବନୀଶକ୍ତିକୁ ସବଳ, ସୁଦୃଢ଼ କରି ରଖିଛି ଆବହମାନକାଳରୁ, କୌଣସି ପ୍ରତ୍ୟୁପକାର ଆଶା ନକରି । ଏହି ପ୍ରାକୃତିକ ଶକ୍ତି ଗୁଡିକ କାହିଁକି ନିଜକୁ କ୍ଷୟକରି

ଅନାଦି ଅନନ୍ତକାଳ ପର୍ଯ୍ୟନ୍ତ ନିଜର କର୍ତ୍ତବ୍ୟରେ ଅଟଳ ରହିଛନ୍ତି ? ଏହି ପ୍ରଶ୍ନଟିକୁ ତଳେଇ ବୁଝିଲେ ମଣିଷ ନିଜେ ହୃଦୟଙ୍ଗମ କରିପାରିବ ଯେ କୌଣସି ଗୋଟିଏ ଅଦୃଶ୍ୟ ଶକ୍ତି ଏଗୁଡ଼ିକୁ ସୃଷ୍ଟିକରି ଚାଳନା କରୁଅଛି କୌଣସି ଗୋଟିଏ ମହତ୍ ଉଦ୍ଦେଶ୍ୟରେ । ଆଗରୁ ବିଚାରରେ ସିଦ୍ଧ ହୋଇଛି ଯେ ସବୁଠାରୁ ଅଲୌକିକ ସୃଷ୍ଟି ହେଲା "ଜୀବନ" । ଏହି ମହାର୍ଘ ଜୀବନ କେବଳ ମଣିଷ ମଧ୍ୟରେ ନୁହେଁ, ସମଗ୍ର ଜୀବଜନ୍ତୁ, ବୃକ୍ଷଲତା, କୀଟ ପତଙ୍ଗ, ସ୍ଥାବର ଜଙ୍ଗମ ମାନଙ୍କ ମଧ୍ୟରେ ପରିବ୍ୟାପ୍ତ । ସାର୍ ଜଗଦୀଶ ଚନ୍ଦ୍ରବସୁ "କ୍ରେକୋଗ୍ରାଫ" ସାହାଯ୍ୟରେ ପ୍ରମାଣ କରିଥିଲେ ଯେ ସାମାନ୍ୟ ଟିଣରେ ମଧ୍ୟ ଜୀବନର ଉପସ୍ଥିତି ଏକ ବିରାଟ ସତ୍ୟ । ମଣିଷ ମଧ୍ୟରେ ଜୀବନର କ୍ରମବିକାଶ ଘଟି ଏହା ସ୍ଥୂଳରୁ ସୂକ୍ଷ୍ମ, ସୂକ୍ଷ୍ମରୁ ଓ ସୂକ୍ଷ୍ମତମ ସୋପାନକୁ ଧୀର ମନ୍ଥର ଗତିରେ ଅଗ୍ରସର । ଏହି ଉପଲବ୍ଧି-ପ୍ରସୂତ ଜ୍ଞାନ ମଣିଷର ଆଖି ଖୋଲିଦିଏ । ସମଗ୍ର ବିଶ୍ୱ ଏକ ସଂବାଦ ବହନ କରି ଆଣେ; ଏକ ବାର୍ତ୍ତାର ଅଣୁରଣନ କରେ ଯେ ଜୀବନ ସର୍ବଶ୍ରେଷ୍ଠ ସୃଷ୍ଟି ବିଶ୍ୱର ସୃଷ୍ଟିକର୍ତ୍ତାଙ୍କର । ଏହାର କାଳଜୟୀ କୃତି ମଣିଷର ଜୀବନରେ ମଧ୍ୟ ସୁସ୍ପଷ୍ଟ ସ୍ନେହ-ପ୍ରୀତି-ମମତାରେ, ପ୍ରେମର ବନ୍ଧନରେ, ବନ୍ଧୁତ୍ୱର ବେଷ୍ଟନୀରେ, ବନ୍ଧୁମାନଙ୍କ ସହଯୋଗରେ, ବିଶ୍ୱବାସୀଙ୍କ ଏକତ୍ୱ ଭାବନାରେ, ସଂଘବଦ୍ଧତାରେ, ସହାବସ୍ଥାନରେ, ଏକତାବଦ୍ଧ ହୋଇ ସଂଗ୍ରାମ କରିବାରେ, ସହମର୍ମୀତାରେ; ଶେଷରେ ସେହି ସୃଷ୍ଟିକର୍ତ୍ତାଙ୍କ ସ୍ତୁତିଗାନ କରିବାରେ ଓ ଅନନ୍ତ ଅନାଦିରେ ନିର୍ବାଣ ପ୍ରାପ୍ତିରେ । ଏହି ଅନୁଭବ ପରେ ମଣିଷ ମନରେ ଜାତ ହୋଇଛି ଦୟା, କ୍ଷମା, ବିଶ୍ୱପ୍ରେମ, ବୀରତ୍ୱ, ଶୌର୍ଯ୍ୟ, ବୀର୍ଯ୍ୟ, ସାହସ, ଧୈର୍ଯ୍ୟ, ଉଦାରତା, ପରୋପକାରିତାର ଇଚ୍ଛା, ସହଯୋଗ ଓ ଶାନ୍ତିର ବାର୍ତ୍ତା । ବ୍ୟକ୍ତିର ଦୁଃଖ ଦୁର୍ଦ୍ଦଶା, ସମଷ୍ଟିର ଆନନ୍ଦରେ ନିଜକୁ ହରାଇବସେ, ନୈରାଶ୍ୟକୁ ଭୁଲିଯାଏ । ଅନ୍ୟର ସୁଖରେ ନିଜର ସୁଖକୁ ଜଳାଞ୍ଜଳି ଦେଇ ତ୍ୟାଗରୁ ସର୍ବଶ୍ରେଷ୍ଠ ଭୋଗର ସନ୍ଧାନ ପାଏ ମଣିଷ । "ତେନ ତ୍ୟକ୍ତେନ ଭୁଞ୍ଜିଥା"। ଏଥିରୁ ଜାତ ହୁଏ ସହନଶୀଳତା, ବଦାନ୍ୟତା, ମହାନୁଭବତା ଓ ବଳିଷ୍ଠ ମୂଲ୍ୟବୋଧ ସମୂହ । ଏହି ସ୍ତମ୍ଭଗୁଡ଼ିକ ଉପରେ ନିର୍ମିତ ହୁଏ ମଣିଷର ସଭ୍ୟତା କାଳ କାଳ ଧରି । ବ୍ୟକ୍ତି ବିଶେଷର ସମ୍ୟକ୍ ଜ୍ଞାନ ଉପରେ ଛିଡ଼ାହୁଏ ସମଷ୍ଟିଗତ ଗୁଣରାଶି । ଜଣେ ଚାଲିଗଲେ ଦୀପ ଲିଭିଯାଏ ନାହିଁ । ଆଉଜଣେ ସେହି ଦୀପକୁ ଉଠାଇ ନିଏ । ଏହିପରି ଅସୀମ କାଳ ଧରି ଜ୍ଞାନର ଦୀପଶିଖା ଅଲିଭା ହୋଇରହେ । ଦିବ୍ୟଭାବ ରାଶିର କେବେହେଁ ଅନ୍ତ ହୁଏ ନାହିଁ । ଏହି ଧାରଣା ବଳବତ୍ତର ହେଲେ, ମହାଜୀବନର ସୂତ୍ରପାତ ହୁଏ । ମଣିଷ ଗୋଟିଏ ପରେ ଗୋଟିଏ ସୋପାନରେ ଚଢ଼ି ଶେଷରେ ତାର ଜୀବନର ଶେଷ-ଉଦ୍ଦେଶ୍ୟକୁ ସାକାର କରେ । ତେବେ, ବ୍ୟକ୍ତିର ଜୀବନରେ ଅନେକ ବାଧାବିଘ୍ନ ତାକୁ ବ୍ୟଥିତ କରେ । ଜୀବନର ମୁଖ୍ୟ

ସୋତ୍ରରୁ ଅଲଗା କରି ରଖେ । ସେଥିରେ ସେ ମୂହ୍ୟମାନ ହୋଇପଡ଼େ; ଯେପରି ଜରାର ଉତ୍‌ପୀଡ଼ନରେ ମଣିଷ ତାର ଭାରସାମ୍ୟ ମଝିରେ ମଝିରେ ହରାଏ । ତାହାର ମଧ୍ୟ ନିଦାନ ଅଛି । ମଣିଷର ଚେତନାର ଉନ୍ନତି ସହିତ ନିଜକୁ ଈଶ୍ୱର-ସମର୍ପିତ କର୍ମରେ ସଦା ନିଯୁକ୍ତ ରଖିଲେ, ଦୁଃଖ ଲାଘବ ହୋଇ ଜରାର କ୍ଷୟାବସ୍ଥାରେ ମଧ୍ୟ ଆନନ୍ଦର ପ୍ରକାଶ ସୃଷ୍ଟ ହୁଏ । ଏହା ଫଳରେ ଜରାର ପ୍ରକୋପ ଶାନ୍ତ ହୋଇଆସେ । ବୃଦ୍ଧମାନେ ଶାନ୍ତିର ପ୍ରଲେପରେ ନିର୍ବାଣ ପ୍ରାପ୍ତ ହୁଅନ୍ତି ।

ଏହି ପ୍ରସଙ୍ଗରେ ଏକ ବିଶେଷ ସତ୍ୟର ଉଲ୍ଲେଖ ଆବଶ୍ୟକ । ଅନେକ କ୍ଷେତ୍ରରେ ଦୁଃଖ ଜର୍ଜରିତ, ନୈରାଶକ୍ଷୁବ୍ଧ, ଅନୁତାପ ଦଗ୍ଧ ମଣିଷକୁ ଈଶ୍ୱରଙ୍କର ''ଅହେତୁକୀ କୃପା'' ମିଳିଥାଏ । ଯେପରି ବିଲ୍ୱମଙ୍ଗଳ, ଜଗାଇ ମାଧାଇ ଇତ୍ୟାଦିଙ୍କୁ ମିଳିଥିଲା । ଏହି କୃପାଲାଭର କୌଣସି ସ୍ଥିରପଦ୍ଧତି ନାହିଁ । ଏହା ଏକାବେଳେକେ ଈଶ୍ୱର-ନିର୍ଭର, ହେତୁବିହୀନ; ଅନୁକମ୍ପାରୁ ମଧ୍ୟ ଜାତ ନୁହେଁ । ଏହାର ନୀତି କେବଳ ଈଶ୍ୱରଙ୍କୁ ହିଁ ଜଣା । ମାତ୍ର ମନୁଷ୍ୟର ଆଶାପୋଷଣର ଅଧିକାର ଅଛି । କେତେବେଳେ କାହାକୁ ମିଳିବ ତାହା କୁହାଯାଇପାରେ ନାହିଁ । ଦୁଷ୍ଟ, ପୀଡ଼ିତ, ଦୁର୍ଦ୍ଦଶାଗ୍ରସ୍ତ ମାନବର ଶେଷ ଆଶା ''ଅହେତୁକୀ କୃପା'' ଯଥା ଦଣ୍ଡ ମିଳିବା ପରେ ଅଦାଲତରୁ ଯାଇ ରାଷ୍ଟ୍ରପତିଙ୍କ ନିକଟରେ କ୍ଷମା ଭିକ୍ଷା ସଦୃଶ । ଏହା ଅଲଭ୍ୟ ନୁହେଁ । ଏହା ମିଳିବାର ନଜିର ଅଛି । ଏ ପ୍ରସଙ୍ଗରେ ଶ୍ରୀ ଅରବିନ୍ଦଙ୍କ ସ୍ପଷ୍ଟିକରଣ ଉଲ୍ଲେଖ ଯୋଗ୍ୟ । ଏହି ଅହେତୁକୀ କୃପା କେବଳ ଦୁଷ୍ଟ, ଦଳିତଙ୍କ ନିମନ୍ତେ ଉଦ୍ଦିଷ୍ଟ ନୁହେଁ । ଏହା ଧାର୍ମିକ ଲୋକମାନଙ୍କ ଉପରେ ମଧ୍ୟ ବର୍ଷିତ ହୁଏ । ଏହା ଫଳରେ ସେମାନଙ୍କର ଚେତନା ଅତି ଉର୍ଦ୍ଧ୍ୱକୁ ଉନ୍ନିତ ହୋଇ ସେମାନଙ୍କୁ ଶୁଦ୍ଧଚୈତନ୍ୟ ପ୍ରଦାନ କରିଥାଏ । ଏ ବିଷୟରେ କହିବାକୁ ଯାଇ ଆଚାର୍ଯ୍ୟମାନେ ଈଶ୍ୱରକୃତ ଆଧ୍ୟାତ୍ମିକ ନିୟମ ଓ ଅହେତୁକୀ କୃପା ମଧ୍ୟରେ ପ୍ରଭେଦ ଦର୍ଶାଇ ଅଛନ୍ତି । ଈଶ୍ୱରଙ୍କ କୃପାର ନିୟମ ଜ୍ଞାତ-ପରିଜ୍ଞାତ ଆଧ୍ୟାତ୍ମିକ ନିୟମଠାରୁ ପୃଥକ । ଏହା ମନୁଷ୍ୟର ଅଜ୍ଞାତରେ ତାର ମନର ଗହଣରେ ଗଭୀର ରହସ୍ୟରେ କାମକରେ । କୃପା ଆପେ ଆପେ ଆସେ । ଏହା ମଣିଷର ପୂର୍ବଜନ୍ମ ଲବ୍ଧ କର୍ମର ଅଧୀନ ନୁହେଁ, ଅନୁକମ୍ପା ଭିତ୍ତିକ ନୁହେଁ । ଏହା କେବଳ ବିଶେଷ କୃପାରୁ ଜାତ । ମଝିରେ ମଝିରେ କୃପା-ବୃଷ୍ଟିରେ ବ୍ୟାଘାତ ମଧ୍ୟ ଜନ୍ମେ । କେତେକ ଅଦୃଶ୍ୟ ଶକ୍ତି ଏହାର ବିରୋଧକରିବାକୁ ଚେଷ୍ଟା କରନ୍ତି । ମାତ୍ର ଏହି କୃପାବାରି ଅବ୍ୟର୍ଥ ଭାବେ ପ୍ରାଣୀ ମାନଙ୍କ ଉପରେ ବର୍ଷିତ ହୁଏ । ଏହା ଈଶ୍ୱରଙ୍କର ଏକ ଅଭାବନୀୟ ଦୟାର ବିଶେଷ ନିଦର୍ଶନ । ତେଣୁ ଜରାଗ୍ରସ୍ତ ବୃଦ୍ଧ, ରୋଗଗ୍ରସ୍ତ ଜୀବ, ଦୁଃଖ-ନୈରାଶ୍ୟ-ଦଗ୍ଧ ମଣିଷ ଈଶ୍ୱରଙ୍କର ଅପାର କରୁଣା ଉପରେ ବିଶ୍ୱାସ ରଖି, ନିଜର କର୍ତ୍ତବ୍ୟ ଉତ୍ସର୍ଗୀକୃତଭାବରେ କଲେ, ଜୀବନର ଭାର ଲାଘବ ହୋଇ,

ମନର ପ୍ରସନ୍ନତାର ପ୍ରକାଶ ମାଧ୍ୟମରେ ନିଜର ଶେଷ ଜୀବନର ମୂଲ୍ୟ ଖୋଜି ପାଏ । ସେ ମନଶ୍ଚକ୍ଷୁରେ ଦେଖେ "ମହାଜୀବନ"ର ପ୍ରାଥମିକ ସୋପାନ । ଶ୍ରୀ ଅରବିନ୍ଦ ପୁଣି କହିଛନ୍ତି ଯେ ପୂର୍ବଜନ୍ମାର୍ଜିତ କର୍ମର ପ୍ରଭାବ ଆଧ୍ୟାତ୍ମିକ ଜୀବନ ଆରମ୍ଭ ପରେ ନଷ୍ଟ ହୋଇଯାଏ । ଈଶ୍ୱରଙ୍କ କରୁଣାରୁ ଅନ୍ୟ ପ୍ରଚ୍ଛନ୍ନ, ଗୁପ୍ତ ଓ ରହସ୍ୟମୟ ଶକ୍ତି ଗୁଡିକ ପଛଘୁଞ୍ଚା ଦିଅନ୍ତି । ଏହି ନୂଆ କୃପାଶକ୍ତି ଅତି କ୍ଷମତାଶୀଳ ହୋଇ ମନୁଷ୍ୟର କୃତ-କର୍ମର ଫଳକୁ ବିନାଶ କରି, ତାକୁ ତାର ନିଜ ସ୍ତରରୁ ଉନ୍ନୀତ କରି ତାର ଭବିଷ୍ୟତ ନିର୍ଦ୍ଧାରଣ କରେ । ଏହାର ଶକ୍ତିସ୍ଥଳ, ଗନ୍ତବ୍ୟ-ସ୍ଥଳ, ସମୟ ଓ ମନୁଷ୍ୟ ଜୀବନରେ ଏହାର ପ୍ରୟୋଗ କାହାରିକୁ ଜଣା ନାହିଁ । ମାତ୍ର ଏହା ସ୍ଥିର ନିଶ୍ଚିତ ଯେ ଦିବ୍ୟ-ଭାବନା ବା ଦିବ୍ୟ-ଇଚ୍ଛାର ଅବତରଣରେ ମର୍ତ୍ତ୍ୟର ଅନ୍ଧକାର, ଈଶ୍ୱରୀୟ ଆଲୋକରେ ଦୂରିଭୂତ ହେବ । ଅଜ୍ଞାନ ସ୍ଥାନରେ ଜ୍ଞାନର ବିକାଶ ହେବ; ଶାନ୍ତି, ମୈତ୍ରୀ, ଶୃଙ୍ଖଳା, ପ୍ରେମ, ସୌନ୍ଦର୍ଯ୍ୟ କରୁଣା ଓ ଆନନ୍ଦର ସ୍ରୋତ ପୃଥିବୀରେ ପ୍ରବାହିତ ହେବ । ଏହା ଶ୍ରୀ ଅରବିନ୍ଦଙ୍କର ଦିବ୍ୟଦୃଷ୍ଟି ଓ ଆଶୀର୍ବାଦପୁଷ୍ଟ ମନୁଷ୍ୟର ଭବିଷ୍ୟତ । ପରମ ଅତି-ମାନସ ଚୈତନ୍ୟର ଅବତରଣକୁ ନିଜ ଯୋଗବଳରେ ପୃଥିବୀ ବକ୍ଷରେ ସମ୍ଭବ କରାଇ, ମନୁଷ୍ୟର ଭବିଷ୍ୟତକୁ ଆଲୋକମୟ କରିବାରେ ତାଙ୍କର ଅବଦାନ ମାନବ-ଜାତିର ଇତିହାସରେଏକ ଅତି ଅଲୌକିକ ଘଟଣା । ତାଙ୍କର ପ୍ରତିଷ୍ଠିତ ପଣ୍ଡିଚେରୀ ଆଶ୍ରମରେ ସମନ୍ୱୟ-ପୂର୍ଣ୍ଣ ଯୋଗର (Integrated Yoga) ପ୍ରଭାବ ସୁନିଶ୍ଚିତ ଓ ଶିଷ୍ୟମଣ୍ଡଳିର ତ୍ୟାଗପୁତ ଜୀବନରେ ଏହାର ସାଧନ ଏକ ପବିତ୍ର ଅନୁଷ୍ଠାନକୁ ମହୀୟାନ କରି ରଖିଅଛି ।

ଏଥର ବିଚାର୍ଯ୍ୟ ବିଷୟ ହେଲା ସାଧାରଣ ମନୁଷ୍ୟ ତାର ଜୀବନରେ କଣ ଚାହେଁ ? ପ୍ରତ୍ୟେକ ଲୋକର ନିଜ ଜୀବନରେ ନିଶ୍ଚୟ କିଛି ଆଶା, ଆକାଂକ୍ଷା ଥାଏ । ସେ ଜୀବନକାଳରେ କିଛି ପାଇବା ପାଇଁ ଇଚ୍ଛା କରେ । ତାହାର ଆଶା ପୂରଣ ପାଇଁ ସେ ପ୍ରାଣପାତ ଚେଷ୍ଟା କରେ । ତାହାର ଏହି ପ୍ରଚେଷ୍ଟାଦ୍ୱାରା ତାହାର ଜୀବନର ପ୍ରସାରଣ ଘଟେ । ନାନା ଭାବରେ ନିଜର ଇଚ୍ଛା ପୂରଣ ନିମନ୍ତେ ସେ ଅହରହ ଧାବମାନ, ମଣିଷ ସବୁବେଳେ ଧାଇଁଛି, କଣ ଗୋଟାଏ ପାଇବାକୁ ତାହାର ଭାରି ଇଚ୍ଛା । ଅନେକ ଚେଷ୍ଟା କରି ସେ ପଢ଼ାଶୁଣା କଲା । ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲା । ଚାକିରୀଟିଏ ବା ବ୍ୟବସାୟଟିଏ କଲା । ମାତ୍ର ତାରମନରେ ଶାନ୍ତି ନାହିଁ । ଆହୁରି କଣ ଗୋଟାଏ ପ୍ରାପ୍ତି ରହିଗଲା । ନାଃ, ଯାହାପାଇଲା ତାହା କିଛି ନୁହେଁ । ଏହାଠାରୁ ଆହୁରି ବଡ କିଛି ତାର ପାଇବାର ଥିଲା । ସେ ପୁଣି ଧାଇଁଲା । ଯାହା ପାଇଲା ସେଥିରେ ସନ୍ତୁଷ୍ଟ ନ ହୋଇ ଭାବିଲା ଅନେକ ବଡ କିଛି ତାହାର ପ୍ରାପ୍ୟ । ନେତି, ନେତି । ନା ଏହା ଇତି ନୁହେଁ । ତାକୁ ଆହୁରି ବଡ ହେବାକୁ ହେବ । ପୁଣି ଧାଇଁବାକୁ

ହେବ ସେହି ଜିନିଷଟି ପାଇବା ପାଇଁ । ଫଳରେ ତାର ଜୀବନଯାକ ଧାଇଁବାରେ ଗଲା । ଶେଷରେ ଯାହା ମିଳିଲା ସେଥିରେ ଅସନ୍ତୁଷ୍ଟ ହେଲେ ମଧ, ଆଉ ଧାଇଁବାକୁ ତାହାର ବଳ ବୟସ ନାହିଁ, ଶକ୍ତି ସାମର୍ଥ୍ୟ ନାହିଁ, ଶେଷରେ ଧଇଁସଇଁ ହୋଇ ତାହାର ଜୀବନଟି ଗଲା । ନହେଲା ନାହିଁ ପରଜନ୍ମରେ ଯଦି ହୁଏ । ପୁର୍ନଦର୍ଶନାୟଚ଼ । ପୁଣି ଯଦି ଜୀବନର ଦେଖାମିଳେ, ତେବେ ସେ ବାକିତକ ପାଇବାର ଚେଷ୍ଟା କରିବ । ମୋଟାମୋଟି ଭାବରେ କହିବାକୁ ଗଲେ ମଣିଷ ତାର ଜୀବନରେ ସୁଖହିଁ ଚାହିଁଥାଏ । ଶାରୀରିକ ସୁଖ, ତାହାର ଶରୀର ନିରୋଗ ହେଉ; ବଳବାନ ହେଉ; ସୁନ୍ଦର ହେଉ, ସ୍ୱାସ୍ଥ୍ୟବାନ ହେଉ, ଶକ୍ତହେଉ, ଜୀବନସାରା ସେ ଶାରୀରିକ ସୁଖ ଭୋଗକରୁ । ତାପରେ ସେ ଭାବେ ତାର ମନ ଆନନ୍ଦରେ ଭରପୁର ହେଉ । ସବୁବେଳେ ପ୍ରାପ୍ତିର ଆଶାରେ ଧାବମାନ ହୋଇ କିଛି ମିଳିଗଲେ ସେଥିରୁ ସୁଖ ମିଳୁ । ତାହାର ପରିବାରର ଲୋକେ ଧନ-ଧାନ୍ୟରେ ସୁଖରେ ରହନ୍ତୁ । ତାକୁ ବହୁ ଅର୍ଥ ମିଳୁ । ଐହିକ ଜୀବନ ଅତି ଆନନ୍ଦର ହେଉ । ତାହାର କ୍ଷମତା, ପ୍ରତିପ୍ରତ୍ତି, ପ୍ରଭାବ ସମାଜରେ ବ୍ୟାପ୍ତ ହେଉ । ଲୋକେ ତାକୁ ମାନନ୍ତୁ । ତାକୁ ଭୟ, ଭକ୍ତି କରନ୍ତୁ । ସର୍ବତ୍ର ତାର ପ୍ରତିଭାର ଜୟଜୟାକାର ଶୁଣାଯାଉ । ଅଧିକାଂଶ ଲୋକ ଜୀବନରୁ ଏହି ସବୁ ଆଶା ପୋଷଣ କରିଥାଆନ୍ତି । ଆର୍ଥିକ, ବୃତ୍ତିଗତ, ସାମାଜିକ, ରାଜନୈତିକ ପ୍ରତିଷ୍ଠା ଏ ଜଗତରେ କାମନାର ବସ୍ତୁ । ଏ ଯୁଗର ଚିତ୍ରରେ ମଣିଷର ଦୁର୍ଦ୍ଦମନୀୟ ଆକାଙ୍କ୍ଷାର ପ୍ରତିଫଳନ ଅତି ସହଜ ବୋଧ । ତାର ଅନମନୀୟ ପ୍ରୟାସ ଅପ୍ରତିରୋଧ । ତାର ଉଗ୍ର କାମନାର ରୂପ ଭୟଙ୍କର ଭାବେ ପ୍ରକଟିତ । ମାତ୍ର ଅପରର ସୁଖ ଶାନ୍ତି ବିଘ୍ନିତ କରି, ଅନ୍ୟକୁ ଅବଦମିତକରି, ଅନ୍ୟଲୋକଠାରୁ ଅପହରଣ କରି, ନିଜର ଅର୍ଥ ଲାଳସା ପରିତୃପ୍ତ କରିବାରେ ସଂଘାତର ସୃଷ୍ଟି ହେଉଅଛି । ଆସୁଛି ଘୋର ବିଶୃଙ୍ଖଳା ସମାଜରେ । ବିରୋଧାଭାସ ପ୍ରତ୍ୟହ ଜୀବନରେ । ହିଂସାଦ୍ୱେଷର ବର୍ବର ରାଜତ୍ୱ ମନରେ । ମଣିଷ ମଣିଷ ଭିତରେ ଦ୍ୱନ୍ଦ୍ୱ ଫଳରେ ସାମାଜିକ ଅଶାନ୍ତି ଓ ଅସ୍ଥିରତାର ପ୍ରସାର ହେଉଛି ସମାଜରେ । ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ ଯୁଦ୍ଧ । ପରସ୍ପର ମଧ୍ୟରେ ବୁଝାମଣାର ଅଭାବ । ଫଳରେ ସଭ୍ୟତାପ୍ରତି ବିପଦ । ସ୍ୱାର୍ଥାନ୍ଧ ମାନବର ପଶୁ ପ୍ରବୃତିରେ ତାହାର ସଭ୍ୟତାର ଅବସାନ ଘଟିବ ନାହିଁ ତ ? ଏପରି ପରିସ୍ଥିତିର ବିଶ୍ଳେଷଣ କଲେ ଦେଖାଯିବ ଯେ ବ୍ୟକ୍ତିର ସୁଖ-ପାଇବାର ପ୍ରବଳ ଇଚ୍ଛା ତାହାକୁ ଅନ୍ୟ ସହିତ ସଂଘାତ କରିବାକୁ ପ୍ରବର୍ତ୍ତାଉ ଅଛି । ତାହାର କ୍ଷୁଦ୍ର ଇଚ୍ଛା ପରିପୂରଣ ନ ହେବା ପର୍ଯ୍ୟନ୍ତ ସେ ଅସ୍ଥିର ହୋଇ ରହୁଛି । ନିଜକୁ ନିଜ ସ୍ୱାର୍ଥର କେନ୍ଦ୍ରବିନ୍ଦୁ କରି ଘୁରି ଘୁରି ମରୁଛି । ସତ୍ୟ କଥାଟାକୁ ଉପଲବ୍ଧ କରିବାର ମନର ପ୍ରସାର ବା ବ୍ୟାପ୍ତି ତାହାରନାହିଁ । ତାଫଳରେ ଜୀବନରେ ଏହି ଦ୍ୱନ୍ଦ୍ୱ; ସମାଜରେ ଏହି ଯୁଦ୍ଧ; ପୃଥିବୀରେ ଘୋର ଅଶାନ୍ତି । ତେବେ ସତ୍ୟ କଥାଟା କଣ ? "ଯା ବୈ ଭୂମା ତଦ୍ ସୁଖଂ । ନାଳ୍ପେ ସୁଖମସ୍ତି ।" ଯାହା ସର୍ବବ୍ୟାପୀ, ଯାହା ମହାନ,

ଯାହା ସର୍ବ ପରିବ୍ୟାପ୍ତ ହୋଇ ସମଗ୍ର ବିଶ୍ୱକୁ ଧାରଣ କରିଅଛି, ସେଥିରେ ସୁଖ ଅଛି । ଯାହା କ୍ଷୁଦ୍ର, ଅଳ୍ପ ପରିସର ଭୁକ୍ତ, ଯାହା ସାମାନ୍ୟ ସେଥିରେ ସୁଖ ନାହିଁ । ଅଳ୍ପ ଜିନିଷକୁ ବହୁଲୋକେ ପାଇବାକୁ ଚାହିଁଲେ କେବଳ ମରାମରି କାମୁଡା କାମୁଡି ହେବ ସିନା; ମାତ୍ର କାହାରିକୁ ପ୍ରାପ୍ତି-ସୁଖ ମିଳିବ ନାହିଁ । ମାତ୍ର ଯାହା ଅନନ୍ତ, ଅପରିସୀମ ଓ ଅକ୍ଷୟ, ତାହାକୁ ସମସ୍ତେ ଭାଗକରି ନେଲେ ମଧ୍ୟ, ସେହି ଅନନ୍ତ ପରିଶିଷ୍ଟ ହୋଇ ରହିଯିବ, ଏହିପରି ଅକ୍ଷୟ ବସ୍ତୁଲାଭରେ ସୁଖ ଅନ୍ତର୍ନିହିତ । ଏହିପରି ବସ୍ତୁ ଲାଭର ପ୍ରୟାସରେ ଜୀବନ-ବୃତ୍ତକୁ ବିଶାଳ ଭାବରେ ବୃଦ୍ଧି କରିବାକୁ ପଡିବ । କାରଣ କ୍ଷୁଦ୍ରରୁ କ୍ଷୁଦ୍ରତର ଓ କ୍ଷୁଦ୍ରତମ ବୃତ୍ତରେ ଆବଦ୍ଧ ହୋଇ ରହିଲେ, ଜୀବର ମନ ଅନ୍ଧକାରାବୃତ ହୋଇ ନିରାନନ୍ଦରେ ମଗ୍ନ ହେବ ସିନା, ତାହାର ଇପ୍ସିତ ଫଳ ଲାଭ ହୋଇପାରିବ ନାହିଁ । ସେ ଯେତେବେଳେ ସମାଜରେ ବାସ କରୁଅଛି, ସେତେବେଳେ ଅନ୍ୟ ମାନଙ୍କ ସହିତ ତାହାର ସୁସମ୍ପର୍କ ରଖିବାକୁ ପଡିବ । ତାହା ପ୍ରତିଯୋଗିତା ପାଇଁ ନୁହେଁ, ସହଯୋଗିତା ନିମନ୍ତେ । ପରସ୍ପର ମଧ୍ୟରେ ଉତ୍ତମ ବୁଝାମଣାର ଉତ୍ପତ୍ତିସ୍ଥଳ ହେଲା ଉଚ୍ଚ ଭାବନା । ଯଥା : "ଅୟଂ ନିଜ ପରୋବେତି ଗଣନା ଲଘୁଚେତସାମ୍, ଉଦାର ଚରିତାନାମ୍ ତୁ ବସୁଧୈବ କୁଟୁମ୍ବକମ୍ ।"

ଅର୍ଥାତ୍ ଏ ମୋ ନିଜର ଲୋକ, ସେ ନିଜର ନୁହେଁ ପର; ଏପରି ଭାବନା କ୍ଷୁଦ୍ରମନା ଲୋକଙ୍କର । ଉଦାରଚେତା ଲୋକଙ୍କର କୁଟୁମ୍ବମାନେ ହେଉଛନ୍ତି ସାରା ବିଶ୍ୱର ଅଧିବାସୀ । ସମସ୍ତ ମାନବ ଜାତିକୁ ଆପଣାର କରି ଭାବିବାରେ ସୁଖ ନିହିତ ଅଛି । କେହି ଅନ୍ୟର ଶତ୍ରୁ ନୁହନ୍ତି । ସମସ୍ତେ ଭାଇଭାଇ ହୋଇ ରହିଲେ ବସୁଧାରେ ସୁଖର ପ୍ରସାର ହେବ । କ୍ଷୁଦ୍ରତାର ବିଲୟ ଘଟିବ । ଭାଇଚାରାର ପ୍ରବାହ ବହିବ । ଶାନ୍ତିର ରାଜତ୍ୱ ହେବ ସାରା ବିଶ୍ୱରେ । ସେହି ଶାନ୍ତି ଭାଗକରି ପାଇବେ ପ୍ରତ୍ୟେକ ମନୁଷ୍ୟ ନିଜ ଜୀବନରେ ମଧ୍ୟ । ଅତଏବ ବସୁଧାକୁ ଆପଣାର କରିବାରେ ମହାଜୀବନର ପ୍ରଥମ-ସୋପାନ ରଚିତ ହେବ ମଣିଷଦ୍ୱାରା । ଏହା ସମୁହ ଜୀବନର ପ୍ରଥମ ପଦକ୍ଷେପ । ଜଣେ ବ୍ୟକ୍ତି ନିଜର ସ୍ୱର୍ଗପ୍ରାପ୍ତି ପାଇଁ ପ୍ରୟାସ କରେ, ତାହାର ସୁଫଳ ଯଦି ସେ ସମଗ୍ର ମାନବ-ଜାତିର ଉପକାର ନିମନ୍ତେ ପ୍ରୟୋଗକରି ସମଷ୍ଟି ମଧ୍ୟରେ ତାହାର ପ୍ରାପ୍ତ ସ୍ୱତ୍ତ୍ୱକୁ ବ୍ୟାପ୍ତ କରିବାରେ ସକ୍ଷମ ହୁଏ, ତାହାହେଲେ ତାହାର ଜୀବନର ସାର୍ଥକତା ମନୁଷ୍ୟ-ଜାତି ପକ୍ଷରେ ଅଭିନନ୍ଦନୀୟ । ନଚେତ୍ ତାହା ବ୍ୟକ୍ତି ପକ୍ଷରେ ଯେତେ ସ୍ପୃହଣୀୟ ହେଲେ ମଧ୍ୟ, ସମଷ୍ଟି ପକ୍ଷରେ ତାହା ମୂଲ୍ୟହୀନ ।

ଏହି ପ୍ରସଙ୍ଗରେ ସ୍ୱାମୀ ବିବେକାନନ୍ଦଙ୍କ ବାଣୀ ସ୍ମରଣୀୟ । "Life is short and transient. Those only live, who live for others. The rest are more dead than alive." ଜୀବନ କ୍ଷଣସ୍ଥାୟୀ ଓ ପରିବର୍ତ୍ତନଶୀଳ । ଯେଉଁମାନେ

ଅନ୍ୟମାନଙ୍କ ପାଇଁ ବଞ୍ଚନ୍ତି; ସେହିମାନେହିଁ ପ୍ରକୃତରେ ଜୀବନ ଧାରଣ କରିଥାଆନ୍ତି । ଅନ୍ୟମାନେ କେବଳ ଜୀବନ-ମୃତ ଭାବରେ ବଞ୍ଚିଥାଆନ୍ତି ।

ଏହି ଉକ୍ତିର ସତ୍ୟତା ଅପରିସୀମ । ଜୀବନର ସାର୍ଥକତା ଅନ୍ୟକୁ ସାହାଯ୍ୟ କରିବାରେ; ନିଜକୁ ନୁହେଁ । ଜୀବନର ମୂଲ୍ୟ ସ୍ୱାର୍ଥହୀନତାରେ ସ୍ୱାର୍ଥନ୍ଧତାରେ ନୁହେଁ । ସ୍ୱାମୀ ବିବେକାନନ୍ଦ ତାଙ୍କର ମହାଗୁରୁ ପରମହଂସ ରାମକୃଷ୍ଣଙ୍କ ଭାବଧାରାରେ ଉଦ୍‌ବୁଦ୍ଧ ହୋଇଥିଲେ । ଶ୍ରୀରାମକୃଷ୍ଣ ଜୀବନର ମହାନ କର୍ତ୍ତବ୍ୟ ସ୍ଥିର କରିଦେଇଥିଲେ ନିମ୍ନଲିଖିତ ପଂକ୍ତିରେ :-

''ଶିବଜ୍ଞାନେ ଜୀବସେବା''। ଜୀବକୁ ଶିବ ଜ୍ଞାନ କରି ତାହାର ସେବାରେ କାଳାତିପାତ କରିବା ମଣିଷର ଶ୍ରେଷ୍ଠ କର୍ତ୍ତବ୍ୟ, ମନୁଷ୍ୟର ମହାର୍ଘ-ଜୀବନର ବିଶିଷ୍ଟ ଉଦ୍ଦେଶ୍ୟ । ଏହି ଜୀବସେବାରେହିଁ ତାହାର ଜୀବନର ଚିରିତାର୍ଥତା, ପରିପୂର୍ଣ୍ଣତା ଓ ଲକ୍ଷ୍ୟ-ସିଦ୍ଧି । ଏହି କର୍ତ୍ତବ୍ୟବୋଧରେ ମାନବ ସମାଜର ଆଦର୍ଶ ପରିଣତି ଲୁଚି ରହିଛି । ସମୁହ ଜୀବନର ସାଫଲ୍ୟ କେବଳ ପରସ୍ପର ସାହାଯ୍ୟକୃତ କର୍ମରେ ସନ୍ନିବେଶିତ । ସମୁହଜୀବନର ଅଗ୍ରଗତି ନହେଲେ, ବ୍ୟକ୍ତିଗତ ଜୀବନରେ ମଧ୍ୟ ଅଧୋଗତିର ଛାୟା ପଡିବ । ଶେଷରେ ସମଗ୍ର ମନୁଷ୍ୟ ସମାଜ ଧ୍ୱଂସ ପ୍ରାପ୍ତ ହେବ । ଏକଥା ଯେକୌଣସି ଚିନ୍ତାଶୀଳ ବ୍ୟକ୍ତି ବୁଝିପାରିବେ । ଏହି ସେବା-ବ୍ରତ ଆଦର୍ଶରେ ଅନୁପ୍ରାଣିତ ହୋଇ, ବିବେକାନନ୍ଦ ''ରାମକୃଷ୍ଣ ମିଶନ'' ପ୍ରତିଷ୍ଠା କରିଥିଲେ । ଏହାର ଉଦ୍ଦେଶ୍ୟ ହେଲା ବିଦ୍ୟାଦାନ, ସେବାଦାନ, ଆରୋଗ୍ୟଦାନ, ଚିକିତ୍ସାଦାନ, ଈଶ୍ୱରଧ୍ୟାନ ଓ ପାଠଚକ୍ର ମାଧ୍ୟମରେ ଈଶ୍ୱରଙ୍କ ବିଷୟରେ ଆଲୋଚନା ଓ ଉଚ୍ଚଭାବନାର ପ୍ରସାର । ପୃଥିବୀର ବହୁ ସ୍ଥାନରେ ମିଶନର ଏହି କାର୍ଯ୍ୟକଳାପ ଅବିରତ ଚାଲିଛି । ଚାଲିବ ମଧ୍ୟ । ଏବେ ମିଶନ୍ ଆଦିବାସୀ ଅଧୁଷିତ ଅଂଚଳରେ ବିଦ୍ୟାଳୟମାନ ଖୋଲି ବିଦ୍ୟାର ପ୍ରଚାର କାର୍ଯ୍ୟ ତ୍ୱରାନ୍ୱିତ କରୁଅଛନ୍ତି । ଏହା ଫଳରେ ବହୁ ପଛୁଆ ଗୋଷ୍ଠୀ ଜ୍ଞାନଲାଭ କରି, ସ୍ୱାର୍ଥହୀନ ସେବାର ଆଦର୍ଶରେ ଅନୁପ୍ରାଣିତ ହେଉଅଛନ୍ତି । ସମାଜର ମଙ୍ଗଳ ସାଧିତ ହେଉଅଛି ବହୁଳ ଭାବରେ । ମାତ୍ର ତଥାପି ଏବେ ମଧ୍ୟ ବହୁ ଅନ୍ଧକାରମୟ କ୍ଷେତ୍ର ରହିଛି ଏହି ପ୍ରସାରଣର ବାହାରେ । ଆହୁରି କେତେ ଯେ ଅନୁନ୍ନତ ବର୍ଗ ପୃଥିବୀରେ ଅଜ୍ଞାନର ଅନ୍ଧକାରରେ ସଢୁଛନ୍ତି ତାହା କଳନା କରିହେବ ନାହିଁ । ସେମାନଙ୍କ ପ୍ରତି ମାନବ ସମାଜର ଜ୍ଞାନ-ବାର୍ତ୍ତା କେବେଯେ ଆହ୍ୱାନ ଭଳି କାର୍ଯ୍ୟ କରିବ, ତାହା ଜାଣିହେଉନାହିଁ । ଉଦ୍‌ବୋଧନର ଶଙ୍ଖ ସେମାନଙ୍କ ପାଇଁ କେବେ ବାଜିବ, ତାହା କେବଳ ପରମେଶ୍ୱରଙ୍କୁହିଁ ଜଣା । ସେ ଯାହାହେଉନା କାହିଁକି, ମଣିଷର ନିଜର ଶୁଦ୍ଧତା,

ଶୁଭକର୍ମ, ସତ୍‌ଚିନ୍ତା ଓ ସଦ୍‌ଭାବନା, ସତ୍‌ବିଚାର, ସତବୁଦ୍ଧିର ପ୍ରୟୋଗରେ ମହାଜୀବନ ପଥରେ ତାହାକୁ ଅଗ୍ରସର ହେବାକୁ ପଡିବ । ଏ ବିଷୟର ଦିଗ୍‌ଦର୍ଶନ ବହୁପରିମାଣରେ ବେଦରେ ଲିପିବଦ୍ଧ ଅଛି । ଏହାର ଅନୁସରଣ ସତ୍‌ମାର୍ଗର ପଥପ୍ରଦର୍ଶକ ।

ଋଗ୍‌ବେଦ କହୁଛନ୍ତି ପରମାତ୍ମା ଏକ, ଜ୍ଞାନୀମାନେ ତାଙ୍କୁ ବହୁ ନାମରେ ଡାକନ୍ତି । ''ଏକଂ ସତ୍ ବିପ୍ରା ବହୁଧା ବଦନ୍ତି ।'' ଏହି ମହାବିଶ୍ୱ ପରମାତ୍ମାଙ୍କର ଅନେକ ରୂପରୁ ଜନ୍ମ ଗ୍ରହଣ କରିଅଛି । ଆତ୍ମା ଅବିନଶ୍ୱର । ଏହାର କ୍ଷତିବୃଦ୍ଧି ନାହିଁ । ଋଗ୍‌ବେଦ ପୁନଶ୍ଚ କହିଛନ୍ତି - ''ଈଶାନଃ ବଧଂୟବୟ'' - ମନୁଷ୍ୟ ନିଜର ପରିସ୍ଥିତିର ନିର୍ମାତା । ସେ ବହୁରୂପରେ ଜନ୍ମନିଏ । ସେ ଶୁଭକର୍ମ ସମ୍ପାଦନ କରି ଦେବତା ହୁଏ । ଧର୍ମ-କର୍ତ୍ତବ୍ୟ ପାଳନ କରିବା ଲୋକେ ଦେବତା ଅଟନ୍ତି । ଯେଉଁ ଲୋକ ଆତ୍ମ ବଳିଦାନ କରେ, ପରମାତ୍ମା ତାହାର କଲ୍ୟାଣ କରନ୍ତି । ଯେଉଁ ଲୋକ ସଦାଜାଗ୍ରତ ତାଙ୍କୁହିଁ ଈଶ୍ୱର ଲୋଡନ୍ତି । ସତ୍ୟଧର୍ମର ମାର୍ଗରେ ଦୃଢ଼ନହ । ଏହି ରାସ୍ତାରେ ଚାଲିଲେ ଜୀବନ ସରଳ ହୋଇଯିବ । ହଂସପରି ସଦ୍‌ଗୁଣ ଗୁଡିକର ଗ୍ରାହକ ହୁଅ । କ୍ରୋଧ କର ନାହିଁ । ସମସ୍ତେ ପରସ୍ପରପ୍ରତି ସୌଜନ୍ୟମୂଳକ ବ୍ୟବହାର କରନ୍ତୁ । ସଜ୍ଜନମାନେ ସତ୍‌କର୍ମରେ ସହାୟକ ହୁଅନ୍ତି । ମଧୁର ବଚନ କହ । ଏପରି ବାଣୀ ବ୍ୟବହାର କର, ଯାହା ସମସ୍ତଙ୍କର ହିତର ଉପଯୋଗୀ । କ୍ରୋଧକୁ ନମ୍ରତାଦ୍ୱାରା ଶାନ୍ତ କର । ମଣିଷ ଭିତରେ କେହି ବଡ କେହି ଛୋଟ ନୁହନ୍ତି । ସମସ୍ତେ ଭାଇ ଭାଇ, ଆମ୍ଭେମାନେ ସମସ୍ତେ ପରମାତ୍ମାଙ୍କ ସନ୍ତାନ । ମନୁଷ୍ୟ ଜୀବନ ଶ୍ରେଷ୍ଠ । ମହାନ କର୍ମ ନିମନ୍ତେ ଉଦ୍ଦିଷ୍ଟ । ଯେଉଁ ବ୍ୟକ୍ତି ଗୁଣବାନ ତାହାର ପ୍ରଶଂସା ହୁଏ । ଯେଉଁ ବ୍ୟକ୍ତି ଆକାଙ୍କ୍ଷା କରେ, ତାକୁ ତାହା ପ୍ରାପ୍ତ ହୁଏ । ନିଜ ସାମର୍ଥ୍ୟରେ ଶୁଭକର୍ମ ପୂର୍ଣ୍ଣକର । କର୍ମବୀର ହୁଅ । ଯେଉଁ ବ୍ୟକ୍ତି ଅନୁଶାସନ ମାନେ, ସେହି ଶାସନ କରିବା ପାଇଁ ଉପଯୁକ୍ତ । ଧର୍ମାତ୍ମା କାହାକୁ ଭୟ କରେ ନାହିଁ । ଉତ୍‌ସାହୀ ଲୋକର ଐଶ୍ୱର୍ଯ୍ୟ ପଦଲେହନ କରିଥାଏ । ଦାରିଦ୍ର୍ୟ ଦୂରରେ ରହେ ।

ଋଗ୍‌ବେଦରେ ଏକତା ବିଷୟରେ ଅପୂର୍ବ ଉଲ୍ଲେଖ ରହିଅଛି । ଏହା ସଂହତ ମାନବ ଜୀବନର ମୂଳମନ୍ତ୍ର । ସମୂହ-ଜୀବନର ବିଶିଷ୍ଟ ଆଦର୍ଶ ମଧ୍ୟ । (୧୦/୧୧୧) ''ସଂଗଚ୍ଛଧ୍ୱଂ ସଂବଦଧ୍ୱଂ ସଂବୋ ମନାଂସି ଜାନତାମ୍ ।'' ଅର୍ଥାତ୍ ଏକତ୍ରାବସ୍ଥାନ ଦ୍ୱାରା ବର୍ଦ୍ଧିତ ହୁଅ । ଏକାଠି ଏକସଙ୍ଗରେ ମିଳିତ ଭାବରେ ଭାବ ପ୍ରକାଶକର, ସମସ୍ତଙ୍କର ଜୀବନରେ ହୃଦୟରେ ଓ ମନରେ ଏକତାର ଭାବ ପ୍ରଜ୍ୱଳିତ ହେଉ । ପୁନଶ୍ଚ - ''ସମାନୀ ମଂନ୍ତ୍ରଃ ସମିତି ସମାନୀ'' ଅର୍ଥାତ୍ ସମସ୍ତେ ଏକପ୍ରକାର ବିଚାର କରନ୍ତୁ ଏକ ସମିତିରେ ସଂଗଠିତ ହୋଇ ରହନ୍ତୁ । ଏହାଛଡା, ଶକ୍ତିର ସଂଗଠନ କର, ସଦ୍‌ବିଚାରର ସଂଗଠନ କର । ଅନ୍ୟକୁ କଷ୍ଟ ଦେବାଭଳି କର୍ମ କର ନାହିଁ । ଆତ୍ମଶକ୍ତିର ବିକାଶ ଆବଶ୍ୟକ । ପୁତ୍ରପ୍ରାପ୍ତିର ଇଚ୍ଛା, ଅର୍ଥ ପିପାସା,

ଲୋକମାନ୍ୟତା ପ୍ରଭୃତି ଭାବନାରୁ ଉନ୍ମୁକ୍ତ ରହିବା ଦରକାର । ଏଗୁଡିକରେ ଲିପ୍ତ ହେଲେ ଆତ୍ମା ପତିତ ହୋଇ ଦୁଃଖ ପାଇଥାଏ । ଅଜ୍ଞାନ ଦୁଃଖର ପ୍ରମୁଖ କାରଣ ଅଟେ । ଏହି ଅଜ୍ଞାନରୁ ଊର୍ଦ୍ଧ୍ୱକୁ ଉଠି ଆତ୍ମଜ୍ଞାନ ଲାଭ କରିବାଦ୍ୱାରା ସବୁ କାମନା ଶାନ୍ତ ହୋଇଯାଆନ୍ତି । ପ୍ରଲୋଭନରେ ବିଚଳିତ ହେବା ଉଚିତ ନୁହେଁ । ଈଶ୍ୱରଙ୍କ ଉପାସନା ନିଷ୍ପାପ ଓ ନିର୍ମଳ ହୃଦୟରେ କରିବା ଦରକାର । ପୁଣି ଦଶମ ମଣ୍ଡଳରେ ଋଗ୍‌ବେଦ କହିଛନ୍ତି ଯେ ମଣିଷର ଆତ୍ମବିଶ୍ୱାସର ଶକ୍ତି ଅତ୍ୟନ୍ତ ପ୍ରବଳ । ତାହାର ପ୍ରତିଜ୍ଞାକୁ କେହି ଅନ୍ୟଥା କରିପାରିବ ନାହିଁ । ସାଧାରଣ ବାଧା କାହିଁକି, ବଡ ବଡ ପର୍ବତ ମଧ ମନୁଷ୍ୟକୁ ବାଧା ଦେଇ ପାରିବ ନାହିଁ । ସେ ସୂର୍ଯ୍ୟଠାରୁ ମଧ ବଳବାନ । ଶ୍ରଦ୍ଧା ହୃଦୟର ଉଚ୍ଚ ଭାବନାର ପ୍ରତୀକ । ଏହାଦ୍ୱାରା ଆଧାତ୍ମିକ ଜୀବନ ସଫଳ ହୁଏ । ଧ୍ୟାନ ଓ ଧାରଣାଦ୍ୱାରା ଊର୍ଦ୍ଧ୍ୱଗାମୀ ହୋଇ ଜ୍ୟୋତି ସ୍ୱରୂପ ପରମାତ୍ମାଙ୍କୁ ଦର୍ଶନ କରାଯାଇପାରେ ।  ଆତ୍ମିକ ଓ ମାନସିକ ଦୋଷକୁ ତ୍ୟାଗକରି ନିଜକୁ ନିର୍ମଳ ଓ ପବିତ୍ର କଲେ, ସଫଳତା ଆପେ ଆସିବ ବୋଲି ସାମବେଦରେ ଉଲ୍ଲେଖ ଅଛି । ଚାରିବେଦର ଦିବ୍ୟବାର୍ତ୍ତା କେତେଗୁଡିଏ କ୍ଷେତ୍ରରେ ମନୁଷ୍ୟର କର୍ତ୍ତବ୍ୟକୁ ଚିହ୍ନିତ କରିଅଛି ବିଶେଷ ଭାବରେ । ପ୍ରଥମହେଲା ପରମେଶ୍ୱରଙ୍କ ଚିନ୍ତା ଓ ତାଙ୍କର ଉପାସନା, ଶୁଦ୍ଧପୂତ କର୍ମରେ ବ୍ୟାପୃତ ରହି ଆତ୍ମଶକ୍ତିର ବିକାଶ; ମଣିଷର ସଦାଚାରଦ୍ୱାରା ଶୁଦ୍ଧ ଚରିତ୍ରର ପ୍ରକାଶ, ସଦୁପାୟରେ ଅର୍ଥାର୍ଜନ ଓ ସେହି ଅର୍ଥର ଦାନ ମାଧମରେ ସଦୁପଯୋଗ, ସଂହତି ଓ ଏକତାର ଅବାଶ୍ୟକତା ସମୁହ-ଜୀବନର ମୁଳ-ପତ୍ତନ ନିମନ୍ତେ, ଉଚ୍ଚ ନୀଚ ଭାବନାର ଅସାଧୁତା, ନୀଚ଼ ଗୁଣର ପ୍ରଶ୍ରୟ ନଦେବା, ହିଂସା ଦ୍ୱେଷକୁ ମନରୁ ଉତ୍‌ପାଟନ କରିବା ଓ ସବୁଠାରୁ ଶ୍ରେଷ୍ଠ ବସ୍ତୁ ହେଲା ‘‘ଶ୍ରଦ୍ଧା’’ । ଏହି ଶବ୍ଦଦ୍ୱାରା ସକଳ ଆଧାତ୍ମିକ ସାଧନର ଫଳପ୍ରାପ୍ତି । ତ୍ୟାଗଭାବ, ଅନ୍ୟପ୍ରତି ସହାନୁଭୂତି, ଦାନକ୍ରିୟାରେ ଦୁସ୍ଥ ଦୁର୍ଗତଙ୍କର ସାହାଯ୍ୟ ଓ ସତ୍‌ସଙ୍ଗଦ୍ୱାରା ସ୍ୱଭାବ ର ଉନ୍ନତି, ମହାଜୀବନର କେତେଗୁଡିଏ ସ୍ଥିର ସୋପାନ ସୁଦୃଢ଼ ଭାବରେ ନିର୍ମିତ ଇହଲୋକରେ ।

ଭାରତର ସର୍ବଶ୍ରେଷ୍ଠ ଋଷି, ମହାମୁନି କୃଷ୍ଣଦ୍ୱୈପାୟନ ବ୍ୟାସ, ପୃଥିବୀର ମହତ୍ତମ ଗ୍ରନ୍ଥ ‘‘ମହାଭାରତ’’ ରଚନା କରି ତାଙ୍କ ଚିନ୍ତାଧାରାର ପରାକାଷ୍ଠା ଦେଖାଇଛନ୍ତି । ସେହି ଗ୍ରନ୍ଥର ମଧ-ମଣି ହେଉଛି ଶ୍ରୀମଦ୍ ଭଗବତ୍ ଗୀତା । ଏହା ଏକ ପରମାଶ୍ଚର୍ଯ୍ୟ ରଚନା ଏକ ମନୁଷ୍ୟର । ଶୀର୍ଷଚିନ୍ତାର ଅପୂର୍ବ ସମନ୍ୱୟ ଏହି ‘‘ଗୀତା’’ରେ ନିବଦ୍ଧ, ଅବିଶ୍ୱାସ୍ୟ ଭାବରେ ଏକ ଚିନ୍ତା ନାୟକଙ୍କଦ୍ୱାରା । ତାହାର ବହୁଳ ଉଦ୍ଧୃତି ପୂର୍ବବର୍ତ୍ତୀ ଅଧ୍ୟାୟ ଗୁଡିକରେ ସ୍ଥାନ ପାଇଅଛି । ବ୍ୟାସଙ୍କ ସୂତ୍ରରେ ମଣିମାଣିକ୍ୟ ସଂଯୁକ୍ତ ହୋଇ  ରହିଅଛନ୍ତି । ‘‘ସୂତ୍ରେ ମଣିଗଣାଇବ’’ । ସେଗୁଡିକର ଆଲୋଚନା ଶେଷ ଚରଣରେ ଅନାବଶ୍ୟକ । କେବଳ ଏତିକି ଲେଖିବା ଏଠାରେ ପ୍ରାସଙ୍ଗିକ ହେବ ଯେ ସମଗ୍ର ମହାଭାରତ ଲେଖିଲାପରେ

ବେଦବ୍ୟାସ ପାପପୂଣ୍ୟ ବିଷୟରେ ଏକ ସାରଗର୍ଭକ ମନ୍ତବ୍ୟ କରି ଯାଇଛନ୍ତି । ସବୁ ଗ୍ରନ୍ଥର ସର୍ବସାର କହିଲେ ଅତ୍ୟୁକ୍ତି ହେବ ନାହିଁ । ତାହାହିଁ ଏହି ପରିପ୍ରେକ୍ଷୀରେ ଉଲ୍ଲେଖଯୋଗ । ‘‘ପରୋପକାରାୟ ସ୍ୱାର୍ଗାୟ, ପାପସ୍ତୁ ପରପୀଡ଼ନମ୍ ।’’ ପରୋପକାର ମଣିଷକୁ ସ୍ୱର୍ଗଲାଭରେ ସାହାଯ୍ୟ କରେ; ପରକୁ ପୀଡାଦେଲେ ପାପ ହୁଏ । ଏହି ବଚନଟି ଏକ ଅତି ଉତ୍କୃଷ୍ଟ ନିଷ୍କର୍ଷ ସର୍ବଶେଷ ସତ୍ୟର । ବଧୂ ନିର୍ଯ୍ୟାତନା ଓ ହତ୍ୟାରୁ ଆରମ୍ଭ କରି, ଅତ୍ୟାଚାର ଓ ଦୁଷ୍କର୍ମରେ ମଣିଷର ରାଜ୍ୟ ଉଜୁଡ଼ି ପଡୁଛି । ଯେତେଦିନ ଯାଉଛି, ସଭ୍ୟତାର ଉନ୍ନତି ବଦଳରେ ପାପର ଭାର ଦିନଦିନ ବଢ଼ି ଚାଲିଛି । ପରପୀଡନର ଧୃଷ୍ଟତା ଦୃଷ୍ଟିରୁ Amnesty International ଅର୍ଥାତ୍ ଆନ୍ତର୍ଜାତିକ କ୍ଷମାସଂସ୍ଥା ବିଶେଷ ତତ୍ପରତା ଦେଖାଇବା ସତ୍ତ୍ୱେ ଅତ୍ୟାଚାର କମିନାହିଁ । ଦେଶବିଦେଶରେ ମାନବ-ଅଧିକାର ସଂସ୍ଥା ଗୁଡିକ ମଧ୍ୟ ଅତ୍ୟାଚାର ବିରୋଧରେ ତୀକ୍ଷ୍ଣଦୃଷ୍ଟି ରଖିଅଛନ୍ତି । ସର୍ବତ୍ର ଚେଷ୍ଟା ଚାଲିଛି ଅତ୍ୟାଚାର ନିରୋଧ ନିମନ୍ତେ । ଏହା ଏକ ଶୁଭ ପ୍ରଚେଷ୍ଟା, ଏଥିରେ ସନ୍ଦେହ ନାହିଁ । ମାତ୍ର ପରୋପକାର ପାଇଁ ବିଭିନ୍ନ ଦେଶରେ ଚେତନା ଥିଲେ ମଧ୍ୟ, ପ୍ରତ୍ୟେକ ମଣିଷ ସ୍ତରରେ ଏହା ପ୍ରସାର ଲାଭ କରିପାରିନାହିଁ । ସ୍ୱାର୍ଥର ବିଜୟ ଡଂକା ସର୍ବତ୍ର ଶୁଣିବାକୁ ମିଳୁଛି । କ୍ଷୁଦ୍ରମନର କ୍ଷୁଦ୍ରତର ପ୍ରଭାବରେ ମଣିଷ ମଣିଷ ଭିତରେ ଭେଦ ଭାବ ଏବେ ବି ବଳବତ୍ତର ଅଛି । ଦୁର୍ନୀତିର ବହୁଳ ପ୍ରସାରରେ ସୁନୀତିର ବିଲୟ ଘଟିଛି । ସବଳର ଅତ୍ୟାଚରରେ ଦୁର୍ବଳ ବର୍ତ୍ତମାନ ମଧ୍ୟ ଭୟଭୀତ । ସେଥିପାଇଁ ଭକ୍ତକବି ମଧୁସୂଦନ ଲେଖିଥିଲେ -

‘‘ସବଳର ଅତ୍ୟାଚାର ଦୁର୍ବଳ ଦୁର୍ଗତି --- ଦେଖୁଛୁ ସକଳ ବ୍ୟୋମ
ଗମ୍ଭୀର ମୂରତି, ତୋପରି ବୁଝିବ କିଏ ପୃଥିବୀ ବେଦନା ?’’

ଯେତେଦିନ ଯାଏ ଅନାଚାର, ଅତ୍ୟାଚାର, ଭ୍ରଷ୍ଟାଚାର, ଦୁର୍ବ୍ୟବହାର, ଦୁରାଚାର ମାନବ ଚରିତ୍ରରୁ ନିଶ୍ଚିହ୍ନ ହୋଇନାହିଁ, ସେତେଦିନ ପର୍ଯ୍ୟନ୍ତ ଦିବ୍ୟ-ଜୀବନର ପ୍ରବେଶ ମନ୍ଦୀକୃତ ହୋଇରହିବ । ପରୋପକାର ଏ ଯୁଗର ମଣିଷର ଏକ ବ୍ରତ ଭାବରେ ପାଳନ କରାଗଲେ, ତାହା ବାଧ୍ୟତାମୂଳକ ଭାବେ ସମାଜ-ଜୀବନର ଅଙ୍ଗ କରାଗଲେ, ମଣିଷର ମୂଲ୍ୟାୟନର ପନ୍ଥାଭାବେ ନିର୍ଦ୍ଦିଷ୍ଟ କରାଗଲେ, ତାହାର ପ୍ରତିଷ୍ଠା, ସମ୍ମାନ ଓ ସ୍ଥିତିର ଏକ ବଳିଷ୍ଠ ଅଙ୍ଗରୂପେ ଚିହ୍ନିତ କରାଗଲେ, ମଣିଷ ସମାଜର ଏକ ବିରାଟ ପଣିବର୍ତ୍ତନ ଆଶା କରାଯାଇପାରେ । ଯେଉଁମାନେ ଭ୍ରଷ୍ଟାଚାରୀ, ଦୁରାଚାରୀ, ଅନାଚାରୀ ସେମାନଙ୍କୁ ସମଗ୍ର ମାନବ ସମାଜ ଆପାଂକ୍ତେୟ କରି ରଖିଲେ, ଏକ ଘରିକିଆ କଲେ, ବାସନ୍ଦ କଲେ, ଭଦ୍ର ସଭ୍ୟ ମିଳନ ସ୍ଥାନରୁ ବହିଷ୍କାର କଲେ; ସେମାନଙ୍କ ବିରୁଦ୍ଧରେ ନିଷେଧାଜ୍ଞାର ବ୍ୟବସ୍ଥା କଲେ, ମନୁଷ୍ୟ ଜାତିରେ ମୂଲ୍ୟମାନର ପୁନପ୍ରତିଷ୍ଠା ହୋଇ ମହାଜୀବନର ନିଶ୍ଚିତ ସୋପାନ ନିର୍ମିତ ହେବ । ତାନହେଲେ, ଦିବ୍ୟ ଭାବର ପ୍ରବେଶ ବାଧାପ୍ରାପ୍ତ ହେବ ।

ଏହି ପ୍ରସଙ୍ଗରେ ଗୋଟିଏ ଐତିହାସିକ ଘଟଣାର ଅବତାରଣାର ପ୍ରୟୋଜନ । ଲର୍ଡ କ୍ଲାଇଭ ଇଂଲାଣ୍ଡରୁ ଆସି ଏକ କିରାଣୀଭାବେ (Writers Building) ରେ ଯୋଗଦେଇଥିଲେ କଲିକତାରେ । ମାତ୍ର ତାଙ୍କୁ ସେ ଚାକିରୀ ଭଲ ଲାଗିଲା ନାହିଁ । ସେ ବ୍ରିଟିଶ ସେନାଦଳରେ ଯୋଗଦେଇ ନିଜର ଯୋଗ୍ୟତାରେ ସେନାପତି ହେଲେ । ନିଜର ବୁଦ୍ଧିବଳରେ ଯୁଦ୍ଧ ଜିତି, ବ୍ରିଟିଶ ସାମ୍ରାଜ୍ୟ ସ୍ଥାପନ କଲେ । ବହୁ ଧନରତ୍ନ ଲୁଟିନେଇ, ଶେଷରେ କାର୍ଯ୍ୟରୁ ଅବ୍ୟାହତି ନେଇ ବିଲାତକୁ ଫେରିଗଲେ । ସେଠାରେ ତାଙ୍କର ଦୁଷ୍କର୍ମ ଗୁଡିକ ପାର୍ଲ୍ୟାମେଣ୍ଟରେ ଆଲୋଚିତ ହେଲା ଏବଂ ତାଙ୍କ ବିରୁଦ୍ଧରେ ନିନ୍ଦାପ୍ରସ୍ତାବ ଅଣାଗଲା । ବହୁ ତର୍କ ବିତର୍କ ପରେ ସେ ଦୋଷୀ ସାବ୍ୟସ୍ତ ହେଲେ ମଧ, ବ୍ରିଟିଶ ସାମ୍ରାଜ୍ୟ ସ୍ଥାପନ କରିଥିବା ଗୌରବ୍‌ଯୋଗୁ ତାଙ୍କୁ ଦଣ୍ଡ ଦିଆଗଲା ନାହିଁ । ସେ ତାଙ୍କର ଦୁର୍ନୀତିଯୁକ୍ତ ଧନ ବ୍ୟବହାର କରି ବିଳାସର ଜୀବନ ଅତିବାହିତ କରୁଥିଲେ । ମାତ୍ର ସେଠାର ଇଂରେଜମାନେ ତାଙ୍କର କ୍ରିୟାକଳାପକୁ ଘୃଣା କରୁଥିଲେ । ତାଙ୍କୁ ସମାଜରୁ ବାସନ୍ଦ କଲେ । ତାଙ୍କ ସହିତ କେହିହେଲେ ମିଳାମିଶା କଲେ ନାହିଁ । ତାଙ୍କର ଏତେ ଧନରତ୍ନ ସବୁ ବୃଥା ହେଲା । କାରଣ ସମାଜରେ ତାଙ୍କର ସ୍ଥାନ ରହିଲା ନାହିଁ । ଏକାକୀ ଜୀବନ ତାଙ୍କୁ ଦୁର୍ବିସହ ମନେ ହେଲା । ଏହିପରି ମାନସିକ ପୀଡାଦ୍ୱାରା ବ୍ୟଥିତ ହୋଇ, ସେ ଜୀବନରେ ହତୋତ୍ସାହ ହୋଇ ପଡିଲେ । ଶେଷରେ ତାଙ୍କର ନିଜର ରିଭଲ୍‌ଭର ଗୁଳିରେ ଆତ୍ମହତ୍ୟା କଲେ । ଏତେଶୌର୍ଯ୍ୟ, ବୀର୍ଯ୍ୟ, ସମ୍ମାନ, ପ୍ରତିପତ୍ତି ତାଙ୍କ ଜୀବନରେ ବୃଥା ହୋଇଗଲା । ସେ ଜାଣିପାରିଲେ ନାହିଁ କେତେବେଳେ ''କାଳ'' ଆସି ପହଞ୍ଚିଯିବ ମଣିଷ ପାଖରେ ।

''ବଡକ୍ରୁର କାଳ ବଡ ଅବିଶ୍ୱାସୀ,
ହାବୁଡି ଯିବଟି ଆଚମ୍ବିତେ ଆସି'' — କବିବର ରାଧାନାଥ

କ୍ଲାଇଭଙ୍କ ଜୀବନ ଇତିହାସର ଏକ ପ୍ରକୃଷ୍ଟ ଉଦାହରଣ ଇହଜଗତର ଧନରତ୍ନ, ମଣିମାଣିକ୍ୟ, ବୈଭବର ଅସାରତାର; ବୀରତ୍ୱ, ସାହସିକତା, ଗର୍ବ ଦମ୍ଭ ଅଭିମାନର ଅସାରବତ୍ତାର । ''ଥିଲେ ଥାଉପଛେ ଗୁଣ ହଜାର ଚରିତ୍ର ନଥିଲେ ସବୁ ଅସାର ।'' ସେହି ରାଧାନାଥହିଁ ଲେଖିଛନ୍ତି । ମାନବ ଜାତିରେ, ସର୍ବତ୍ର ଚରିତ୍ରର ପ୍ରତିଷ୍ଠା ହେଲା ସର୍ବଶ୍ରେଷ୍ଠ ପ୍ରତିଷ୍ଠା । ଏହାର ଅଭାବରେ ଆଜିର ପୃଥିବୀରେ ଅମାପ ଧନ ଅର୍ଜନ ସତ୍ୱେ ଘୋର ବିଶୃଙ୍ଖଳାର ଦ୍ୱୈରାତ୍ମ୍ୟ, ବିରୋଧ, ହିଂସା, ଅଶାନ୍ତି ବିରାଜମାନ । ଜୀବନକୁ ଅର୍ଥବହ କରିବାକୁ ହେଲେ, ଚରିତ୍ରର ଶୁଦ୍ଧତା ଏକାନ୍ତ ଆବଶ୍ୟକ । ଏହାହିଁ ମହାଜୀବନର ମେରୁଦଣ୍ଡ । ଆଜିର ସଭ୍ୟତା ଚରିତ୍ରର ଶୁଦ୍ଧତାର ଅଭାବରେ ସଂକଟାପନ୍ନ ହୋଇ ପଡିଅଛି । ପ୍ରତ୍ୟେକ ମଣିଷର ଜୀବନରେ ଶୁଦ୍ଧତାର ପ୍ରତିଷ୍ଠା ଅତି ଆବଶ୍ୟକ । କଠୋର ଅନୁଶାସନ ମାଧ୍ୟମରେ ଏହାକୁ ପ୍ରତିଷ୍ଠା କରିବାକୁ ହିଁ ହେବ । ନଚେତ୍ ମଣିଷର ଭବିଷ୍ୟତ ଅନ୍ଧକାରମୟ ହେବ ।

## ସ୍ଥୂଳ ଜଗତ୍ ଓ ସୂକ୍ଷ୍ମ ସ୍ପନ୍ଦନ

ବୈଜ୍ଞାନିକ ଗବେଷଣା, ପ୍ରସଙ୍ଗ ଓ ତଥ୍ୟଭିତ୍ତିକ ମହାବିଶ୍ୱ ମହାକାଳ ଓ ମହାଜୀବନର ବିଭିନ୍ନ ଦିଗର ଆଲୋଚନା ପରେ, ସତ୍ୟର ଅନୁସନ୍ଧାନ ବର୍ତ୍ତମାନ ଏକ ଅତି ରହସ୍ୟ ପରିବୃତ, ସୂକ୍ଷ୍ମଶକ୍ତି ପରିପୂର୍ଣ୍ଣ, ଗଭୀର ଗୁଢ଼ ରାଜ୍ୟର ଦ୍ୱାରଦେଶରେ ଉପସ୍ଥିତ । ଏହି ରାଜ୍ୟର ପ୍ରବେଶାଧିକାର କେବଳ ଅତି ତୀକ୍ଷ୍ଣ ଦୃଷ୍ଟି ସମ୍ପନ୍ନ ଶୁଦ୍ଧ ଅନ୍ତଃକରଣର ଅଧିକାରୀ ମାନଙ୍କୁ ପ୍ରକୃତି ଦେଇଥାଏ । ଏହି ସୂକ୍ଷ୍ମରାଜ୍ୟର ଗହନ ବନରେ ଅତି ସାଧାରଣ ମନୁଷ୍ୟର ପ୍ରବେଶ ଅନଧିକାରଚର୍ଚ୍ଚା ବୋଲି ମନେହୁଏ । ମାତ୍ର ସେହି ମରମୀ ସାଧକ ମାନଙ୍କର ଉପଲବ୍ଧି କିୟତ୍ ପରିମାଣରେ ସାଧାରଣ ମନୁଷ୍ୟ ନିକଟରେ ଶିଷ୍ୟପରମ୍ପରାରେ ପ୍ରସାରିତ ହୋଇ ରହସ୍ୟର ଉଦ୍‌ଘାଟନ ସମ୍ଭବପର ହୋଇଅଛି ।

ଈଶ୍ୱରାଶ୍ରୟ, ଈଶ୍ୱରାଧୀନ ମାୟାହିଁ ଜଗତ୍‌ସୃଷ୍ଟିର କାରଣ । ମାୟା ଈଶ୍ୱରଙ୍କ ସହିତ ସମବ୍ୟାପ୍ତ । ଈଶ୍ୱରଙ୍କ ପରି ଆଦି ଅନ୍ତ ହୀନ । ଈଶ୍ୱରଙ୍କର ସୃଷ୍ଟି ଇଚ୍ଛାରୁ ନିର୍ଗୁଣ ଅବସ୍ଥାରେ ପରିବର୍ତ୍ତନ ଘଟି ସତ୍ୱ, ରଜଃ, ତମ ଗୁଣର ଆବିର୍ଭାବ ହୁଏ । ଏହି ଗୁଣଗୁଡିକ ଅଭେଦ ଅବସ୍ଥାରେ ବିଭେଦ ସୃଷ୍ଟିକରି ସୃଷ୍ଟିର ପଥ ସୁଗମ କରିଦିଅନ୍ତି । ସୃଷ୍ଟିର ପୂର୍ବରୁ କେବଳ ମାତ୍ର ଚେତନା ଅସ୍ତିବାଚକ ଅବସ୍ଥାରେ ବିରାଜମାନଥିଲା । ଏହାର କୌଣସି ଗତିପ୍ରକୃତି ନଥିଲା । ଏହା ସ୍ଥିର ଅବସ୍ଥାରେ ଦେଦୀପ୍ୟମାନ ଥିଲା । ଏହି ଚୈତନ୍ୟ ଥିଲା ଏକ ଶୁଦ୍ଧ-ସ୍ଥିତି । ସେତେବେଳେ ଏହି ସ୍ଥିତିରେ ଆଦିବସ୍ତୁର କ୍ଷମତା ମାୟା ରୂପରେ ଉହ୍ୟଥିଲା । ଏହି ''ମୂଳ-ସ୍ୱରୂପ''ର ସୃଷ୍ଟି ଇଚ୍ଛା ଜାଗରିତ ହେଲା । ''ମାୟା'' ଏହି ଇଚ୍ଛାର ଅନୁସରଣ କରି ପ୍ରଥମେ ତିଆରି କଲା ଜଳ । ଏହା ଅପ୍ରକେତ ସଲିଳ ରୂପରେ ବର୍ଣ୍ଣିତ ହୋଇଅଛି । ଏହାର ଅନ୍ୟ ନାମ ହେଲା ''କାଃ'' ବା ''ନାର'' । ଏହି କାଃର ସ୍ୱରୂପ ହେଲେ ''ହିରଣ୍ୟଗର୍ଭ'' । ପ୍ରଜାପତି ବ୍ରହ୍ମା ଈଶ୍ୱରଙ୍କ ସୃଷ୍ଟି ଇଚ୍ଛାକୁ ରୂପାୟନ କରି ନିଜେ ସ୍ୱୟମ୍ଭୁଭାବରେ ପ୍ରତିଭାତ ହେଲେ । ସେ ବ୍ୟକ୍ତ ଓ ଅବ୍ୟକ୍ତ ସ୍ୱରୂପ ମଝିରେ ଏକ ଯୋଗସୂତ୍ର ରଚନା କଲେ ।

''ମାୟା'' ଯେଉଁ ''ଆଦି ଅଣ୍ଡ'' ପ୍ରସବକଲା, ତାହା ଅଣ୍ଡାକାରରେ ବହୁଦିନ ରହିବା ପରେ ଏକ ପ୍ରଚଣ୍ଡ ବିସ୍ଫୋରଣ ହେଲା । ଏହି ବିସ୍ଫୋରଣ ସମୟରେ ''ସମୟ''ର ଜନ୍ମ ହେଲା । ମାତ୍ର ସମୟ ବସ୍ତୁ ଭାବରେ ପ୍ରକାଶ ଲାଭ କରିନାହିଁ । ଏହା ଏକ ମାନସିକ-ମାତ୍ରା ମାତ୍ର । ପ୍ରଜାପତି-ବ୍ରହ୍ମାଙ୍କର ସୃଷ୍ଟିରୁ ଗୋଟିଏ ଘଟଣାର ପାରମ୍ପର୍ଯ୍ୟରେ ''ସମୟ'' ନିରୁପିତ ହେଲା ଗଣନା ମାଧ୍ୟମରେ ।

ପ୍ରଥମ ବସ୍ତୁ ଜଳରୁ ''ପ୍ରାଣ''ର ସୃଷ୍ଟି । ପ୍ରାଣ ଏକ ଅଦ୍ଭୁତ ସୃଷ୍ଟି । ଏହା ସଦା-ଚଞ୍ଚଳ, ସଦାକର୍ମବ୍ୟସ୍ତ, ସଦା ସ୍ପନ୍ଦନଶୀଳ, ସଦା ଶକ୍ତି-ସମୃଦ୍ଧ । ଏହା ଅନ୍ୟ ସମସ୍ତ ବସ୍ତୁକୁ

କ୍ରିୟାଶୀଳ କରିଥାଏ । ମହାଜାଗତିକ କ୍ରିୟା ସମୁହ ପ୍ରାଣର ସ୍ପନ୍ଦିତ ଶକ୍ତିରୁ ନିସୃତ । ଏହି ସୂକ୍ଷ୍ମ-ସ୍ପନ୍ଦନ ଜୀବନର ଆଦି ସୃଷ୍ଟି ରହସ୍ୟର ମୂଳ ଅଟେ ।

ପ୍ରାଣରୁ ଆକାଶର ଜନ୍ମ ହେଲା । ଏହି ଆକାଶ ''ଅଣ୍ଡା ବିସ୍ଫୋରଣ'' ହେଲା ପରେ ପ୍ରାଣରୁ ପ୍ରକାଶ ଲାଭ କଲା । ଏହାର ସ୍ଥିତି ଦୃଢ଼ଭାବରେ ପ୍ରକଟିତ । ସମୟର ସ୍ଥିତି ମାନସିକ; ଐହିକ ନୁହେଁ । ଏହି ଆକାଶର ସ୍ଥିତିରୁ ବସ୍ତୁକଣାର ଉତ୍ପତ୍ତି । ଏହାର ଏକ ବିଶେଷ କ୍ରିୟା ରହିଛି ସୃଷ୍ଟି-ତତ୍ତ୍ୱରେ । ଏହା କେବଳ ଗୋଟିଏ ଧାରଣା-ଭିତ୍ତିକ ବସ୍ତୁ ନୁହେଁ । ଏହା ଏକ କାରଣ ଭିତ୍ତିକ ସ୍ଥିତି । ଏଥିରେ କୋଟି କୋଟି ବ୍ରହ୍ମାଣ୍ଡ ଭାସି ବୁଲୁଛନ୍ତି କଳ୍ପ କଳ୍ପ ଧରି । ଏହା ଏକ ବିସ୍ମୟକର ବିସ୍ତୃତି । ''ବେଦ''ର ବାକ୍ୟ ଅନୁସାରେ ଏହାକୁ ଅନ୍ୟଭାବରେ ''ଅର୍ଣ୍ଣବ'' କୁହାଯାଏ ଏବଂ ସମୟକୁ ସଂବତ୍ସର ଭାବେ ଅଭିହିତ କରାଯାଏ ।

ଏଥର ''ମହା ବିକ୍ଷୋଭ'' ତତ୍ତ୍ୱ ସହିତ ବେଦର ସୃଷ୍ଟି ବର୍ଣ୍ଣନାକୁ ତୁଳନା କଲେ ବୁଝାଯିବ ଯେ ଏହି ଅଣ୍ଡର ବିସ୍ଫୋରଣ ପରେ ଏକ ଅତିମାତ୍ରାରେ ବିଷମ ଭାବରେ ଉତ୍ତପ୍ତ ଅବସ୍ଥାର ସୃଷ୍ଟି ହୋଇଥିଲା । ଏହି ତତ୍ତ୍ୱ Big Bang ର ମୂଳ-ଧାରଣା । ବେଦର ବର୍ଣ୍ଣନା ମଧ୍ୟ ଅନୁରୂପ । ଏହି ବିସ୍ଫୋରଣ ପରେ ସୃଷ୍ଟିର ପ୍ରସାରଣ ପ୍ରଚଣ୍ଡ ଭାବରେ ସବୁ ଦିଗକୁ ଧାବମାନ ହେଲା । ଏହି ବିଷୟରେ ''ପ୍ରଶ୍ନ-ଉପନିଷଦ''ରେ ବିଶଦ ବର୍ଣ୍ଣନା ଅଛି । ଏହି ଉତ୍ତପ୍ତ ଅବସ୍ଥାରୁ ରୟୀଦ୍ୱୟ, ପ୍ରାଣଦ୍ୱୟ ପ୍ରଥମେ ସୃଷ୍ଟ ହେଲା । ଏହି ମୌଳିକ ଦୁଇ ପରସ୍ପର ବିରୋଧୀ ଅସ୍ତି ଓ ନାସ୍ତି ବାଚକ ବସ୍ତୁ କଣାରୁ ବହୁ ବହୁ ବସ୍ତୁ ସୃଷ୍ଟ ହୋଇ ବିଶାଳ ବ୍ରହ୍ମାଣ୍ଡର ଅନିର୍ବଚନୀୟ ପ୍ରକାଶ ହେଲା । ଉପନିଷଦରେ ପ୍ରକାଶିତ ଭାଷା ବା ଶବ୍ଦର ପ୍ରକୃତ ଅର୍ଥ ନିର୍ଣ୍ଣୟ ଏ ଯୁଗରେ କଷ୍ଟକର । ରଜତ, ସୁବର୍ଣ୍ଣ, ରୟୀପ୍ରାଣ ଇତ୍ୟାଦି କ୍ଷୁଦ୍ରକଣା, ବସ୍ତୁରେଣୁ, ଶକ୍ତିକ୍ଷେତ୍ର, ଜଡକ୍ଷେତ୍ର, ପ୍ରଭୃତିର ପ୍ରକାଶକୁ ଇଙ୍ଗିତ କରନ୍ତି । ସେହିପରି ''ତାପ''ର ପ୍ରୟୋଗ ତପସ୍ୟାନ ବୁଝାଇ ପ୍ରକୃତରେ ଉତ୍ତାପକୁ ବୁଝାଇଥାଏ । ପ୍ରବଳ ଅପରିକଳ୍ପନୀୟ ଉତ୍ତାପଦ୍ୱାରା ଆଦିସୃଷ୍ଟିର ପ୍ରସାରଣ ସମ୍ଭବ ହୋଇଥିଲା । ପ୍ରଚଣ୍ଡ ଭାବରେ ଘନାୟମାନ ଉତ୍ତାପଏକ ତରଳ ବାୟବୀୟ (gas) ପଦାର୍ଥ ସୃଷ୍ଟି କରିଥିଲା । ତାହା ''ଅଦିତି'' ନାମରେ ଅଭିହିତ ହୋଇଥିଲା । ଅଦିତିର ପ୍ରକୃଷ୍ଟ ଅର୍ଥ ନିର୍ଦ୍ଧାରଣ ସ୍ଥିରନିଶ୍ଚିତ ଭାବରେ ସମ୍ଭବ ନୁହେଁ । କାରଣ ତ୍ରିକାଳ-ଦର୍ଶୀ ପୁରୁଷଙ୍କ ଭାଷା ପାଞ୍ଚ ଛ' ହଜାର ବର୍ଷ ପରେ ଆଧୁନିକ ମନୁଷ୍ୟର ଧାରଣାରେ ପୂର୍ଣ୍ଣଭାବରେ ବୋଧଗମ୍ୟହେବା କଷ୍ଟକର । ମାତ୍ର ସେହି ଘନିଭୂତ ତରଳ ପଦାର୍ଥର ଅନ୍ୟ ଆଖ୍ୟା ଦିଆଯାଇନାହିଁ । ତେଣୁ ଅଦିତିର ଅର୍ଥ ସେହି ଅବସ୍ଥାକୁହିଁ ଅଙ୍ଗୁଳିନିର୍ଦ୍ଦେଶ କରୁଅଛି ।

ଏଥର ''ପ୍ରାଣ''ର ଆବିର୍ଭାବର ପରବର୍ତ୍ତୀ ଅବସ୍ଥା କଥା ଚିନ୍ତା କରାଯାଉ । ଏହି ଆଦିସୃଷ୍ଟି ପ୍ରାଣରେ ହଠାତ୍ ଭୟାବହ କମ୍ପନର ସୃଷ୍ଟିହେଲା । ଏହି କମ୍ପନର ରୀତି,

ନୀତି, ଗଭୀରତା, ବେଗ ଓ ଭୟାବହତା ବିଷୟରେ ମଣିଷର ଧାରଣା କରିବା ଅସମ୍ଭବ । ଏହି ଅପରିଜ୍ଞାତ, ଅସୀମ, ଅନନ୍ତ କମ୍ପନ ଫଳରେ ବସ୍ତୁ ଗୁଡିକର ଚଳନ ତ୍ୱରାନ୍ୱିତ ହେଲା । ଫଳରେ ମନେହେଲା ସେମାନେ ଯେପରି ସମସ୍ତେ ନାଚୁଛନ୍ତି ଅବିଶ୍ରାନ୍ତ ଭାବରେ । ଏହି କମ୍ପନର ବହୁ ଅଦ୍ଭୁତ ପରିଣତି ଦେଖାଗଲା । ପ୍ରଚଣ୍ଡ ବେଗରେ କମ୍ପୁଥିବା ବସ୍ତୁ ଗୁଡିକ ରହସ୍ୟ ଜନକ ଭାବରେ ଉଭେଇଗଲେ । ସେମାନେ କେଜାଣି କାହିଁକି ଅଦୃଶ୍ୟ ହୋଇଗଲେ । ସେତେବେଳକାର ଘଟଣାର ତ କେହି ସାକ୍ଷୀ ନାହାନ୍ତି । ସବୁ ବର୍ଣ୍ଣନା ଅନୁମାନ-ନିର୍ଭର ବା ମୁନିଋଷିମାନଙ୍କର ଅନ୍ତରର-ଦର୍ଶନ ଉପରେ ପ୍ରତିଷ୍ଠିତ । ସେହି ଆଦି-ସୃଷ୍ଟିର କ୍ରମ-ପରିଣାମ ବିଷୟରେ ବିଜ୍ଞାନ ଓ ଅନୁସନ୍ଧିତ୍ସାର ଆହରଣ ଅତି ସୀମିତ । ଏକାବେଳେକେ ଶୂନ୍ୟ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ସେ ଯାହାହେଉ, ପରବର୍ତ୍ତୀ ବର୍ଣ୍ଣନାରୁ ଏହି ତଥ୍ୟ ମିଳିଛି ଯେ ଏହି ପ୍ରାଥମିକ ବସ୍ତୁକଣା ଅନ୍ତର୍ଦ୍ଧାନ ହେବାପରେ, ଅନ୍ୟ ବସ୍ତୁକଣା ପରିଦୃଷ୍ଟ ହେଲା ଦୁଇଟା ଦୁଇଟା କରି । ଏହାକୁ ''ଦକ୍ଷ'' ନାମରେ ନାମିତ କରାଯାଇଅଛି । ସେଗୁଡିକ ପୁନଶ୍ଚ ଅନ୍ତର୍ହିତ ହୋଇ ସେମାନଙ୍କ ସ୍ଥାନରେ ଆଲୋକ-କଣା, ରଶ୍ମିରେଣୁ ବା ଜ୍ୟୋତି ବିନ୍ଦୁରାଶି ପ୍ରଜ୍ଜ୍ୱଳିତ ଭାବରେ ପ୍ରକାଶ ଲାଭ କଲେ । ଏହି ରେଣୁ ଗୁଡିକ ଅଧିକ କ୍ଷମତା ସମ୍ପନ୍ନ, ବେଗପୂର୍ଣ୍ଣ, ଘୂର୍ଣ୍ଣାୟମାନ ଅବସ୍ଥାରେ ଆଦିବସ୍ତୁକଣାରେ ପ୍ରବିଷ୍ଟହୋଇ ଶକ୍ତି କ୍ଷେତ୍ର ପର୍ଯ୍ୟନ୍ତ ବିସ୍ତାରିତ ହେଲେ । ପୁଣି ଶକ୍ତି କ୍ଷେତ୍ରରୁ ବାହାରି ପୂର୍ବାବସ୍ଥା ପ୍ରାପ୍ତ ହେଲେ । ଏହିପରି ଭାବରେ ଆଦି ସୃଷ୍ଟିରେ ଅପୂର୍ବ ଭାବରେ ଶକ୍ତିର ପ୍ରସାରଣ ଘଟି ବସ୍ତୁକୁ ଭ୍ରାମ୍ୟମାଣ କରି, କ୍ଷମତା ସମ୍ପନ୍ନ କରି ତାକୁ ଏକ ମହନୀୟ ସ୍ଥିତି ପ୍ରଦାନକଲା ମହାବିଶ୍ୱରେ । ଏହି ବସ୍ତୁ-ଶକ୍ତି ସମ୍ପନ୍ନ ହୋଇ, କ୍ରୀୟାଶୀଳ ହୋଇ, ଅପରିସୀମ କ୍ଷମତାବଳରେ ଅତି ଅଦ୍ଭୁତ କର୍ମ କରିବାରେ ସମର୍ଥ ହେଲା ।

ଏହି ପରିପ୍ରେକ୍ଷୀରେ, ଋଗ୍‌ବେଦର ''ଅଦିତି''ର ବର୍ଣ୍ଣନା ପ୍ରାଣସ୍ପର୍ଶୀ ଏକାଧାରରେ ଏହା ପ୍ରଜନନକାରୀ ଓ ଜନ୍ମଲବ୍ଧ ବସ୍ତୁ ମଧ୍ୟ । ଅଦିତି ହେଲା ଆକାଶ ଓ ବାୟୁ । ଏହା ପିତା, ମାତା, ସନ୍ତାନାଦି ସକଳ; ଏହା ପଞ୍ଚଭୂତ, ଜଡ ଓ ଶକ୍ତି; ଏହା ଦେବତା ସମଷ୍ଟି । ଏହା, ପୂର୍ବାବସ୍ଥା ଓ ପରବର୍ତ୍ତୀ ସମୟରେ ଯାହା ପରିଣତି ଘଟିବ ସେଗୁଡ଼ିକର ମହା-ସମଷ୍ଟି । ଅଦିତି ସୃଷ୍ଟି, ବସ୍ତୁ ପ୍ରାଣୀ, ଜୀବ, ଓ ଅନ୍ୟ ସବୁକୁ ଗିଳିଦିଏ । ଅର୍ଥାତ୍ ସୃଷ୍ଟି ଓ ଧ୍ୱଂସ ଏହାର କର୍ମ । ଏହିପରି ନାନା ଧରଣର ଧାରଣା ସେହି ଆଦିସୃଷ୍ଟି ଅବସ୍ଥା ବିଷୟରେ ପ୍ରଚଳିତ ଅଛି । ଉପନିଷଦର ବାଣୀରେ ଏଗୁଡିକ ଅନ୍ତର୍ନିହିତ । ଏଗୁଡିକର ବୈଜ୍ଞାନିକ ପରୀକ୍ଷା ଏବେ ଅସମ୍ଭବ । କାରଣ ସୃଷ୍ଟି-କର୍ତ୍ତା ତାଙ୍କର ସୃଷ୍ଟିପରେ ଦୁଆରବନ୍ଦ

କରିଦେଇଛନ୍ତି । ଗବେଷକ, ବୈଜ୍ଞାନିକ, ଦାର୍ଶନିକ, ଚିନ୍ତାନାୟକମାନେ କେବଳ ସେହି ଦୁଆରରେ ଝାଡୁଦେବାର କ୍ଷମତା ରଖନ୍ତି । ତାହାଠାରୁ ଆଉ କିଛି ବେଶୀ କରି, ରହସ୍ୟ-ଉଦ୍‌ଘାଟନ କରିବାର କ୍ଷମତା ସେମାନଙ୍କ ପାଖରେ ନାହିଁ ।

ଏହି ବିଶ୍ୱସୃଷ୍ଟିରେ ଆକାଶର ଏକ ବିଶେଷ ଭୂମିକା ରହିଛି । ଅତି ଉତ୍ତପ୍ତ ଅବସ୍ଥାରେ ଥିବାବେଳେ ସେଥିରେ ବିବିଧ କ୍ରିୟା ସମ୍ପନ୍ନ ହୋଇ, ସୃଷ୍ଟିର କ୍ରମବିକାଶ ସମ୍ଭବ ହୋଇଥିଲା ଆଦି ଯୁଗରେ । ସେତେବେଳେ ବିଶ୍ୱର କ୍ରମପ୍ରସାରଣ ସହିତ ଆକାଶ ମଧ୍ୟ କ୍ରମଶଃ ସ୍ଫୀତ ହୋଇ ବିଶାଳ ଆକାଶ ଧାରଣ କରିଥିଲା । ଏହା ଯେତେ ବିସ୍ତୃତ ହେଲେ ମଧ୍ୟ, ମହା ବିଶ୍ୱ ସହିତ ଜଡିତ ଏକ ସୀମିତ ସୃଷ୍ଟି । ଏହା ଆଦିଅନ୍ତହୀନ ପରି ମନେହେଲେ ମଧ୍ୟ; ଈଶ୍ୱରଙ୍କ ପରି ଅସୀମ ନୁହେଁ । ଏହାର ମଧ୍ୟ ସୀମା ଅଛି । ଏହି ଆକାଶରୁ ବହୁ ବସ୍ତୁକଣା ଉଦ୍‌ଗତ ହୋଇ ପୁଣି ସେଥିରେ ବିଲୟ ପ୍ରାପ୍ତ ହେଉଥିଲା । ଆକାଶ ଏକ ''ମହାଶୂନ୍ୟ'' ନୁହେଁ । ଏହା ଶୂନ୍ୟ ମଧ୍ୟକୁ ପ୍ରସାରଣ ଲାଭ କରେ ନାହିଁ । ଏହା ଏକ ସୃଷ୍ଟବସ୍ତୁ, ଏକ ବିଶେଷ-ଭାବ ମହାସୃଷ୍ଟିର; ଏକ ବିଶାଳ ଅଙ୍ଗ ସୃଷ୍ଟିକଳ୍ପନାର । ଏହାର ଅମୋଘ ସ୍ଥିତି ସମଗ୍ର ନିହାରିକାପୁଞ୍ଜ ଓ ଛାୟାପଥ ରାଜିଙ୍କ କ୍ରୀଡାକ୍ଷେତ୍ର । ଏହାର ବ୍ୟାପ୍ତିଯୋଗୁ ଗ୍ରହନକ୍ଷତ୍ର ମାନେ ନିଜର ଭ୍ରମଣପଥରେ ନିରନ୍ତର ଭାବରେ ନିଜର ଗତି ଅବ୍ୟାହତ ରଖିଅଛନ୍ତି । ସମଗ୍ର ସୃଷ୍ଟିର କଳ୍ପନା ଆକାଶବିନା ଅସମ୍ଭବ । କାରଣ ଏହାର କୋଳରେ ଅନନ୍ତ ଲୀଳାର ଆର୍ବିଭାବ ଏବଂ ପ୍ରୟାଣ ମଧ୍ୟ । ପୁଣି, ନବସୃଷ୍ଟିରେ ଆକାଶର ମହାନ ଭୂମିକା, ଆକାଶକୁ ଅକ୍ଷୟ କରି ରଖିଅଛି । ଏହା କେଉଁ ବସ୍ତୁ ବା ମାତ୍ରାରେ ତିଆରି ତାହାର ମୀମାଂସା ଏପର୍ଯ୍ୟନ୍ତ ବିଜ୍ଞାନ କରିପାରିନାହିଁ । ଏହାକୁ ଏକ ଶୂନ୍ୟସ୍ଥାନ (Void) ବୋଲି ଅଭିହିତ କରି ନିଜର କର୍ତ୍ତବ୍ୟ ପାଳନ କରିଅଛି । ମାତ୍ର ଉପନିଷଦରେ ଏହାର ବିଶିଷ୍ଟ ସ୍ଥିତି ବିଷୟରେ ଉଲ୍ଲେଖ ଅଛି । ଏହା କ୍ରମବର୍ଦ୍ଧନଶୀଳ । ଏହା ବୃହତ୍‌ରୁ ବୃହତ୍ତର ପରିସରକୁ ବ୍ୟାପୃତହୁଏ ସୃଷ୍ଟିର ଆବଶ୍ୟକତାରେ । ଏହାର ଭୂମିକା ଅତ୍ୟନ୍ତ ତାତ୍‌ପର୍ଯ୍ୟପୂର୍ଣ୍ଣ । ବିଜ୍ଞାନ ଏହାର ପ୍ରକୃଷ୍ଟ କାର୍ଯ୍ୟକାରୀତା ସମ୍ବନ୍ଧରେ ବର୍ତ୍ତମାନ ସୁଦ୍ଧା ଅବଜ୍ଞାତ ନ ହେଲେ ମଧ୍ୟ, ପରେ ଏହାର ପରିବ୍ୟାପ୍ତିର ଉପକାରୀତା ବୁଝିପାରିବ ଏଥିରେ ସନ୍ଦେହ ନାହିଁ । କାରଣ ଦ୍ରଷ୍ଟାଭାବରେ ମହାନ ଋଷିମୁନି ପ୍ରକୃତି-ପ୍ରକ୍ରିୟାକୁ ଅତି ଗୁଢ଼ଭାବରେ ଜାଣି, ତାହାକୁ ସତ୍ୟନିଷ୍ଠ ଭାଷାରେ ପ୍ରକାଶ କରିଅଛନ୍ତି । ସେମାନେ କହିଅଛନ୍ତି ଯେ ଆକାଶରୁ ବାୟୁ ସୃଷ୍ଟି ହୋଇଥିଲା ।

ଏହି ବାୟୁ ସମଗ୍ର ବିଶ୍ୱରେ ହାଇଡ୍ରୋଜେନ ରୂପରେ ଖେଳିଯାଇଥିଲା । ଏହା ମାଧ୍ୟାକର୍ଷଣ ଶକ୍ତିଦ୍ୱାରା ଘନିଭୂତ ହୋଇଥିଲା । ଏହି ଘନିଭୂତହେବାର ପ୍ରକ୍ରିୟା କ୍ରମଶଃ ଅତ୍ୟନ୍ତ ବଳବାନ ହୋଇ ଶେଷରେ ଅଗ୍ନିରେ ପରିଣତ ହେଲା । ଏହି ଅଗ୍ନିମୟ ପଦାର୍ଥ ବା

ଗ୍ୟାସ୍, ସମଗ୍ର ସୃଷ୍ଟିରେ, ସବୁ ନକ୍ଷତ୍ରରେ, ଗହରେ, ଉପଗ୍ରହରେ ବ୍ୟାପୃତ ହୋଇ ରହିଅଛି । ଜ୍ୱଳନ୍ତ ନକ୍ଷତ୍ରମାନେ ଏହାର ଉଦାହରଣ । ଯେଉଁ ଗ୍ରହଗୁଡ଼ିକ ଶୀତଳତ୍ୱ ପ୍ରକ୍ରିୟା ମାଧ୍ୟମରେ ଥଣ୍ଡା ହୋଇ ଜୀବନ ସୃଷ୍ଟିର ପରିବେଶ ସୃଷ୍ଟି କରନ୍ତି ସେଗୁଡ଼ିକରେ ପ୍ରାଣୀ, ଉଦ୍‌ଭିଦ, ମଣିଷଆଦି ସୃଷ୍ଟ ହୋଇ ସଭ୍ୟତାର ବିକାଶ ହୁଏ । ଏବେମଧ୍ୟ ବହୁ ଗ୍ରହ, ନକ୍ଷତ୍ର ଅଗ୍ନିମୟ ଅବସ୍ଥାରେ ଅଛନ୍ତି । କେବଳ ପୃଥିବୀର ପରିବେଶ ଅନୁକୂଳ ହେବା ଯୋଗୁ, ଏଠାରେ ଜୀବନ ସମ୍ଭବପର ହୋଇଅଛି ।

ଏଥର ମୂଳ ବିଷୟ ବସ୍ତୁ ''ସ୍ପନ୍ଦନ'' ଭାବଧାରା ବିଷୟରେ ଆଲୋଚନା ଆବଶ୍ୟକ । କାଶ୍ମିରୀ ଶୈବ-ତତ୍ତ୍ୱରେ ଏହି ଧାରଣାର ମୌଳିକ ଉପାଦାନ ମିଳେ । ଆଦିସତ୍ୟ ବା ଆଦିପୁରୁଷ ପରମଶିବ ବା ମହେଶ୍ୱର ନାମରେ ଅଭିହିତ । ଏହା ଏକ ଶୁଦ୍ଧ ପରିପୂର୍ଣ୍ଣ ଚେତନା । ଏହା ସବୁବେଳେ ସ୍ପନ୍ଦିତ ହୋଇ ରହେ । ଏହି ସ୍ପନ୍ଦନ ଶକ୍ତିଦ୍ୱାରା ସୃଷ୍ଟିର ପାଳନ ଓ ଧ୍ୱଂସ ପ୍ରକ୍ରିୟା ସାଧିତ ହୁଏ । ଏହି ସ୍ପନ୍ଦନ ହେଉଛି ଗତିର ଏକ ବିଭାବ । ଧାବମାନ ଚଳମାନ ପ୍ରକ୍ରିୟାର ଏକ ମହୀୟାନ ଅଂଶ । ଏହା ପୂର୍ଣ୍ଣ ଚଳମାନ ପ୍ରକ୍ରିୟା ନୁହେଁ । ଏହାର ପ୍ରକାଶ ନିଜସ୍ୱ । ଏହା ପରିବର୍ତ୍ତନଶୀଳ ମନେହେଲେ ମଧ୍ୟ ପ୍ରକୃତରେ ଏହାର ପରିବର୍ତ୍ତନ ସଂଘଟିତ ହୁଏ ନାହିଁ । ସ୍ଥିର ଅଚଞ୍ଚଳ ଶୁଦ୍ଧ ଚେତନାର ପ୍ରକାଶ ବହୁଳ । ମାତ୍ର ନିଜେ ଏହା ଅପରିବର୍ତ୍ତନୀୟ । ପରମ ଶିବଙ୍କର ଦୁଇଟି ବିଭାବ ଅଛି । ପୁରୁଷ ବିଭାବ ହେଲା ଶିବ । ସ୍ତ୍ରୀଭାବ ହେଲା ଶକ୍ତି । ପ୍ରକାଶ ବିଭାବରେ ଚୈତନ୍ୟ ନିଜ ପ୍ରଭାବରେ ପ୍ରଜ୍ୱଳିତ ଓ ଦେଦୀପ୍ୟମାନ । ଶକ୍ତି ଭାବରେ ଏହା କ୍ରୀୟାଶିଳ । ଏହି ପ୍ରକୃତିକୁ ''ବିମର୍ଷ'' ମଧ୍ୟ କୁହାଯାଏ । ବିମର୍ଷର ଅନ୍ୟନାମ ''ସ୍ପନ୍ଦନ''। ଶକ୍ତିର କମ୍ପନରୁ ସ୍ପନ୍ଦନର ସୃଷ୍ଟି । ଅବଶ୍ୟ ପରମଶିବ ଚଳମାନ ହୋଇନଥିବାରୁ ତାଙ୍କ ମଧ୍ୟରେ ସ୍ପନ୍ଦନ ଅନ୍ତର୍ନିହିତ ହୋଇ ରହେ । ମହେଶ୍ୱରଙ୍କର ସୃଷ୍ଟି କ୍ଷମତା ସବୁବେଳେ ପରିପୂର୍ଣ୍ଣଭାବରେ ଅବସ୍ଥିତ । ଏଥିରେ କ୍ଷତି ନାହିଁ କି ବୃଦ୍ଧି ନାହିଁ । ତାଙ୍କର ଶକ୍ତିକୁମ୍ଭ ସବୁବେଳେ ଅପରିବର୍ତ୍ତିତ ଭାବେ ସୁରକ୍ଷିତ । ଏହା କେବେହେଲେ କମେ ନାହିଁ । ଏହା ଶୁଦ୍ଧ ଚୈତନ୍ୟ ମହା ସମୁଦ୍ରର ଲହରୀ-ସଦୃଶ । ଏହି ସ୍ପନ୍ଦନ ଦେଶ ବା କାଳରେ ନିବଦ୍ଧ ବା ଆବଦ୍ଧ ନୁହେଁ । ଦେଶ-କାଳର ଏହା ଉପରେ କୌଣସି ପ୍ରଭାବ ନାହିଁ । ଏହା ଦେଶ-କାଳ-ବିଶେଷିଣୀ ରୂପେ ପରିଚିତ । ଏହା କ୍ରମବିବର୍ଜିତ । ଏହି ମତାନୁସାରେ, ପରମପୁରୁଷ ଏହି ସୃଷ୍ଟିର ଉନ୍ମେଷ ଓ ନିଶେଷ କରିଥାଆନ୍ତି । ଏହି ଦର୍ଶନରେ ବୀଜରୁ ବୃକ୍ଷସୃଷ୍ଟି ପରି, ପରମଶିବଙ୍କ ମଧ୍ୟରେ ଏହି ସୃଷ୍ଟି ଅନ୍ତର୍ନିହିତ ଥିଲା । ତାହାହିଁ ପ୍ରକାଶ ଲାଭ କରିଅଛି । ଶକ୍ତିର ସ୍ପନ୍ଦନଦ୍ୱାରା ସୃଷ୍ଟି ଓ ପ୍ରଳୟ ଅନନ୍ତଧାରା ପ୍ରବାହିତ । ସ୍ପନ୍ଦନରୁ ଆନନ୍ଦର ସୃଷ୍ଟି । ସ୍ପନ୍ଦନ ମଧ୍ୟରେ ଆନନ୍ଦର ଅନ୍ତର୍ନିହିତ ସତ୍ତା ସର୍ବଦା ବିରାଜିତ । ଶକ୍ତିଙ୍କର ସ୍ପନ୍ଦନରୁ

ବିଶ୍ୱ-ସୃଷ୍ଟି ହୋଇଅଛି । ପରମଶିବ ନିସ୍ତରଙ୍ଗ ହେଲେ ମଧ, ସ୍ପନ୍ଦନ ମାଧ୍ୟମରେ ନିଜର ପ୍ରକାଶ କରାଇଥାନ୍ତି । ଏହି ସ୍ପନ୍ଦନ ଯୁଗପତ୍ ଭାବରେ ସର୍ବତ୍ର ସମାନ ଭାବରେ ପ୍ରକାଶିତ ହେବାଯୋଗୁ, ମହାସୃଷ୍ଟିରେ ବହୁଳତ୍ୱର ପ୍ରସାର ଦେଖାଯାଏ । ଆଦି-ଶୁଦ୍ଧ-ଚୈତନ୍ୟ ବା ସଂବିତତ୍ତ୍ୱ ସର୍ବତ୍ର ପ୍ରକାଶିତ ହୋଇ ସ୍ୱୟଂ ସମ୍ପୂର୍ଣ୍ଣ ଚିତ୍ରରେ ଉଦ୍‌ଭାସିତ ହୁଅନ୍ତି । ଯାହା ମହାବିଶ୍ୱରେ ଦେଖାଯାଏ ତାହା ଶକ୍ତିର ସ୍ପନ୍ଦନରୁ ସୃଷ୍ଟି । ଏହି ଶକ୍ତି କେବଳ ବିଶ୍ୱର ଉଦୟ ବା ଅସ୍ତରେ ପ୍ରକାଶିତ ନୁହେଁ । ଏହା ସୃଷ୍ଟିର ସ୍ଥିତିରେ ମଧ ପ୍ରତିଫଳିତ । ସୃଷ୍ଟି ସ୍ଥିତି ପ୍ରଳୟର ଚକ୍ର ନିରନ୍ତର ଭାବରେ କ୍ରିୟାନ୍ୱିତ । ଏହାର ବିରାମ ନାହିଁ, ବିଶ୍ରାମ ମଧ ନାହିଁ । ଏହି ପରିବର୍ତ୍ତନର ମହାଚକ୍ର-ପଦ୍ଧତି ପରମଶିବଙ୍କୁ ପରିବର୍ତ୍ତନ କରିପାରେ ନାହିଁ । ସ୍ପନ୍ଦନ ତତ୍ତ୍ୱ ଏକ ବିସ୍ମୟକର ତଥ୍ୟ ବିଶ୍ୱସୃଷ୍ଟିର ରହସ୍ୟ ଉଦ୍‌ଘାଟନ ନିମନ୍ତେ । ଅନ୍ୟ ଭାଷାରେ ବେଦାନ୍ତ ମଧ ସ୍ପନ୍ଦନର ଉଲ୍ଲେଖ କରିଥାଏ । ବିଶ୍ୱର ପ୍ରକାଶ ପ୍ରାଣ, ଚିତ୍ତ, ବିଜ୍ଞାନ ବା ଶବ୍ଦ ବ୍ରହ୍ମଙ୍କର ସ୍ପନ୍ଦନରୁ ସମ୍ଭବ ହୋଇଅଛି । ମାୟାଶକ୍ତିର ସ୍ପନ୍ଦନରୁ ଏହି ବିଶ୍ୱସୃଷ୍ଟି ହୋଇଅଛି । ଉପନିଷଦରେ ବ୍ରହ୍ମସ୍ୱରୂପକୁ ''ସୂତ୍ରାତ୍ମନ୍'' ବୋଲି ବର୍ଣ୍ଣନା କରାଯାଇଅଛି । ଗୋଟିଏ ସୂତ୍ରର କମ୍ପନଯୋଗୁ ସମଗ୍ରବିଶ୍ୱ ସ୍ପନ୍ଦିତ ହେଉଅଛି । ବ୍ରହ୍ମସୂତ୍ରରେ ଲିଖିତ ଅଛି ଯେ ଅବ୍ୟକ୍ତରୁ ବ୍ୟକ୍ତ ହେବା ପଦ୍ଧତିରେ କମ୍ପନ ପ୍ରଣାଳିରେ ପ୍ରାଣର ସୃଷ୍ଟି ହୋଇଅଛି ।

ଏହି ପରିପ୍ରେକ୍ଷୀରେ ଶ୍ରୀରାମକୃଷ୍ଣଙ୍କର ବାଣୀ ଉଲ୍ଲେଖନୀୟ । ପରମବ୍ରହ୍ମଙ୍କର ଦାହିକାଶକ୍ତି ହେଉଛନ୍ତି କାଳୀ । ସେହି ଦାହିକା ଶକ୍ତିର ପ୍ରଭାବରେ ବିଶ୍ୱସୃଷ୍ଟି, ସ୍ଥିତି ଓ ପ୍ରଳୟ ସଂଘଟିତ । ଅର୍ଥାତ୍ ମୂଳ ଚୈତନ୍ୟ ପରମବ୍ରହ୍ମଙ୍କ କ୍ଷମତାର ବ୍ୟବହାରରେ ଶକ୍ତି ବା ମାୟା ସବୁକିଛି ତିଆରି କରୁଛନ୍ତି । ଶକ୍ତିର ଉପସ୍ଥିତିରେ ବିଶ୍ୱର ସ୍ଥିତି ସମ୍ଭବ ହୋଇଅଛି । ମହାମାୟା ବ୍ରହ୍ମଙ୍କ ଦାହିକାଶକ୍ତିକୁ ପ୍ରୟୋଗ କରି ସୃଷ୍ଟି କରୁ ଅଛନ୍ତି । ପ୍ରକୃତରେ ଦାହିକା ଶକ୍ତି ହିଁ କାରଣ । ମହାମାୟା ନିମିତ୍ତମାତ୍ର । ଅଗ୍ନି ସାହାଯ୍ୟରେ ରନ୍ଧାବଢ଼ା ଯେପରି ହୁଏ, ପୋଡାଜଳା ମଧ ସେହିପରି ହୁଏ । ଅଗ୍ନି ସେ ବିଷୟରେ ନିଜେ ଉଦାସୀନ । ତାକୁ ନେଇ ମନୁଷ୍ୟ ବିଭିନ୍ନ ଭାବରେ ବିଭିନ୍ନ ପଦ୍ଧତିରେ ବ୍ୟବହାର କରି ଫଳଲାଭ କରେ । ସେଥିରେ ଅଗ୍ନିଙ୍କର କିଛି ଯାଏ ଆସେ ନାହିଁ । ''ସ୍ପନ୍ଦନ ମୟ ବିଶ୍ୱ'' ରେ ନୃସିଂହ ଚରଣ ପଣ୍ଡା ଲେଖିଛନ୍ତି ଯେ କେତେକ ଚିତ୍ର ମାଧ୍ୟମରେ ରହସ୍ୟମୟ ତଥ୍ୟର ଉପଯୁକ୍ତ ବୋଧ ସମ୍ଭବପର ହୋଇପାରେ । ସେ ମହାସରସ୍ୱତୀଙ୍କର ଉଦାହରଣ ଦେଇଛନ୍ତି । ସରସ୍ୱତୀଙ୍କ ହାତରେ ବୀଣା । ତାଙ୍କର ବୀଣା ତାରରୁ ଯେଉଁ ସ୍ପନ୍ଦନ ନିସୃତ ହେଉଛି ସେଥିରୁ ଅଜଣା ସତ୍ୟର ସଙ୍ଗୀତ ପରିବେଷିତ ହେଉଅଛି ସମଗ୍ର ବିଶ୍ୱରେ । ସ୍ପନ୍ଦନରେ ବୀଣାଧ୍ୱନି ପରିବେଷିତ ହେଉଅଛି । ଏହି ଧ୍ୱନି ସମଗ୍ର ବିଶ୍ୱରେ ନିନାଦିତ । ସର୍ବତ୍ର ଧ୍ୱନିତ । ଏହି ଧ୍ୱନିରେ ସମସ୍ତେ ବିମୋହିତ । ସେହିପରି

ଆଉ ଗୋଟିଏ ଚିତ୍ର ମଧ୍ୟ ଏହି ପରିପ୍ରେକ୍ଷୀରେ ସେ ଉଲ୍ଲେଖ କରିଛନ୍ତି । ତାହା ହେଉଛି ନଟରାଜ ଶିବଙ୍କର । ହାତରେ ଡମରୁ, ଶିବ ତାଣ୍ଡବ ନୃତ୍ୟ କରୁଛନ୍ତି । ସେହି ନୃତ୍ୟର ତାଳେତାଳେ ବାଜି ଚାଲିଛି ତାଙ୍କର ଡମରୁ । ତାଣ୍ଡବ ନୃତ୍ୟ ସହିତ ପ୍ରଳୟର ନାଚ ମଧ୍ୟ ପଦେ ପଦେ ପ୍ରତିଧ୍ୱନିତ । ଡଂ ପଣ୍ଡାଙ୍କ ମତରେ ଏହି ଚିତ୍ରମାଧ୍ୟମରେ ସତ୍ୟର ଅବତାରଣା ସହଜରେ ବୋଧଗମ୍ୟ ହୁଏ ମଣିଷ ଦ୍ୱାରା । ଏହି ଚିତ୍ରକୁ ଆକ୍ଷରିକ ଅର୍ଥରେ ଘେନି, ଆତ୍ମିକ ଅର୍ଥରେ ବୁଝିଲେ ସର୍ବଶେଷ ତଥ୍ୟକୁ ସହଜରେ ବୁଝାଯାଏ । ଏ ପ୍ରସଙ୍ଗରେ ରବୀନ୍ଦ୍ରନାଥଙ୍କର କବିତା ମଧ୍ୟ ଅନେକ ପରିମାଣରେ ସମଭାବାପନ୍ନ । ''ବାଜେ ଅନାଦିରବ, ଆହତ ଅନାହତ........ ନାଚେ ଚନ୍ଦ୍ର ତାରା ।'' ମାୟାଶକ୍ତିଦ୍ୱାରା ପରିଚାଳିତ ସ୍ପନ୍ଦନ ସଙ୍ଗୀତର ମୂର୍ଚ୍ଛନା ସୃଷ୍ଟିକରେ । ଏହି ମୂର୍ଚ୍ଛନା ସୃଷ୍ଟିକରେ ଏକ ସୁରର ଇନ୍ଦ୍ରଜାଲ । ଏହି ସଙ୍ଗୀତରୁ ସୃଷ୍ଟି ବହୁଧା ବିସ୍ତୃତ, ବୈଚିତ୍ର୍ୟରେ ଭରା ସତ୍ୟର ଅନନ୍ତ, ଅସୀମ, ଅନୁପମ ରୂପରାଶି; ଅଗଣିତ ବସ୍ତୁ ମଧ୍ୟଦେଇ ତାର ପ୍ରକାଶ ଓ ପ୍ରବାହ । ଏହି ସଙ୍ଗୀତର ମୂର୍ଚ୍ଛନାରେ ବହିଚାଲିଛନ୍ତି ନିହାରିକା ବୃନ୍ଦ ଓ ଛାୟାପଥ ସମୂହ; ଏକ ବାଜିକରର ରଚନା । ଡଂ ପଣ୍ଡା ଅତ୍ୟନ୍ତ ଛବିଳ ଭାଷାରେ ଲେଖିଛନ୍ତି ଯେ ସ୍ପନ୍ଦନଯୁକ୍ତ ପ୍ରାଣ ଯେଉଁ ବିଶ୍ୱସଙ୍ଗୀତ ରଚନା କରିଛି, ତାହାକୁ ଆମେ ମହାବିଶ୍ୱ ବୋଲି ଜାଣୁ । ''ମାୟାବୀଣା''ରେ ତିନୋଟି ତାର ବାଜୁଛି, ଅହରହ ସ୍ପନ୍ଦିତ ହୋଇ । ଏହି ତାର ଗୁଡିକ ହେଲେ ତ୍ରିଗୁଣାତ୍ମକ - ସତ୍ତ୍ୱ, ରଜ, ତମ । ଏହି ସ୍ପନ୍ଦନରୁ ବିଭିନ୍ନ ବୈଚିତ୍ର୍ୟର ସୃଷ୍ଟି । ମାୟୋପହିତ ବ୍ରହ୍ମଙ୍କର ଏହି ସଙ୍ଗୀତ ସୃଷ୍ଟି ଏକ ଆଶ୍ଚର୍ଯ୍ୟଜନକ ସୁରର ଧାରା । ଏହି ସୁରର ମୂର୍ଚ୍ଛନାରୁ ଆନନ୍ଦର ଲହରୀ ବହି ଚାଲିଛି ଏହି ଅଜଣା ବିଶ୍ୱର ଅନନ୍ତ ପ୍ରବାହରେ । ଏହାର ଆଦି ଅନ୍ତ ଏପର୍ଯ୍ୟନ୍ତ ମଣିଷକୁ ଜଣାନାହିଁ । ମାତ୍ର ସେ ସଙ୍ଗୀତର ମୂର୍ଚ୍ଛନାରେ ବିଭୋର । ଉପର୍ଯୁକ୍ତ ସଙ୍ଗୀତର ପ୍ରଶସ୍ତି ଏକ ମୁଗ୍ଧ ବୈଜ୍ଞାନିକଙ୍କର । ମାତ୍ର ସ୍ପନ୍ଦନର ସ୍ପର୍ଶ ସେ ନିଜେ ଅନୁଭବ କରି ସେଥିରୁ ଲବ୍ଧ ଅଭିଜ୍ଞତାର ପ୍ରକାଶ କରିନାହାନ୍ତି । ସେ ଚିନ୍ତାଶକ୍ତିର ପ୍ରୟୋଗରେ ଅନେକ ବସ୍ତୁ ବିଷୟରେ ନିଜର ସୁଚିନ୍ତିତ ମତ ପ୍ରକାଶ କରି ଅଛନ୍ତି । ତାଙ୍କର ଜ୍ଞାନର ପରିଧି ବୃହତ୍ ହେଲେ ମଧ୍ୟ, ସୃଷ୍ଟିରସରେ ସିକ୍ତ ନୁହେଁ, ରହସ୍ୟ ରଶ୍ମିରେ ଆଲୋକିତ ନୁହେଁ; ଗୁଢ଼ ଓ ଗୁପ୍ତ ବିକିରଣ ଦ୍ୱାରା ସିଞ୍ଚିତ ନୁହେଁ ।

ମାତ୍ର ସତ୍ୟଦ୍ରଷ୍ଟାଙ୍କର ବିବରଣୀ ବହୁଳାଂଶରେ ବିସ୍ମୟକର । ପରମହଂସ ଯୋଗାନନ୍ଦଙ୍କ ଗୁରୁ ଶ୍ରୀଯୁକ୍ତେଶ୍ୱର ଅଦୃଶ୍ୟ ବିକିରଣର ସୂଚନା ଦେଇଥିଲେ । ''ଯୋଗୀ-କଥାମୃତ'' ଗ୍ରନ୍ଥରେ ସ୍ୱାମୀ ଯୋଗାନନ୍ଦ ଏହାର ବର୍ଣ୍ଣନା କରଅଛନ୍ତି । ତାଙ୍କୁ ଗୁରୁ ଶ୍ରୀଯୁକ୍ତେଶ୍ୱର କହିଲେ ଯେ କେତେମାସପରେ ତାଙ୍କର ପେଟରେ ଅସହ୍ୟ ଯନ୍ତ୍ରଣାହେବ । ତେଣୁ ତମ୍ବା ତିଆରି ବାଜୁବନ୍ଧ ପିନ୍ଧିବାକୁ ଉପଦେଶ ଦେଲେ । ଯୋଗାନନ୍ଦଙ୍କ ସେ ସବୁରେ

ବିଶ୍ୱାସ ନଥିଲା । ସେ କହିଲେ ଗୁରୁଦେବ କହୁଛନ୍ତି ବୋଲି ପିନ୍ଧୁଛି । ତାନହେଲେ ଏକ ସନ୍ୟାସୀ ପକ୍ଷରେ ଏହାର କୌଣସି ଉପଯୋଗୀତା ନାହିଁ । ସତକୁ ସତ କେତେମାସପରେ ଭୀଷଣ ଯନ୍ତ୍ରଣା ହେଲା ତାଙ୍କ ପେଟରେ । ସେ ଛଟପଟ ହୋଇ ରେଳଗାଡିରେ ବସି କଲିକତାରୁ ବାରାଣସୀ ଗଲେ; ସେଠାରେ ଶ୍ରୀଯୁକ୍ତେଶ୍ୱର ତାଙ୍କୁ ଯନ୍ତ୍ରଣାରୁ ମୁକ୍ତି ଦେଲେ । ସେ କହିଲେ ବହୁ ଶକ୍ତି-କ୍ଷେତ୍ରର ଅଗଣିତ ସ୍ପନ୍ଦନ ସମଗ୍ର ବିଶ୍ୱକୁ ଅଣୁରଣିତ କରି ରଖିଅଛି । ଜ୍ୟୋତିଷୀମାନେ ସାମାନ୍ୟ କେତୋଟି ଗ୍ରହାବସ୍ଥାନରୁ କେତେକ ଭବିଷ୍ୟତ ବାଣୀ କରିପାରନ୍ତି । ସବୁ ରଶ୍ମିର ପ୍ରଭାବ ସେମାନଙ୍କୁ ଜଣାନଥିବାରୁ ସେମାନଙ୍କର ଗଣନା ଭ୍ରମାତ୍ମକ ମଧ୍ୟ ହୁଏ । ମାତ୍ର, ଦ୍ରଷ୍ଟାର ଭବିଷ୍ୟତ ଦୃଷ୍ଟି ଅମୋଘ । ସେଥିରେ କେବେ ଭୁଲ ହୁଏ ନାହିଁ । ତେବେ ସବୁରଶ୍ମିର କଳନା ସହଜସାଧ୍ୟ ନୁହେଁ ଜ୍ୟୋତିଷୀ ପକ୍ଷରେ । ଯେଉଁମାନଙ୍କର ଈଶ୍ୱରାନୁଭୂତି ହୋଇଛି ସେହିମାନେହିଁ କେବଳ ଏହି ଗୂଢ଼, ଗୁପ୍ତ ଓ ପ୍ରଚ୍ଛନ୍ନ ସ୍ପନ୍ଦନର ପ୍ରଭାବ ନିଜଶକ୍ତିବଳରେ ଅନୁଭବ କରିପାରନ୍ତି । ଭବିଷ୍ୟତ ଦେଖି ପାରନ୍ତି । ସତ୍ୟର ଅଭିଜ୍ଞତା ବର୍ଣ୍ଣନା କରିପାରନ୍ତି । ସୂକ୍ଷ୍ମ ସ୍ପନ୍ଦନର ରୂପରେଖ ସେମାନଙ୍କୁ ବିଶେଷ ଭାବରେ ଜଣା । ଯୋଗବଳରେ ସବୁକିଛି ସେମାନଙ୍କର ଦର୍ଶନ-ବଳୟରେ ପ୍ରତିଭାତ ହୁଏ । ଏହି ମହାଯୋଗୀମାନଙ୍କର ଅଭିଜ୍ଞତାରୁ ସାଧାରଣ ମଣିଷର ସେମାନଙ୍କଠାରୁ କିଛି ଜାଣିବାର ସୁଯୋଗ ମିଳିଥାଏ ।

ଆଉ ଏକ ସତ୍ୟ ଘଟଣା । ଶ୍ରୀରାମକୃଷ୍ଣଙ୍କର ନିଜର ଭଣଜା ହୃଦୟରାମ ତାଙ୍କ ମାମୁଁଙ୍କ ସେବାରେ ନିଯୁକ୍ତ ଥାଆନ୍ତି । କାରଣ ଶ୍ରୀରାମକୃଷ୍ଣ ଅଧିକାଂଶ ସମୟରେ ସମାଧିରେ ରହନ୍ତି । ତାଙ୍କର ଖାଇବା, ପିଇବା, ବେଶଭୂଷା ଆଡକୁ ନଜର ନଥାଏ । ସମୟରେ ସବୁ ସେବା କରିବା ହୃଦୟରାମଙ୍କ କର୍ତ୍ତବ୍ୟ । ସେ ତାହା ନିଷ୍ଠା ସହିତ ପାଳନ କରନ୍ତି । ସେ ଦେଖନ୍ତି ଯେ ତାଙ୍କ ମାମୁଙ୍କ ପାଖକୁ ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଆସନ୍ତି । ସେମାନଙ୍କ ମଧ୍ୟରୁ କେତେକ ତାଙ୍କର କୃପାବଳରେ ଆଲୌକିକ ଶକ୍ତିର ଅଧିକାରୀ ମଧ୍ୟ ହେଉଛନ୍ତି । କିନ୍ତୁ ହୃଦୟରାମଙ୍କୁ କିଛି ମିଳୁନାହିଁ ସେବାକରିବା ଦ୍ୱାରା । ସେ ଦିନେ ଅଭିଯୋଗ କଲେ ଯେ ମାମୁ ତାଙ୍କୁ ଅନୁଗ୍ରହ କରୁନାହାନ୍ତି । ତାଙ୍କୁ କିଛି ଗୁପ୍ତ ବିଦ୍ୟା ଶିକ୍ଷା ଦେଉନାହାନ୍ତି ଯାହା ଫଳରେ ସେ ଦିବ୍ୟ-କ୍ଷମତା ପ୍ରାପ୍ତ ହୁଅନ୍ତେ । ମାମୁ କହିଲେ ''ମୋର ଦେଖାଶୁଣା ସବୁବେଳେ କରୁଥା । ସେଇଥିରେ ତୋର ସବୁ ମିଳିବ । ତୋର ଯୋଗ-ସାଧନ କରିବା ଦରକାର ନାହିଁ ।'' ଏକଥାରେ ହୃଦୟରାମ ସନ୍ତୁଷ୍ଟ ହେଲେନାହିଁ । ଅହରହ ଅଭିଯୋଗ କରିବାକୁ ଲାଗିଲେ ଯେ ମାମୁ ତାଙ୍କୁ କେବଳ ଅବହେଳା କରି ଦୂରରେ ରଖୁଛନ୍ତି । ଆପଣାର ବୋଲି ଭାବୁନାହାନ୍ତି । ଶେଷରେ ମାମୁ କହିଲେ ମୁଁ ତୋତେ ଶିକ୍ଷା ଦେଇପାରେ ମାତ୍ର

ତୋର କ୍ଷମତା ନାହିଁ ତାହା ଧାରଣ କରି ନିଜର ଧୃତି ରକ୍ଷା କରିବାକୁ । ମାତ୍ର ଭଣଜା ଅଡି ବସିଲେ । ବାଧହୋଇ ଶ୍ରୀରାମକୃଷ୍ଣ ତାଙ୍କୁ ସ୍ପର୍ଶ କରିଦେଲେ । ହୃଦୟରାମଙ୍କ ମୁଣ୍ଡ ବୁଲିଗଲା । ସେ ଖାଲି ଘାରି ହୋଇ ପଡୁଥାଆନ୍ତି । ସମଗ୍ର ବିଶ୍ୱ ବୁଲୁଛି, ଘରଦ୍ୱାର, କୋଠାବାଡି, ଗଛ ପତ୍ର ସବୁ ଆସ୍ତେ ଆସ୍ତେ ଉଭେଇ ଯାଉଛନ୍ତି । ସବୁ ତାଙ୍କ ଦୃଷ୍ଟିରେ ଏକାକାର ହୋଇଯାଉଛି । କୌଣସି ପଦାର୍ଥର ସ୍ଥିରତା ରହୁନାହିଁ । କଣ ଗୋଟାଏ ଶକ୍ତି ଚାରିଆଡେ ବ୍ୟାପୃତ ହୋଇ ତାଙ୍କୁ ଥୟ କରି ଦେଉନାହିଁ । ତାଙ୍କ ମୁଣ୍ଡ ବୁଲେଇ ହୋଇ ସେ କେତେବେଳେ ତଳେ ପଡିଯାଉଛନ୍ତି । ଯାହାସବୁ ଦେଖୁଛନ୍ତି ତାହା କିମ୍ଭୁତ କିମାକାର । ତାହାର ବର୍ଣ୍ଣନା ଦେବା ଅସମ୍ଭବ । ତାଙ୍କର ଧୀଶକ୍ତି ଆଉ ନାହିଁ । ସେ ଗୋଟିଏ ଖେଳନା ଭଳି ହୋଇଯାଇଛନ୍ତି । ତିନିଦିନ ଏପରି ପାଗଳ ଅବସ୍ଥାରେ ରହିବାପରେ ମାମୁଙ୍କୁ କହିଲେ ମୁଁ ଆଉ ସମ୍ଭାଳି ପାରୁନାହିଁ । ମୋର ପୂର୍ବାବସ୍ଥା ଫେରାଇ ଦିଅ ।'' ତାହାହିଁ ହେଲା । ସେ ସ୍ଥିରହେଲେ । ଏହି ଘଟଣାରୁ ତାଙ୍କର ହୃଦବୋଧ ହେଲା ଯେ ଜଗତଟା ଯେପରି ଆମକୁ ଦେଖାଯାଏ ସତରେ ତାହା ନୁହେଁ । ଏହାର ଅନ୍ତର୍ନିହିତ ସତ୍ୟ ସମ୍ପୂର୍ଣ୍ଣ ବିପରୀତ । ଏହା ସ୍ଥିର ନୁହେଁ ଚଞ୍ଚଳ । ଜଗତ ସବୁବେଳେ ଚାଲିଛି । ତେଣୁ ଚଳମାନ ସତ୍ତା ହେଉଛି ପ୍ରକୃତ ସତ୍ତା । ଯେଉଁ ସ୍ଥୂଳ ପଦାର୍ଥ ସବୁ, ମଣିଷ ଆଖିରେ ଦେଖେ, ତାହା ଆପାତଃ ସତ୍ୟ । ଅନ୍ତ ର୍ନିହିତ ସତ୍ୟ ନୁହେଁ । ଏହି ସ୍ଥୂଳ ପଦାର୍ଥର ବାହ୍ୟ ସ୍ୱରୂପ, ଅନ୍ତରର ସତ୍ୟ ନୁହେଁ । ସୂକ୍ଷ୍ମ ତତ୍ତ୍ୱର ଏକ ଛଳନା ମାତ୍ର । ଥରେ ପ୍ରକୃତ ସତ୍ୟର ସନ୍ଧାନ ମିଳିଲେ ଏହି ବାହ୍ୟ ସ୍ଥୂଳକୁ ମଣିଷ ପରିହାର କରି, ଅସଲସତ୍ୟ ଲାଭ ନିମନ୍ତେ ବ୍ରତୀ ହୁଏ । ତେବେ ସେହି ଧୃବ-ସତ୍ୟର ରୂପରେଖ କଣ ? ଏହାର ଧୃବତ୍ୱର ପରିମାପ କଣ ? ଏହାର ରୀତି, ନୀତି, ପଦ୍ଧତି କଣ ? ଏହିପରି ବହୁପ୍ରଶ୍ନ ଉଠେ ମଣିଷ ମନରେ ।

ଯେଉଁମାନେ ଯୋଗ-ପଦ୍ଧତିରେ ସିଦ୍ଧିଲାଭ କରି ଶେଷତତ୍ତ୍ୱ ବିଷୟରେ ଅଭିଜ୍ଞତା ପ୍ରାପ୍ତ ହୋଇଛନ୍ତି ସେମାନଙ୍କଠାରୁ ଏ ବିଷୟରେ ଜଣାଯାଏ । ପରମହଂସ ଯୋଗାନନ୍ଦ ଜଣେ ସିଦ୍ଧପୁରୁଷ । ସେ ଏହି ସୂକ୍ଷ୍ମ ସ୍ପନ୍ଦନ ବିଷୟରେ ବୁଝାଇଛନ୍ତି, ଅତି ପ୍ରାଞ୍ଜଳ ଭାଷାରେ ଓ ସରଳ ଭାବରେ ନିମ୍ନଲିଖିତ ରୂପେ । ଭ୍ରାନ୍ତି ବା ମାୟା ସମଗ୍ର ବିଶ୍ୱକୁ ଆଚ୍ଛାଦନ କରି ରଖିଛି । ଏହି ସାମୁହିକ ଭ୍ରାନ୍ତିକୁ ଦୁର କରିବା ସାଧାରଣ ମଣିଷର କ୍ଷମତାର ବାହାରେ; କେବଳ ଯେଉଁମାନେ ଆତ୍ମୋପଲବ୍ଧି କରିଛନ୍ତି ସେହିମାନେ ହିଁ ଜାଣନ୍ତି ଯେ ଯାହାସବୁ ବହିର୍ବିଶ୍ୱରେ ଦେଖାଯାଏ ତାହା ପ୍ରକୃତରେ ସତ୍ୟର ସ୍ୱରୂପ ନୁହେଁ । ସେଗୁଡିକ କେବଳ ଇନ୍ଦ୍ରିୟ-ଲବ୍ଧ ଭ୍ରମାତ୍ମକ ଅଭିଜ୍ଞତା । ଚୈତନ୍ୟ ପ୍ରାପ୍ତ ହେଲେ ସତ୍ୟ ପ୍ରତିଭାତ ହୁଏ ମନୁଷ୍ୟ ମନରେ । ଚୈତନ୍ୟ ଓ ଜଡ, ଶରୀର ଓ ମନ ମଧ୍ୟରେ ପ୍ରଭେଦ ସୃଷ୍ଟିକରେ ସ୍ପନ୍ଦନର ବେଗ ।

ସ୍ପନ୍ଦନ ହେଉଛି ଶକ୍ତିର କମ୍ପନ ବା ଚଳମାନ ପ୍ରକ୍ରିୟା । ଏହି କମ୍ପନ ଐଶରିକ-ବୁଦ୍ଧି ବା ଜ୍ଞାନରୁ ଜାତ ହେଲା କିପରି ?

ସ୍ୱାମୀ ଯୋଗାନନ୍ଦ କହନ୍ତି ଯେ ''ଇଥର'' ମଧ୍ୟରେ ସ୍ଥିତ ସବୁ ସ୍ପନ୍ଦନ ଐଶ୍ୱରିକ-ଶକ୍ତି-ସମ୍ପନ୍ନ ଓ ଈଶ୍ୱରପ୍ରେରିତ ଜ୍ଞାନ ଲହରୀର ପ୍ରକୃଷ୍ଟ ପ୍ରକାଶ । ଅବ୍ୟକ୍ତ ଈଶ୍ୱର ହେଉଛନ୍ତି ସ୍ପନ୍ଦନହୀନ, ସ୍ଥିର ଓ ଅଚଞ୍ଚଳ । ପ୍ରଥମେ ପରମେଶ୍ୱର ତାଙ୍କ ଅନ୍ତର୍ନିହିତ ସତ୍ତାକୁ ଚିନ୍ତାଶକ୍ତି ଦ୍ୱାରା ଚଳମାନ କଲେ । ଏହି ଚିନ୍ତାର ସ୍ପନ୍ଦନରେ ତାଙ୍କର ଭାବଧାରାର ପ୍ରଥମ ସୋପାନ ହେଲା ତାଙ୍କର ଅନ୍ତର୍ନିହିତ ବୁଦ୍ଧିର ବ୍ୟାପ୍ତି; ସେଥିରୁ ଜାତହେଲା ପ୍ରଥମ ସୃଷ୍ଟିର ପ୍ରକଳ୍ପ, ପ୍ରାଥମିକ ଚିନ୍ତାର କମ୍ପନ । ଏହି କମ୍ପନ କ୍ରମେ କ୍ରମେ ଦୃଢ଼ିଭୂତ ହେଲା; ଆସ୍ତେ ଆସ୍ତେ ସୂକ୍ଷ୍ମାବସ୍ଥାରୁ ସ୍ଥୁଳାବସ୍ଥାକୁ ପ୍ରାପ୍ତ ହେଲା । ଏହା ବାହାରେ ପରିବର୍ତ୍ତିତ ହୋଇ ଶରୀର ମଧ୍ୟରେ ଐଶ୍ୱରିକ କ୍ଷମତା ସମ୍ପନ୍ନ ଶବ୍ଦ ଭାବରେ ''ଓମ୍'' ନାଦରେ ନିନାଦିତ ହେଲା ଓ ତୃତୀୟ ନେତ୍ରରେ ନିବଦ୍ଧ ହେଲା ଆଲୋକ ଭାବରେ । ଏହି କମ୍ପନର ଦୃତ ପ୍ରଭାବରେ କ୍ରମେ କ୍ରମେ ସ୍ଥୂଳତର ହେବାକୁ ଲାଗିଲା । ରୂପାନ୍ତରିତ ହେଲା । ଆହୁରି ଆହୁରି ଦୃତ କମ୍ପନର ଫଳରେ ଏହା ସ୍ଥୂଳରୁ ସ୍ଥୂଳତର ହେବାକୁ ଲାଗିଲା । ଶେଷରେ ଏହା ବାଷ୍ପରେ ପରିଣତ ହେଲା । ବାଷ୍ପରୁ ଜଳୀୟ ଓ ଜଳୀୟ ଶକ୍ତିରୁ ଜଡ ଶକ୍ତିରେ ନିବଦ୍ଧ ହେଲା । ଏହି ସ୍ପନ୍ଦନ ବା କମ୍ପନ ପ୍ରକ୍ରିୟାର ଶେଷ ପରିଣତି ହେଲା ଆମର ଚାକ୍ଷୁସ ବିଶାଳ ଜଡ ଜଗତ । ସେହିପରି ମଣିଷର ଶରୀର ମଧ୍ୟ ଏକ କମ୍ପନଯୁକ୍ତ ଚିନ୍ତାର ନକ୍ସାରୁ ଉଦ୍‌ଭୁତ । ଏହି କମ୍ପନରେ ପ୍ରଥମ କାରଣ-ଶରୀର ତିଆରି ହେଲା । ଏହି କମ୍ପନର ଅଧିକ ବେଗରୁ ପ୍ରସ୍ତୁତ ହେଲା ଅତି ସ୍ଥୁଳ ପଦାର୍ଥରେ ତିଆରି ଆମର ଏହି ଶକ୍ତ-ସମର୍ଥ ଭାରୀ ଶରୀର । ମନୁଷ୍ୟ ଯେପରି ଚଳଚିତ୍ର ତିଆରି କଲାବେଳେ ବିଦ୍ୟୁତ୍ ପ୍ରଯୁକ୍ତ ଆଲୋକ ମାଧ୍ୟମରେ ଶବ୍ଦ ଓ ଛାୟା ଯୋଗରେ ମଣିଷର ଚିତ୍ର ଦେଖାଇଥାଏ ସିନେମାରେ, ସେହିପରି ସୃଷ୍ଟିକର୍ତ୍ତା ତାଙ୍କର ଐଶ୍ୱରିକ ଆଲୋକ ଓ ଶକ୍ତି ପ୍ରୟୋଗ କରି ମଣିଷର ଚେତନାରେ ଏକ ଶକ୍ତ ସ୍ଥୁଳ ଶରୀର ଅବସ୍ଥାପନ କରନ୍ତି । ତାଙ୍କର ଯୋଗସିଦ୍ଧ ପ୍ରଜ୍ଞାରୁ ପ୍ରାପ୍ତ ଜ୍ଞାନ, ପରମହଂସ ଯୋଗାନନ୍ଦ ଅକାତରରେ ମଣିଷମାନଙ୍କ ମଧ୍ୟରେ ବିତରଣ କରିଯାଇଅଛନ୍ତି । ଉଦାହରଣ ଦେଇ ଅତି ସୂକ୍ଷ୍ମଭାବରେ ପରମ ସତ୍ୟର ଅପୂର୍ବ ଅବତାରଣା କରି ଅଛନ୍ତି ସେହି ମହାନ ଯୋଗୀ । ଯଥା – ବରଫଖଣ୍ଡ ଶକ୍ତ, ଭାରୀ, ଦୃଶ୍ୟ ଏବଂ ଥଣ୍ଡା । ଏହାକୁ ତରଳ ହେବାକୁ ଦେଲେ ଏହା ଜଳୀୟ ହୋଇଯାଏ । ମାତ୍ର ଏହାର ଓଜନ ସମାନ ଥାଏ, ଥଣ୍ଡା ଥାଏ, ଦୃଶ୍ୟହେଲେ ମଧ୍ୟ ଏହାର ଆକାର ପ୍ରକାର ବଦଳିଯାଏ । ଏହି ତରଳ ବରଫ ମଧ୍ୟରେ ବୈଦ୍ୟୁତିକ ଲହରୀ ପ୍ରୟୋଗକଲେ ଏହା ଅମ୍ଳଜାନ, ଯବକ୍ଷାରଜାନରେ ପରିଣତ ହୁଏ । ଏଥିରୁ ବୁଝାଯାଏ ଯେ ଏକ ଶକ୍ତ ବରଫ ଖଣ୍ଡ ଦୃଶ୍ୟମାନ ଅବସ୍ଥାରୁ ବୈଦ୍ୟୁତିକ ପ୍ରକ୍ରିୟା ସାହାଯ୍ୟରେ ଅଦୃଶ୍ୟ

ବାଷ୍ପରେ ପରିଣତ ହୋଇପାରେ । ଏହାପରେ ପରେ, ଏହି ପଦ୍ଧତିର ବିପରୀତ ପ୍ରୟୋଗରେ ବାଷ୍ପଗୁଡିକୁ ଘନିଭୂତ କରି ସେଗୁଡିକୁ ଥଣ୍ଡାକଲେ ପୂର୍ବାବସ୍ଥା ପ୍ରାପ୍ତ ହୋଇ ବାଷ୍ପ ସମୂହ ଗୋଟିଏ ଶକ୍ତ ଥଣ୍ଡା ବରଫ-ଶିଳାରେ ପରିଣତ ହେବେ । ସେହିପରି ଶକ୍ତ ମଣିଷଶରୀର ତରଳିକୃତ ହୋଇ ଶେଷରେ ବାୟବୀୟ ବାଷ୍ପରେ ପରିଣତ ହୋଇପାରେ । ମାତ୍ର ଏହି ଅବସ୍ଥାରୁ ପୂର୍ବ ମନୁଷ୍ୟାବସ୍ଥା ପ୍ରାପ୍ତି-ପଦ୍ଧତି ଏପର୍ଯ୍ୟନ୍ତ ମଣିଷ ଜାଣିପାରିନାହିଁ । ତାହାଛଡା ଶରୀର, ମନ, ଆତ୍ମା ଓ ଜଡବସ୍ତୁ ମଧ୍ୟରେ ଯେଉଁ ଯୋଗସୂତ୍ର ଅଛି ତାହା ମଧ୍ୟ ମଣିଷକୁ ଜଣାନାହିଁ । ଏହି ଗୁପ୍ତ ସଂଯୋଗକାରୀ ସୂତ୍ର ହେଉଛି ସୃଷ୍ଟିକର୍ତ୍ତାଙ୍କର ସୂକ୍ଷ୍ମ ଶକ୍ତି ବା ସୃଷ୍ଟିଶକ୍ତି । ଅତି ସୂକ୍ଷ୍ମ ଭାବରେ ସ୍ପନ୍ଦିତ ଚେତନା ଶୁଦ୍ଧ ଚୈତନ୍ୟରେ ପରିଣତ ହୁଏ । ଯଦି ଏହା ସ୍ଥୁଳଭାବରେ କମ୍ପିତ ହୁଏ ବହୁଳ ପରିମାଣରେ, ତେବେ ଶରୀରରେ ପରିଣତ ହୁଏ । ମଣିଷ ତାହାର ଇଚ୍ଛାଶକ୍ତିବଳରେ ତାହାର ଶାରୀରିକ ଶକ୍ତି ଉପରେ କ୍ଷମତା ବିସ୍ତାର କରି ଯଦି ଚେଷ୍ଟାକରେ ତାହାହେଲେ ତାହାର ସ୍ଥୁଳଭାରୀ ଶରୀର ମଧ୍ୟରେ ଥିବା ସ୍ପନ୍ଦନ ଶକ୍ତିକୁ ତରଳ କରି ତାହାର ଶରୀରକୁ ''କାରଣ-ଶରୀର'' ର ସୂକ୍ଷ୍ମ ଶକ୍ତିରେ ପରିଣତ କରିପାରେ । ପରେ ଏହି ପ୍ରକ୍ରିୟାର ଦୃଢ଼ିକରଣ କରି ''ମାନସ-ଶରୀର''ରେ ନିଜକୁ ବଦଳାଇ ଦେଇପାରେ । ଶ୍ରୀମଦ୍ ଭଗବତ ଗୀତାରେ ଏହାର ଉଲ୍ଲେଖ ଅଛି ଦଶମ ଅଧ୍ୟାୟର ସପ୍ତମ ଶ୍ଳୋକରେ ''ଏହି ବିଭୁତି ଯୋଗ ବର୍ଣ୍ଣିତ ମୋର କ୍ଷମତା ବିଷୟରେ ଯେଉଁମାନେ ଅବହିତ ଅଛନ୍ତି ଏବଂ ମୋର ନିର୍ମାଣ ଓ ଧ୍ୱଂସ କରିବାର ଶକ୍ତି କଥା ଜାଣନ୍ତି, ଯୋଗବଳରେ ସେମାନେ ମୋ ସହିତ ଯୁକ୍ତ । ଏହା ସନ୍ଦେହାତୀତ ।''

ବୈଜ୍ଞାନିକମାନେ ଶରୀର ରସାୟନ-ପ୍ରକ୍ରିୟା ସମ୍ବନ୍ଧରେ ଜାଣିଛନ୍ତି । ମାତ୍ର ଜଡର ଜୈବିକ-ପରିବର୍ତ୍ତନ ସମ୍ବନ୍ଧରେ ଏପର୍ଯ୍ୟନ୍ତ କିଛି ଜାଣନ୍ତି ନାହିଁ । ଶରୀର କେବଳ ଖାଦ୍ୟପେୟ ଉପରେ ସମ୍ପୂର୍ଣ୍ଣଭାବରେ ନିର୍ଭରଶୀଳ ନୁହେଁ । ଅଦୃଶ୍ୟ ସୃଷ୍ଟି-ଶକ୍ତିର ଉତ୍ସରୁ ନିର୍ଗତ ଶକ୍ତିକୁ ମଣିଷ ନିଜର ପ୍ରବଳ ଇଚ୍ଛାଶକ୍ତିଦ୍ୱାରା ଶରୀରରେ ପ୍ରବେଶ କରାଇ ନିଜର ଅଭିବୃଦ୍ଧି କରିପାରେ । ଇଚ୍ଛାଶକ୍ତିହିଁ ଶରୀରମଧ୍ୟରେ ଜୀବନସ୍ରୋତ ପ୍ରବାହିତ କରିବାର ମୂଖ୍ୟବାହକ । ଗୋଟିଏ ଶୁଷ୍କ ବ୍ୟାଟେରି ପରି ମଣିଷର ଶରୀର ଅମ୍ଳଜାନ, ସୂର୍ଯ୍ୟ କିରଣ, ନିଶ୍ୱାସ, ପ୍ରଶ୍ୱାସ ପ୍ରକ୍ରିୟା ବିନା ବଞ୍ଚିରହିପାରେ । ମାତ୍ର ଇଚ୍ଛା ଶକ୍ତି ଓ ଚେତନା, ଶରୀରକୁ ନିର୍ଗତ ହେଲେ ଏହା କ୍ରମେ କ୍ରମେ ନଷ୍ଟ ହୋଇଯାଏ ନିଶ୍ଚିତ ଭାବରେ । ଶରୀରର ଅଙ୍ଗ ପ୍ରତ୍ୟଙ୍ଗ ଚାଳନାରେ ଇଚ୍ଛାଶକ୍ତିର କ୍ଷମତା ଅନ୍ତର୍ନିହିତ ଅଛି । ଏହି ଇଚ୍ଛାଶକ୍ତି ମସ୍ତିଷ୍କ ଭିତରେ ଥିବା ସଂଚିତ ବ୍ୟାଟେରି କ୍ଷମତାକୁ ଜାଗ୍ରତ କରି ଶରୀରକୁ ବାର୍ତ୍ତା ପ୍ରେରଣ କରିଥାଏ ଏବଂ ଶରୀରକୁ ଘେରିଥିବା ସୃଷ୍ଟିଶକ୍ତିକୁ ସଂବାଦ ପ୍ରେରଣ କରିଥାଏ । ଏହି ବାର୍ତ୍ତାଦ୍ୱାରା ମଣିଷର ଶରୀର ଚାଳିତ ହୁଏ ।

ମଣିଷ ଯେତେବେଳେ କ୍ଳାନ୍ତ ହୋଇପଡେ ସେତେବେଳେ ସେ ବିଶ୍ରାମ ନିଏ । ତାର ଶକ୍ତିକୁ ଫେରାଇ ଆଣିବା ପାଇଁ ଖାଦ୍ୟପେୟର ସାହାଯ୍ୟ ନେଇଥାଏ । କିନ୍ତୁ ଯେତେବେଳେ ଅତିବେଶୀ ଭାର-ଉତ୍ତୋଳନ କରିବା ଦରକାର ହୁଏ, ସେତେବେଳେ ମଣିଷ ମନର ଶକ୍ତିକୁ ଶାଣିତ କରି ତାକୁ ଭାରଉତ୍ତୋଳନ ନିମନ୍ତେ ପ୍ରୟୋଗ କରେ । କୌଣସି ବିଶେଷ ପ୍ରୟୋଜନରେ ମଣିଷ ତାର ମାନସିକ ଶକ୍ତିକୁ କେନ୍ଦ୍ରିଭୂତ କରି ଶରୀରର ଅଙ୍ଗ ପ୍ରତ୍ୟଙ୍ଗକୁ ଜାଗ୍ରତ କରି ନିଜର ଶରୀରରେ ବହୁଳଭାବରେ ଶକ୍ତି ସଂଚାର କରିଥାଏ ଆବଶ୍ୟକତା ଦୃଷ୍ଟିରୁ । ଏହି ବିଶେଷ ଶକ୍ତି ଖାଦ୍ୟପେୟରୁ ସଂଗୃହିତ ହୁଏ ନାହିଁ । ବିଶେଷ କ୍ଷଣରେ ତାତ୍‌କାଳିକ ପରିସ୍ଥିତିରେ ଶକ୍ତିର ଭଣ୍ଡାର ମିଳେ ଈଶ୍ୱରଦତ୍ତ ସୃଷ୍ଟି ଶକ୍ତିର ପ୍ରାଚୁର୍ଯ୍ୟରୁ । ଏହି ପରିପ୍ରେକ୍ଷୀରେ ଜ୍ଞାତବ୍ୟ ତଥ୍ୟ ହେଲା ଯେ ଜଡ ଓ ଚୈତନ୍ୟ; ଶରୀର ଓ ଆତ୍ମା ମଧ୍ୟରେ ଥିବା ସୁପ୍ତ ସଂଯୋଗ ହେଉଛି ନିଜର ଆତ୍ମାକୁ ପୂର୍ଣ୍ଣଭାବରେ ଜାଣିବା; ସୃଷ୍ଟିରେ ପ୍ରବାହିତ ସବୁ ପଦାର୍ଥ, ଶକ୍ତି ଓ ପ୍ରଭାବକୁ ଚିହ୍ନିବା; ଏବଂ ପରିଶେଷରେ ସୃଷ୍ଟିକର୍ତ୍ତାଙ୍କ ସହିତ ଏକତ୍ୱ ଲାଭ କରିବା । ଏହି ସତ୍ୟ ଉପଲବ୍ଧି କରିପାରିଲେ, ମନୁଷ୍ୟର ହୃଦବୋଧ ହେବ ଯେ ଇଚ୍ଛାଶକ୍ତିହିଁ ପ୍ରବଳ ଶକ୍ତିଦାତା ଏବଂ ସର୍ବଶ୍ରେଷ୍ଠ କ୍ଷମତାର ମୂଳସ୍ରୋତ । ଏହା ଜାଣିପାରିଲେ ଜଡ ଓ ଚୈତନ୍ୟର ସେତୁବନ୍ଧ ନିର୍ମିତ ହୋଇ ଅଜ୍ଞାନ ବିଦୁରିତ ହୁଏ । ପରମପୁରୁଷ ସୃଷ୍ଟିକର୍ତ୍ତାଙ୍କ ବିଷୟରେ ସମ୍ୟକ୍ ଜ୍ଞାନ ପ୍ରାପ୍ତି ହୁଏ ଏବଂ ସର୍ବଶେଷରେ ସବୁଠାରୁ ଶକ୍ତିମାନ ଈଶ୍ୱରଙ୍କ ସହିତଯୋଗସୂତ୍ର ସ୍ଥାପନ କରିବାର ଆଗ୍ରହ ମନୁଷ୍ୟ-ଚିତ୍ତକୁ ଗଭୀର ଭାବରେ ଆକୃଷ୍ଟ କରେ । ତାଙ୍କ ସହିତ ଏକ ହେଲେ ସବୁ ସନ୍ଦେହର ନିରସନ ହୋଇ ଦିବ୍ୟ ଜୀବନ ଲାଭହୁଏ । ମଣିଷ ଦୁଃଖ, ଶୋକ, ତାପ, ନୈରାଶ୍ୟଚ ପ୍ରକୋପରୁ ମୁକ୍ତିଲାଭ କରି, ଆନନ୍ଦମୟ ଜୀବନ ଯାପନ କରେ । ସ୍ୱାମୀ ଯୋଗାନନ୍ଦ ବହୁ ଗୁପ୍ତ ତଥ୍ୟ ପ୍ରକାଶ କରି ମନୁଷ୍ୟର ବୋଧଶକ୍ତିର ବୃତ୍ତକୁ ବହୁଳ ଭାବରେ ବିସ୍ତାର କରିଯାଇଅଛନ୍ତି । ବହୁ ଅମୀମାଂସିତ ବିଷୟର ସରଳୀକୃତ ବାଖ୍ୟା କରି ଜ୍ଞାନର ପରିସର ବୃଦ୍ଧି କରି ଅଛନ୍ତି । ଏହି ପ୍ରସଙ୍ଗରେ ସେ ସବୁ ତଥ୍ୟର ଉଲ୍ଲେଖ ଅତ୍ୟନ୍ତ ପ୍ରୟୋଜନୀୟ । ମନୁଷ୍ୟ ଯେତେବେଳେ ଶୋଇଥାଏ ସେତେବେଳେ ତାର ଦୃଶ୍ୟମାନ ଶରୀର ବିଷୟରେ ସେ ଜାଣିପାରେ ନାହିଁ । ମାତ୍ର ନିଦରୁ ଉଠିଲେ ସେ ବୁଝିପାରେ ତାର ନିଦଭଲ ହୋଇଥିଲା କି ନାହିଁ । ତାହା ସେ କିପରି ଜାଣିଲା ? ଶୋଇବା ଅବସ୍ଥାରେ ତାର ବାହାରୁ ଦେଖାଯାଉ ଥିବା ଶରୀର ସୁପ୍ତ ଥିଲା । ତେବେ ସେ ନିଦ ବିଷୟରେ ଜାଣିଲା କିପରି ? ଅତଏବ ମଣିଷର ଏକ ଅଦୃଶ୍ୟ ଶରୀର ଅଛି ଯାହା ସବୁବେଳେ ଜାଗ୍ରତ ହୋଇ ସବୁକିଛି ଜାଣିପାରୁଛି । ଏହି ଅଦୃଶ୍ୟ ଶରୀରର ଅଭାବରେ ମଣିଷର ଶରୀର ମୃତ ପରି । ମଣିଷ ଭିତରେ ଆଉ ଗୋଟିଏ ଶରୀର ଅଛି । ଏହା

ଆଲୋକରେ ଆତ୍ମାକୁ ଘେରି ରଖିଛି । ଏହା ପ୍ରକୃତରେ ସ୍ଥୂଳଶରୀରର ଅବିକଳ ଦ୍ୱିତ୍ୱ; ଏହା ଏକ ସୂକ୍ଷ୍ମ ଶରୀର । ଏହା ଆଲୋକ ଓ ଶକ୍ତିଦ୍ୱାରା ନିର୍ମିତ; ସ୍ଥୂଳ ଶରୀରର ଏକ ଆଲୋକିତ ଛବି ବିଶେଷ । ଏହି ସୂକ୍ଷ୍ମଶରୀର ବିଷୟରେ ଚେତନା ବଢ଼ିଲେ ମନୁଷ୍ୟ ବୁଝିପାରେ ଯେ ଏହା ସ୍ଥୂଳ ଶରୀର ଯାହା ଶୁଣିପାରେ ନାହିଁ ତାହା ଶୁଣିପାରେ, ସ୍ଥୂଳ ଶରୀର ଯାହା ଦେଖିପାରେ ନାହିଁ ତାହା ଦେଖିପାରେ । ସେହିପରି ଅନ୍ୟାନ୍ୟ ଇନ୍ଦ୍ରିୟ ଲବ୍ଧ ଅଭିଜ୍ଞତା ଏହାର ପ୍ରଖରତର । ଯଦି ମଣିଷ ତାର ଦୃଷ୍ଟିକୁ ଅନ୍ତକରଣକୁ ନିକ୍ଷେପ କରେ ସେ ବୁଝିବ ଯେ ଅଦୃଶ୍ୟ ଶରୀରର ଦୁଃଖ ଦୈନ୍ୟ ନାହିଁ, କ୍ଷତ ନାହିଁ, କଷ୍ଟ ନାହିଁ । ଏହା ଆଘାତ ପାଏନାହିଁ, ଏହା ସ୍ୱାଧୀନ । ସ୍ଥୂଳ ଶରୀରର ସବୁ ଅସୁବିଧା ଏହା ଦୂରକରିପାରେ । ଏହା ଅପରିବର୍ତ୍ତନୀୟ ଆତ୍ମା; ଏହାର ବିନାଶ ନାହିଁ । ପ୍ରକୃତରେ ମନୁଷ୍ୟର ଶରୀର ମଧ୍ୟରେ ଆତ୍ମା ଆବଦ୍ଧ ନୁହେଁ । ଶରୀର ସ୍ଥୂଳରୁ ସୂକ୍ଷ୍ମରେ ପରିବର୍ତ୍ତନ କରାଯାଇପାରେ । ଏପରି ପରିବର୍ତ୍ତନ ମହାଗୁରୁମାନେ କରିବାକୁ ସକ୍ଷମ ଅଟନ୍ତି । ଶ୍ରୀଯୁକ୍ତେଶ୍ୱର ଗିରିଙ୍କ ସମାଧି ଲାଭ ପରେ ମଧ୍ୟ ସେ ତାଙ୍କ ଶିଷ୍ୟ ଯୋଗାନନ୍ଦଙ୍କୁ ବମ୍ବେ ହୋଟେଲରେ ନିଜ ବାହୁ ବନ୍ଧନରେ ସୁଦୃଢ଼ ଭାବରେ ଆବଦ୍ଧ କରି ତାଙ୍କର ମରଶରୀରର ସତ୍ୟତା ପ୍ରମାଣ କରିଥିଲେ । ଏହି ପ୍ରସଙ୍ଗରେ ବିସ୍ତାରିତ ଭାବେ ବୁଝାଇବାକୁ ଯାଇ ସ୍ୱାମୀ ଯୋଗାନନ୍ଦ ଅନେକ ପ୍ରଚ୍ଛନ୍ନ ସତ୍ୟର ଉଦ୍‌ଘାଟନ କରିଛନ୍ତି । ମନୁଷ୍ୟର ସ୍ଥୂଳ ଶରୀରରେ ଷୋଳଟି ଜଡ ପ୍ରକୃତି ରହିଅଛି । ଏହାର ଦୁଇଟି ଛାୟା ରହିଛି । ଗୋଟିଏ ହେଲା ବିଦ୍ୟୁତ୍ ପ୍ରଭାବଯୁକ୍ତ ଜ୍ୟୋତି ଶରୀର, ଅନ୍ୟଟି ଭାବରୁ ସୃଷ୍ଟ କାରଣ-ଶରୀର । ଜ୍ୟୋତିଃ ଶରୀରରେ ଉଣେଇଶଟି ମୌଳିକ ଉପାଦାନ ଅଛି ଏବଂ କାରଣ ଶରୀରରେ ଅଛି ଷୋଳଟି ଭାବଧାରା, ଯେଉଁଥିରୁ ଷୋଳଟି ସ୍ଥୂଳ ମୌଳିକ ଉପାଦାନ ସ୍ଥୂଳ ଶରୀରରେ ବିଦ୍ୟମାନ, ଏହି ସ୍ଥୂଳ ମୌଳିକ ଉପାଦାନ ଚିନ୍ତାକରାଯାଇ ଭାବ ରାଜ୍ୟରେ ସୃଷ୍ଟି ହୋଇଥିଲା ଈଶ୍ୱରଙ୍କଦ୍ୱାରା । ତାହାପରେ ସେଗୁଡିକ ସ୍ଥୂଳ ଜଗତରେ ବାସ୍ତବତାର ରୂପରେ ମଣ୍ଡିତ ହୋଇଥିଲେ । ପ୍ରକୃତପକ୍ଷେ, ମନୁଷ୍ୟ ହେଉଛି ଅଦୃଶ୍ୟ ସତ୍ତା । କାରଣ ସ୍ଥୂଳ ଜଗତର ସବୁକିଛି ପ୍ରଥମେ ଚିନ୍ତା ରାଜ୍ୟରେ କଳ୍ପନା କରାଯାଇ ପରେ ଭଗବାନଙ୍କଦ୍ୱାରା ବାସ୍ତବାୟିତ କରାହୋଇଥିଲା । ମଣିଷର ମୃତ୍ୟୁପରେ ସ୍ଥୂଳ ଉପାଦାନ ଗୁଡିକ ନଷ୍ଟ ହୋଇଗଲେ ମଧ୍ୟ ଅଦୃଶ୍ୟସତ୍ତା ବଞ୍ଚିରହିବ ଓ ମଣିଷ ଏହି ସତ୍ତା ବିଷୟରେ ଅବହିତ ରହିବ । ସେଥିରେ ୩୫ଟି ଚିନ୍ତା ବିରାଜମାନ ରହିବେ ଏବଂ ସେମାନଙ୍କ ପଛରେ ଥିବା ଚେତନା ସତ୍ୟରୂପରେ ପ୍ରତିଭାତ ହେବ । ଚେତନା ଈଶ୍ୱରଙ୍କର ଆଦିଚୈତନ୍ୟର ଏକ ସ୍ଫୁଲିଙ୍ଗ ବିଶେଷ । ଏହାର ମୃତ୍ୟୁ ନାହିଁ । ମନୁଷ୍ୟର ସ୍ଥିରସତ୍ତା ହେଉଛି ଚେତନା । ମଣିଷ ଗଭୀର ଚିନ୍ତା ବଳରେ ଜାଣିପାରିବ ଯେ ଶରୀର ସେହି ପରମଚୈତନ୍ୟର ଏକ ବିକ୍ଷେପ ମାତ୍ର । ଅସଲ ସତ୍ତା

ଅନ୍ତର୍ନିହିତ ଓ ଅଦୃଶ୍ୟ ଅବସ୍ଥାରେ ରହେ । ଏହି ସତ୍ୟ ହୃଦୟଙ୍ଗମ ହେବାପରେ ମଣିଷ ତାର ଶରୀରର ତୁଚ୍ଛତା ବୁଝିପାରେ । ଯେତେବେଳେ ମନୁଷ୍ୟ ସ୍ଥୂଳ ଓ ସୂକ୍ଷ୍ମ ଉପାଦାନ ଗୁଡ଼ିକର ଭେଦ ବୁଝିପାରେ ଓ ଆୟତ୍ତ କରିପାରେ, ସେତେବେଳେ ସେ ସୂକ୍ଷ୍ମରୁ ସ୍ଥୂଳକୁ ଓ ସ୍ଥୂଳରୁ ସୂକ୍ଷ୍ମକୁ ଯାତାୟାତ କରିବାର କ୍ଷମତା ଅର୍ଜନ କରିପାରେ । କ୍ରମବିବର୍ତ୍ତନ ମାଧ୍ୟମରେ ମାନବର ପ୍ରଗତି ସହିତ ଏଦିଗରେ ସଫଳତା ଭବିଷ୍ୟତରେ ସତ ହେବାକୁ ଯାଉଅଛି । ମଣିଷ ପରେ ବୁଝିପାରିବ ଯେ ସେ ବାସ୍ତବରେ ଏକ ଅଦୃଶ୍ୟ ଆତ୍ମାମାତ୍ର । ଏହି ଅଦୃଶ୍ୟ ଆତ୍ମା ମୃତ୍ୟୁ-ରହିତ । ଧ୍ୟାନ ମାଧ୍ୟମରେ ମନୁଷ୍ୟର ଅନେକ ଉନ୍ନତି ହୋଇପାରିବ । ସେ ସବୁବେଳେ ଭାବିବ ସେ ଈଶ୍ୱରଙ୍କ କୃତି; ତାଙ୍କରି ଏକ ଛବି । ତାହାର ବିନାଶ ନାହିଁ । ସେ ପ୍ରକୃତରେ ଅବିନଶ୍ୱର ଆତ୍ମା । ତେବେ ତାହାର ଭ୍ରାନ୍ତି କାହିଁକି ସମ୍ଭବପର ହେଲା ? କାରଣ, ଶରୀର ସହିତ ଯୁକ୍ତ ରହି ଆତ୍ମା ତାର ନିଜତ୍ୱ ଭୁଲିଯାଏ । ଦୁଃଖ, କଷ୍ଟ ନୈରାଶ୍ୟ, ରୋଗ, ଶୋକରେ ପଡି ସେ ଅଦୃଶ୍ୟ ସତ୍ତାକୁ ଭୁଲିଯାଇ କେବଳ ଶରୀର ସହିତ ନିଜର ସମ୍ବନ୍ଧ ପୂର୍ଣ୍ଣଭାବରେ ସ୍ଥାପନ କରେ । ଫଳରେ ସ୍ଥୂଳରେ ପୁରାପୁରି ଭାବରେ ଜଡିତ ହୋଇ ସୂକ୍ଷ୍ମ ସତ୍ତାକୁ ଏକାବେଳେକେ ଭୁଲିଯାଏ । କିନ୍ତୁ ତାର ମୋହ ଭଙ୍ଗ ହେଲେ ସେ ବୁଝିପାରେ ଯେ ସେ କେବଳ ଅସ୍ଥି, ମାଂସ, ମଜ୍ଜାର ସମିଶ୍ରଣ ନୁହେଁ । ସେ ପ୍ରକୃତରେ ଅବ୍ୟୟ ଅଦୃଶ୍ୟ ମନୁଷ୍ୟ; ଈଶ୍ୱରଙ୍କର ଏକ ଅଙ୍ଗ । ପରମହଂସ ଯୋଗାନନ୍ଦଙ୍କ ମହତ ବାର୍ତ୍ତା ହେଲା ସବୁବେଳେ ମଣିଷ ଭାବିବା ଉଚିତ ସେ ଈଶ୍ୱରଙ୍କହିଁ ଏକ ପ୍ରତିଚ୍ଛବି; ସେ ଅବିନଶ୍ୱର; ସେ ମୃତ୍ୟୁହୀନ; ସେ ଅମର । ଶାରୀରିକ ସ୍ୱରୂପ ତାର ଅମର ଆତ୍ମାରଏକ ଛାୟାମାତ୍ର । ସେ ଅସଲରେ କାୟାବିହୀନ ରୂପ ପରମେଶ୍ୱରଙ୍କର ।

ଯଦି ଏହି ସୃଷ୍ଟିର ଅନ୍ତର୍ନିହିତ ସତ୍ତା ଏକ ପରମ ସତ୍ୟ, ତେବେ ତାହାର ଉଦ୍‌ଘାଟନରେ ଏତେ ପ୍ରଚ୍ଛନ୍ନତା ଓ କୌଶଳର ପ୍ରୟୋଗ କାହିଁକି ? ଏପରି ଲୁଚୁକାଳି ଖେଳର ଆବଶ୍ୟକତା ବା କଣ ହୋଇପାରେ ? ଏହି ସବୁ ପ୍ରଶ୍ନରାଜିରୁ ମଣିଷ ମନରେ ସନ୍ଦେହର ପ୍ରଭାବ ଆବହମାନ କାଳରୁ ପ୍ରବାହିତ । ଏହି ସୂକ୍ଷ୍ମ ରହସ୍ୟର କାରଣ ପରମହଂସ ଯୋଗାନନ୍ଦ ଅବଲୀଳାକ୍ରମେ ପ୍ରକାଶ କରି ଅଛନ୍ତି ତାଙ୍କର ଅନବଦ୍ୟ ଭାଷା ମାଧ୍ୟମରେ । ସମସ୍ତେ ଜାଣନ୍ତି ଆମର ଚିନ୍ତା ଗୁଡ଼ିକ ଅଦୃଶ୍ୟ ଅବସ୍ଥାରେ ମନରେ ସ୍ଥାନିତ । କେବଳ ସ୍ୱପ୍ନରାଜ୍ୟରେ ସେଗୁଡ଼ିକ ଦୃଶ୍ୟହୋଇପାରନ୍ତି, ଶକ୍ତିରାଜ୍ୟର ବିଶେଷ କ୍ଷମତାର ବ୍ୟବହାରରେ । ଏହି ସମଗ୍ର ବିଶ୍ୱ ପ୍ରାଥମିକ ଅବସ୍ଥାରେ ଈଶ୍ୱରଙ୍କର ଚିନ୍ତା ରାଜ୍ୟରେହିଁ ଅବସ୍ଥିତ ଥିଲା । ଏହା ତାଙ୍କର ଏକ ବିଶେଷ ପରିକଳ୍ପନା ମାତ୍ର ଥିଲା । ଏହା ଅଦୃଶ୍ୟ ରାଜ୍ୟରେ ବନ୍ଦୀ ହୋଇଥିଲା । ଏହା ଥିଲା ଏକ ଗୁପ୍ତ ରହସ୍ୟ ଈଶ୍ୱରଙ୍କର ପରମଚୈତନ୍ୟରେ ଆବୃତ । ପ୍ରକୃତରେ ଏହି ମହାବିଶ୍ୱ

ଏକ ପରିକଳ୍ପନା-ପ୍ରକଳ୍ପ ପରମେଶ୍ୱରଙ୍କର । ତେଣୁ କଳ୍ପନା ରାଜ୍ୟରେ ଏହାର ଜନ୍ମ । ତାପରେ ଇଶ୍ୱର ସ୍ଥିରକଲେ ଯେ ଏହା ବାସ୍ତବାୟିତ ହେଉ; ଏହାର ବାହ୍ୟିକ ପ୍ରକାଶ ହେଉ, ଏହା ସୂକ୍ଷ୍ମ ସ୍ୱପ୍ନ ରାଜ୍ୟରୁ ବାହାରି ସ୍ଥୂଳ ଜଗତ ରୂପରେ ଉଦ୍‌ଭାସିତ ହେଉ । ପରିଶେଷରେ ସେହି ମହାନ ସ୍ୱପ୍ନ ଶେଷ ପରିଣତି ଲାଭ କଥା ସ୍ଥୂଳ ପ୍ରକାଶରେ । ଯଦିବା ମନୁଷ୍ୟ ପକ୍ଷରେ ଏପରି ଏକ ଆଦିସ୍ୱପ୍ନ ବିଷୟରେ ହୃଦୟଙ୍ଗମ କରି, ଏହାର ମହାନ-ସ୍ଥୂଳ-ବିଭାବକୁ ସ୍ୱପ୍ନିଳ ବୋଲି ଭାବିବା ଅତ୍ୟନ୍ତ କଷ୍ଟକର ଓ ଅବିଶ୍ୱାସ୍ୟ, ତଥାପି ଏହି ଧାରଣାହିଁ ଅନ୍ତିମ ସତ୍ୟ । ତାଛଡା ଏପରି ଭାବିବାରେ କିଛି ସୁଫଳ ମଧ ଅଛି । ଧରନ୍ତୁ ଜଣେ ଯୋଦ୍ଧା ସ୍ୱପ୍ନ ଦେଖିଲେ ଯେ ଯୁଦ୍ଧ କ୍ଷେତ୍ରରେ ଆହତ ହୋଇ ତାଙ୍କର ଗୋଡହାତ ଭାଙ୍ଗି ଅସହ୍ୟ ଯନ୍ତ୍ରଣା ଅନୁଭବ କରୁଅଛନ୍ତି । ଅତିକଷ୍ଟ ପାଉ ଅଛନ୍ତି । ହଠାତ୍ ତାଙ୍କର ନିଦ ଭାଙ୍ଗିଗଲା । ସ୍ୱପ୍ନର ମଧ ଇତିହେଲା । ସେ ଦେଖିଲେ ଯେ ସେ ଅକ୍ଷତ ଶରୀରରେ ବାହାଲ ତବିୟତ୍‌ରେ ବଞ୍ଚିରହିଛନ୍ତି । ତାଙ୍କର ମନ ଉତ୍‌ଫୁଲ୍ଲ ହୋଇଉଠେ । ସେହିପରି ଏହି ସ୍ଥୂଳ-ମଣିଷ-ସ୍ଥିତିରୁ ମୃତ୍ୟୁ ମଣିଷକୁ ମୁକ୍ତି ଦେଲେ, ସେ ଜ୍ୟୋତିର୍ମୟ ବିଶ୍ୱରେ ମୁକ୍ତ ଜୀବନ ଜାପନ କରିବାକୁ ସକ୍ଷମ ହେବ । ଏହି ପ୍ରସଙ୍ଗରେ ଯୋଗାନନ୍ଦଙ୍କର ଉପଦେଶ ହେଲା ଯେ ବିଶ୍ୱର ସ୍ୱପ୍ନିଳ ସ୍ଥିତି ଓ ପ୍ରକାଶକୁ ହୃଦୟଙ୍ଗମ କରିବାକୁ ହେଲେ, ମଣିଷକୁ ନିଜର ଦୃଷ୍ଟିରାଜ୍ୟରେ ପ୍ରତିଭାତ କରି, ଧ୍ୟାନ ମାଧମରେ ଶକ୍ତିସଂଯୁକ୍ତ କରି, ସେଗୁଡିକୁ ଯଦି ଦୃଶ୍ୟପଟରେ ଚିତ୍ରଣ କରାଯାଏ, ତେବେ ସେହି ଚିନ୍ତା ଗୁଡିକ ଭାବନାଶକ୍ତିବଳରେ ଉଜ୍ଜୀବିତ ହୋଇ ଏହି ମର ଜଗତରେ ସ୍ଥୂଳ ଅଭିଜ୍ଞତାରୂପରେ ବିରାଜମାନ ହେବେ । ଏପରି ଅଭିଜ୍ଞତା ମନୁଷ୍ୟ ପକ୍ଷରେ କିଛି ନୂଆକଥା ନୁହେଁ । କାରଣ ମନୁଷ୍ୟ ତାର ସୃଷ୍ଟିଶୀଳ ଚିନ୍ତାଶକ୍ତିଦ୍ୱାରା ଏହି ବିଶାଳ ସଭ୍ୟତାର ମୂଳପତ୍ତନ କରି; ବହୁ ଉଦ୍‌ଭାବନ ଓ ଆବିଷ୍କାର ମାଧମରେ ଏହାକୁ ସଂବୃଦ୍ଧ ଓ ପରିବର୍ଦ୍ଧିତ କରିଅଛି । ପ୍ରତ୍ୟେକ ମନୁଷ୍ୟର ସୃଜନଶୀଳତା ତାର ପ୍ରକୃତିରେ ସନ୍ନିବେଶିତ ହୋଇ ରହିଅଛି । ମାତ୍ର ଅଧିକାଂଶ ଲୋକ ଚିନ୍ତାର ଫଳବତୀ ହେବାରେ ବାଧା ଉପୁଜିଲେ ତାକୁ ପରିହାର କରି, ନିଷ୍କ୍ରିୟ ହୋଇ ରହନ୍ତି । ଯେଉଁମାନେ ସେମାନଙ୍କର ଚିନ୍ତାକୁ ସୁଦୃଢ଼ ଭାବରେ ପ୍ରତିଷ୍ଠିତ କରି ତାହାକୁ ରୂପାୟନ କରିବାରେ ସମସ୍ତ ଶକ୍ତି ନିୟୋଗ କରନ୍ତି, ସେହିମାନେହିଁ ଜୀବନରେ ସଫଳକାମ ହୁଅନ୍ତି । ତାଙ୍କର ଚିନ୍ତାରାଜି ସ୍ଥୂଳଜଗତରେ ସବଳ ଭାବରେ ପ୍ରତିଷ୍ଠିତ ହୋଇ ଶୋଭାପାଆନ୍ତି । ଲୋକେ କହନ୍ତି ଯେ ତାଙ୍କର ସ୍ୱପ୍ନ ସଫଳ ହେଲା । ପ୍ରକୃତରେ ସଭ୍ୟତାର ବହିଃପ୍ରକାଶ ମନର କାରଖାନାରୁ ପ୍ରସ୍ତୁତ ହୋଇଥାଏ । ଯାହାକିଛି ପୃଥିବୀରେ ଦେଖାଯାଏ ତାହାର ଅସଲ ସ୍ୱରୂପ ହେଲା ଚିନ୍ତାର ରୂପାୟନ । ଆମେ ସମସ୍ତେ ଭାବିଚିନ୍ତି କାମ କରିଥାଉଁ, ମାତ୍ର ସ୍ଥୂଳ ରୂପରେ ଭୁଲି, ଚିନ୍ତାର ମହତ୍ୱକୁ ଭୁଲିଯାଉ । ସ୍ଥୂଳରୂପଟିହିଁ ଆମ ପକ୍ଷରେ ବାସ୍ତବ

ଭାବରେ ପ୍ରତିଭାତ ହୁଏ । ତାହାର ମୂଳସ୍ରୋତ ଯେଉଁ ଚିନ୍ତାରୁ ଉଦ୍‌ଭୂତ, ତାହା ସ୍ମୃତି ପଟରୁ ବିଲୁପ୍ତ ହୋଇଥାଏ ରୂପାୟନପରେ । ଏହାହିଁ ଅସଲ ବାସ୍ତବତା । ଟିକିଏ ଭାବିଲେ ଜଣାଯାଏ ଏହି ଉକ୍ତିର ସତ୍ୟତା । ସେହି ଚିନ୍ତାଶକ୍ତିକୁ ଶରୀର ଉପରେ ପ୍ରୟୋଗ କଲେ, ଅବାଞ୍ଛିତ ଅଭ୍ୟାସ, ଦୁରାରୋଗ୍ୟବ୍ୟାଧି, ଦୁଃଖଦୁର୍ଦ୍ଦଶା ମଧ ମଣିଷ ପାର ହୋଇପାରେ । ସେହି ଚିନ୍ତାଶକ୍ତିବଳରେ ମଣିଷ ପରିବେଶର ପରିବର୍ତ୍ତନ ମଧ କରିପାରେ । ସେ ଭାବିବା ଉଚିତ ସମଗ୍ର ବିଶ୍ୱ ପରିବର୍ତ୍ତନଶୀଳ । ସେପରି ଆମର ବ୍ୟକ୍ତିଗତ କଷ୍ଟ, ରୋଗ, ଭୟ ଇତ୍ୟାଦି ମଧ ଶୀଘ୍ର ଚାଲିଯିବେ ଏହା ଭାବିବା ଉଚିତ । ସବୁବେଳେ ଭାବିବା ଦରକାର ଏହା ସବୁ ସ୍ୱପ୍ନ ମାତ୍ର । ଶୀଘ୍ର ଚାଲିଯିବେ । ମଣିଷ ମଧ ଚାଲିଯିବ । ତାହାହେଲେ ଆଉ ଅସୁବିଧା ହେବ ନାହିଁ । ଏହି ମରଜଗତର କୌଣସି ଘଟଣା ମଣିଷକୁ ଦୁଃଖ ଦେଇପାରିବନାହିଁ, ତାହା ମନକୁ ଅତ୍ୟାଚାରରେ ପୀଡିତ କରିପାରିବ ନାହିଁ । ପ୍ରକୃତରେ ଜଡବସ୍ତୁ ଓ ଚିନ୍ତା ମଧରେ ଏକ ସୂକ୍ଷ୍ମ ସମ୍ପର୍କ ରହିଛି । ଏହାକୁ ହୃଦୟଙ୍ଗମ କଲେ ପ୍ରକୃତ ସତ୍ତାକୁ ବୁଝାଯାଏ । ଈଶ୍ୱରଙ୍କ ମହାନ୍ ସ୍ୱପ୍ନର ଫଳ ହେଉଛି ଏହି ମହାବିଶ୍ୱ । ସେହି ସ୍ୱପ୍ନରୁ ଜାତ ଆମେ ସଭିଏଁ । ଆମ ସ୍ୱପ୍ନରୁ ଜାତ ଆମର କୃତି । ଲଘୁ ଗୁରୁ, ଧନୀ, ନିର୍ଦ୍ଧନ, ସୁସ୍ଥ ଅସୁସ୍ଥ ସବୁ ମାନବ ଜାଣିବା ଦରକାର ଯେ ଏହି ଭେଦଭାବ କେବଳ ସ୍ୱପ୍ନ-ସୃଷ୍ଟ ଓ ଅଳୀକ; ବାସ୍ତବ ନୁହେଁ । ଯେପରି ପିଲାଦିନର ଅନେକ ଇଚ୍ଛା ଅପୂରଣ ରହିଲେ ମଧ, ତାହା ପଛରେ ପଡିଯାଇଛି । ତାହା ଏବେ ଆଉ ବାସ୍ତବ ହୋଇ ନାହିଁ । ଯାହା ଭବିଷ୍ୟତରେ ଆସିବ ତାହା ମଧ ଦିନେ ଚାଲିଯିବ । କିଛି ସ୍ଥିର ନୁହେଁ । ସିନେମାରେ ପ୍ରଦର୍ଶିତ ଚଳଚ୍ଚିତ୍ର ପରି ଅଳିକ । ଏହି ଜୀବନର ଛବିଗୁଡିକୁ ଚଳଚ୍ଚିତ୍ର ଭଳି ମନେ କରି ନିସ୍ପୃହ ହୋଇ ଜୀବନର କର୍ମ ସମ୍ପାଦନ କରିବା ବିଧେୟ । ସେକ୍ସପିଅର ଲେଖିଛନ୍ତି ଯେ ସମଗ୍ର ଜଗତ ଏକ ରଙ୍ଗମଞ୍ଚ । ଆଉ ମଣିଷମାନେ ନାଟକର ଚରିତ୍ର । ସେମାନେ ନିଜ ନିଜର ଅଭିନୟ ସାରି ଫେରିଯିବେ । ସେହିପରି କବିବର ରାଧାନାଥ ଲେଖିଛନ୍ତି :- ''କେହି ରହି ନାହିଁ ରହିବେ ନାହିଁଟି, ଭବରଙ୍ଗ ଭୂମି ତଳେ ; ସର୍ବେ ନିଜ ନିଜ ଅଭିନୟ ସାରି, ଭାହୁଡିବେ କାଳ ବଳେ ।''

ଯଦି ମଣିଷ ଦିନେ ଏହି ପୃଥିବୀଛାଡି ଚାଲିଯିବ ତେବେ ତାହାର ପୃଥିବୀପୃଷ୍ଠରେ ଅବତରଣ କଣ ମୂଲ୍ୟହୀନ ? ତାହାର ସବୁ କର୍ମ ବୃଥା ? ତାହାର ସଂସାରକୁ ଯିବା ଆସିବା କରିବା ନିରର୍ଥକ ? ନା, ତାନୁହେଁ । ପରମହଂସ ଯୋଗାନନ୍ଦ କହନ୍ତି ଯେ ଈଶ୍ୱର ମନୁଷ୍ୟକୁ ପୃଥିବୀ ପୃଷ୍ଠକୁ ପଠାଇଥିଲେ ତାର ଶାରୀରିକ ମାନସିକ ଓ ଆଧାତ୍ମିକ ଶକ୍ତିର ବ୍ୟବହାର କରି ସେ କେତେକ ବିଶେଷ ଫଳ ଲାଭ କରିପାରିବ । ଯନ୍ତ୍ରକୁ ଯେପରି ବିଦ୍ୟୁତ ଶକ୍ତି ଚାଳିତ କରିଥାଏ; ସେହିପରି ହାଡମାଂସ ଓ କୋଟି କୋଟି ତନ୍ତୁକୁ ସ୍ନାୟୁର ମଧଦେଇ

''ପ୍ରାଣ ଶକ୍ତି'' ପ୍ରବାହିତ ହୋଇ ତାହା ଅତିଜଟିଳ ମନୁଷ୍ୟ-ଯନ୍ତ୍ରକୁ ଚାଳନ କରୁଅଛି । ଏହି ପ୍ରାଣ ହେଲା ଏକ ପ୍ରଜ୍ଞାବିଶିଷ୍ଟ ଜୀବନୀଶକ୍ତି । କିନ୍ତୁ ମନୁଷ୍ୟର ବୁଦ୍ଧିକୁ ତାହାର ବିବେକ ବା ପ୍ରଜ୍ଞା ସବୁବେଳେ ପ୍ରଭାବିତ କରିପାରୁନାହିଁ । ପ୍ରକୃତ ପ୍ରଜ୍ଞାର ଆଲୋକକୁ ଅବମାନନା କରି, ମନୁଷ୍ୟ ନିଜର ଇନ୍ଦ୍ରିୟ ଆସକ୍ତିରେ ପଡି ଆତ୍ମାର କଥା ଶୁଣୁନାହିଁ । ଗୀତାରେ ଶ୍ରୀକୃଷ୍ଣ କହିଛନ୍ତି ଯେ ବୁଦ୍ଧିଠାରୁ ଉନ୍ନତର ସତ୍ତାହେଲା ଆତ୍ମା । ତାହାର ନିର୍ଦ୍ଦେଶ ମଣିଷ ସବୁବେଳେ ପାଳନ ନକରି ଗଡ୍ଡାଳିକା ପ୍ରବାହରେ ଭାସିଯାଏ । ଦୈନନ୍ଦିନ ଅସାର କର୍ମରେ ଲିପ୍ତ ରହି ଗୋଟିଏ ଯନ୍ତ୍ରଭଳି କାମକରେ । ଅଭ୍ୟାସକୁ ପ୍ରାଧାନ୍ୟ ଦିଏ । ତାହାର ଅନ୍ତର୍ନିହିତ ପରମ ସତ୍ତାକୁ କୌଣସି ଅଧିକାର ନଦେଇ, ଗତାନୁଗତିକ ଭାବେ କାମକରି ଭାବେ ତାର କର୍ତ୍ତବ୍ୟ ଶେଷ । ତାହାର ଶାରୀରିକ ଇଚ୍ଛାଦ୍ୱାରା ପରିଚାଳିତ ହୋଇ ଶାରୀରିକ ଆନନ୍ଦରେ ନିବିଷ୍ଟ ହୋଇରହେ । ଏହା ଦ୍ୱାରା ମନୁଷ୍ୟର ଅନ୍ତର୍ନିହିତ ପ୍ରବଳ ଇଚ୍ଛା ଶକ୍ତି ଯାହା ପ୍ରାଣକୁ ପ୍ରଭାବିତ କରିବାକଥା ତାହା ନଷ୍ଟ ହୋଇଯାଏ । ଉନ୍ମତ୍ତ ଯୌନ ଚେତନା, ନିଶାଦ୍ରବ୍ୟ ଏବଂ ହିଂସା ଈର୍ଷାଦି ପ୍ରବୃତ୍ତି ଗୁଡିକ ମଣିଷର ମନକୁ ଅଧିକାର କରି ତାହାର ଆତ୍ମିକ ଉଚ୍ଛାଶକ୍ତିକୁ ଅକାମି କରିଦିଏ । ଏହା ଫଳରେ ଅତି ମୂଲ୍ୟବାନ ଐଶ୍ୱର୍ଯ୍ୟ ଧ୍ୱଂସପ୍ରାପ୍ତ ହୋଇ, ଏକ ନିର୍ବୀର୍ଯ୍ୟ କ୍ଲିବତ୍ୱ ମନୁଷ୍ୟକୁ ଅଧିକାର କରି ପକାଏ । ତାହାର ପ୍ରଭାବରୁ ମୁକ୍ତ ହେବାର ଆଶା ଦିନୁଦିନ କ୍ଷୀଣ ହୋଇଆସେ । ମଦୁଆ ବା ଚୋରଙ୍କୁ ଯଦି ପଚରାଯାଏ ଯେ ସେମାନେ କଣ ପ୍ରକୃତରେ ସେମାନଙ୍କର ପ୍ରବୃତ୍ତିକୁ ଭଲପାଆନ୍ତି, ସେମାନେ ମନା କରିବେ । ମାତ୍ର ସେଥିରୁ ନିବୃତ୍ତ ହେବାର କ୍ଷମତା ସେମାନଙ୍କର ନଥାଏ । ଅଭ୍ୟାସ ସେମାନଙ୍କୁ କ୍ରିତଦାସରେ ପରିଣତ କରିଦେଇ ଥାଏ । ସେମାନଙ୍କର ନିଜତ୍ୱ ଉଭେଇ ଯାଇଥାଏ ।

ମାତ୍ର ମନୁଷ୍ୟଯଦି ତାର ବିବେକ ଓ ପ୍ରଜ୍ଞାର କଥାମାନିଚଳେ ତେବେ ସେ ନିଜର ପ୍ରଭୁତ୍ୱ ବଜାୟ ରଖେ । ଏହି ସଂସାରର ରାଜା ମଧ୍ୟ ହୋଇପାରେ ନିଜର ଇଚ୍ଛାଶକ୍ତି ଓ ପ୍ରଜ୍ଞାବଳରେ । ସଂସାରରେ ପ୍ରଲୋଭନର ଅଭାବ ନାହିଁ । ତାହା ସର୍ବତ୍ର ବିଛେଇ ହୋଇ ପଡିଛି । ମନୁଷ୍ୟକୁ ନିମ୍ନଗାମୀ କରିବାର ଆହ୍ୱାନ ଦେଉଅଛି । ତାହାକୁ କିପରି ଆଡେଇଯାଇ ନିଜର ଇଚ୍ଛାଶକ୍ତିକୁ ଉନ୍ନତି ପଥରେ ଚାଳନା କରିହେବ ? ତାହାର ଏକମାତ୍ର ଉପାୟ ହେଉଛି ମଣିଷ ତାର ଜୀବନରେ ଗୋଟିଏ ମହତ୍ ଆଦର୍ଶର ଅନୁସରଣ କରି, ତାହାର ପ୍ରତିଷ୍ଠା ନହେବା ପର୍ଯ୍ୟନ୍ତ ଆଦର୍ଶର ପଥ ପରିହାର ନ କରିବା । ''ଉତ୍ତିଷ୍ଠତ, ଜାଗ୍ରତ, ପ୍ରାପ୍ୟ ବରାନ୍‌ନ ନିବୋଧତ ।'' ଯେପର୍ଯ୍ୟନ୍ତ ଆଦର୍ଶର ଶେଷ ପରିଣତି ନପାଇଛି, ମଣିଷ ତାହାର ଉଦ୍ୟମ ଚଳାଇଯିବା ଆବଶ୍ୟକ । ଏହା ଉପନିଷଦର ବାଣୀ, ଏହି ସାରକଥାକୁ ମନେରଖି, ଯେତେଥର ଅକୃତକାର୍ଯ୍ୟ ହେଲେ ମଧ୍ୟ ନିଜର ପ୍ରଚେଷ୍ଟା ବଳବତ୍ତର କରିବା । ନିଜ ମନରେ

ଏକ ଦୃଢ଼ ପ୍ରତିଜ୍ଞା କରିବା ଉଚିତ ଯେ ଏହି ଆଦର୍ଶ ସଫଳ ନ ହେବା ପର୍ଯ୍ୟନ୍ତ କେବେହେଲେ ମଣିଷ ବିଶ୍ରାମ ନେବନାହିଁ । ସେଥିରୁ ବିରାମ ଚାହିଁବ ନାହିଁ । ସବୁବେଳେ ଆଗେଇ ଚାଲିବ ଏକ ବଳୀୟାନ ଇଚ୍ଛାଶକ୍ତିର ପ୍ରାବଲ୍ୟଦ୍ୱାରା । ଏହି ଦୃଢ଼, ସବଳ, ଶକ୍ତିପୂର୍ଣ୍ଣ ଇଚ୍ଛାଶକ୍ତି ଶେଷରେ ମଣିଷକୁ ତାହାର ଲକ୍ଷ୍ୟରେ ପହୁଞ୍ଚାଇ ଦେବ ନିଶ୍ଚିତ ଭାବରେ । କୌଣସି ସତ୍‌କର୍ମ କରିବାକୁ ଗଲେ ଇଚ୍ଛାଶକ୍ତିର ଅପୂର୍ବ କ୍ଷମତା ବଳରେ ମଣିଷ ସିଦ୍ଧିଲାଭ କରିଥାଏ । ପ୍ରଥମେ ବାଧା ଆସିଲେ ମଧ୍ୟ ଶେଷରେ ଅନେକ ସାହାଯ୍ୟ, ସହଯୋଗ, ସଦିଚ୍ଛା ମିଳିଥାଏ ମଣିଷକୁ । ତାହାର ଉଦ୍ଦେଶ୍ୟ ସଫଳ ହୋଇ ତାକୁ ଅତ୍ୟଧିକ ଆନନ୍ଦ ଓ ପ୍ରେରଣା ଦେଇଥାଏ । ଯୋଗାନନ୍ଦ କହିଛନ୍ତି ଯେ ଶରୀରର ସ୍ଥୂଳଦାବି ପରିହାର କରି ସୂକ୍ଷ୍ମଚେତନାକୁ ଆଦରିଲେ, ପ୍ରଜ୍ଞାକୁ ଦୃଢ଼ିଭୂତ କଲେ, ସଦ୍‌ବୁଦ୍ଧିର ବ୍ୟବହାର କରି ଗନ୍ତବ୍ୟ ପଥରେ ଅଗ୍ରସର ହେଲେ, ଐଶ୍ୱରିକ ଚୈତନ୍ୟ ସାହାଯ୍ୟରେ, ପ୍ରାଣର ଅପୂର୍ବ ସ୍ପନ୍ଦନରେ, ଆନନ୍ଦର ଅପ୍ରାକୃତ ଲହରୀରେ ମନୁଷ୍ୟର ଚରମହିତ ସାଧିତ ହୁଏ । ତେଣୁ ସବୁ କ୍ଷମତା ପ୍ରୟୋଗ କରି ମଣିଷ ନିଜର ଇଚ୍ଛାଶକ୍ତିକୁ ସୁଦୃଢ଼ ଭାବରେ ପ୍ରତିଷ୍ଠା କରିବାହିଁ ଏକାନ୍ତ କାମ୍ୟ । ଏହାହିଁ ଜୀବନର ଶ୍ରେଷ୍ଠ ଉଦ୍ଦେଶ୍ୟ ଓ ଈଶ୍ୱରକୃତ ଏହି ସଂସାରର ଅସାରତାମଧ୍ୟରେ ଏକ ମାତ୍ର ସାରବସ୍ତୁ । ମନୁଷ୍ୟକୁ ଏହି ଶିକ୍ଷା ଦେବାପାଇଁ ''ଜୀବନ''ର ପୃଥିବୀରେ ଅବତରଣ ।

ଏହି ପ୍ରସଙ୍ଗରେ ଶ୍ରୀ ଅରବିନ୍ଦଙ୍କର କେତେକ ଉକ୍ତି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ତାଙ୍କର ଅତି ପ୍ରସିଦ୍ଧ କାବ୍ୟ ''ସାବିତ୍ରୀ''ରେ ସେ ଲେଖିଛନ୍ତି ଯେ ଆମର କୌଣସି ଦୃଶ୍ୟମାନ ଶତ୍ରୁନାହିଁ । କିନ୍ତୁ ଆମର ଚତୁର୍ପାର୍ଶ୍ୱରେ ବହୁ ଅଦୃଶ୍ୟ ଶକ୍ତି କାମ କରୁଅଛନ୍ତି । ସେହି ଶକ୍ତି ଗୁଡିକର ସ୍ପନ୍ଦନ ଅଜାଣତରେ ଆମ୍ଭମାନଙ୍କୁ ଘେରିପକାଇ, ଅଜ୍ଞାତ ରାଜ୍ୟର ପ୍ରଭାବ-ସ୍ରୋତରେ ଆମକୁ ଭସାଇନେଇ ଯାଆନ୍ତି । ଆମର ମନରୁ ନିସୃତ ନହେଲେ ମଧ୍ୟ, ବହୁ ଚିନ୍ତାର ପ୍ରଭାବ ଆମ ହୃଦୟକୁ ଅଧିକାର କରିବସେ । ଆମର ଜୀବନ ଏକ ଅସ୍ଥିରତାର ଜାଲରେ ଛନ୍ଦିହୋଇଯାଏ । ଏହାର ବିସ୍ତାର କରିବାକୁ ଯାଇ ଶ୍ରୀ ଅରବିନ୍ଦ ଲେଖିଛନ୍ତି ଯେ କେତେକ ସୂଚନା ମନୁଷ୍ୟର ମନରୁ ଜାତ ନହୋଇ ବାହାରୁ ଆସେ। ଅନ୍ୟମାନଙ୍କ ମାଧ୍ୟମରେ ତାହା ଆମଠାରେ ପହୁଞ୍ଚେ । ବହିର୍ଜଗତରୁ ହେଉ ବା ପ୍ରକୃତିର ବାହ୍ୟ ଶକ୍ତିରୁ ହେଉ ତାହା ଆମମନ ଭିତରେ ପ୍ରବେଶ କରି ଲାଖି ରହେ । ଆମେ ଭାବୁ ଏହି ଚିନ୍ତା ଆମର ନିଜସ୍ୱ । ତେଣୁ ଏହା ଆମର କର୍ମକୁ ପ୍ରଭାବିତ କରେ । ଯଦି ମଣିଷ ଜାଣିପାରନ୍ତା ଯେ ଏହି ସୂଚନା ତାହାର ନିଜର ନୁହେଁ; ଆଉ କାହାର; ତେବେ ସେଥିରୁ ନିଷ୍କୃତି ପାଇପାରନ୍ତା । ସେ ଲେଖିଛନ୍ତି ଯେ ସୂଚନା କେବଳ ଚିନ୍ତା ବା ଶବ୍ଦଦ୍ୱାରା ପ୍ରେରିତ ହୁଏ ନାହିଁ । ବାଜିକର ଯେତେବେଳେ ତାର ଇନ୍ଦ୍ରଜାଲର ବିକାଶ କରି ତାହାର ସୂଚନା ବିକ୍ଷେପ କରେ ବା ଶାନ୍ତଭାବରେ ମାନସିକ ସୂଚନାର ବ୍ୟବହାର କରିଥାଏ, ଏହା ମଧ୍ୟ ସେହି ''ସୂଚନା''ର ଅନ୍ତର୍ଗତ । ଯେତେବେଳେ

ବିଶେଷ ସ୍ପନ୍ଦନଦ୍ୱାରା ଅସୁସ୍ଥତାର ସୂଚନା ମଣିଷ ମନରେ ପ୍ରଭାବ ବିସ୍ତାର କରେ ବା କୌଣସି ଅଶୁଭ ଶକ୍ତିର ଜାଲ ମଣିଷ ମନରେ କୌଣସି ସୂଚନା ମାଧ୍ୟମରେ ପ୍ରସାର ଲାଭ କରେ, ତାହାମଧ୍ୟ ଏହି ସୂଚନା-କ୍ରମର ଏକ ପରିପ୍ରକାଶ । କେତେକ ସମୟରେ ମଣିଷ ଦେହରେ ଏକ ପ୍ରକାର କମ୍ପନ ଅନୁଭୂତ ହୁଏ; ଏଥିସହିତ ବିଶେଷ ସ୍ପନ୍ଦନ ମିଶ୍ରିତ ହୋଇଥାଏ । ହଠାତ୍ ଶରୀରରେ ଥଣ୍ଡାଲାଗେ, କାଶ ଇତ୍ୟାଦି ହୁଏ; ସେତେବେଳେ ମଣିଷ ଭାବେ ତାହାର ଶରୀର କୌଣସି କାରଣରୁ ଅସୁସ୍ଥ ବା ଦୁର୍ବଳ ହୋଇପଡିଛି । ତାକୁ ଭଲ ଲାଗୁନାହିଁ; ବା ତାହାର ବୋଧହୁଏ ଶୀଘ୍ର ଜ୍ୱରହେବ । ଏହି ସୂଚନା ତାହାର ମନରେ ଏକ ପ୍ରକାର ଅଶୁଭ ସ୍ପନ୍ଦନ ଜାତକରାଇ ତାକୁ ଶୀଘ୍ର ଅସୁସ୍ଥ କରିପକାଏ । ଏହି କମ୍ପନ ଏକ ଅଶୁଭ ଶକ୍ତିର କ୍ରିୟା, ସୂଚନା ମାଧ୍ୟମରେ ରୂପାୟିତ । ମଣିଷ ଏ ବିଷୟରେ ଅବହିତ ହେବା ଉଚିତ୍ ।

ଏ ବିଷୟରେ ବୁଝାଇବାକୁ ଯାଇ ଶ୍ରୀ ଅରବିନ୍ଦ ଲେଖିଛନ୍ତି ଯେ ଅବଚେତନ ମନରେ ଏହି ସୂଚନାଗୁଡିକଯାଇ ବସାବାନ୍ଧି ରହନ୍ତି । ସେହିଗୁଡିକ ପରେ ସେଠାରୁ ଉତ୍ଥିତ ହୋଇ ନାନାପ୍ରକାର ମାନସିକ ବ୍ୟାଧିର ମଧ୍ୟ ସୃଷ୍ଟି କରିଥାନ୍ତି । ଏହି ଅଶୁଭ ଶକ୍ତିର ସୂଚନା ଅତ୍ୟନ୍ତ ଗଭୀର ସ୍ତରରେ କାମ କରିଥାଏ । ବାହାରର ଶକ୍ତି ଅନ୍ତର ମଧ୍ୟରେ ପ୍ରବେଶ କରି ତାହାର ପ୍ରଭାବ ସୃଷ୍ଟି କରେ । ଏହି ଅବଚେତନ ମନର ପ୍ରକ୍ରିୟା ବିଷୟରେ ଗବେଷଣା ହୋଇ, ପାଶ୍ଚାତ୍ୟରେ ମାନସିକ ରୋଗର ନିରାକରଣ ହୋଇପାରୁଛି ଅସ୍ତିବାଚକ ସୂଚନା ଦ୍ୱାରା । ମନୋବିଜ୍ଞାନୀମାନେ ଏହି ଅବଚେତନର ପଦ୍ଧତି ଅନୁଶୀଳନ କରି, ସବଳ ଅସ୍ତିବାଚକ ସୂଚନା ରୋଗୀମାନଙ୍କ ମନରେ ପ୍ରବିଷ୍ଟ କରାଇ, ଅବଚେତନର ଅଶୁଭ ଶକ୍ତିକୁ ନାଶ କରି ସେମାନଙ୍କୁ ଆରୋଗ୍ୟ କରି ପାରୁ ଅଛନ୍ତି । ଫ୍ରାନ୍ସର ଜଣେ ପ୍ରସିଦ୍ଧ ଡାକ୍ତର ତାଙ୍କର ଦୃଢ଼-ସୂଚନାତ୍ମକ ଚିକିତ୍ସା ପଦ୍ଧତିରେ ହଜାର ହଜାର ରୋଗୀକୁ ଭଲ କରିଦେଇଥିବା କଥା ଶ୍ରୀ ଅରବିନ୍ଦ ଉଲ୍ଲେଖ କରିଅଛନ୍ତି । ବୈଜ୍ଞାନିକମାନେ ପ୍ରମାଣ କରିସାରିଲେଣି ଯେ କେବଳ ଶାରୀରିକ କାରଣରୁ ରୋଗ ଜନ୍ମଲାଭ କରେ ନାହିଁ । ପ୍ରଚ୍ଛନ୍ନ ମାନସିକ ବିଶୃଙ୍ଖଳା ଯୋଗୁ ମଧ୍ୟ ବ୍ୟାଧି ପରିବ୍ୟାପ୍ତ ହୋଇଥାଏ । ଯେଉଁମାନେ ଦୁର୍ବଳ ମନର ଅଧିକାରୀ ସେମାନଙ୍କ ମଧ୍ୟରେ ଅଶୁଭସୂଚନା ଶୀଘ୍ର କାମ କରିଥାଏ । ମଣିଷର ଏକ ବାହ୍ୟପରିମଣ୍ଡଳ ଅଛି ଯାହା ତାହାକୁ ରୋଗରୁ ରକ୍ଷା କରିଥାଏ । ତାହା ସୁଦୃଢ଼ ହେଲେ ରୋଗ ଆକ୍ରମଣ କରିପାରେ ନାହିଁ । ସେଥିରେ ଛିଦ୍ରଥିଲେ ଅଶୁଭ ସୂଚନା ତାହାକୁ ଭେଦ କରି ମନର ଗହନରେ ପ୍ରବେଶ କରି ରୋଗ ସୃଷ୍ଟି କରିଥାଏ । ବ୍ୟାଧି ଗୋଟିଏ ନିକୃଷ୍ଟ ଶକ୍ତିକ୍ଷେତ୍ରର ପରିପ୍ରକାଶ । ଏହା ମଣିଷର ଦୁର୍ବଳତାର ସୁଯୋଗନେଇ, କୌଣସି ଛିଦ୍ର ମଧ୍ୟଦେଇ ପ୍ରବେଶ କରି, ତାହାର ଅଭେଦ-ବର୍ମକୁ ଭେଦ କରି ତାହାର ଶରୀର ମଧ୍ୟରେ ପ୍ରବେଶ କରେ । ଏହା ବାହାରୁ ଭିତରକୁ ଆସି ମଣିଷକୁ ଦୁର୍ବଳ କରି, ରୋଗର ପଥ ପ୍ରଶସ୍ତ କରିଦିଏ । ଏହା

ସୂକ୍ଷ୍ମଭାବରେ କାମକରେ । ମଣିଷକୁ ଏହାର ଆଗମନବାର୍ତ୍ତା ଜଣାଏ ନାହିଁ । ମଣିଷ ତାର ନିଜସ୍ୱ ଇଚ୍ଛାଶକ୍ତିଦ୍ୱାରା ଜାଣିବାପରେ ଏହାକୁ ଅଟକାଇପାରେ । ସେ କ୍ଷମତା ମଧ୍ୟ ମଣିଷର ଅଛି । ସେତେବେଳେ ରୋଗର ପ୍ରଭାବ ଅତି ସାମାନ୍ୟ ଜ୍ୱର ଭଳି ଅନୁଭୂତ ହୋଇ ପ୍ରଶମିତ ହୋଇଯାଏ । ତେଣୁ ଆମର ବହିରାଙ୍ଗର ଅଭେଦ-ଚର୍ମକୁ ଶକ୍ତିଶାଳିକରି ରଖିବା ଦରକାର । ଏହାର ଏକମାତ୍ର ଉପାୟ ହେଲା ପ୍ରବଳ ଇଚ୍ଛାଶକ୍ତିର ଅଖଣ୍ଡ-ଜାଗ୍ରତ-ପ୍ରଭାବ । ମଣିଷ ତାହାର ଶୁଭ-ଇଚ୍ଛା ଶକ୍ତିକୁ ସଦାସବଳ କରି ରଖି, ତାକୁ ଶୁଭକର୍ମରେ ନିୟୋଜିତ କଲେ, ଏହି ଶକ୍ତି ତାକୁ ସବୁ ବିପଦରୁ ରକ୍ଷା କରିବା ପାଇଁ ସମର୍ଥ ହେବ ।

ମହାଜାଗତିକ ଶକ୍ତି କ୍ଷେତ୍ରରେ ଶୁଭ ଓ ଅଶୁଭ ଦୁଇ ଶକ୍ତିହିଁ କାମ କରନ୍ତି । ଯେପରି ଆଲୋକର ଶକ୍ତି ଅଛି, ସେହିପରି ଅନ୍ଧକାରର ଶକ୍ତି ମଧ୍ୟ ଅଛି । ଯେପରି ମିତ୍ରଭାବାପନ୍ନ ଶକ୍ତି ଅଛି, ସେହିପରି ଶତୃଭାବାପନ୍ନ ଶକ୍ତି ମଧ୍ୟ ଅଛି । ଏହି ଶକ୍ତିଗୁଡିକ ସବୁ ମଣିଷ ଉପରେ ନିଜର ପ୍ରଭାବ ବିସ୍ତାର କରିଥାଆନ୍ତି । ମଣିଷର ନିଜର ଚେତନା ଓ ଇଚ୍ଛାଶକ୍ତି ଅନୁସାରେ ଏହି ପ୍ରଭାବର ଶୁଭାଶୁଭ ପରିଣତି ହୋଇଥାଏ । ଏହି ନିର୍ବୈକ୍ତିକ-ଶକ୍ତି-ରାଜିଯେ ଅହରହ କର୍ମବ୍ୟସ୍ତ ତାହା ଆମ୍ଭେମାନେ ଫଳ ଭୋଗଦ୍ୱାରା ଜାଣିପାରୁ । ତେବେ ସାଧାରଣ ମଣିଷର ବୋଧଶକ୍ତି ସଂକୀର୍ଣ୍ଣ । ସବୁକଥା ସେ ଜାଣିପାରେ ନାହିଁ । କିନ୍ତୁ ଏହି ଅଦୃଶ୍ୟ ଶକ୍ତି ଗୁଡିକର ଘୂର୍ଣ୍ଣାବର୍ତ୍ତରେ ସେ ବାସକରେ । ମାତ୍ର ଆମର ଅନ୍ତର୍ନିହିତ ଚେତନାରେ ସେମାନଙ୍କର ଛବି ପଡେ । ସେମାନଙ୍କର ପ୍ରଭାବ, ସେହି ଚେତନା, ଆମଠାରେ ପ୍ରକାଶ କରେ ମଝିରେ ମଝିରେ । ବେଳେବେଳେ ଆମେ ସେ ବିଷୟରେ ଅଳ୍ପକିଛି ଜାଣିପାରୁ ଆମର ସ୍ଥୁଳ ଅଗଭୀର ଜ୍ଞାନ ମାଧ୍ୟମରେ । କେବେକେବେ ଆମର ଅଜଣାଭୟ, ଆଶଙ୍କା, ଇଚ୍ଛା ଅନିଚ୍ଛାର ଦ୍ୱନ୍ଦ୍ୱ, ସୂଚନା-ଧାରଣାର ସହାବସ୍ଥାନ, ଆକର୍ଷଣ, ବିକର୍ଷଣ ଓ ଦ୍ୱିଧା ଇତ୍ୟାଦି ସିଧାସଳଖ ଐଶ୍ୱରିକ ପ୍ରେରଣା ମାଧ୍ୟମରେ ଏହି ଅଦୃଶ୍ୟ ଶକ୍ତିର ପ୍ରତିଫଳନ ସାମୟିକ ଭାବରେ ଚେତନମନକୁ ଆନ୍ଦୋଳିତ କରେ । ଏହି ପ୍ରତିଫଳନଦ୍ୱାରା ଟିକିଏ ଭବିଷ୍ୟତର ଆବରଣ ଉନ୍ମୋଚିତ ହୁଏ । ଏହା ସେହି ଆଦି କମ୍ପନ ବା ସ୍ପନ୍ଦନର କିୟଦଂଶରୁ ଜାତ ହୋଇଥାଏ । ସମୟର ଦୂରତ୍ୱକୁ ଭେଦକରି, ଅଦର୍ଶନର ଚର୍ମକୁ ଛିଦ୍ରକରି, ଏହି ସ୍ପନ୍ଦନ ମଣିଷକୁ ଭବିଷ୍ୟତ ଆଗମନର ସୂଚନା ଦେଇଥାଏ । ଏହା ଜ୍ଞାନ-ଅଜ୍ଞାନର ମିଶ୍ରିତ ଫଳ ହେଲେ ମଧ୍ୟ, ଏହା ଏକ ପ୍ରଚ୍ଛନ୍ନ ଶକ୍ତିର ଅବିନ୍ୟସ୍ତ ପ୍ରକାଶ, ସତ୍ୟ ଓ ଅସତ୍ୟର ଦୋଳାରେ ଦୋଳାୟମାନ । ଶ୍ରୀ ଅରବିନ୍ଦ ତାଙ୍କର ଅନବଦ୍ୟ ଭାଷାରେ ଲେଖିଛନ୍ତି ଯେ ଏହି ଅଦୃଶ୍ୟ ଶକ୍ତିରାଜି ସମୁହ ଭାବରେ, ସ୍ରୋତଭଳି, ବହୁ ଲହରୀମାଳାରେ ଶୋଭିତ ହୋଇ ଘଟଣା-ଅଘଟଣ, ପ୍ରଖର ଗତି ଓ ସ୍ଥିତି ମାଧ୍ୟମରେ ଜୀବଜନ୍ତୁ ମନୁଷ୍ୟର ସୃଷ୍ଟିସହିତ ମିଳିତ ହୋଇ ଅହରହ ସେମାନଙ୍କୁ ଗଢ଼ିବାରେ, ପରିବର୍ତ୍ତନ କରିବାରେ, ସେମାନଙ୍କ ମଧ୍ୟରେ ପ୍ରବେଶ କରିବାରେ, ସେମାନଙ୍କ

ମଧ୍ୟରେ ଶକ୍ତିଗଠନ ପ୍ରକ୍ରିୟାରେ ସାହାଯ୍ୟ କରିବାରେ ସଦା ବ୍ୟାପୃତ ଅଛନ୍ତି । ପ୍ରତ୍ୟେକ ବ୍ୟକ୍ତି ବିଶେଷ ଏହି ମହାଜାଗତିକ ଶକ୍ତିର କ୍ରୀଡ଼ନକ ମାତ୍ର । ସେମାନଙ୍କର ସ୍ୱରୂପ ଆମ ନିକଟରେ ଅଜଣା ରହିଯାଏ । ସେମାନେ ଅତି ଗୁପ୍ତ ଓ ଗୂଢ଼ ପ୍ରକ୍ରିୟାରେ ନିଜର ଉଦ୍ଦେଶ୍ୟ ସାଧନ କରିଥାଆନ୍ତି ମାତ୍ର । ଆମର ଅନ୍ତର୍ନିହିତ ସତ୍ତା ଏହି ଶକ୍ତିର କର୍ମପନ୍ଥା ଓ କର୍ମଫଳ ବିଷୟରେ ସବୁ ଜାଣିପାରେ । ମାତ୍ର ଏହି ଅନ୍ତର୍ନିହିତ ସତ୍ତା ଯେତେବେଳେ ମହାଜାଗତିକ କ୍ଷେତ୍ରକୁ ଉନ୍ନତ ହୋଇ, ପରମ ଚୈତନ୍ୟର ସଂସ୍ପର୍ଶରେ ଆସେ କେବଳ ସେତେବେଳେହିଁ ତାର ପ୍ରଜ୍ଞା ଏବିଷୟରେ ଅବହିତ ହୁଏ । ଏଥିପାଇଁ ଗୁପ୍ତ ପରଦାକୁ ଭେଦକରି ଆମର ଚେତନା ଅଦୃଶ୍ୟ ଶକ୍ତିର ସନ୍ଧାନରେ ବ୍ରତୀହେଲେ ଶେଷରେ ଗୂଢ଼ ଶକ୍ତିର ପରିଚୟ ପାଇପାରେ । ଏବେ ବିଜ୍ଞାନ ଆବିଷ୍କାର କରିଛି ଯେ ଗୋଟିଏ ଦିଗରୁ ଦେଖିଲେ ଏହି ଶକ୍ତିର ଗତି ଲହରୀଭଳି; ଅନ୍ୟ ପକ୍ଷରେ ଦେଖିଲେ କଣାର ସମଷ୍ଟିପରି । ଏହି କଣା ଗୁଡିକ ନିଜ ନିଜର ରାସ୍ତାରେ ଚାଲିଛନ୍ତି; କୌଣସି ନିର୍ଦ୍ଦିଷ୍ଟ ପଦ୍ଧତିକୁ ଅନୁସରଣ ନକରି । ଶ୍ରୀ ଅରବିନ୍ଦ ଏହି ଆବିଷ୍କାର ଉଲ୍ଲେଖକରି ଜଣାଇଛନ୍ତି ଯେ ଉପର୍ଯ୍ୟୁକ୍ତ ଶକ୍ତି କ୍ଷେତ୍ରରେ ମଧ୍ୟ ଅନୁରୂପ ପ୍ରଣାଳି ପ୍ରଜୁଯ୍ୟ ହୁଏ । ଅର୍ଥାତ୍ ଜ୍ଞାତ ଓ ଅଜ୍ଞାତ, ପ୍ରକାଶିତ ଓ ପ୍ରଚ୍ଛନ୍ନ ଶକ୍ତି ରାଜିର ପଦ୍ଧତି ପ୍ରାୟତଃ ଏକରକମର । ମାତ୍ର ଆଉ ଏକ ପ୍ରକାରର ଗୁପ୍ତ ଶକ୍ତି ଅଛି ଯାହା ନିମ୍ନସ୍ତରରେ କାମକରେ । ଏହା ଇନ୍ଦ୍ରଜାଲ ନୁହେଁ । ବାଜିକରର ବିଦ୍ୟା ନୁହେଁ । ଏହା ପ୍ରକାରାନ୍ତରେ ଗୂଢ଼ ହେଲେ ମଧ ଶକ୍ତିଶାଳୀ । ଲୋକଲୋଚନର ଅଗୋଚରରେ ଏହାର କୃତି, ବିସ୍ମୟ ଜାଗରଣ କରେ, ମଣିଷକୁ ବିଭ୍ରାନ୍ତ କରେ । ତାକୁ ବହୁ ଅସୁବିଧା ଓ ବିପଦରେ ପକାଏ । ''ସାବିତ୍ରୀ'' କାବ୍ୟରେ ଶ୍ରୀ ଅରବିନ୍ଦ ଏ ବିଷୟରେ ଉଲ୍ଲେଖ କରିଅଛନ୍ତି । ଗୋପନୀୟତାର ଅନ୍ତରାଳରେ ସ୍ୱର୍ଗରୁ ଅତି ଦୂରରେ ରହି ''ସମୟ''ର ନିମ୍ନସ୍ତରର କ୍ଷୁଦ୍ର ଦେବତାମାନେ ବହୁ ହୀନ ଚକ୍ରାନ୍ତରେ ଲିପ୍ତ । ସେମାନେ ମନୁଷ୍ୟକୁ ହଇରାଣରେ ପକାଇ ମଜା ଦେଖନ୍ତି । ଏହି ରହସ୍ୟାବୃତ୍ତ ଜଗତ ନିକୃଷ୍ଟ ପ୍ରବୃତ୍ତିରେ ପରିପୂର୍ଣ୍ଣ । ଏହା ମଣିଷର ମନର ନୀଚ କ୍ଷେତ୍ରରେ ଓ ବିଶ୍ୱ-ବିସ୍ତୃତିର ନିମ୍ନ ବଳୟରେ ଶୁଦ୍ଧପୂତ ନିୟମାବଳୀର ଆଢୁଆଳରେ କାମ କରେ । ଏହି ରହସ୍ୟ-ଶକ୍ତିକ୍ଷେତ୍ର "Occult" ବା ନିଭୃତ ବିଦ୍ୟା ନାମରେ ଅଭିହିତ । ଅନେକ ଅପକର୍ମର ନାୟକ ଏହି ନିଭୃତ ଶକ୍ତିକ୍ଷେତ୍ରରେ ବାସିନ୍ଦା । ତିବ୍ବତୀୟମାନେ ଏହି ବିଦ୍ୟାରେ ପାରଙ୍ଗମ । ମାଡାମ୍ ନୀଲ୍ ଏହି ବିଷୟରେ ତାଙ୍କ ବହିରେ ଲେଖିଛନ୍ତି । ଏହି ଗୁଢ଼ ବିଦ୍ୟାର ପ୍ରଭାବ କିପରି ଶାରୀରିକ କ୍ଷେତ୍ରରେ ପ୍ରୟୋଗ କରାଯାଏ ତାହା ଲାମାମାନେ ଭଲ ଜାଣନ୍ତି ।

ଏ ବିଷୟରେ ଭାରତର ପ୍ରଥମ ବୈଦେଶିକ ଦୂତ ତାଙ୍କ ଜୀବନୀରେ ଏକ ସୁନ୍ଦର ଅଭିଜ୍ଞତା ବର୍ଣ୍ଣନା କରିଛନ୍ତି । ସେ ଯେତେବେଳେ ତିବ୍ବତରେ ଅବସ୍ଥାପିତ ଥିଲେ,

ସେତେବେଳେ ଦେଖିଲେ ଯେ ଲାମାମାନେ ନିଭୃତ ବିଦ୍ୟାରେ ପିଲାମାନଙ୍କୁ ଶିକ୍ଷା ଦେଉଥିଲେ । ଏହି ବିଦ୍ୟା ବିଷୟରେ ତାଙ୍କର ବିତୃଷ୍ଣାଥିଲା । କାରଣ ଏହି ବିଦ୍ୟାର ଏ ଯୁଗରେ କୌଣସି ଉପଯୋଗୀତା ନାହିଁ । ସେ ଲାମାମାନଙ୍କୁ ତାଙ୍କର ମତ ବ୍ୟକ୍ତ କରିଥିଲେ । ମାତ୍ର ଲାମାମାନେ କହିଲେ ଯେ ଏ ବିଦ୍ୟାରେ ପ୍ରକୃତିକୁ ପ୍ରଭାବିତ କରାଯାଇପାରେ । ଏହା ବିଶେଷ ଶକ୍ତିଶାଳୀ । ଦରକାର ପଡିଲେ ଆମକୁ ଜଣାଇବ । ତୁମର ଆଶା ଆକାଂକ୍ଷା ଆମେ ପୂରଣ କରିପାରିବୁ । ଏତିକିବେଳେ ନେହେରୁ ତିବ୍ବତ ଭ୍ରମଣରେ ଆସିଲେ । ସେଥିପାଇଁ ରାଷ୍ଟ୍ରଦୂତ ବ୍ୟସ୍ତ ରହିଲେ । ଗିରିବର୍ତ୍ମ ଦେଇ ପଣ୍ଡିତ ନେହେରୁଙ୍କ କର୍ମଚାରୀବର୍ଗ ତାଙ୍କ ସହିତ ଭଲରେ ଭଲରେ ଲାସାଠାରେ ପହଞ୍ଚିଗଲେ । ତାଙ୍କର କାମଦାମ ପ୍ରାୟ ସରିଲା । ଏଥର ଫେରିଯିବାର ସମୟ ଆସିଲା ନେହେରୁଙ୍କର । ସେତେବେଳେ ମନେପଡିଲା ଦୂତଙ୍କର ଯେ ଜଳବାୟୁ ଭଲନୁହେଁ । ଝଡହେଲେ ବିପଦ । ଲାମାମାନଙ୍କର ସାହାଯ୍ୟ ଲୋଡିଲେ ରାଷ୍ଟ୍ରଦୂତ । ଲାମା କହିଲେ ଯେ "ପ୍ରକୃତି" ଅବହିତ ଅଛନ୍ତି ଯେ ନେହେରୁ ପାହାଡର ଦୁର୍ଗମ ରାସ୍ତାଦେଇ ଆସୁଛନ୍ତି । ନେହେରୁ ସମଗ୍ର ବିଶ୍ୱକୁ ସ୍ନେହ କରନ୍ତି । ତେଣୁ ପ୍ରକୃତି ତାଙ୍କୁ ମଧ୍ୟ ସ୍ନେହ କରନ୍ତି । ନେହେରୁଙ୍କ ଯେପରି କୌଣସି ଅସୁବିଧା ନହୁଏ ସେ ବିଷୟରେ ପ୍ରକୃତି ବିଶେଷ ଭାବରେ ସଜାଗ ଅଛନ୍ତି । ତାଙ୍କର କୌଣସି ବିପଦ ହେବ ନାହିଁ । ତାହାହିଁ ଘଟିଲା । ଦୁର୍ଯୋଗ ସତ୍ୱେ, ନେହେରୁଙ୍କ ଯାତ୍ରାରେ କୌଣସି ବାଧାବିଘ୍ନ ହେଲା ନାହିଁ । ରାଷ୍ଟ୍ରଦୂତ ଆଶ୍ୱସ୍ତ ହେଲେ । ବୁଝିଲେ ଯେ ତିବ୍ବତୀୟ ଲାମାମାନେ ପ୍ରକୃତି ବିଷୟରେ ସମ୍ୟକ୍ ଜ୍ଞାନ ଆହରଣ କରିଛନ୍ତି ।

ସେଥିପାଇଁ ଶ୍ରୀ ଅରବିନ୍ଦ ଲେଖିଛନ୍ତି ଯେ ମାନସିକ ଶକ୍ତି ବା ଜୀବନୀଶକ୍ତିର ସ୍ଥୂଳ ଶରୀର ଉପରେ ଗୂଢ଼ ଶକ୍ତିର ପ୍ରଭାବ ବିସ୍ତାର କରି ସ୍ଥୂଳ ଶରୀରକୁ ନିଜ ଇଚ୍ଛାରେ ଚାଳନା କରିପାରେ । ଏହି ଗୁହ୍ୟ ବିଦ୍ୟାର ଅସ୍ତିତ୍ୱ ଅବିସମ୍ବାଦିତ ସତ୍ୟ । ଏକଥା ଭୁଲିଲେ ଚଳିବ ନାହିଁ ଯେ ମାନସିକ ଶକ୍ତିର କ୍ଷମତା ଅପରିସୀମ ଓ ସର୍ବବ୍ୟାପି । ଏହା ସବୁସ୍ତରରେ ବିସ୍ମୟକର ଭାବରେ ପ୍ରଭାବଶାଳୀ । ଏହି ମୌଳିକ ଏକକ ଶକ୍ତି ଘନିଭୂତ ହୋଇ ବହୁ ଆକାର ଧାରଣକରିପାରେ । ଏହା କୌଣସି ଗୋଟିଏ ରୂପରେ ସୀମାବଦ୍ଧ ନୁହେଁ । ତେଣୁ ଏହାର ପ୍ରକାଶ ଭିନ୍ନ ଭିନ୍ନ ସ୍ତରରେ ବିଭିନ୍ନ ଆକାରରେ ହେବା ପ୍ରକୃତିଗତ । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଏହି ଗୁପ୍ତ ଓ ଗୂଢ଼ ରାଜ୍ୟର ମନୁଷ୍ୟ ଉପରେ ପ୍ରଭାବ ଅଛି । ଏକ ଦିଗରେ ଏହି ରାଜ୍ୟ ସୌନ୍ଦର୍ଯ୍ୟର ପ୍ରତୀକ, କବି ଚିତ୍ରକର, ସାହିତ୍ୟ ସେବକ, ସଙ୍ଗୀତଜ୍ଞ ଏହି ଗୂଢ଼ ଜୀବନ ସଂସ୍ପର୍ଶରେ ଆସନ୍ତି । ଏହା ଛଡା ଏଠାରେ ଉଚ୍ଚାକାଙ୍କ୍ଷା, କ୍ଷମତା, ଯୌନତା, ଭୋଗ-ଇଚ୍ଛା ଇତ୍ୟାଦିର ପ୍ରବଳତା ମଧ୍ୟ ଅନ୍ତର୍ନିହିତ । ଏହି ରାଜ୍ୟରେ ଅନ୍ଧକାର, ବିପଦ

ବିଭତ୍ସତାର ପ୍ରଭାବ ମଧ୍ୟ ବିଶେଷ ଭାବରେ ପରିଲକ୍ଷିତ ହୁଏ । ଏହି ସ୍ତରର ତମସାବୃତ ଜୀବନର ପ୍ରଭାବ ମନୁଷ୍ୟଉପରେ ପଡି ତାକୁ କ୍ରୂର, ନୀଚ, ମ୍ଳେଚ୍ଛ ଓ ରାକ୍ଷସ ପ୍ରବୃତି ଦ୍ୱାରା ପରିଚାଳିତ କରେ । ଫଳରେ ପୃଥିବୀରେ ହୀନ ଚରିତ୍ରର ପ୍ରସାର ବଢ଼ିଯାଏ । ଏହି ପ୍ରସଙ୍ଗରେ ପଣ୍ଡିଚେରୀ ଆଶ୍ରମର ଶ୍ରଦ୍ଧେୟା ଶ୍ରୀମା ତାଙ୍କର ଅଭିଜ୍ଞତା ବ୍ୟକ୍ତ କରି ଏହି ଅନ୍ଧକାର ରାଜ୍ୟର ପ୍ରଭାବରେ ଜୀବନର ତାମସିକ ରୂପ କିପରି ବର୍ଦ୍ଧିଷ୍ଣୁ ହୋଇପଡିଚି ତାର କେତେକ ଦୃଷ୍ଟାନ୍ତ ଦେଇଅଛନ୍ତି । ଯଥା ହିଟଲରଙ୍କ ଉପରେ ସଇତାନର ପ୍ରଭାବ । ଶୟତାନ ଅତି ଉଜ୍ଜ୍ୱଳ ରୂପରେ ଉଭାହୋଇ ହିଟଲରଙ୍କୁ ଆଦେଶ ଦେଉଥିଲା । ଶୟତାନ ଆଡକୁ ହିଟଲର ଚାହିଁ ପାରୁନଥିଲେ । ତାହାର ଆଭା ଆଖିକୁ ଅନ୍ଧକରି ଦେଉଥିଲା । ମାତ୍ର ହିଟଲର ତାକୁ ଈଶ୍ୱରଙ୍କ ପରି ଭକ୍ତି କରି ତାହାର ପ୍ରରୋଚନାରେ ବିଶ୍ୱଯୁଦ୍ଧ ସୃଷ୍ଟି କରି ସେଥିରେ ନିଜେ ଧ୍ୱଂସ ହୋଇଗଲେ । ସେହିପରି ଫ୍ରାନ୍ସର ଜଣେ ଲୋକ ଜୁଆଖେଳରେ ଶଇତାନର ପ୍ରଭାବରେ ପଡିଗଲା । ସେ ଜିତିବାକୁ ଆରମ୍ଭ କଲା । ଶଇତାନର ନିର୍ଦ୍ଦେଶରେ ଖେଳି କୋଟି କୋଟି ଟଙ୍କା ଲାଭକଲା । ତାର ଜଣେ ବନ୍ଧୁ ତାକୁ ଚେତାଇଦେଲେ ଭୂତ କବଳରେ ନ ପଡିବାକୁ । ସେ ରାଗିଯାଇ ବନ୍ଧୁକୁ ଗାଳିଦେଇ ତଡିଦେଲା । ତାପରେ ଶଇତାନ କହିଲା ତାହାର ସମସ୍ତ ଟଙ୍କା ଗୋଟିଏ ବାଜିରେ ଲଗାଇବାକୁ । ସେ ସେଥିରେ ଲଗାଇ ସବୁ ହାରିଯାଇ ନିସ୍ୱ ହୋଇଗଲା । ଭାବିଲା ତାହାର ଦୁର୍ଭାଗ୍ୟ । ଶେଷରେ ଶଇତାନ ତାକୁ ରିଭଲ୍‌ଭର୍‌ରେ ଆତ୍ମଘାତୀ ହେବାକୁ ପ୍ରବର୍ତ୍ତାଇଲା । ସେ ଏତେ ମର୍ମାହତ ହୋଇଥିଲା ଯେ ଆଗପଛ ନଭାବି ଆତ୍ମହତ୍ୟା କଲା । ଏହପରି ଶଇତାନ ବା ଭୂତପ୍ରେତ ମାନଙ୍କର ପ୍ରଭାବ ମଣିଷ ଉପରେ ପଡେ ବୋଲି ଶ୍ରୀମା କେତେକ ଦୃଷ୍ଟାନ୍ତ ଦେଇ ବୁଝାଇଛନ୍ତି । ଅଦୃଶ୍ୟ ରାଜ୍ୟର କେତେ ଯେ ସ୍ତର ଅଛି ତାହା ସବୁ ମନୁଷ୍ୟକୁ ଜଣାନାହିଁ । ସେଥିରେ ପରୀଠାରୁ ଆରମ୍ଭ କରି ନୀଚସ୍ତରର ଜୀବ ବାସ କରନ୍ତି । ମଣିଷକୁ ଭୁଲବାଟ ଦେଖାଇ ସେମାନେ ଆନନ୍ଦ ପାଆନ୍ତି । ପୁଣି କେତେକ ସାହାଯ୍ୟ ମଧ୍ୟ କରନ୍ତି । ଶ୍ରୀମା ନିଜର ଅଭିଜ୍ଞତା ବର୍ଣ୍ଣନା କରିଛନ୍ତି । ଚୁଲିରେ ଦୁଧ ବସେଇଦେଇ କୌଣସି କାମରେ ବାହାରକୁ ଆସିଛନ୍ତି; ଅନୁଭବ କଲେ କେତେ ଛୋଟ ଛୋଟ ଜୀବ ତାଙ୍କର ଲୁଗା ଟାଣୁଛନ୍ତି । ସେ ଦଉଡିଯାଇ ଦେଖନ୍ତିତ ଦୁଧ ଉତୁରିପଡିବା ଉପରେ । ଏହିପରି ବହୁଥର ତାଙ୍କର ଅନୁଭୂତି ହୋଇଛି । ଶ୍ରୀମାଙ୍କ ପରି ସାଧକମାନଙ୍କର ଦୃଷ୍ଟି ଅଦୃଶ୍ୟ ଜୀବମାନଙ୍କୁ ଦେଖିପାରେ ଓ ବୁଝିପାରେ । ସାଧାରଣ ଲୋକଙ୍କର ସେ କ୍ଷମତା ନଥାଏ । ତେବେ ଏହି ତାମସିକ ଶକ୍ତିର କାର୍ଯ୍ୟକ୍ରମ ବିଷୟରେ ଆଂଶିକ ଧାରଣା ଉଣାଅଧିକେ ଅନେକ ଙ୍କର ଅଛି । ଅନ୍ୟମାନେ ଅଭିଜ୍ଞତାରୁ ସେମାନେ କିଛି ଶୁଣିଥାଆନ୍ତି ଓ ଜାଣି ଥାଆନ୍ତି । ଆମ ଦେଶରେ ତନ୍ତ୍ର ଓ ତାନ୍ତ୍ରିକ ମାନଙ୍କ ବିଷୟରେ ଅନେକେ ଜାଣନ୍ତି । ସେମାନଙ୍କ ବିଷୟରେ ବିସ୍ତାରିତ ଆଲୋଚନାର ପ୍ରୟୋଜନ ନାହିଁ ।

ନିମ୍ନଗାମୀ ପ୍ରବୃତ୍ତିରୁ ମଣିଷ କିପରି ଉଚ୍ଚସ୍ତରକୁ ଉଠିବ; ପ୍ରମାଦ, ଆଳସ୍ୟ, ନିଦ୍ରା ପରିହାର କରି ନିଜର ଆତ୍ମ-ସତ୍ତା ବିଷୟରେ ସମ୍ୟକ୍ ଭାବରେ ଚେତନା ଲାଭ କରି, ଜୀବନୀ ଶକ୍ତିରୁ ବଳ ଓ ସାମର୍ଥ୍ୟ ପାଇ ଈଶ୍ୱରାଭିମୁଖୀ ହେବ, ତାହାହିଁ ବିଚାର୍ଯ୍ୟ ବିଷୟ । ଜୀବନ ହେଲା ସୂକ୍ଷ୍ମ-କମ୍ପନର ଏକ ଉଜ୍ଜ୍ୱଳ ସଂମିଶ୍ରଣ । ଏହି ପୃଥିବୀରେ ବିଶ୍ୱ-ଶକ୍ତି ବିପୁଳ ସଂଭାର ନେଇ ସର୍ବଦା କର୍ମରତ । ଆମ୍ଭେମାନେ ସେଥିରୁ କେବଳ ସାମାନ୍ୟ ଅଂଶ ଆମର ଜୀବନ-ପ୍ରଗତି ନିମନ୍ତେ ପାଇଥାଉ । ବିଶ୍ୱରେ ସତ୍ୟର ବିଶାଳ ସ୍ରୋତ ପ୍ରବାହିତ । ସେଥିରୁ ଟିକିଏ ମାତ୍ର ଆମର ମନ ସଂଗ୍ରହ କରିପାରେ । ସୀମାହୀନ ବିଶ୍ୱର ଗୋଟିଏ ଛୋଟ କୋଣରେ ଆମର ଜୀବନର ଧାରା ଅନନ୍ତ ବାରିଧୀର ଏକ କ୍ଷୁଦ୍ର-ପ୍ରବାହ ମାତ୍ର । ଏକଥା ଶ୍ରୀ ଅରବିନ୍ଦ ତାଙ୍କର ମହାକାବ୍ୟ ''ସାବିତ୍ରୀ''ରେ ଲେଖିଛନ୍ତି (୨/୩)। ସୂକ୍ଷ୍ମ କମ୍ପନ ପୃଥିବୀର ଜୀବନକୁ ତରଙ୍ଗାୟିତ କରି ସର୍ବଦା କର୍ମରତ । ଏହି ସ୍ପନ୍ଦନରେ ମିଥ୍ୟା, ଅଜ୍ଞାନ, ବିଶୃଙ୍ଖଳାର କମ୍ପନ ସହିତ ମିଶିଛି ସତ୍ୟ ଓ ଶୃଙ୍ଖଳାର ସ୍ପନ୍ଦନ । ଏହା ଉର୍ଦ୍ଧ୍ୱଦେଶରୁ ତଳକୁ ପ୍ରବାହିତ । ଏହା ମିଥ୍ୟା, ଅନ୍ୟାୟ, ଅଜ୍ଞାନର ସ୍ପନ୍ଦନକୁ ଅତିକ୍ରମ କରି ଧୀରେ ଧୀରେ ନିଜର ପ୍ରତିଷ୍ଠା କରିବାକୁ ଅଗ୍ରସର ହେଉଅଛି । ମଣିଷ ମଣିଷ ମଧ୍ୟରେ ସ୍ପନ୍ଦନର ପ୍ରଭେଦ ସ୍ପଷ୍ଟଭାବରେ ଜଣାଯାଏ । କେତେକ ଲୋକ ଉଗ୍ରସ୍ୱଭାବର । ସେମାନଙ୍କର କଥାବାର୍ତ୍ତାରେ କ୍ରୋଧ ପ୍ରକାଶିତ ହୁଏ । ସେହି କ୍ରୋଧର କମ୍ପନ ଅନ୍ୟମାନଙ୍କୁ ପ୍ରଭାବିତ କରିଥାଏ । ''ମେଳି''ରେ ଲୋକେ ଉତ୍ୟକ୍ତ ହୋଇ ହିଂସାକାଣ୍ଡ ଭିଆଇ ଥାଆନ୍ତି । ସେଥିରେ ଶାନ୍ତଲୋକେ ମଧ୍ୟ ପ୍ରଭାବିତ ହୋଇ ଅଭାବନୀୟ ଭାବରେ ଦୁଷ୍କର୍ମ କରିବା ଦେଖାଯାଏ । ଏହା ଅଶୁଭ ସ୍ପନ୍ଦନର ଏକ ଅବଧାରିତ ପରିଣତି । ସେହିପରି ଶାନ୍ତ, ଧୀର, ଉଚ୍ଚଭାବାପନ୍ନ ମଣିଷଙ୍କ ପାଖକୁ ଗଲେ ଶୁଭଶକ୍ତିର ଆଭାସ ମିଳେ । ଯେପିର ଆଧ୍ୟାତ୍ମିକତାର ଶୀର୍ଷସ୍ଥାନରେ ଥିବା ଗୁରୁ, ସାଧକ, ବ୍ରହ୍ମଜ୍ଞାନୀ ଇତ୍ୟାଦି । ସେମାନଙ୍କର ପ୍ରଭାବ ଶୀଘ୍ର ଅନୁଭୂତ ହୁଏ । ସେଥିପାଇଁ ଶଙ୍କରାଚାର୍ଯ୍ୟ ଲେଖିଛନ୍ତି - ''କ୍ଷଣମିହ ସଜ୍ଜନ ସଙ୍ଗତିରେକା, ଭବତି ଭବାର୍ଣ୍ଣବ ତରଣେ ନୌକା'' ସଜ୍ଜନ ମାନଙ୍କର କ୍ଷଣିକ ସଙ୍ଗରେ ସଂସାରର ଦୁଃଖ ଶୋକରୁ ମୁକ୍ତି ମିଳିଥାଏ । ସେମାନଙ୍କରଠାରୁ ନିର୍ଗତ ସୂକ୍ଷ୍ମ-ସ୍ପନ୍ଦନ ଅତି ଶୁଭ ଓ କ୍ଷମତାଶାଳୀ, ତାହା ଅପରକୁ ମଧ୍ୟ ପ୍ରଭାବିତ କରିଥାଏ । ଏହା ପରୀକ୍ଷିତ ସତ୍ୟ । ମହାତ୍ମାମାନେ ପୃଥିବୀରେ ବାସ କରନ୍ତି; ପୃଥିବୀର ବିଷାକ୍ତ ପବନ ନିଶ୍ୱାସରେ ସେମାନଙ୍କ ମଧ୍ୟରେ ପ୍ରବାହିତ, ପୃଥିବୀର ଅପମିଶ୍ରିତ ଖାଦ୍ୟମଧ୍ୟ ସେମାନଙ୍କୁ ଖାଇବାକୁ ପଡେ । ପୃଥିବୀର ବାୟୁମଣ୍ଡଳରେ ବାସ କରି ମଧ୍ୟ ସେମାନେ ଏହିସବୁ ବିଷକୁ ଅମୃତରେ ପରିଣତ କରିବାକୁ ଚେଷ୍ଟା କରନ୍ତି । ପୃଥିବୀବାସୀଙ୍କୁ ଉନ୍ନତ ଜୀବନ-ମାନର ସନ୍ଧାନ ଦିଅନ୍ତି । ତମସାବୃତ ପ୍ରଭାବରୁ ମଣିଷକୁ ମୁକ୍ତ କରିବାର ବାଟ ଦେଖାନ୍ତି । ଏହି ପଦ୍ଧତିରେ, ବିଷକୁ ଅମୃତରେ ପରିଣତ କରିବାର ପନ୍ଥା ସ୍ଥିରିକୃତ । ମହାତ୍ମା ଓ ସିଦ୍ଧପୁରୁଷ,

ମାନଙ୍କର ଜୀବନ ଧାରଣର ଉଦ୍ଦେଶ୍ୟ ହେଲା, ମଣିଷକୁ ତମସାରୁ ଜ୍ୟୋତି ଆଡକୁ ନେଇଯିବା, ସ୍ଥୂଳ ପ୍ରବୃତ୍ତିର ପ୍ରଭାବରୁ ସୂକ୍ଷ୍ମ ଚେତନାର ବାର୍ତ୍ତା ଦେଇ ମଣିଷକୁ ଉଦ୍‌ବୁଦ୍ଧ କରିବା ।

## ଶେଷ ଆହ୍ୱାନ

"ଶୁଭକର୍ମ ପଥେ କରି ନିର୍ଭୟ ଗାନ,
ତବ ଦୁର୍ବଳ ଶଂସୟ ହେଉ ଅବସାନ ।
ଚାଲ ଚାଲ ଯାତ୍ରୀ, ଚାଲ ଦିନରାତ୍ରି,
କର ଅମୃତ-ଲୋକ ପଥ ଅନୁସନ୍ଧାନ ।
ଜଡତା ତାମସ ହୋଇ ଉତ୍ତୀର୍ଣ୍ଣ,
କ୍ଲାନ୍ତି ଜାଲ କର ଜୀର୍ଣ୍ଣ ବିଦୀର୍ଣ୍ଣ ।
ଦିନ ଅନ୍ତେ ଅପରାଧିତ ଚିତ୍ତେ,
ମୃତ୍ୟୁ-ତରଣ-ତୀର୍ଥେ କର ସ୍ନାନ ।
ଶୁଭ କର୍ମପଥେ କର ନିର୍ଭୟ ଗାନ ।" — ରବୀନ୍ଦ୍ରନାଥ

ମଣିଷକୁ ଈଶ୍ୱର ନିଜର ସ୍ୱରୂପ-ବିକ୍ଷେପରେ ତିଆରି କରି ଅଛନ୍ତି । ତେବେ ମଣିଷ ମଣିଷ ମଧ୍ୟରେ ଏତେ ପ୍ରଭେଦ କାହିଁକି ? କିଏ ଅତି ଉନ୍ନତ ସାହିତ୍ୟ ସୃଷ୍ଟିକରିପାରେ ତ କେହି ନିଜର ବକ୍ତୃତାଦ୍ୱାରା ବହୁଲୋକଙ୍କୁ ମନ୍ତ୍ରମୁଗ୍ଧକରି ରଖିପାରେ । ଆଉଜଣେ ଚିତ୍ର ଆଙ୍କି ଅନ୍ୟମାନଙ୍କୁ ଚମତ୍କୃତ କରିଦେଇପାରେ । କେହି ସଙ୍ଗୀତ ର ସୁରର ଲହରୀରେ ଅନ୍ୟମାନଙ୍କର ମନକୁ ଗଭୀର ଭାବରେ ଆକୃଷ୍ଟ କରିପାରେ । ଏହା ଛଡା କେହି କେହି ଉନ୍ନତ ମାନର ଚିନ୍ତାଧାରାରେ ଅପରକୁ ଉଚ୍ଚସ୍ତରକୁ ଉନ୍ନୀତ ହେବାରେ ସାହାଯ୍ୟ କରେ । ମୁନିଋଷିମାନେ ତ ଜୀବନର ରହସ୍ୟ ବୁଝିପାରି ମଣିଷକୁ ଉଦ୍ବୁଦ୍ଧ କରନ୍ତି । ତେବେ ଭିନ୍ନ ଭିନ୍ନ ମଣିଷକୁ ଭିନ୍ନ ଭିନ୍ନ ଆକର୍ଷଣକାରୀ ଗୁଣମାନ ଦେଇ ଈଶ୍ୱର ନିଜର ପକ୍ଷପାତିତ୍ୱ ପ୍ରମାଣ କରୁନାହାନ୍ତି କି ? ଯଦି ସେ ନିଜେ ଜଣେ ପକ୍ଷପାତପୂର୍ଣ୍ଣ ପୁରୁଷ ହେଲେ; ତେବେ ତାଙ୍କର ଈଶ୍ୱରତ୍ୱ ରହିଲା କେଉଁଠି ? ଲୋକେ ଏପରି ପକ୍ଷପାତଦୁଷ୍ଟ ବ୍ୟବହାରକୁ ଆଦର୍ଶ ପୁରୁଷଠାରୁ ଆଶା କରିବେ କିପରି ? ତାହାଛଡା ବହୁ ଲୋକ ଏପରି ଅଛନ୍ତି ଯେ ସେମାନଙ୍କର କୌଣସି ବିଶିଷ୍ଟ ଗୁଣନାହିଁ । ସେପରି ଅଗଣିତ ଲୋକେ ସମାଜରେ ଗୁଣହୀନ ହୋଇ ଅବହେଳିତ ହେବା ପରେ ଈଶ୍ୱରଙ୍କଠାରେ ବିଶ୍ୱାସ ରଖିବେ ବା କିପରି ? ସେମାନେ ବୁଝିପାରିବେ ଯେ ଈଶ୍ୱର ବିଶେଷ ଯତ୍ନ ସାହାଯ୍ୟରେ ବଛେଇକରି କେତେକ ଲୋକଙ୍କୁ ଗୁଣରେ ମଣ୍ଡିତ କରି ପୃଥିବୀକୁ ପଠାଇ ଅଛନ୍ତି । ସେମାନେ ମାନ, ଯଶ, ଅର୍ଥ, ପ୍ରାଧାନ୍ୟ

ଓ ପ୍ରତିଷ୍ଠାର ଅଧିକାରୀ ହେବେ । ଆଉ ଅନ୍ୟାନ୍ୟମାନେ ନୈରାଶ୍ୟରେ କାଳକଟାଇବେ । ଏହା କିପରି ଈଶ୍ୱରସୃଷ୍ଟ ସୁବ୍ୟବସ୍ଥା ବୋଲି ବିଚାର କରାଯିବ ? ଏହାର ମୂଳରେ ତ ଘୋର ଅବ୍ୟବସ୍ଥା, ସମାନତାର ଅଭାବ, ନ୍ୟାୟର ଅପଳାପ, ନୀତିର ବିପର୍ଯ୍ୟୟ ଲୁଚି ରହିଛି ? ବିଶୃଙ୍ଖଳ ଗୁଣ-ବଣ୍ଟନରେ ପରସ୍ପର ମଧ୍ୟରେ ହିଂସା ଓ ଈର୍ଷାର ବୀଜ ଲୁଚି ରହିଛି ମଣିଷ ସମାଜରେ । ତେବେ ଶାନ୍ତି ଆସିବ କେଉଁଠାରୁ ?

ଏହାର ଉତ୍ତର ଗୋଟିଏ ସାମ୍ଭାବ୍ୟ ସୂତ୍ରରୁ ମିଳିପାରେ । ତାହାହେଲା, ଈଶ୍ୱର ଏକାକୀ ଥିଲେ ବହୁ କୋଟି ବର୍ଷ ଧରି, ତାଙ୍କୁ ଏକା ଆଉ ଭଲ ଲାଗିଲା ନାହିଁ । ଗୋଟିଏ ଅବସ୍ଥାରେ ପଡି ପଡି ଭାବିଲେ ନାଃ! ଏଥର ଏ ଅବସ୍ଥା ଅସହ୍ୟ ହୋଇ ଉଠିଲାଣି । ଏଥର ଏକରୁ ବହୁ ହେବାକୁ ପଡିବ । ଏକୋହଂ, ବହୁସ୍ୟାମ୍ । ଆଗରୁ ଉଲ୍ଲେଖ କରାଯାଇଅଛି ସୃଷ୍ଟିତତ୍ତ୍ୱର ବିଚାର ମାଧ୍ୟମରେ । ତେବେ ସେ ଅସୀମ ଆକାଶ, ଅଗଣିତ ବ୍ରହ୍ମାଣ୍ଡ ସୃଷ୍ଟିକଲେ, ସେଥିରେ ସନ୍ତୁଷ୍ଟ ହୋଇ ରହିପାରି ଥାଆନ୍ତେ । ତାହା ନକରି ପୃଥିବୀ ସୃଷ୍ଟିକରି ସେଥିରେ ମଣିଷ ଜାତିର ସୃଷ୍ଟି କଲେ କାହିଁକି ? କେତେକଙ୍କ ଅନୁମାନ ହେଲା ଯେ ଈଶ୍ୱର ଯେଉଁ ବଗିଚା ସୃଷ୍ଟି କଲେ (Garden of Eden) ସେଥିରେ କେବଳ ପତ୍ର, ପୁଷ୍ପ, ଫଳର ଅସ୍ତିତ୍ୱ ତାଙ୍କୁ ପୂର୍ଣ୍ଣ ଆନନ୍ଦ ଦେଲାନାହିଁ । ସେ ପୁଣି ଚାହିଁଲେ ଏହି ବଗିଚାଟିରେ ଅନ୍ୟମାନଙ୍କୁ ନେଇ ଖେଳିବେ । ସେହି ଖେଳର ଦୋସର ହେବେ ମଣିଷ । ତାଙ୍କର ସୁରମ୍ୟ ଉଦ୍ୟାନରେ ଖେଳିବେ ସୁନ୍ଦର ପୁରୁଷ ଓ ସ୍ତ୍ରୀ । ସେମାନେ କେବଳ ସୁନ୍ଦର ଦେଖାଯିବେ ନାହିଁ, ସେମାନେ ବିଭିନ୍ନ ଗୁଣାବଳୀରେ ଭୂଷିତ ହୋଇ ତାଙ୍କର ବଗିଚାରେ ସୁଶୃଙ୍ଖଳିତ ପଦ୍ଧତିରେ ନିଜର ଜୀବନ ଯାପନ କରିବେ । ଏହି ଉଦ୍ଦେଶ୍ୟରେ ମଣିଷକୁ ନିଜର କେତେକ ବିଶେଷ ଗୁଣ ପ୍ରଦାନ କରି, ଶକ୍ତି ସାମର୍ଥ୍ୟ ଦେଇ, ମାନସିକ ପ୍ରଗତିର ଦିଗ୍‌ଦର୍ଶନ ଦେଇ, ବହୁମୁଖୀ ଶାରୀରିକ ଓ ଚେତନାଗତ ଐଶ୍ୱର୍ଯ୍ୟ ବିମଣ୍ଡିତ କରି ମଣିଷ ସହିତ ତାଙ୍କର ଖେଳକୁ ସରସ କରିବା ଉଦ୍ଦେଶ୍ୟରେ ତାକୁ ସର୍ବଗୁଣାଳଂକୃତ କରି ଉଦ୍ୟାନକୁ ପଠାଇଲେ, ଯେପରି ଖେଳ ଭଲଭାବରେଜମିବ । ସମସ୍ତେ ସମାନ ହେଲେ ଖେଳ ଫିକା ପଡିଯିବ । ସେଥିରେ ପ୍ରତୀଯୋଗୀତା, ପରସ୍ପର ବିରୋଧୀତା, ଦଉଡର ଆବଶ୍ୟକତା ନଥିଲେ ପ୍ରହସନର ଆକର୍ଷଣ ଏକାବେଳେକେ ନଷ୍ଟ ହୋଇଯିବ । ତେଣୁ ମଣିଷ ମଣିଷ ଭିତରେ ଏତେ ପ୍ରଭେଦ, ଏତେ ବିଭିନ୍ନତା, ଏତେ ବିଚିତ୍ରତା, ଏତେ ସୂକ୍ଷ୍ମ-ବିଶିଷ୍ଟତାର ପ୍ରକାଶ । ଯେତେ ଭିନ୍ନମୋଡ ନେବ, ସେତେ ଖେଳ ବେଶୀ ଜମିବ । ନାଟକ ସେତେ ଉପଭୋଗ୍ୟ ହେବ । ଈଶ୍ୱର ଖୁସିହେବେ । ସେ ଖୁଶୀହେଲେ ମଣିଷର ଆପତ୍ତିନାହିଁ । ମାତ୍ର ମଣିଷକୁ ବିପଦରେ ପକାଇ, ହନ୍ତସନ୍ତ କରି, ଦୁଃଖ ଦେଇ, ଦୁର୍ଦ୍ଦଶାରେ ପକାଇ, ନିରାଶ କରି ତାର ଜୀବନକୁ ଦୁର୍ବିସହ

କରିବାରେ ଈଶ୍ୱରଙ୍କ ବ୍ୟବସ୍ଥାର ନୀତି ନିୟମ ଘୋର ଅବିଚାରର ପର୍ଯ୍ୟାୟଭୁକ୍ତ ହେବନାହିଁ କି ? ଏହା ଗୋଟିଏ ନୀତିଗତ ପ୍ରଶ୍ନ ।

ମଣିଷର ସେଥିପାଇଁ ଅଭିଯୋଗ ଯେ କେତେକ ଲୋକ ଈଶ୍ୱରଙ୍କ ଆଶୀର୍ବାଦପୁଷ୍ଟ ହୋଇ ବିଶେଷ ଗୁଣାବଳୀକୁ ନିଜ ଭିତରେ ରଖି ନିଜର ଉନ୍ନତି ବିଧାନରେ ସନ୍ତୁଷ୍ଟ ନରହି, ତାକୁ ଅନ୍ୟଲୋକଙ୍କ ଉପରେ ପ୍ରୟୋଗ କରି ନିଜର ସ୍ୱାର୍ଥ, ପ୍ରତିଷ୍ଠା, ପ୍ରତିପତ୍ତି ବଢ଼ାଇ ଅନ୍ୟଠାରୁ ସୁବିଧା ନେଇ ସମାଜରେ ନିଜର ସାମର୍ଥ୍ୟ ପ୍ରତିପନ୍ନ କରିବାର ଯଥାର୍ଥତା କଣ ? ଈଶ୍ୱରଙ୍କ ଏପରି ପରିଚାଳନାରେ (management) ଶ୍ରେଷ୍ଠତ୍ୱର ପରିଚୟ ମିଳୁଛି କି ? ଏହି ପ୍ରଶ୍ନର ସାମ୍ଭାବ୍ୟ ଉତ୍ତର ହେଲା ଯେ ଈଶ୍ୱରଙ୍କ ଅଭିପ୍ରେତ ନୁହେଁ ଗୁଣାବଳୀର ସ୍ୱାର୍ଥନ୍ଧ ବିନିଯୋଗ, ସୁବିଧାବାଦୀ ପ୍ରଚେଷ୍ଟା, ଅପରଠାରୁ ଉତ୍‌କର୍ଷବଳରେ ଲାଭ ଉଠେଇବା । ଈଶ୍ୱରଙ୍କ ଉଦ୍ଦେଶ୍ୟ ଅନ୍ୟପ୍ରକାର । ସେ କେତେକ ବିଶିଷ୍ଟ ଲୋକଙ୍କୁ ଉତ୍‌କୃଷ୍ଟ ଗୁଣ ଦେଇ ଅଛନ୍ତି ସେହି ଗୁଣର ବ୍ୟବହାର ଦ୍ୱାରା ଅନ୍ୟର ଉପକାର କରିବା ନିମନ୍ତେ । ଯାହା ବଳକାଶକ୍ତି ରହିଲା ତାହାକୁ ସମସ୍ତଙ୍କ ସହିତ ବାଣ୍ଟିନେବାପାଇଁ । ଯେଉଁମାନେ ଆଶୀର୍ବାଦିତ ସେମାନେ ଟ୍ରଷ୍ଟି ବା ନ୍ୟାସୀପରି, ପ୍ରାପ୍ୟସବୁ ଧନରତ୍ନ ଠୁଳ କରି, ତାକୁ ଅଭାବୀ ଲୋକଙ୍କୁ ଦାନ କରିବା ହେଲା ପ୍ରକୃତ ଉଦ୍ଦେଶ୍ୟ ଈଶ୍ୱରଙ୍କର । କେବଳ ଦାନ ନୁହେଁ, ବଳକା ଅର୍ଥ ଧନ ସମ୍ପଦ, ଆଶ୍ରୟସ୍ଥଳ ସମଗ୍ର ମାନବ ଜାତିର ଉପକାରରେ ବିନିଯୋଗ କରିବା ହେଲା ଅନ୍ତର୍ନିହିତ ଇଚ୍ଛା ଭଗବାନଙ୍କର । ସମଗ୍ର ମାନବ ଜାତି କହିଲେ, ''ଉଦ୍ଦେଶ୍ୟ'' ବରଂ ସୀମିତ ହୋଇଗଲା । ସମଗ୍ର ବିଶ୍ୱ ପାଇଁ ସମସ୍ତ ସମ୍ବଳ ଉଦ୍ଦିଷ୍ଟ । କାରଣ ଈଶ୍ୱର ଜଣକ ପାଇଁ ନୁହେଁ, ବିଶ୍ୱବ୍ରହ୍ମାଣ୍ଡ ପାଇଁ ବ୍ୟବସ୍ଥା କରିଛନ୍ତି । ସମଗ୍ର ବିଶ୍ୱହିଁ ତାଙ୍କର ଧେୟ ଓ ପ୍ରେୟ । କେବଳ ଗୋଟିଏ ବୁଦ୍ଧିଦୀପ୍ତ, ଶକ୍ତିମାନ, କୃତବିଦ୍ୟ ଓ ଦକ୍ଷ ମଣିଷ ପାଇଁ ନୁହେଁ, ଯେଉଁ ସମ୍ପଦ ବିଶ୍ୱରେ ସୃଷ୍ଟିହେଉଛି ତାହା ବିଶ୍ୱର ସବୁ ପ୍ରାଣୀମାନଙ୍କ ନିମନ୍ତେ ଠୁଳ କରାଯାଉଅଛି । ଏହା କାହାର ବ୍ୟକ୍ତିଗତ ସମ୍ପତ୍ତି ନୁହେଁ । ଏହା କୋଠ ସମ୍ପତ୍ତି । ସମସ୍ତଙ୍କର ଅଂଶ ସେଥିରେ ନିହିତ । ଈଶ୍ୱରଙ୍କର ସନ୍ତାନ ରୂପେ ସମଗ୍ର ବିଶ୍ୱ କୋଠ ସମ୍ପତ୍ତିରେ ଭାଗୀଦାର, କାରଣ ମନୁଷ୍ୟ ଯେଉଁ କ୍ଷମତା, ଶକ୍ତି, ବୁଦ୍ଧି, ଗୁଣ ରାଜିର ବ୍ୟବହାରଦ୍ୱାରା ସମ୍ପଦ ଠୁଳ କରିଥାଏ, ସେ ସବୁ ଗୁଣଗୁଡିକ ଭଗବତ୍-ପ୍ରଦତ୍ତ । ସେଗୁଡିକ ତାହାର ଏକାର ବା ନିଜର ନୁହେଁ । ଏକଥା ଗୁଣବାନ ଲୋକର ମନେରଖିବା ଉଚିତ ସଦାବେଳେ ।

ସେହିପରି ଶରୀରଟି ସବୁ କର୍ମ ସାଧନର ମୂଳ-ଯନ୍ତ୍ର । ଶରୀର ନଥିଲେ କୌଣସି କାମ ହୋଇ ପାରେ ନାହିଁ ତାହା ପୂର୍ବରୁ ଆଲୋଚିତ ହୋଇଅଛି । ଯେତେବେଳେ ଶରୀର ନିଜର ସେତେବେଳେ ମଣିଷ ଭାବିପାରେ ଯେ ଶରୀରଦ୍ୱାରା ଯେଉଁ ସିଦ୍ଧିଲାଭ କରୁଛି

ତାହା ନିଜର ନ ହୋଇ ଅନ୍ୟମାନଙ୍କର କାହିଁକି ହେବ ? ଅର୍ଥାତ୍ ନିଜର ବାହୁବଳରେ ମଣିଷ ଯାହା ଅର୍ଜନ କଲା, ସେଥିରେ ଅନ୍ୟର ଅଂଶ ଆସୁଛି କିପରି ଏବଂ କାହିଁକି ? ତାହାର ଶରୀର ଅର୍ଜିତ ସବୁ କିଛି ମଣିଷର ଏକାନ୍ତ ନିଜସ୍ୱ, ସେଥିରେ ଆଉକେହି ଭାଗବସାଇବାର ପ୍ରଶ୍ନ ହିଁ ଉଠେ ନାହିଁ । ଏହାର ଉତ୍ତର ହେଲା ଯେ ଶରୀରଟି କ୍ଷଣସ୍ଥାୟୀ । ଏହି କ୍ଷଣଭଙ୍ଗୁର ଶରୀର ମଧ ଈଶ୍ୱରଙ୍କର ଦାନ । ଏହା ଏକ ଅତି ବିରଳ ଯନ୍ତ୍ର ଈଶ୍ୱରଙ୍କର ରାଜ୍ୟରେ । ଏହାର ବିନାଶ ଅବଶ୍ୟମ୍ଭାବି ହେଲେ ମଧ, ଶରୀରମଧରେ ଅନ୍ତର୍ନିହିତ ଶକ୍ତି ଈଶ୍ୱରଙ୍କର ଏକ ଚମକପ୍ରଦ କୃତି । ପୂର୍ବରୁ ଆଲୋଚିତ ହୋଇଛି ଯେ ଭାରଉତ୍ତୋଳନରେ ପ୍ରଚଣ୍ଡ ମାନସିକ ଶକ୍ତି, ଧୃତି, ସଂକଳ୍ପଯୁକ୍ତ ହୋଇ ଶରୀର ଏପରି ବଳଶାଳୀ ହୋଇଉଠେ ଯେ ଅଭାବନୀୟ ଭାର ମଣିଷ ଉତ୍ତୋଳନ କରିପାରେ । ମଣିଷ ଦାନ୍ତର ସାହାଯ୍ୟରେ ମଟର ଗାଡିକୁ ଅଟକାଇ ଦେଇ ପାରୁଛି । ଶରୀରର ଅବିଶ୍ୱାସ୍ୟ କୀର୍ତ୍ତିରାଜି ଗାଇନେସ୍‌ବୁକ୍ ଅଫ ରେକର୍ଡରେ ଲିପିବଦ୍ଧ । ତେବେ ଏହି ସାମାନ୍ୟ ଶରୀର କାହା ବଳରେ ଅସମ୍ଭବକୁ ସମ୍ଭବ କରୁପାରୁଛି ? ଏହା ପ୍ରଚଣ୍ଡ ଇଚ୍ଛାଶକ୍ତିଯୁକ୍ତ ହୋଇ ଅସାଧସାଧନ କରିପାରୁଛି । ଏହି ସ୍ଥୂଳ ଶରୀର ଓ ମାନସିକ ବଳ ଈଶ୍ୱରଙ୍କର ମଣିଷପ୍ରତି ଏକ ବିଶେଷଦାନ । ମଣିଷ ଭାବିବା ଦରକାର ଯେ ଏହି ଶରୀର ବିରଳ କ୍ଷମତାବଳରେ ସେ ନିଜର କର୍ମ କରିବାରେ କେବଳ ଯେ ସଫଳ ହେଉଅଛି ତାହାନୁହେଁ; ସେ ସମଗ୍ର ବିଶ୍ୱରେ ନିଜର ପ୍ରତିଷ୍ଠା ସ୍ଥାପନ କରି ପାରୁଛି । ତାହାହେଲେ ତାହାର ଭାବିବା ଉଚିତ ଯେ ଏହି ମହାନ ଅବଦାନର ଫଳ ଭୋଗକଲାପରେ, ତାହାର କିଛି ଅବଶ୍ୟ-କର୍ତ୍ତବ୍ୟ କରିବା ଦରକାର । କେବଳ ସୁବିଧା ନେଇ ସ୍ୱାର୍ଥପର ଭାବରେ ଜୀବନ ଯାପନ କରିବା ନିକୃଷ୍ଟତାର ପରିଚାୟକ । ତେଣୁ ତାହାର କର୍ତ୍ତବ୍ୟ ହେଲା ସୃଷ୍ଟିକର୍ତ୍ତାଙ୍କର ଦାନର ପ୍ରତିଦାନ ଦେବା ।

କିପରି ଭାବରେ ସେ ଏହି ପ୍ରତିଦାନ ଦେବ ? ସେ ଯେପରି ଈଶ୍ୱରଙ୍କର ଦାନ ପାଇ ଅନୁଗୃହିତ ହେଲା, ସେହିପରି ସେ ମଧ ଅନ୍ୟକୁ ଦାନ ଦେବ; ଖାଦ୍ୟ, ପେୟ ଓ ଆଶ୍ରୟ ଦେବ; ଅନ୍ୟକୁ ଉନ୍ନତି କରିବାରେ ସାହାଯ୍ୟ କରିବ; ତୃଷାର୍ତ୍ତକୁ ପାଣିଦେବ, କ୍ଷୁଧାର୍ତ୍ତକୁ ଅନ୍ନଦେବ, ଦୁସ୍ଥକୁ ଓ ଦରିଦ୍ରକୁ ଅର୍ଥଦେବ, ପଛେଇ ପଡିଥିବା ଲୋକକୁ ଆଗେଇ ନେବ; ବସ୍ତ୍ରହୀନକୁ ବସ୍ତ୍ରଦେବ ଏବଂ ଶେଷରେ ଅନ୍ୟର ଅଭାବ ମୋଚନ କରିବ । ଏଥିରେ ହିଁ ତାହାର ଋଣର କିଞ୍ଚିତ ପରିଶୋଧ ହେବ । ନହେଲେ ଋଣ ଭାର ବଢ଼ି ବଢ଼ି ସେ ଅଧମରେ ପରିଣତ ହେବ, କେବଳ ଅଧମର୍ଣ ନୁହେଁ । ଅଧମ ହେବାପରେ ତାର ଶକ୍ତି ଉଭେଇଯିବ ଓ ସେ ନିଜେ ଧ୍ୱଂସ ପାଇଯିବ । ବଳବାନ ଲୋକେ ନିଜକୁ ଶକ୍ତଭାବି ଅକ୍ଷମକୁ ଉପହାସ କରି ଥାଆନ୍ତି, ମାତ୍ର ବଳ କ୍ଷଣସ୍ଥାୟୀ । ବଳ କମିଲେ ରୋଗ ଆକ୍ରମଣରେ ସେମାନେ ରୁଗ୍ଣହୋଇ ଶେଷରେ ଦୟନୀୟ ଅବସ୍ଥା ପ୍ରାପ୍ତ ହୁଅନ୍ତି । ଏହିପରି ଅନୁରୂପ ଭାବନାରେ ବିଶ୍ୱରେ ଉନ୍ନତ

ଭାବନାର ସ୍ରୋତ ପ୍ରବାହିତ ହୋଇ ମଣିଷ ଜାତିକୁ ଉଦ୍‌ବୁଦ୍ଧି କରି ସତ୍ କର୍ମରେ ନିୟୋଜିତ କରିଥାଏ । ଭଲମନ୍ଦ, ପାପପୂଣ୍ୟ, ଭୋଗ-ତ୍ୟାଗ, ଶୋଷଣ-ପୋଷଣ ଇତ୍ୟାଦି ବିରୋଧାଭାସ ମାଧ୍ୟମରେ ମନୁଷ୍ୟ ତାର ଜୀବନର ପ୍ରକୃତ ଉଦ୍ଦେଶ୍ୟ କ୍ରମେ କ୍ରମେ ବୁଝିବାକୁ ସକ୍ଷମ ହୁଏ । କାରଣ ଜୀବନ, ସିଦ୍ଧିର ଏକ ସରଳ ରେଖାନୁହେଁ । ଏଥିରେ ବିଫଳତା, ନୈରାଶ୍ୟ, ଦୁଃଖର ମଧ ଏକ ଅନମନୀୟ ପ୍ରଭାବ ରହିଛି । ଅଭିଜ୍ଞତାରୁ ଏହା ଜଣାଯାଏ । ରୋଗହେଲେ ସେ ବୁଝେ ଯେ ସେ କେତେ ଅସହାୟ, ସେତେବେଳେ ସେ ଅନ୍ୟର ସାହାଯ୍ୟ ଲୋଡେ । ସେ ବୁଝିପାରେ ଅକ୍ଷମତାର ଅସହାୟତା, ପୀଡାର ବିଡମ୍ବନା, ଦୁସ୍ଥତାର ଦୁଃଖ । ଯେପର୍ଯ୍ୟନ୍ତ ସେ ବଳଶାଳୀ ହୋଇ ସଫଳତାର ସିଡ଼ିରେ ଚଢ଼ି ଉପରକୁ ଉଠୁଥାଏ, ସେ ପର୍ଯ୍ୟନ୍ତ ସେ ନିଜକୁ ଅତ୍ୟନ୍ତ ସକ୍ଷମ, ସାହସୀ କୃତକାର୍ଯ୍ୟ ଓ ପ୍ରତିଷ୍ଠାଶାଳୀ ବୋଲି ମନେକରେ । କିନ୍ତୁ ଯେଉଁଦିନ ସେ ଅକୃତକାର୍ଯ୍ୟ ହୋଇ ଅସୁସ୍ଥଭାବରେ ଅଗ୍ରସର ହେବାରେ ଅସମର୍ଥ ହୁଏ, ସେଦିନ ସେ ବୁଝିପାରେ ଯେ ସକ୍ଷମତା, ସଫଳତା, ସ୍ୱାସ୍ଥ୍ୟ ଓ ପ୍ରାଧାନ୍ୟ ଚିରସ୍ଥାୟୀ ନୁହେଁ । ସେ ଭାବିବାକୁ ଆରମ୍ଭ କରେ ଯେ ସେ କିପରି ରୋଗ, ଦୁଃଖ, ଜରା ଓ ମରଣରୁ ଉଦ୍ଧାର ପାଇବ । ସେହିଦିନଠାରୁ ତାର ବୋଧୋଦୟ ହୁଏ । ଯେପରି ହୋଇଥିଲା ରାଜପୁତ୍ର ସିଦ୍ଧାର୍ଥଙ୍କର, ସାଧନାରେ ସିଦ୍ଧିଲାଭ କରି ପୃଥିବୀରେ ପ୍ରସିଦ୍ଧ ହେଲେ ''ବୁଦ୍ଧ'' ନାମରେ । ସେ ଆଖ୍ୟାୟିକା ଏହି ଅଧ୍ୟାୟର ବିଷୟବସ୍ତୁ ନୁହେଁ, କେବଳ ତାଙ୍କର ବିଶ୍ୱପ୍ରତି ଅମର ବାଣୀ ହିଁ ଏ ପ୍ରସଙ୍ଗରେ ମହନୀୟ ।

ତେବେ, ଗୋଟିଏ ପ୍ରାଥମିକ ପ୍ରଶ୍ନର ଉତ୍ତର ଅବଶିଷ୍ଟ ରହିଗଲା । ଯଦି ଈଶ୍ୱର ତାଙ୍କର ଉଦ୍ୟାନରେ ସୁନ୍ଦର ସୁଗୁଣ ସମ୍ପନ୍ନ ମାନବକୁ ସୃଷ୍ଟିକରି ପୃଥିବୀରେ ସ୍ଥାନିତ କଲେ, ତେବେ ଅବନତିର ଦୁର୍ଘଟଣା ଘଟିଲା କିପରି ? ତାଙ୍କର ଦାନରେ କଣ କିଛି ଦୋଷ ରହିଗଲା କି ? ନା, ମଣିଷ ଚରିତ୍ରରେ ଏପରି ଏକ ଛିଦ୍ର ସେ ସୃଷ୍ଟି କରିଥିଲେ ଯାହା ଫଳରେ ସେ ବାଟଦେଇ ଅଧପତନ ପ୍ରବେଶ କରି ମଣିଷକୁ ସ୍ୱର୍ଗ-ଉଦ୍ୟାନରୁ ନର୍କକୁ ନେଇଗଲା । ଏହା ଏକ ଅତି ତାତ୍‌ପର୍ଯ୍ୟପୂର୍ଣ୍ଣ ସଂଶୟ । ଏ ପ୍ରଶ୍ନର ଉତ୍ତର ମିଳେ ପରମହଂସ ଯୋଗାନନ୍ଦଙ୍କ ବାଣୀରେ, ଯାହା "Man's Eternal Quest" ପୁସ୍ତକରେ ଲିପିବଦ୍ଧ ହୋଇଅଛି । ଯିଶୁଖ୍ରୀଷ୍ଟ କହିଲେ ଯେ ଈଶ୍ୱର ତୁମ୍ଭେ ଆମ୍ଭମାନଙ୍କୁ ପ୍ରଲୋଭନ ଆଡକୁ ଆଗେଇ ନେଇ ଯାଅ ନାହିଁ । ଆମକୁ ଅସତ୍‌ରୁ ଉଦ୍ଧାର କର । ସ୍ୱାମୀ ଯୋଗାନନ୍ଦ ଏହି ପସଙ୍ଗରେ କହିଛନ୍ତି ଯେ ପ୍ରଲୋଭନ ମଣିଷର ନିଜର କୃତି ନୁହେଁ, ପ୍ରଲୋଭନ ''ମାୟା'' ର ସୃଷ୍ଟି । ମଣିଷମାନେ ଏହାର ଅଧୀନ ହୋଇପଡନ୍ତି । କିନ୍ତୁ ମଣିଷ ଯେପରି ନିଜକୁ ପ୍ରଲୋଭନରୁ ଉଦ୍ଧାର କରିପାରେ ସେଥି ନିମନ୍ତେ ଈଶ୍ୱର ମଣିଷକୁ ବିବେକ, ବୁଦ୍ଧି ଓ ଇଚ୍ଛାଶକ୍ତି ଦେଇଅଛନ୍ତି । ଏହା ବଳରେ

ପ୍ରଲୋଭନକୁ ଜୟକରି ମଣିଷ ଭୁଲ ରାସ୍ତାକୁ ଏଡାଇଯାଏ । ମାତ୍ର କୁକର୍ମ କରିବାରେ ନିଜକୁ ଜାଣିଶୁଣି ନିୟୋଜନ କଲେ, ମଣିଷ ବିପଦରେ ପଡିଥାଏ । ଦୁଷ୍କର୍ମ କରିବାକୁ ଇଚ୍ଛା କରି ମଣିଷ ଭୁଲବାଟରେ ଚାଲିଯାଏ । ମଣିଷ ଈଶ୍ୱରଙ୍କୁ ପ୍ରାର୍ଥନା କରିବା ଉଚିତ ଯେ ଭଗବାନ ଆମକୁ ଏଠାରେ ଛାଡିଯାଅ ନାହିଁ । ଆମକୁ ଅନ୍ଧକାରପୂର୍ଣ୍ଣ ଗାତରୁ ଆମର ବିବେକ ଓ ଇଚ୍ଛାଶକ୍ତିଦ୍ୱାରା ଉଠେଇ ନିଅ । ଯେତେବେଳେ ଆମେ ଏହି ଗର୍ତ୍ତରୁ ବାହାରକୁ ଆସିବୁ, ଆମକୁ ଅଧିକ ପରୀକ୍ଷା ପୂର୍ବରୁ ଆମକୁ ତୁମର ପରିଚୟ ଦିଅ; ତାହାହେଲେ ଆମ୍ଭେମାନେ ଜାଣିପାରିବୁ ଯେ ତୁମ୍ଭେ ନିଜେ, ଅନ୍ୟ ପ୍ରଲୋଭନଠାରୁ ବେଶୀ ଲୋଭନୀୟ । ସେ ଆହୁରି କହିଛନ୍ତି ଯେ ଯେଉଁ ସୁଖ ତୁମ୍ଭର ଶୁଭଦାୟକ ନୁହେଁ, ତାକୁ ଜାଣିଶୁଣି ଉପଭୋଗ କରିବାର ପ୍ରବୃତ୍ତି ତୁମକୁ ଶଇତାନର ବଳୟ ଭିତରକୁ ନେଇଯିବ । ଇନ୍ଦ୍ରିୟ ସୁଖ ଓ ଲାଳସାର ଚରିତାର୍ଥତାର ଅଶୁଭ ଫଳ ଶୀଘ୍ର ହେଉ ବା ଡେରିରେ ହେଉ, ତୁମକୁ ଭୋଗିବାକୁହିଁ ପଡିବ । ମାତ୍ର, ତୁମ୍ଭେ ଯଦି ହୃଦୟଙ୍ଗମ କର ଯେ ପ୍ରଲୋଭନ ଆକର୍ଷଣୀୟ ହେଲେ ମଧ ପରିଣାମରେ ବିଷତୁଲ୍ୟ, ତାହାହେଲେ ତୁମେ ଶଇତାନଠାରୁ ଦୁରେଇ ଯାଇ ପାର । ପ୍ରଲୋଭନର ଆକର୍ଷଣୀୟତାର କାରଣ ହେଲା ସେଗୁଡିକ ବହିର୍ମୁଖୀ । ଆମର ଇନ୍ଦ୍ରିୟ ଗୁଡିକ ମଧ ବହୁର୍ମୁଖୀ ଇନ୍ଦ୍ରିୟ ସୁଖ ମଣିଷର କାମ୍ୟ ହୋଇଥାଏ । ମାତ୍ର ଇନ୍ଦ୍ରିୟ ସୁଖରେ ଅତ୍ୟଧିକ ମନୋଯୋଗ ହେବା ମଣିଷ ପକ୍ଷରେ ବିପଜ୍ଜନକ । ଜାଗତିକ ସୁଖରେ ବୁଡି ରହିଲେ ମଣିଷ ମୋଟେ ବୁଝିପାରେ ନାହିଁ ଯେ ତାହାର ଅନ୍ତରତ୍ମାର ଆନନ୍ଦ ଅତି ଉଚ୍ଚସ୍ତରର; ଏବଂ ସେହି ଆନନ୍ଦ ଲାଭକଲେ ଇନ୍ଦ୍ରିୟ ସୁଖ ତାହା ପକ୍ଷରେ ଅତି ନୀଚ୍‌ବୋଲି ପ୍ରତିପାଦିତ ହୁଏ । ଏହି ଇନ୍ଦ୍ରିୟ ସୁଖକୁ ଛାଡିବାର ବାଟ ହେଲା ବିବେକଦ୍ୱାରା ଉଚ୍ଚସ୍ତର ଆନନ୍ଦ ବିଷୟରେ ଅବହିତ ହେବା । ପ୍ରକୃତରେ, ଅଭ୍ୟାସ ମନୁଷ୍ୟକୁ ଏକ ଦାସରେ ପରିଣତ କରିଦିଏ । ଦୈନନ୍ଦିନ ଜୀବନର ପୌନପୌନିକତାରୁ ସେ ନିଜକୁ ଉଦ୍ଧାର କରିପାରେ ନାହିଁ । ଯଥା ନିଦରୁ ଉଠି ନିତ୍ୟକର୍ମସାରି ଖାଇଦେଇ କର୍ମସ୍ଥଳକୁ ଯିବା, କାମ କରି ସାରିବା ପରେ ରାତିରେ ଘରକୁ ଫେରି ପୁଣି ଖାଇଦେଇ ଶୋଇବା; ଛୁଟି ଦିନ୍‌ରେ ଗପସପ, ତାସ୍‌ଖେଳ, ପଶାଖେଳ, ଜୁଆଖେଳ ଇତ୍ୟାଦିରେ ମଶ୍‌ଗୁଲ୍ ହୋଇ ରହିବା । ଏହିପରି ଗଡ୍ଡାଳିକା ପ୍ରବାହରେ ପଡି ମନୁଷ୍ୟର ଚିନ୍ତା ଶକ୍ତି ପ୍ରାୟ ସ୍ତିମିତ ହୋଇ ଆସେ, ଅନ୍ୟକିଛି ଭାବିବାର ସମୟ ନଥାଏ, ସୁଯୋଗ ନଥାଏ, ନିଦ ନ ଆସିଲେ ନିଦ ବଟିକା ଖାଇ ଶୋଇପଡେ । ଆଉ ଯଦି କୌଣସି ଇନ୍ଦ୍ରିୟାସକ୍ତିରେ ମଣିଷ ବୁଡିରହି କୁକର୍ମରେ ଲିପ୍ତ ହୋଇପଡେ, ତାହାହେଲେ ତାକୁ ସେ ଅବସ୍ଥାରୁ ନିଜକୁ ଉଦ୍ଧାର କରିବା କାଠିକର ପାଠ । ମଣିଷ ଯଦି ନିଜେ ନିଜକର୍ମର ବିଶ୍ଳେଷଣ କରେ, ତାର ଅଭିଜ୍ଞତା ବିଷୟରେ ଭାବେ ଓ ଫଳାଫଳ ବିଷୟରେ ଚିନ୍ତାକରେ, ତେବେ

ତାହାର ବୋଧୋଦୟ ହୋଇ ପ୍ରକୃତ ସତ୍ୟର ତତ୍ତ୍ୱ ତାକୁ ସହଜରେ ମିଳିଯାଆନ୍ତା । ଯେଉଁ ଭୋଗପାଇଁ ସେ ବ୍ୟାକୁଳ ତାର ଅନ୍ତିମ ପରିଣତି କଣ ? ସେ ଖାଇବାକୁ ଭୀଷଣ ଭଲପାଏ । ନାନା ଜାତୀୟ ସ୍ୱାଦୁଯୁକ୍ତ ସୁମିଷ୍ଟ, ଉପଭୋଗ୍ୟ ଖାଦ୍ୟ ବହୁ ପରିମାଣରେ ଖାଇ ନିଜେ ତୃପ୍ତି ଲାଭକରେ । ସେ ଭାବେ ଅନେକ ବେଶୀ ଖାଇଲେ ଅନେକ ବେଶୀ ଆନନ୍ଦ ମିଳେ । ଆପାତ ଦୃଷ୍ଟିରେ ଲୋଭାନ୍ୱିତ ହୋଇ ଖାଇଦିଏ । ମାତ୍ର ପରିଣାମରେ ବିଷମୟ ଫଳ ଫଳେ । ବେଶୀ ମିଠା ଖାଇଲେ ତାର ମଧୁ-ମେହ (diabetes) ରୋଗ ହୁଏ । ଅତ୍ୟଧିକ ସ୍ନେହ ପଦାର୍ଥ ଖାଇଲେ ଧମନୀରେ ଚର୍ବିଜମି ହୃଦୟ ଉପରେ ଚାପ ପକାଏ । ରକ୍ତଚାପ, ଦୁର୍ବଳ ହୃଦୟ ଅଜୀର୍ଣ୍ଣାଦି ବହୁ ରୋଗରେ ପଡି ମଣିଷ ଭୀଷଣ ଅସୁସ୍ଥ ହୋଇପଡେ । ଶେଷରେ ତାହାର କ୍ଷୁଧା ନ ଥାଏ । କଷ୍ଟରେ ପଡି ଖାଲି ଛଟପଟ ହୋଇ ଦିନ କଟାଏ । ଇଚ୍ଛା ଥିଲେ ମଧ ଖାଇବାର ଶକ୍ତି ନଥାଏ । ବିଶେଷତଃ ବୃଦ୍ଧ ବୟସରେ ଗୋଟିଏ ରୋଗର ଭଣ୍ଡାର ହୋଇ, ମନସ୍ତାପରେ ଦିନ ଗଡିଯାଏ ନୈରାଶ୍ୟର ନିଶ୍ୱାସ ପକାଇ । ସେହିପରି ଅତ୍ୟଧିକ ମଦ ଖାଇବାପରେ ଚେତା ନଥାଏ । ଘରେ ବାହାରେ ଅସଂଲଗ୍ନ ବ୍ୟବହାର କରି ଉପହାସର ପାତ୍ର ହୁଏ । ଯୌନ-କ୍ଷୁଧା ମେଣ୍ଟାଇବାକୁ ଯାଇ ଶେଷରେ ଅବସାଦ ଭରିଯାଏ ମନରେ । କାରଣ ଏ ପିପାସାର ଶେଷ ନାହିଁ । ପିପାସା ମେଣ୍ଟିଲେ ମଧ, ଏକ ଅବସାଦ ମନକୁ ଭରିଦିଏ । ଏକ ରକମର ଶୂନ୍ୟତା ଆସେ ବାସନା ଚରିତାର୍ଥ କରିବା ପରେ; ତାଛଡା ଏଡସ୍ ଆଦି ରୋଗତ ଚାହିଁ ବସିଛନ୍ତି ମଣିଷକୁ ଆକ୍ରମଣ କରିବାକୁ, ତେଣୁ କବିବର ରାଧାନାଥ ଲେଖିଛନ୍ତି -

"ସୁଖ ବୋଲି ଯାହା ଜନ ନେତ୍ରେ ଦିଶେ,
ହାତେ ଆସେ ହାତୁଁ ପଡିବା ପାଇଁ ସେ,
ସୁଖ ନହୁଅଇ ସେ ଅଟଇ ସେ ଧୂମ,
ଅନ୍ୟ ନାମ ତାର ଆକାଶ-କୁସୁମ ।"

ଖାଲି ଏତିକି ନୁହେଁ, ନିଶା ସେବନର ଅପକାରୀତା ଜାଣିମଧ ସେଥିରେ ସେ ବିଶେଷଭାବରେ ଲିପ୍ତ ହୁଏ କ୍ଷଣିକର ଆନନ୍ଦ ଉପଭୋଗ କରିବା ପାଇଁ । ଆନନ୍ଦ ଶେଷ ହୋଇଗଲେ ପୁଣି ନିଶାକରେ । ଏପରି ଅତୃପ୍ତିର ତାଡନାରେ ଅତ୍ୟଧିକ ନିଶା ସେବନ ପରେ ମଣିଷ ତାର ନିଜତ୍ୱ ସମ୍ପୂର୍ଣ୍ଣ ଭାବରେ ହରାଇବସେ । ସେ ଗୋଟିଏ କର୍ମହୀନ ଚିନ୍ତାହୀନ, ଅବଶ, ଅଳସ ପ୍ରାଣୀରେ ପରିଣତ ହୋଇ ଏକାବେଳେକେ ଅର୍ଥହୀନ ଓ ମୂଲ୍ୟହୀନ ଜୀବନ ଯାପନ କରେ । ମାତ୍ର ସେ କିଛି ବୁଝିପାରେ ନାହିଁ । କାରଣ ତାହାର ମସ୍ତିଷ୍କ କାମ କରେ ନାହିଁ ।

ଏକାଳର ଆଉଏକ ପ୍ରବଣତା ପ୍ରବଳ ଭାବରେ ମଣିଷକୁ ଗ୍ରାସ କରିଅଛି । ତାହାହେଲା ଭୋଗବାଦ ବା "Consumerism" । କଣ କଣ ସବୁ ଶ୍ରେଷ୍ଠ ପଦାର୍ଥ ଉପଭୋଗ୍ୟ ତାହା ପ୍ରଚାର ମାଧ୍ୟମରେ ବହୁଳଭାବରେ ପ୍ରସାରିତ । ଅତି ସାମାନ୍ୟ ଗୋଟିଏ ପ୍ରୟୋଜନୀୟତାର ବିଷୟ ବିଚାର କରାଯାଉ । ଲୁଗାପଟା ସଫା କରି ପିନ୍ଧିବା ଦରକାର ସବୁ ମଣିଷର । କେଉଁ ସାବୁନ ବା ପାଉଡର ସେ ବ୍ୟବହାର କରିବ ସେ ବିଷୟରେ ବିଜ୍ଞାପନମାନ ଟିଭିରେ ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ହ୍ୱୀଲ୍, ରିନ୍ ପ୍ରଭୃତି ବିଷୟରେ ବିଜ୍ଞାପନ ଏତେବେଶୀ ପରିମାଣରେ ପ୍ରଚାରିତ ଯେ ଲୋକେ ସେସବୁ ଦେଖି ଦେଖି ଶୁଣି ଶୁଣି ବିରକ୍ତ ହୋଇ ଉଠିଲେଣି । ସେହିପରି ପାନୀୟଦ୍ରବ୍ୟ ଯଥା କୋକାକୋଲା, ପେପ୍‌ସି ଇତ୍ୟାଦି ଖାଦ୍ୟ ଓ ମସଲା ପ୍ରଭୃତିର ବିଜ୍ଞାପନ ମଧ୍ୟ କମ୍ ନୁହେଁ । ଏହି ବିଜ୍ଞାପନ ସବୁ ସ୍ତରରେ ପ୍ରଭାବ ବିସ୍ତାର କରି, ଭୋଗ ପଣ୍ୟର ପ୍ରାଧାନ୍ୟ ବର୍ତ୍ତମାନର ଜୀବନରେ ପ୍ରତିଷ୍ଠିତ କରିଅଛି । ସବୁ ରକମର ଜାଗତିକ ବସ୍ତୁର ଅମୋଘ ପ୍ରତିଷ୍ଠା ସ୍ଥାପନ କରି ମଣିଷର ମନକୁ ଅହରହ ଜିନିଷର ଭୋଗରେ ଆବଦ୍ଧ କରି ରଖିଅଛି । ଯେପରି ଭୋଗପଣ୍ୟ ଛଡା ଜୀବନରେ ଆଉକିଛି ଧ୍ୟେୟ ବସ୍ତୁ ନାହିଁ ଏବଂ ଭୋଗବାଦ ଛଡା ଆଉକିଛି ସ୍ପୃହଣୀୟ ଚିନ୍ତାଧାରା ମଣିଷ ମନରେ ନାହିଁ । ଏହି ପ୍ରଲୋଭନ ମଣିଷ ମନକୁ ଏପରି ଭାବରେ ଆଚ୍ଛାଦନ କରି ରଖିଛି ଯେ ସେ ତାର ଚାରିଆଡେ ଆଉକିଛି ଦେଖିପାରୁନାହିଁ । ପୂର୍ବରୁ ଉଲ୍ଲେଖ ଅଛି ମଣିଷକୁ ଅନ୍ୟ ଉତ୍ତେଜନା-ଉଦ୍ରେକକାରୀ ଅଭ୍ୟାସ ମଧ୍ୟ ଟାଣିନେଇ ଯାଉଛି ଯେପରି ମଦ ଖାଇବା, ନିଶାଦ୍ରବ୍ୟ-ଇନ୍‌ଜେକ୍‌ଶନ ନେବା ଇତ୍ୟାଦି । କେବଳ ଭାଙ୍ଗ, ଗଞ୍ଜେଇ, ଅଫିମ ନୁହେଁ, ତାହାଠାରୁ ଆହୁରି ବିପଜ୍ଜନକ ନିଶାଦ୍ରବ୍ୟ ଏବେ ଯୁବକମାନଙ୍କୁ ପ୍ରଲୋଭିତ କରି ସେମାନଙ୍କୁ ଅତଳ ଗହ୍ୱରରେ ନିକ୍ଷେପ କରୁଛି । ସେମାନେ ଆସକ୍ତ ହୋଇ ଦିନରାତି ନିଶାରେ ବୁଡି ରହୁଛନ୍ତି । ସେମାନେ ନିଜପରିବାରରେ, ଘରେ ଓ ବାହାରେ, ସମାଜରେ ନିଜର ସମ୍ମାନ ବିଷୟରେ ଅଚେତନ ହୋଇ ରାସ୍ତାକଡରେ ପଡିରହୁଛନ୍ତି । ଏପରି ପ୍ରବୃତ୍ତି କିନ୍ତୁ ମନୁଷ୍ୟର ନିଜର ନୀଚ ଭାବନାରୁ ଉଦ୍‌ଭୂତ । ଏହା ଈଶ୍ୱରଙ୍କର ପ୍ରଣୋଦିତ କର୍ମନୁହେଁ । ତେଣୁ ଈଶ୍ୱରଙ୍କୁ ଏବିଷୟରେ ଦୋଷଦେବା ମନୁଷ୍ୟ ପକ୍ଷରେ ଠିକ୍ ହେବନାହିଁ । ତେବେ ଏଥିରୁ ଉଦ୍ଧାର ପାଇବାର ଉପାୟ କଣ ? ସ୍ୱାମୀ ଯୋଗାନନ୍ଦ କହନ୍ତି ଯେ ନିଜକୁ ବିବେକ, ବିଚାର ଓ ପ୍ରଜ୍ଞାର ଦୁର୍ଗରେ ବନ୍ଦୀକରି ରଖ । ଯଦି କେତେବେଳେ କୁ-ପ୍ରବଣତା ଦେଖାଦିଏ ତେବେ ବିଚାରର ଶରଣ ନିଅ । ଭଲମନ୍ଦ କଥା ଭାବି କର୍ମ କର । ପ୍ରଲୋଭନ ଏପରି ଜିନିଷ ତାହା ଘନଘନ ଆସେ । ମଣିଷକୁ ଅଧିକାର କରିବାକୁ ସବୁବେଳେ ଚେଷ୍ଟା କରେ । ସେଥିରୁ ମୁକ୍ତି

ପାଇବାକୁ ହେଲେ ପ୍ରବଳ ଇଚ୍ଛା ଶକ୍ତିର ବ୍ୟବହାର କରି ପ୍ରଲୋଭନରୁ ଦୂରେଇଯିବା ଦରକାର । ଇନ୍ଦ୍ରିୟ ସୁଖ ଓ ଆସକ୍ତିର ବଶବର୍ତ୍ତୀ ନହୋଇ ସଂଯତ ଆଚରଣ କରିବା ଯୁକ୍ତିସଙ୍ଗତ । ଥରେ ବୁଦ୍ଧି, ଯୁକ୍ତି, ବିଚାରର ଆଶ୍ରୟ ନେଲେ ଆସ୍ତେ ଆସ୍ତେ ସେମାନଙ୍କର ପ୍ରଭାବ ବଢ଼ିବ ଓ ପ୍ରଲୋଭନ ଦୂରେଇ ଯିବ । ଶୁଦ୍ଧ ପ୍ରବୃତ୍ତି ଅଭ୍ୟାସରେ ପରିଣତ ହେବ ଓ ମଣିଷକୁ ଅଧିକାର କରିନେବ । ଆପାତ ମଧୁର ସୁଖରାଜି ଆଉ ପ୍ରଲୋଭନୀୟ ହୋଇ ରହିବେ ନାହିଁ । ଈଶ୍ୱରଙ୍କର ଶରଣାପନ୍ନହେଲେ ଅତି ବଡ ପାପୀ ମଧ ଉଦ୍ଧାର ପାଇଯିବ । ନବମ ଅଧ୍ୟାୟରୁ ଗୀତାରବାଣୀର ଉଦ୍ଧୃତି ଦେଇଛନ୍ତି ଯୋଗାନନ୍ଦ ପରମହଂସ । ପ୍ରଥମ ମାନବ ଓ ମାନବୀଙ୍କର ସ୍ୱର୍ଗ ଉଦ୍ୟାନରୁ ପତନ ବିଷୟରେ କହିବାକୁ ଯାଇ ସେ ବୁଝାଇଛନ୍ତି ଯେ ଶଇତାନ ବା ''ମାୟା'' ଦ୍ୱାରା ପ୍ରଭାବିତ ହୋଇ ଆଡାମ୍ ଓ ଇଭ ଯୌନକ୍ରିୟାରେ ପ୍ରଲୋଭିତ ହୋଇ ସ୍ୱର୍ଗ ହରାଇ ମର୍ତ୍ତ୍ୟକୁ ଅବତରଣ କଲେ । ଯେପରି ଅନ୍ୟାନ୍ୟ ପଶୁମାନେ ସେମାନଙ୍କର ପିଲାପିଚିକାକୁ ଜନ୍ମ ଦେଉଛନ୍ତି, ସେହିପରି ପ୍ରକ୍ରିୟାରେ ନିଜର ସନ୍ତାନ ଉତ୍ପାଦନ କରି ମର ଜଗତର ଦୁଃଖରେ ଆବଦ୍ଧ ହୋଇ ରହିଲେ । ଏହି ଯୌନସୁଖ ଈଶ୍ୱରଙ୍କ କୃତ ପାରତ୍ରିକ ଆନନ୍ଦର ଏକ ଭ୍ରାନ୍ତିମୂଳକ ବୈପରୀତ୍ୟ; ଏକ ଛଳନାମୟ ସାମୟିକ ଆନନ୍ଦ । ଏହା ଆତ୍ମାର ସାତ୍ତ୍ୱିକ ଆନନ୍ଦ ସହିତ ତୁଳନୀୟ ନୁହେଁ । ଈଶ୍ୱରଙ୍କ ଡାକ ଆସେ ଶୁଦ୍ଧ ଚିନ୍ତା ମାଧମରେ । ସେହି ଶୁଭ ଚିନ୍ତାକୁ ଅନୁଧ୍ୟାନ କରି ଈଶ୍ୱରଙ୍କ ଡାକ ଶୁଣିଲେ, ମନୁଷ୍ୟକୁ ସେ କ୍ରମେ କ୍ରମେ ତାର ଗନ୍ତବ୍ୟସ୍ଥାନ ଆଡକୁ ଆଗେଇ ନିଅନ୍ତି; ମାୟାର କ୍ଷମତା ବଳୟରୁ ଅପସାରଣ କରି ଚେତନାର ଉଚ୍ଚସ୍ତରକୁ ଉନ୍ନିତ କରନ୍ତି ।

ଅବଶ୍ୟ ''ମାୟା''ର ଖେଳ ଭଗବାନଙ୍କର ହିଁ ସୃଷ୍ଟି । ମାୟାଜାଲରେ ଆବଦ୍ଧ ହୋଇ, ଇହଲୋକର ଆଶାପାଶରେ ଛନ୍ଦି ହୋଇ, ଅପକର୍ମ କରି, ମଣିଷ ଜୀବନରେ ଖାଲି ଧନ୍ଦି ହୁଏ । ତାର ଘୋର ଦୁର୍ଦ୍ଦଶା ଦେଖି ଈଶ୍ୱର ଦୁଃଖ କରନ୍ତି । ମାତ୍ର ତାଙ୍କର ସ୍ଥିରିକୃତ ନିୟମକୁ ଭାଙ୍ଗି ସେ ସବୁ ମଣିଷକୁ ଏକାଠି ଉଦ୍ଧାର କରନ୍ତି ନାହିଁ । ସେ କେବଳ ଶୁଭ-ଚିନ୍ତା-ଧାରାର ସ୍ରୋତ ପଠାନ୍ତି । ସେହି ସ୍ରୋତରେ ଯେଉଁ ଲୋକେ ଅନୁପ୍ରାଣିତ ହୋଇ ସେହି ଆହ୍ୱାନର ମୂଲ୍ୟ ବୁଝି ଦୁଷ୍କର୍ମ ପରିତ୍ୟାଗକରି ଅନ୍ଧକାର ଗହ୍ୱରରୁ ଆଲୋକ ଆଡକୁ ଅଗ୍ରସର ହୁଅନ୍ତି, ସେମାନେ ଈଶ୍ୱରଙ୍କ ଆଶୀର୍ବାଦ ପାଇ ଶାନ୍ତି ଲାଭ କରି ଶେଷରେ ପରମଧାମରେ ଅବସ୍ଥାନ କରନ୍ତି । ଈଶ୍ୱରକୃତ ନିୟମଦ୍ୱାରା ଏହି ମହାବିଶ୍ୱ ଚାଲିଛି ଏବଂ ଚାଲିଥିବ । ସେଥିରେ ଟିକିଏ ବିଶୃଙ୍ଖଳା ହେଲେ ତାର ଫଳ ଅତ୍ୟନ୍ତ ଅଶୁଭ ହେବ । ଶୃଙ୍ଖଳା ନଷ୍ଟ ହେଲେ ବିଶ୍ୱର ସର୍ବନାଶ ହେବ । ସେଥିପାଇଁ ଶ୍ରୀକୃଷ୍ଣ ଗୀତାରେ କହିଛନ୍ତି ତିନି ଲୋକରେ ତାଙ୍କର କିଛି କରଣୀୟ କର୍ମ ନାହିଁ । ତଥାପି ସେ ସବୁବେଳେ କର୍ମରେ ଲିପ୍ତ । ତାଙ୍କର

କର୍ମହୀନତା ଜୀବମାନଙ୍କ ପ୍ରତି ଭୁଲମାର୍ଗର ପ୍ରଦର୍ଶକ ହେବ । ସେ ଯଦି କର୍ମମାର୍ଗରେ ଲିପ୍ତ ନ ରହନ୍ତି, ତେବେ ସାରା ବିଶ୍ୱରେ ଗୋଳମାଳ ହୋଇ ସବୁପ୍ରାଣୀ ଧ୍ୱଂସପ୍ରାପ୍ତ ହେବେ । (ଅଧ୍ୟାୟ ୩/୨୨-୨୪) । ତା ବୋଲି ସେ ଭୁଲବାଟରେ ଚାଲୁଥିବା ମଣିଷ ପ୍ରତି ଉଦାସୀନ ହୋଇ ଦୃଷ୍ଟି ଦିଅନ୍ତି ନାହିଁ ଏକଥା ଭାବିବା ଭୁଲ । ପ୍ରତି ମୁହୂର୍ତ୍ତରେ ପ୍ରତ୍ୟେକ ଜୀବକୁ ସେ ଆଖି ଆଗରେ ରଖିଛନ୍ତି । ତାର କର୍ମଫଳ ପ୍ରବଳ ହେଲେ ମଧ ତାର ଉଦ୍ଧାର ପାଇଁ ଋଷି, ମୁନି, ଆଚାର୍ଯ୍ୟ, ସନ୍ନ୍ୟାସୀ, ଦ୍ରଷ୍ଟା, ଯୋଗୀମାନଙ୍କ ଦ୍ୱାରା ସେମାନଙ୍କୁ ଉପଦେଶ ଦେଇ ଭୁଲ ରାସ୍ତାରୁ ଠିକ୍ ରାସ୍ତାକୁ ଆସିବା ନିମନ୍ତେ ସାହାଯ୍ୟ କରନ୍ତି । ସଜ୍ଜନ ସଂସ୍ପର୍ଶରେ ଆସି ପତିତ ଲୋକେ ସଂସାରରୁ ଉଦ୍ଧାର ପାଇଥାନ୍ତି । ସଂସାରର ଜ୍ୱାଳା ଯନ୍ତ୍ରଣାରୁ ସେମାନଙ୍କୁ ନିଷ୍କୃତି ମିଳିଥାଏ । ତାଙ୍କ ଡାକ ବା ଆହ୍ୱାନ ନାନା ରୂପ ନେଇ ଆସେ । କେତେବେଳେ ଶୁଭାନୁଧାୟୀ ମାନଙ୍କ ମାଧମରେ ଈଶ୍ୱରଙ୍କର ବାର୍ତ୍ତା ପହଞ୍ଚିଯାଏ; ସୁଯୋଗ ସୁବିଧା ମିଳିଯାଏ ନିଜକୁ ଦୁଷ୍କୃତରୁ ବଞ୍ଚାଇବା ନିମନ୍ତେ । କେଉଁଠି କିପରି ଭାବରେ ଈଶ୍ୱର ଅପେକ୍ଷା କରିଛନ୍ତି ମଣିଷ ପାଇଁ, ତାହା ସେ ବୁଝିପାରେ ନାହିଁ । ଶୁଭକର୍ମର ସମ୍ପାଦନାପରେ ସେ ବୁଝିପାରେ ତାଙ୍କର କୃପା ବୃଷ୍ଟିର କଥା । ଅନେକ ସମୟରେ ସେ ଅଭାବିତ ଭାବରେ ତାଙ୍କର କରୁଣା ପ୍ରାପ୍ତ ହୁଏ । ତାହାର ବହୁ ବହୁ ଦୃଷ୍ଟାନ୍ତ ମଣିଷ ଜୀବନରେ ପରିଦୃଷ୍ଟ ହୋଇଅଛି ।

ମହାନ ଆଚାର୍ଯ୍ୟ ସାଧୁ, ସନ୍ଥ ଓ ଯୋଗୀମାନଙ୍କର ଜୀବନୀ ପର୍ଯ୍ୟାଲୋଚନା କଲେ, ଈଶ୍ୱରଙ୍କର ଆହ୍ୱାନର ସବଳ ସାକ୍ଷ୍ୟ ମିଳେ । ଯେପରି ସନ୍ତ ତୁଳସୀ ଦାସ ଥିଲେ ତାଙ୍କ ସ୍ତ୍ରୀଙ୍କ ପ୍ରତି ଅତ୍ୟନ୍ତ ଆସକ୍ତ । ସେହି ଆସକ୍ତିରେ ବାଧାପାଇ ତାଙ୍କ ମନ ଚାଲିଗଲା ଶ୍ରୀରାମଙ୍କ ଆଡକୁ । ସେ ତାଙ୍କର ସାଧନାରେ ସିଦ୍ଧି ଲାଭ କରିବା ପରେ "ରାମାୟଣ" ରଚନା କରି ମଣିଷକୁ ଏକ ଅମର କୃତି ଉପହାର ଦେଇଯାଇ ଅଛନ୍ତି । ତାଙ୍କର କାଳଜୟୀ ରଚନା ବହୁ ଶତାବ୍ଦି ଧରି ମଣିଷର ଶୁଭପ୍ରେରଣାର ଆଧାର ହୋଇ ରହିଅଛି । ପ୍ରଥମ ଅଧ୍ୟାୟରେ ଶ୍ରୀକୃଷ୍ଣପ୍ରେମ ଙ୍କ ଜୀବନୀର କିୟଦଂଶ ଉଲ୍ଲେଖ କରାଯାଇ ଅଛି । ସେ ଈଶ୍ୱରଙ୍କର ଶେଷ ଆହ୍ୱାନ ଲାଭ କରି ଜୀବନରେ ସିଦ୍ଧିଲାଭ କରି ପରମାର୍ଥ ପ୍ରାପ୍ତ ହୋଇଅଛନ୍ତି । ମହାତ୍ମାମାନଙ୍କ ବାଣୀ ଈଶ୍ୱର-ପ୍ରେରିତ-ବାର୍ତ୍ତାଭାବେ ବିଶ୍ୱରେ ଅଣୁ ରଣିତ ହେଉଅଛି । ସେହି ବାର୍ତ୍ତା ଗଭୀର ଭାବରେ ଅନ୍ତ ସଲିଳା ଫଲ୍ଗୁନଦୀପରି ବିଶ୍ୱରେ ପ୍ରବହମାନ । ଏହାର ଅନ୍ତର୍ନିହିତ ସ୍ପନ୍ଦନ ମଣିଷ ଜୀବନରେ ଏକ ପରମ ଆଶୀର୍ବାଦ । ଏହି ଆଶୀର୍ବାଦ ମହାବିଶ୍ୱରେ ସର୍ବତ୍ର ଝରିପଡୁଅଛି । ତାହାକୁ ମୂର୍ତ୍ତରୂପରେ ନିଜର ଉପଦେଶାବଳିରେ ପ୍ରକାଶ କରିଅଛନ୍ତି ଯୋଗୀ, ଋଷି, ଦ୍ରଷ୍ଟା ଓ ମହାପୁରୁଷମାନେ । ସେମାନଙ୍କର ନିର୍ଦ୍ଦେଶ ପାଳନରେ ଈଶ୍ୱରଙ୍କ ବାର୍ତ୍ତାଗ୍ରହଣ ନିଶ୍ଚିତ ରୂପରେ ବିଦ୍ୟମାନ । ଶେଷରେ ପରମାର୍ଥ ପ୍ରାପ୍ତିର ଉଜ୍ଜ୍ୱଳ ସମ୍ଭାବନା, ମନୁଷ୍ୟ ପାଇଁ ଅପେକ୍ଷାରତ ।

ଏହି ପ୍ରସଙ୍ଗରେ ଏକ ଇଂରାଜୀ କବିତାର ସୁଗଭୀର, ସୁଦୃଢ଼ ମୌଳିକ ଚିନ୍ତାଧାରା ମାନବ କଲ୍ୟାଣ ନିମନ୍ତେ ଉଦ୍ଦିଷ୍ଟ । ଇଂରାଜୀ କବି Longfellow ଙ୍କର Psalm of Life ଏକ ବଳିଷ୍ଠ ଭାବପୂର୍ଣ୍ଣ ଅମରକୃତି । ଏହାର ଭାବାର୍ଥ ହେଲା - ଜୀବନ ଏକ ଶୂନ୍ୟ ସ୍ୱପ୍ନ ନୁହେଁ । ଜୀବନ ଅତି ବାସ୍ତବ; ମଶାଣି ଏହାର ଲକ୍ଷ୍ୟ ନୁହେଁ । ଶରୀର ଦିନେ ଧୂଳିରେ ମିଶିଯିବ, ମାତ୍ର ଆତ୍ମା ଅବିନଶ୍ୱର ହୋଇ ରହିବ । ସୁଖ ବା ଦୁଃଖ ଜୀବନର ଶେଷ ନୁହେଁ, ପଥପ୍ରାନ୍ତ ମଧ୍ୟନୁହେଁ, ସୁଖଦୁଃଖ ମଧ୍ୟ ଦେଇ ଗତି କରି ମଣିଷର ଜୀବନ ପୂର୍ଣ୍ଣତା ପ୍ରାପ୍ତ ହୁଏ । ଜୀବନ କ୍ଷଣଭଙ୍ଗୁର ହେଲେହେଁ ଜୀବନର ଯୁଦ୍ଧ କ୍ଷେତ୍ରରେ ବୀରପରି ଯୁଦ୍ଧକର । ଭବିଷ୍ୟତର ରଙ୍ଗୀନ ସ୍ୱପ୍ନନଦେଖି ଅତୀତକୁ ସମ୍ପୂର୍ଣ୍ଣ ଭୁଲିଯାଇ, ବର୍ତ୍ତମାନରେ କର୍ମ କରିଯାଅ, ଈଶ୍ୱରଙ୍କୁ ଭରସା କରି । ମହାପୁରୁଷମାନଙ୍କର ଜୀବନୀ ଆମ୍ଭମାନଙ୍କୁ ପ୍ରେରଣା ଦେଉଅଛି ସେମାନଙ୍କର ଅନୁଗମନ କରି ଆମର ଜୀବନକୁ ଦିବ୍ୟ ଓ ଉଜ୍ଜ୍ୱଳ କରିବାକୁ । ଗଲାପରେ ଆମର ପଦାଙ୍କ ଅନୁସରଣ କରି ବିଧ୍ୱସ୍ତ ନାବିକ ମନୋବଳ ଫେରି ପାଇପାରେ । ତେଣୁ ଆମ୍ଭେମାନେ ସମସ୍ତେ ଧୈର୍ଯ୍ୟଧରି ସାହସର ସହିତ କାମ କରିଯିବା । ଫଳ ଯାହା ହେବ, ହେଉ । ପରିଶ୍ରମ କରି ଅପେକ୍ଷା କରିବାହିଁ ଆମର କର୍ତ୍ତବ୍ୟ । ଏହି କବିତାଟି ସଂକ୍ଷେପରେ, ଜୀବନର ମଣିଷପ୍ରତି ଆହ୍ୱାନ ପରିପ୍ରେକ୍ଷୀରେ, ଏକ ଅତି ସୁଚିନ୍ତିତ ମତ ମନୁଷ୍ୟର କର୍ତ୍ତବ୍ୟ ବିଷୟରେ । ଏକ ଅତି ବୀରୋଚିତ ପଦକ୍ଷେପ ଜୀବନ କ୍ଷେତ୍ରରେ । ସେଥିପାଇଁ ପୂର୍ଣ୍ଣ ବକ୍ତବ୍ୟର ଅବତାରଣା । ପ୍ରତି ମୂହୂର୍ତ୍ତରେ ଆହ୍ୱାନ ଆସୁଛି ପ୍ରତ୍ୟେକ ମଣିଷର ଜୀବନରେ । ତାକୁ ବୀର ପରିଗ୍ରହଣ କରି, ବୀରପରି ଯୁଦ୍ଧକ୍ଷେତ୍ରରେ ଜିତିବା ବା ମୃତ୍ୟୁ ବରଣ କରିବାହିଁ ଶ୍ରୀକୃଷ୍ଣଙ୍କର ଅର୍ଜୁନଙ୍କୁ ଉପଦେଶ ଭଗବତଗୀତାରେ । ଯୁଦ୍ଧରେ ଜିତ ବା ମର, କୃତନିଶ୍ଚୟ ହୋଇ ଯୁଦ୍ଧକର । ''ହତୋ ବା ପ୍ରାପ୍ୟସେ ସ୍ୱର୍ଗଂ ଜିତ୍ୱାବା ଭୋକ୍ଷସେ ମହୀଂ । ତସ୍ମାତ୍ ଉତ୍ତିଷ୍ଠ କୌନ୍ତେୟ ଯୁଦ୍ଧାୟ କୃତନିଶ୍ଚୟ । ସୁଖେଦୁଖେ ସମେକୃତ୍ୱା ଲାଭାଲାଭୌ ଜୟାଜୟୌ, ତତୋ ଯୁଦ୍ଧାୟ ଯୁଦ୍ଧସ୍ୱନୈବଂ ପାପମବାପ୍ୟସ୍ୟସି ।'' (୨/୩୭-୩୮)

ବହୁ ବହୁ ସିଦ୍ଧପୁରୁଷ, ଯୋଗୀ, ମାହାତ୍ମା, ଅବତାରଙ୍କ ଅମରବାଣୀ ଶୁଣିବା ସତ୍ତ୍ୱେ, ଶେଷ ଆହ୍ୱାନ ମଣିଷ ପ୍ରତି ଫଳପ୍ରସୂ ହେଉ ନାହିଁ କାହିଁକି ? ଶ୍ରୀରାମ, ଶ୍ରୀକୃଷ୍ଣ, ବୁଦ୍ଧ, ଚୈତନ୍ୟ, ରାମାନୁଜ, ଶଙ୍କରାଚାର୍ଯ୍ୟ, ଶ୍ରୀରାମକୃଷ୍ଣ ଇତ୍ୟାଦିଙ୍କର ଆବିର୍ଭାବ ପରେ ତିରୋଭାବ ମଧ୍ୟ ହୋଇଯାଇଅଛି । ମାତ୍ର ମାନବ ସମାଜର ଆଧ୍ୟାତ୍ମିକ ପ୍ରଗତି ଆଶାନୁରୂପ ହୋଇ ନାହିଁ । ଅନ୍ୟଦୃଷ୍ଟିରେ ଭ୍ରଷ୍ଟାଚାର, ଅନାଚାର, ଦୂର୍ନିତି, ମଣିଷ ଉପରେ ମଣିଷର ଅତ୍ୟାଚାର ବଢ଼ିବାରେ ଲାଗିଛି । ଅବକ୍ଷୟର ସ୍ରୋତ ବିଶାଳ ଆକାର ଧାରଣକରି ଜନ ସାଧାରଣଙ୍କର ସହଜ, ସରଳ, ସୁନ୍ଦର ଜୀବନକୁ ଗ୍ରାସ କରି, ବାତାବରଣକୁ ଦୁଷିତ କରି,

ପୃଥିବୀରେ ଶାନ୍ତିମୟ ଜୀବନକୁ ବିଷାକ୍ତ କରି ପକାଉଛି । ଦିନକୁଦିନ ସାଧାରଣ ଶାନ୍ତିପ୍ରିୟ ନାଗରିକର ସହଜ ଜୀବନଯାତ୍ରା ବାଧାପାଇ, ତାକୁ ବିଭ୍ରାନ୍ତ କରିଦେଉଅଛି । ତାହାର ମୂଲ୍ୟବୋଧ ଓ ଜନ ଜୀବନରୁ ଓ ଭବ୍ୟ-ସଭ୍ୟ ସମାଜରୁ ପ୍ରତ୍ୟାଶା ବାଧାପାଇ, ତାହାର ଚିନ୍ତାଧାରାରେ ପ୍ରଶ୍ନବାଚୀ ସୃଷ୍ଟି କରିଛି । ସଭ୍ୟତାର ଦୁଇହଜାର ବର୍ଷର ଅଗ୍ରଗତି ପରେ ଏପରି ଅବସ୍ଥା ହେଲା କିପରି ? ଏପରି ଯଦି ଜନଜୀବନ ବିପର୍ଯ୍ୟସ୍ତ ହୁଏ ତେବେ ଏ ସଭ୍ୟତାର ଭବିଷ୍ୟତ କଣ ?

ଏପରି ଚିନ୍ତା ସ୍ୱାଭାବିକ । ଏହାର ମୂଳ ତଥ୍ୟର ବିଶ୍ଳେଷଣ କଲେ ଏହାର କାରଣ ଓ ପ୍ରତିକାର ଉଭୟ ଦୃଷ୍ଟି ଗୋଚର ହେବ । ଯେପରି କଳ କାରଖାନା ସବୁ ବିଦ୍ୟୁତ ସାହାଯ୍ୟରେ ଚାଲେ, ସେହିପରି ମନୁଷ୍ୟ ଜୀବନର ମୂଳସ୍ରୋତ ହେଲା ପ୍ରାଣଶକ୍ତି (Lifetron) ମଣିଷର ହାଡ, ମାଂସ, ମଜ୍ଜା ଓ କୋଟି କୋଟି କୋଷକୁ ପ୍ରାଣଶକ୍ତି, କ୍ଷମତାଶାଳୀ ଓ ଦୂରଦୃଷ୍ଟି ସମ୍ପନ୍ନ-ବୁଦ୍ଧିବୃତ୍ତି ସାହାଯ୍ୟରେ, ସୁପରି ଚାଳିତ କରି ସ୍ନାୟୁମାନଙ୍କୁ ସଂଯୋଗକାରୀ-ତାର ଭାବରେ ବ୍ୟବହାର କରି ଅତି ସୂକ୍ଷ୍ମ ପଦ୍ଧତିରେ ମଣିଷର ଉନ୍ନତି ସାଧନ କରିଥାଏ । ତାହାର ଉଦ୍ଦେଶ୍ୟ ସାଧନରେ ସାହାଯ୍ୟ କରିଥାଏ । ବାଲ୍ୟାବସ୍ଥାରେ ଶରୀର ମନର ସୂଚନାକୁ ସହଜରେ ମାନି ନିଏ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ଶରୀର ଓ ମନର ବୁଝାମଣାରେ ତାରତମ୍ୟ ପରିଲକ୍ଷିତ ହୁଏ । କାରଣ ଆସ୍ତେ ଆସ୍ତେ କେତେ ଗୁଡିଏ ଅଭ୍ୟାସ ମଣିଷକୁ ଅଧିକାର କରି ବସେ । ଦିନକୁଦିନ ଅଭ୍ୟାସ ଗୁଡିକ କ୍ଷମତାଶାଳୀ ହୋଇ ମନର ପ୍ରଭାବକୁ କ୍ଷୁର୍ଣ୍ଣ କରିଦିଏ । ଅଭ୍ୟାସର ଶକ୍ତିକୁ ମନ ଟାଳିପାରିନାହିଁ । ଫଳରେ ମଣିଷ ଅଭ୍ୟାସର ଦାସ ହୋଇପଡେ । ଶରୀରର ପ୍ରାଧାନ୍ୟ ବଢ଼େ । ମନର ପ୍ରାଧାନ୍ୟ କମେ । ଶୁଭ ଚିନ୍ତାର ପ୍ରଭାବ ମଣିଷ ଉପରେ କମିଯିବା ଫଳରେ ଶାରୀରିକ ଦାବି ମଣିଷକୁ କାବୁ କରିଦିଏ । ମଣିଷ ଶରୀରର ଦାସରେ ପରିଣତ ହୁଏ । ଶରୀରର କ୍ଷମତା ସୀମିତ, ତାକୁ ପ୍ରାଧାନ୍ୟ ଦେଲେ ବହୁ ସମସ୍ୟା ଉତ୍‌ପନ୍ନ ହୁଏ । ଶାରୀରିକ ସମସ୍ୟାର ସମାଧାନ ନକରି ପାରି ମଣିଷ ବ୍ୟତିବ୍ୟସ୍ତ ହୋଇପଡେ । ତାର ସବୁ ଚିନ୍ତା ଶରୀରକୁ ଘେରି ଘୁରିବୁଲେ । ଶୁଦ୍ଧଚିନ୍ତା, ସଦ୍ ଭାବନା, ଉଚ୍ଚରାଜ୍ୟର ବିଷୟ ତାର ମନରେ ସ୍ଥାନପାଏ ନାହିଁ । ଫଳରେ ତାର ଉନ୍ନତ ମାନସିକତା ଜନ୍ମନେବାର ସୁଯୋଗ ପାଏନାହିଁ । ଏପରି ପରିସ୍ଥିତିରେ ଶରୀର ଓ ମନ ସମତା ରକ୍ଷାକରି ଏକତ୍ରିଭୂତ ହୋଇ ଅଭିଷ୍ଟ ପଥରେ ଆଗେଇ ପାରନ୍ତି ନାହିଁ । ସୃଷ୍ଟିର ଚରମ ସତ୍ୟହେଲା ଚେତନା । ତାହା ଯେତେବେଳେ ସ୍ଥୂଳ ଶରୀରରେ ଆବଦ୍ଧ ହୋଇ ରହେ, ସେତେବେଳେ ମଣିଷର ଆଧ୍ୟାତ୍ମିକ ପ୍ରଗତି ବାଧାପ୍ରାପ୍ତ ହୁଏ । ମଣିଷର ମନକୁ ଏପରି ଅବସ୍ଥାକୁ ନେବାକୁ ପଡିବ ଯେ ଶରୀର ଉପରେ ତାହାର ପୂର୍ଣ୍ଣପ୍ରଭାବ ରହିବ;

ଏବଂ ମନ ଉପରେ ଯେପରି ବର୍ହିବସ୍ତୁର ପ୍ରଭାବନପଡେ ସେଥିପ୍ରତିଦୃଷ୍ଟି ରଖିବାକୁ ହେବ । କାରଣ ଥରେ ମନ ବହିର୍ମୁଖୀ ହୋଇଗଲେ ତାକୁ ଅନ୍ତର୍ମୁଖୀ କରିବା ଅତ୍ୟନ୍ତ କଷ୍ଟକର । ଏ ଦିଗରେ ଯିଶୁ ଶ୍ରେଷ୍ଠ ଉଦାହରଣ ରଖିଯାଇଅଛନ୍ତି । କୃଶବିଦ୍ଧ ହୋଇସୁଦ୍ଧା ସେ ଦୁଷ୍ଟ ମାନଙ୍କୁ କ୍ଷମାକରି ଯାଇ ଅଛନ୍ତି ଶରୀରର କଷ୍ଟକୁ ଅବହେଳା କରି । ସାଧାରଣ ମଣିଷ ପକ୍ଷରେ ଆସ୍ତେ ଆସ୍ତେ ଛୋଟ ଛୋଟ ବିଷୟରୁ ମନକୁ ଦୂରେଇ ରଖି, ଶାରୀରିକ କଷ୍ଟରେ ମୁହ୍ୟମାନ ନହୋଇ ଚେଷ୍ଟାକଲେ, ମନୁଷ୍ୟ ଅନ୍ୟ ବଡ ଦୁଃଖ କଷ୍ଟକୁ ମଧ ସହ୍ୟକରି ପାରିବ । ମନକୁ ନିଷ୍ପୃହ କରିବାର କ୍ଷମତା ଲାଭ କରିପାରିବ । ଯୋଗୀମାନେ ସେମାନଙ୍କର ଯୋଗକ୍ରିୟାଦ୍ୱାରା ଶରୀରକୁ ମନ ଉପରେ ପ୍ରଭାବ ପକାଇବାକୁ ଦିଅନ୍ତି ନାହିଁ । ସେମାନେ ନିଜକୁ ଚୈତନ୍ୟରେ ସ୍ଥିର ରଖି ଶରୀରର ଅସ୍ତିତ୍ୱକୁ ମନଠାରୁ ଦୂରେଇ ରଖନ୍ତି । ସେହି ଚୈତନ୍ୟ ମାଧ୍ୟମରେ ସେମାନେ ଦୃଷ୍ଟି, ଶ୍ରବଣ, ସ୍ପର୍ଶ, ସ୍ୱାଦ ଆସ୍ୱାଦନ ଓ ଆଘ୍ରାଣ ପ୍ରଭୃତିର ବ୍ୟବହାର ନ କରି ସବୁକିଛି ଇନ୍ଦ୍ରିୟ-କ୍ଷମତା ପ୍ରୟୋଗ କରିପାରନ୍ତି । ଏପରି କି ଚୈତନ୍ୟଦ୍ୱାରା ଆଧିଭୌତିକ ଓ ଆଧିଦୈବିକ କ୍ଷମତାର ଅଧିକାରୀ ହୋଇ ଈଶ୍ୱରଙ୍କର ବାଣୀମଧ ଶୁଣିପାରନ୍ତି । ଏହି ଶକ୍ତି ବାସ୍ତବରେ ଏକ ସତ୍ୟ ଅଭିଜ୍ଞତା, କାଳ୍ପନିକ ନୁହେଁ । ମାତ୍ର ପରମହଂସ ଯୋଗାନନ୍ଦ କହନ୍ତି ଏହା ସାଧାରଣ ଧାନ କଲେ କରାୟତ୍ତ ହୁଏ ନାହିଁ । ଏହି ଧାନ, ଭକ୍ତି, ଶ୍ରଦ୍ଧା ଓ ନିଷ୍ଠାସହିତ କଲେ ଯାଇ ଆଧାତ୍ମିକ ଚେତନା, ଶକ୍ତି ଓ ଅତୀନ୍ଦ୍ରୀୟ ଅନୁଭୂତି ସମ୍ଭବପର ହୁଏ । ଏହା ସମସ୍ତଙ୍କ ପକ୍ଷରେ ପ୍ରଜୁଯ୍ୟ । କେବଳ ଗୋଟିଏ ସମ୍ପ୍ରଦାୟ, ଗୋଷ୍ଠୀ ବା ବୃତ୍ତଗତ ମଣିଷ ଏହାର ଅଧିକାରୀ ନୁହଁନ୍ତି । ସାଧାରଣ ମନୁଷ୍ୟ ଶୋଇ ଥିଲା ବେଳେ ଶରୀର ବିଷୟରେ ଅଚେତନ ଥାଏ । ସେତେବେଳେ ଶରୀର ବିନା, ମନର ଉପସ୍ଥିତି ପ୍ରାମାଣିକ ସତ୍ୟ ଭାବେ ପ୍ରତିଭାତ ହୁଏ । ଶରୀର ଓ ମନକୁ ଆୟତ୍ତ କରିବାର କ୍ଷମତା ଏକମାତ୍ର ପ୍ରଜ୍ଞା ଓ ଇଚ୍ଛାଶକ୍ତିର ଅଛି । ଆତ୍ମାର ସିଧାସଳଖ ସତ୍ୟର ଅନୁଭବ ବା ଜ୍ଞାନ ହେଲା ପ୍ରଜ୍ଞା । ଆଉ ଇଚ୍ଛାଶକ୍ତିର ପ୍ରଭାବ ଅମୋଘ । ଯଦି ମଣିଷର ବୁଦ୍ଧି ପ୍ରଜ୍ଞାଦ୍ୱାରା ପ୍ରଭାବିତ ନହୁଏ ତେବେ ମଣିଷ ନିଜର ପ୍ରକୃଷ୍ଟ କର୍ତ୍ତବ୍ୟ ବିଷୟରେ ଅବିହିତ ହୋଇପାରେ ନାହିଁ । ଆତ୍ମାର ନିର୍ଦ୍ଦେଶ ପାଳନ କରିବାକୁ ଅକ୍ଷମହୁଏ । ତେଣୁ ମଣିଷ ଜୀବନର ଲକ୍ଷ୍ୟ ଭ୍ରଷ୍ଟ ହୁଏ । ଅଧିକାଂଶ ଲୋକେ ଯନ୍ତ୍ରଚାଳିତ ଖେଳନାପରି ନିଜର ଦୈନନ୍ଦିନ କାମରେ ବ୍ୟସ୍ତରହି, ସେମାନଙ୍କର ଇଚ୍ଛାଶକ୍ତିର ଆଦର୍ଶବିନିଯୋଗ କରିପାରନ୍ତି ନାହିଁ । ଇଚ୍ଛାଶକ୍ତିର ସମ୍ୟକ୍ ପ୍ରଭାବ ପୂର୍ବ ଅଧାୟରେ ବର୍ଣ୍ଣିତ ହୋଇଅଛି । ତେଣୁ ଆଉ ଦୋହରାଇବାର ଦରକାର ନାହିଁ । ଏହି ପ୍ରସଙ୍ଗରେ ଏତିକି କହିଲେ ଚଳିବ ଯେ ଇଚ୍ଛାଶକ୍ତିକୁ ଶକ୍ତିଶାଳୀ କରି ଗତିଶୀଳ କଲେ ଅସାଧ ସାଧନ କରାଯାଇପାରେ । ଏହି ଶକ୍ତିକୁ ଶକ୍ତିଶାଳୀ କରିବାର ଶ୍ରେଷ୍ଠ ଉପାୟ ହେଲା "ଧାନ"

ବା Meditation । ଏହି ଧ୍ୟାନହିଁ ଆଧ୍ୟାତ୍ମିକତାର ଚାବିକାଠି । ବିରାମହୀନ ଏକନିଷ୍ଠତା ଓ ନିରଳସ ପ୍ରୟୋଗଶୀଳତାହିଁ ସାଫଲ୍ୟର ମୂଳମନ୍ତ୍ର । ଏହିପରି ଧ୍ୟାନର କ୍ରିୟାଶୀଳତା ଉଦ୍ଦେଶ୍ୟସିଦ୍ଧିର ଏକମାତ୍ର ରାସ୍ତା । ଏଥିରେ ମଗ୍ନ ହୋଇ ରହିଲେ, ଶେଷରେ ଈଶ୍ୱରଙ୍କର ଆହ୍ୱାନ ଆସେ ତାଙ୍କର ପରମଧାମକୁ ଯିବା ନିମନ୍ତେ । ଜୀବପକ୍ଷରେ ଏହା ସର୍ବଶ୍ରେଷ୍ଠ ଆଶୀର୍ବାଦ । କୋଟି କୋଟି ଜନ୍ମାନ୍ତର ପରେ ନିଷ୍ଠାସହକାରେ ଅହରହ ବିରାମହୀନଭାବରେ ପରମପୁରୁଷଙ୍କର ଧ୍ୟାନ କଲେ ପରମଗତି ଲାଭହୁଏ ବୋଲି ପରମହଂସ ଯୋଗାନନ୍ଦ ଦୃଢ଼ଭାବରେ ଦ୍ୱିଧାହୀନ କଣ୍ଠରେ କହିଯାଇଅଛନ୍ତି । ବିଶ୍ୱର ଲକ୍ଷ ଲକ୍ଷ ଜୀବନକୁ ଆଲୋକ ପଥର ସନ୍ଧାନ ଦେଇ କ୍ରିୟାଯୋଗର ମହତ୍ୱ ବୁଝାଇ ଦେଇଛନ୍ତି । ଆତ୍ମଜ୍ଞାନରେ ଉଦ୍‌ବୁଦ୍ଧ ହୋଇ ସେମାନେ ଆଲୋକ-ପଥର ଯାତ୍ରୀ ହୋଇ ପାରିଛନ୍ତି । କେବଳ ଯୋଗାନନ୍ଦ କାହିଁକି, ଶଙ୍କର, ନାନକ, ଚୈତନ୍ୟ, ଶ୍ରୀରାମକୃଷ୍ଣ, ବିବେକାନନ୍ଦ ପ୍ରଭୃତି ମହାପୁରୁଷମାନେ ମଣିଷକୁ ଶେଷ ଆହ୍ୱାନ କଥା ଶୁଣାଇଛନ୍ତି ଈଶ୍ୱରଙ୍କର । ''ଭଜଗୋବିନ୍ଦଂ, ସ୍ମରଗୋବିନ୍ଦଂ ଗୋବିନ୍ଦଂ ଭଜ ମୁଢ଼ମତେ;'' ଏହା ସାରବାଣୀ ଶଙ୍କରାଚାର୍ଯ୍ୟଙ୍କର । ତେବେ ପରମପୁରୁଷଙ୍କୁ ପାଇବାର ରାସ୍ତା କେବଳ ଗୋଟିଏ ନୁହେଁ । ବହୁ ରାସ୍ତାରେ ଚଢ଼ି ଛାତ ଉପରକୁ ଲୋକ ଯାଇ ପାରନ୍ତି । ସେହିପରି ମୁନି ଋଷିଙ୍କର ବାଣୀ ଭିନ୍ନ । ଧର୍ମର ତଥ୍ୟ ଗୁହାରେ ନିବଦ୍ଧ ଅଛି । ମହାଜନମାନେ ଯେଉଁ ରାସ୍ତାରେ ଯାଇଛନ୍ତି, ସେହିଗୁଡିକହିଁ ପ୍ରକୃଷ୍ଟ ପନ୍ଥା । ଏହା ଯୁଧିଷ୍ଠିର କହିଥିଲେ ଧର୍ମରାଜଙ୍କୁ ।

ତେବେ ଜୀବନ ନଦୀ ସଦା-ପ୍ରବାହିତ । ଆମେ ସମସ୍ତେ ନୌକାରେ ଚଢ଼ିଛୁ । ଆମ ଭିତରୁ କେତେ ସ୍ରୋତରେ ଭାସିଯାଇଛନ୍ତି । ଅତଳ ଜଳରେ ବୁଡିଯାଇଛନ୍ତି । ଆଉକେତେକ ପଡିଯିବା ଉପରେ । ଯେତେବେଳେ ବିପଦର ଘୋର ଘୂର୍ଣ୍ଣାବର୍ତ୍ତରେ ପଡିବେ । ଅନ୍ୟମାନେ ବାଟ ଖୋଜିବେ ବଞ୍ଚିବାପାଇଁ । ସେତେବେଳେ ଈଶ୍ୱରଙ୍କ କଥା ମନେ ପଡିବ, ତାହା ଆଗରୁ ତାଙ୍କୁ ମନେ ପକାଇବାରେ ବାଧା କେଉଁଠି ? ସେତ ସବୁବେଳେ ଉଦ୍‌ଗ୍ରୀବ ସାହାଯ୍ୟ କରିବା ପାଇଁ । ସବିତ୍ର ସର୍ବଦା ଉପସ୍ଥିତ ଅଛନ୍ତି । ଆମକୁ ଡାକୁଛନ୍ତି - ''ଆସ ଆସ'' ବୋଲି । ଆମ୍ଭେମାନେ ସଂସାରର ବିବିଧ କର୍ମରେ ବ୍ୟସ୍ତ ରହି ଭୁଲିଯାଉ ସେହି ପୁରୁଷୋତ୍ତମଙ୍କୁ । ତାଛଡା ଆମର ଗର୍ବ, ଦମ୍ଭ, ଅଭିମାନ, ମଦ, ସାହର୍ଯ୍ୟ ଆଦି ବଦ ଗୁଣ ଗୁଡିକ ଆମ ମନଉପରେ ଧୂଳିପକାଇ ତାକୁ ଧୂସରିତ କରି ରଖନ୍ତି । ତାଙ୍କର ଉଜ୍ଜ୍ୱଳ, ଶୁଭ୍ର, ଆଲୋକିତ ଉପସ୍ଥିତିକୁ ଆମ ଦୃଷ୍ଟିରେ ଢ଼ାଙ୍କେଇ ଦିଅନ୍ତି । ନିତ୍ୟ ନୈମିତ୍ତିକ ଶୁଷ୍କ କର୍ମରେ ବ୍ୟାପୃତରହି ଆମେ ଭୁଲିଯାଉ ଜୀବନର ଅସଲ ଉଦ୍ଦେଶ୍ୟ । କେତେବେଳେ ରାତିର ଅସଂଖ୍ୟ

ତାରାମାନଙ୍କୁ ଚାହିଁଲେ ମନେପଡେ ଏ ସବୁକୁ କିଁଏ ଜଣେ ଅତି ମହୀୟାନ ପୁରୁଷ ତିଆରି କରିଥିବେ ନିଶ୍ଚୟ; ସେ କିଏ ? ପୁଣି ନିଦ୍ରା ଆସି ଆମର ଭାବୁକ ମନକୁ ହରଣ କରିନିଏ । ଆମର ଜିଜ୍ଞାସାର ଅନେକଥର ଏହିପରି ଇତି ହୋଇଥାଏ । ମାତ୍ର ତାକୁ ତୀବ୍ରତର କରି ସତ୍ୟର ଅନୁସନ୍ଧାନ କଲେ ଆମକୁ ନିଶ୍ଚୟ ଅମୃତଲୋକ ପଥରେ ଦିଗ୍‌ଦର୍ଶନ ମିଳିବ । ମହାପୁରୁଷ ମାନଙ୍କର ବାଣୀରେ, ସେମାନଙ୍କର ଗହଣରେ ସେହି ଆଦି ଅନନ୍ତ ପରମାତ୍ମାଙ୍କର ପରିଚୟ ମିଳିବ; ସେମାନଙ୍କର ନିର୍ଦ୍ଦେଶରେ ଅଗ୍ରସର ହେଲେ ଗନ୍ତବ୍ୟ ସ୍ଥାନର ଦିଗଦେଖାଯିବ । ପ୍ରଥମେ ଲୁହାଖଣି, ପରେ ରୂପାଖଣି, ତାପରେ ସୁନାଖଣି ଓ ଶେଷରେ ହୀରାଖଣିର ସନ୍ଧାନ ମଧ୍ୟ ମିଳିବ ମଣିଷକୁ । ପଥ ଦୁର୍ଗମ । ରାସ୍ତାରେ ବହୁଦୂର ଅଗ୍ରସର ହେବାକୁ ପଡିବ ମଣିଷକୁ । ମାତ୍ର ତାର ଚାରା ନାହିଁ । ନର୍କରୁ ଉଦ୍ଧାର ପାଇଁ ସ୍ୱର୍ଗକୁ ଯିବାକୁ ହେଲେ ଅନେକ ତ୍ୟାଗ, ଅନେକ କଷ୍ଟ, ଅନେକ ଦୁଃଖ ସ୍ୱୀକାର କରିବାକୁ ହେବ । ଅନେକ ଜନ୍ମ ମଧ୍ୟ ପାରିହେବାକୁ ପଡିବ । ଏଥିରେ ସନ୍ଦେହ ନାହିଁ । ଏହା ଶ୍ରୀକୃଷ୍ଣ ସ୍ପଷ୍ଟ କରି ଗୀତାରେ କହିଦେଇଛନ୍ତି ।

''ବହୂନାଂ ଜନ୍ମନାମନ୍ତେ ଜ୍ଞାନବାନ ମାଂ ପ୍ରପଦ୍ୟତେ ।
ବାସୁଦେବ ସର୍ବମିତି ସ ମାହାତ୍ମା ସୁଦୁର୍ଲଭ ।''

ବହୁଜନ୍ମ ପରେ ଜ୍ଞାନବାନ ପୁରୁଷ ମୋତେ ଲାଭ କରେ । ବାସୁଦେବ ହେଉଛନ୍ତି ସବୁକିଛି, ଏପରି ଭାବୁଥିବା ମହାତ୍ମା ସମଗ୍ର ଜଗତରେ ଦୁର୍ଲଭ ଅଟନ୍ତି ।





ଲେଖକ କାର୍ତ୍ତିକ ଚନ୍ଦ୍ର ଚାନ୍ଦ ୧୯୨୮ ମସିହାରେ ପୁରୀରେ ଜନ୍ମଗ୍ରହଣ କରିଥିଲେ । ପୁରୀ ଜିଲ୍ଲା ସ୍କୁଲ ଓ ପୁରୀ କଲେଜରେ ପଢ଼ିବାପରେ କଟକସ୍ଥ ରେଭେନ୍ସା କଲେଜରୁ ସ୍ନାତକ ଭାବେ ଉତ୍ତୀର୍ଣ୍ଣ ହୋଇଥିଲେ । ଏହାପରେ ସେ କଲିକତା ବିଶ୍ୱବିଦ୍ୟାଳୟରୁ ମନୋବିଜ୍ଞାନ ପଢ଼ିବାପରେ ଭାରତ ସରକାରଙ୍କର ରାଜସ୍ୱ ସେବାରେ ୧୯୫୧ ମସିହାରେ ଯୋଗଦେଇଥିଲେ । କାର୍ତ୍ତିକ ବାବୁଙ୍କ ଜୀବନର ବିପୁଳ ଅଭିଜ୍ଞତା ମଧ୍ୟରେ ୧୯୯୨ ମସିହାରେ ତାଙ୍କ ଦ୍ୱାରା ପ୍ରକାଶିତ ହୋଇଥିବା ପୁସ୍ତକ *''ମୁଖର ଅତୀତ''* ତାଙ୍କ ଭାବଧାରା ଓ ବିଶେଷ ଜ୍ଞାନାଧିକାରୀର ପରିଚୟ ଦିଏ । ତାଙ୍କ ସ୍କୁଲ ଅଧ୍ୟୟନ ସମୟରେ ତାଙ୍କର ସାହିତ୍ୟିକ ଲେଖା ପ୍ରତି ବିଶେଷ ଅନୁଦାନ ଥିଲା । *''ଶଙ୍ଖ''* ପ୍ରଭୃତି ପତ୍ରିକାରେ ତାଙ୍କ ଲେଖା ସ୍ଥାନ ପାଇଥିଲା । ଚାକିରୀ କରୁଥିବା ସମୟରେ ତଥା ଅବସର ଗ୍ରହଣ କରିବାପରେ *''ସମାରୋହ''*, *''ନିର୍ମାଲ୍ୟ''* ପ୍ରଭୃତି ପତ୍ରିକାରେ ତାଙ୍କ ଲେଖା ପାଠକ, ପାଠିକାଙ୍କ ମନରେ ଉଚ୍ଚ ପ୍ରଶଂସିତର ପ୍ରତୀକ ହୋଇ ରହି ଆସିଛି । ସେ କର୍ମବୀର ଗୌରୀଶଙ୍କର ସ୍ମୃତି ସଂସଦର ସଭାପତି ଓ ଲୋକଭାଷା ପ୍ରଚାର ସମିତିର ରାଜ୍ୟଶାଖା ଅଧ୍ୟକ୍ଷ ତଥା ବହୁ ଜନ ସମାଜ ମଙ୍ଗଳ ସଂସ୍ଥା ସହିତ ଜଡିତ । ଏକ ମୌଳିକ ବିଷୟ ସମ୍ବନ୍ଧରେ ଗଭୀର ଗବେଷଣା କରି *''ମହାବିଶ୍ୱ''* *''ମହାକାଳ''* ଓ *''ମହାଜୀବନର''* ସମ୍ମିଶ୍ରଣର ଚିନ୍ତାଧାରାକୁ ନେଇ ଲିଖିତ ***''ଅମୃତର ଆହ୍ୱାନ''*** ପୁସ୍ତକଟି ବିଶ୍ୱ ସାହିତ୍ୟରେ ଏକ ପରିଚର୍ଚ୍ଚାର ବିଷୟ ହେବ, ଏଥିରେ ସନ୍ଦେହ ନାହିଁ ।

